*

ବିଶ୍ୱ-ସାହିତ୍ୟ ପ୍ରକାଶକ
ପ୍ରଫୁଲ୍ଲ ଚନ୍ଦ୍ର ଦାସ ଙ୍କ
୮୧ତମ ଉଦ୍ୟମ
ଏବଂ
ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟର
ପ୍ରଥମ ଅବଦାନ

*

ଦ୍ୱିତୀୟ ଅବଦାନ
ମୋ' ଜାତିକୁ ଯିବାକୁ ଦିଅ !
ଆଲବର୍ଟ ଲୁଥୁଲି
( ନୋବେଲ ଶାନ୍ତି ପୁରସ୍କାର ପ୍ରାପ୍ତ )

*

ତୃତୀୟ ଅବଦାନ
ଆମେ କାହିଁକି ଅପେକ୍ଷା କରିବୁ ନାହିଁ ?
ମାର୍ଟିନ ଲୁଥର କିଂଗ
( ନୋବେଲ ଶାନ୍ତି ପୁରସ୍କାର ପ୍ରାପ୍ତ )

# ଉଦ୍‌ଘାଟନ ଶଙ୍ଖ

ପୃଥିବୀରେ ଆଜି ଶ୍ରଦ୍ଧା ଓ ଅଶ୍ରଦ୍ଧା, ବିଶ୍ୱାସ ଓ ଅବିଶ୍ୱାସ, ଏବଂ ଆସ୍ଥା ଓ ଅନାସ୍ଥା ମଧ୍ୟରେ ସଂଘାତ ଲାଗିରହିଥିବା ବେଳେ ମୁଁ ମାନବିକ ଅଧିକାରର ଏକ ଉଦ୍ଦୀପ୍ତ ଆୟତନର ପୁନରାବିଷ୍କାର, ପୁନଃସୃଜନ ଏବଂ ପୁନଃପ୍ରତିଷ୍ଠା ଉଦ୍ଦେଶ୍ୟରେ ମୋର ଅତୀତ ଓ ଭବିଷ୍ୟତ ଜୀବନର ଏହି ସନ୍ଧିକ୍ଷଣରେ ଏକାନ୍ତ ଭାବରେ ଦଣ୍ଡାୟମାନ ହେବାକୁ ଯାଉଛି ।

ଶାନ୍ତି ଓ ସମ୍ପନ୍ନତାର ସନ୍ଦେଶ ବହନ କରି ଆତ୍ମପ୍ରକାଶ କରିବାକୁ ଯାଉଥିବା "ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ" ରୂପକ ମୋର ଆନ୍ତର୍ଜାତିକ ପ୍ରତିଷ୍ଠାନ ମାଧ୍ୟମରେ ମୁଁ ଏହା କରିବାକୁ ଉଦ୍ୟତ ହୋଇଅଛି । ଏହି ଅନ୍ତର୍ଯାତ୍ରାରୁ ନିଃସୃତ ଏକ ଶକ୍ତି ନିଷ୍ପନ୍ନ ହେବ, ଏବଂ ସେହି ଶକ୍ତି ଯୁଦ୍ଧକୁ ଏଡ଼ି ତଥାପି ସଂଘାତର ସମାଧାନ କରିବାକୁ ଏବଂ ବିଶ୍ୱମୈତ୍ରୀର ଦ୍ୱାରୋଦ୍‌ଘାଟନ କରିବାରେ ସାମର୍ଥ୍ୟ ଆଣି ଯୋଗାଇ ଦେବ ।

ଶ୍ରୀ ଗଣେଶ ଚତୁର୍ଥୀ (୧୦ । ୯ । ୧୯୬୪) ସଂଧ୍ୟାରେ 'ଓଡ଼ିଆ ଜ୍ଞାନକୋଷ'ର ମୁଖ୍ୟ ସଂକଳକ ଡକ୍ଟର ମାୟାଧର ମାନସିଂହଙ୍କ ପୌରହିତ୍ୟରେ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ ଔପନ୍ୟାସିକ କାହ୍ନୁଚରଣ ମହାନ୍ତି 'ପ୍ରଫୁଲ୍ଲ ପ୍ରେସ' ଉଦ୍‌ଘାଟନ କରିଥିଲେ ।

ଆପଣମାନଙ୍କ ସେବାରେ ଜୀବନର ଅଠର ବର୍ଷ ଅତିବାହିତ ହୋଇସିବା ପରେ ଆପଣା ବିଷୟରେ ମୋର ଆଉ କିଛି ଅଧିକ କହିବାକୁ ନାହିଁ । ମୁଁ ଅତିଗୁଡ଼ାଏ ଦାବୀ ମଧ୍ୟ କରୁ ନାହିଁ । ନିଜର ଗୁଣ ଦ୍ୱାରା ଯାହା ଆପଣମାନଙ୍କର ସନ୍ତୋଷ ବିଧାନ କରି ନ ପାରିବ, ତାହାର ମୁଦ୍ରଣ ବା ପ୍ରକାଶନ ଲାଗି ମୁଁ କେବେ ହେଲେ ମନ ବଳାଏ ନାହିଁ । ଓଡ଼ିଶାର ମୁଦ୍ରଣ ତଥା ପ୍ରକାଶନ-ଇତିହାସରେ ଆଜି ମୁଁ କେବଳ ଏତିକି ମାତ୍ର ଅଭିନନ୍ଦନ-ବ୍ୟଞ୍ଜକ ଶବ୍ଦ "ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ" ଶୁଣିବାକୁ ପାଉଛି, ଯାହାକି ମୂଳତଃ ଆପଣମାନଙ୍କର ଅବିରାମ ସମାଲୋଚନାପୂର୍ଣ୍ଣ ସହଯୋଗ ଓ ପୃଷ୍ଠପୋଷକତା ଦ୍ୱାରାହିଁ ସମ୍ଭବ ହୋଇପାରିଛି । କୃତଜ୍ଞତାପୂର୍ଣ୍ଣ ଧନ୍ୟବାଦ ଜଣାଇ ମୁଁ ତାହା ସ୍ୱୀକାର କରି ନେଉଛି ।

"ଜୀବନ ଏକ ଦୀର୍ଘ ବାସନା ପ୍ରବାହ, ଏହା କେବେ ହେଲେ ପୂର୍ଣ୍ଣ ହୋଇପାରେ ନାହିଁ" ବୋଲି ଆର୍ଥାର ଶୋପେନ୍‌ହାଓ୍ୱାର କହିଛନ୍ତି। ବାଇରନ୍‌ର ଜେନୋ ସ୍ୱୀକାର କରୁଥିଲେ ଯେ ସୁଖ କଦାପି ଜୀବନର ଏକ ଲକ୍ଷ୍ୟ ହୋଇପାରିବ ନାହିଁ । ପ୍ରତି ଦିନ କର୍ତ୍ତବ୍ୟ ସମାପନ କରିସିବା ସଙ୍ଗେ ସଙ୍ଗେ ହିଁ ହୁଏତ ଏହା ଉପଲବ୍‌ଧ ହୋଇପାରିବ । ତେଣୁ ଅବିରାମ ସାଧନା ଦ୍ୱାରା ମୋ' ଜୀବନରୁ ହୃତପ୍ରାପ୍ତ ଈଶ୍ୱରୀୟ ଗୌରବକୁ ଫେରି ପାଇବା ଲାଗି ମୁଁ ପୁଣି ପ୍ରସ୍ତୁତ ହୋଇଯାଏ ।

ଆଜି ଏହି ଉପଲକ୍ଷରେ ମୋର ସ୍ୱଭାବତଃ ସେହି ପବିତ୍ର ଆଶୀର୍ବଚନ ମନେ ପଡ଼ିଯାଉଛି । "ଆଧ୍ୟାତ୍ମିକ ମୂଲ୍ୟଗୁଡ଼ିକ ସକାଶେ ତୁମ ଠାରେ ରହିଥିବା ବ୍ରତନିଷ୍ଠା ନିଃସନ୍ଦେହ ଭାବରେ ଅତ୍ୟନ୍ତ ଶକ୍ତିଶାଳୀ । ଦିବ୍ୟ ଓ ଈଶ୍ୱରୀୟ ସକଳ ସମ୍ପଦ ସକାଶେ ତୁମ ଠାରେ ଯେଉଁ ସୁଗାଢ଼ ଶ୍ରଦ୍ଧା ରହିଛି, ନିଃସ୍ୱାର୍ଥ ସେବା ଲାଗି ତୁମ ଠାରେ ଯେଉଁ ତତ୍ପରତା ରହିଛି, ଆଧ୍ୟାତ୍ମିକ ଜ୍ଞାନ ଓ ଆଧ୍ୟାତ୍ମିକ ଆଦର୍ଶର ପ୍ରସାର ସକାଶେ ତୁମର ଯେଉଁ ପ୍ରବଳ ଉତ୍ସାହ ରହିଛି, ସେଗୁଡ଼ିକ ଠାରୁ ଭାରତ ତଥା ପୃଥିବୀ ଆହୁରି ଅଧିକ ସେବା ଆବଶ୍ୟକ କରୁଛି । ଭଗବାନ ତୁମକୁ ସୁସ୍ୱାସ୍ଥ୍ୟ, ବଳ, ଦୀର୍ଘ ଜୀବନ ଦିଅନ୍ତୁ । ଶାନ୍ତି, ସୁଖ, ସିଦ୍ଧି ଓ କୈବଲ୍ୟ ମୋକ୍ଷ ପ୍ରଦାନ କରନ୍ତୁ ।"

ଯାହାଙ୍କର ନାରାୟଣପ୍ରାପ୍ତି ଆଜି ବିଶ୍ୱବାସୀଙ୍କୁ ଶୋକାଭିଭୂତ କରି ଦେଇଛି, ସେହି ପବିତ୍ରାତ୍ମା ଶ୍ରୀ ସ୍ୱାମୀ ଶିବାନନ୍ଦ ଠାକୁର ହିମାଳୟର ଋଷି-କେଶରୁ ୧୯୬୩ରେ ମୋ' ପାଖକୁ ଏହି ଆଶୀର୍ବଚନଟି ପଠାଇଥିଲେ ।

ଆଉ ଯେଉଁ ଆଶୀର୍ବଚନ-ଗୁଚ୍ଛ ମୋର ବ୍ରତ ଯାତ୍ରାରେ ଆଲୋକ-ବର୍ତ୍ତିକା ହୋଇ ରହିବ ତାହା ହେଉଛି :

"ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ ନାମରେ ତୁମେ ନିଜର ଏକ ମୁଦ୍ରଣ ତଥା ପ୍ରକାଶନ ସଂସ୍ଥା ଖୋଲିବାକୁ ଯାଉଛ ଶୁଣି ମୁଁ ଭାରି ଖୁସି ହେଲି । ତୁମର ଏହି ଉଦ୍ୟମରେ ମୁଁ ସଫଳତା କାମନା କରୁଛି ।"

**ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ**
ଭାରତର ଦାର୍ଶନିକ-ରାଷ୍ଟ୍ରପତି

"ପୁସ୍ତକ ମୁଦ୍ରଣ ଓ ପ୍ରକାଶନ ବ୍ୟବସାୟରେ ଆପଣ ନିଜର ଯେଉଁ ନୂତନ ଉଦ୍ୟମ ଆରମ୍ଭ କରିବାକୁ ଯାଉଛନ୍ତି, ସେଥିଲାଗି ଏକ ସନ୍ଦେଶ ପଠାଇବା ନିମିତ୍ତ ଆପଣ ମୋତେ ପତ୍ରଟିରେ ଅନୁରୋଧ ଜଣାଇଛନ୍ତି ।

ଏହି ଆଗ୍ରହ ଓ ଉଦ୍ୟମକୁ ମୁଁ ଶ୍ଳାଘ୍ୟ ବୋଲି ହିଁ ମନେ କରୁଛି ଏବଂ ସେଥିଲାଗି ସକଳ ସଫଳତା ମଧ୍ୟ କାମନା କରୁଛି ।"

**ଡକଟର ରାଲଫ୍ ଜେ. ବୁଞ୍ଚେ**
ସଂଯୁକ୍ତ ରାଷ୍ଟ୍ରସଂଘ

"ଆପଣଙ୍କର ନିଜର ପ୍ରକାଶନ ସଂସ୍ଥା 'ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ'ର ଉଦ୍‌ଘାଟନ ଉପଲକ୍ଷେ ମୁଁ ମୋର ଶୁଭ କାମନା ଜଣାଉଛି । ଇଉ-ନେସ୍କୋ ୪ର୍ଥ-କ ଯୋଜନାରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସାଂସ୍କୃତିକ ମୂଲ୍ୟ-ଗୁଡ଼ିକ ବିଷୟରେ ପାରସ୍ପରିକ ଆଗ୍ରହର ଉଦ୍‌ବୋଧନ କରାଇବା ପାଇଁ ଯେଉଁ କଳ୍ପନା କରାଯାଇଛି, ସେହି କଳ୍ପନାର ବିକାଶ ଲାଗି ଆପଣଙ୍କର ଯୋଜନାଟି ମଧ୍ୟ ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିପାରିବ ବୋଲି ମୋର ମନେ ହେଉଛି । ଏହି ଉଦ୍ୟମଟିକୁ ମୁଁ ହାର୍ଦ୍ଦିକ ସ୍ୱାଗତ ଜଣାଉଛି ।

ଆପଣଙ୍କ ଓ ଆପଣଙ୍କର ସାଂସ୍କୃତିକ ଉଦ୍ୟମଟି ସକାଶେ ପୁଣି ମୁଁ ମୋର ଶୁଭ କାମନା ପଠାଉଛି ।"

**ଡକଟର ଭିକ୍ଟର ଇ. ଫାନ ଫ୍ରିସଲାଣ୍ଡ**
ପି. ଇ. ଏନ୍-ର ଆନ୍ତର୍ଜାତିକ ସମ୍ପାଦକ

"ତୁମର ନୂତନ ପ୍ରକାଶନ ଉଦ୍ୟମରେ ସଂପୂର୍ଣ୍ଣ ସଫଳତା କାମନା କରି ମୁଁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଇ ପଠାଉଛି । ଯେଉଁସବୁ ମୂଳ ସତ୍ୟ ଉପରେ ବର୍ତ୍ତମାନ ମନୁଷ୍ୟ ଜାତିର ବଞ୍ଚି ରହିବା ନିର୍ଭର କରୁଛି, ପୃଥିବୀର ଯାବତୀୟ ଭାଷାରେ ସେହିସବୁ ସତ୍ୟର ପ୍ରସାର ହୋଇ ପାରିଲେ ତଦ୍ଦ୍ୱାରା କେବଳ ଶୁଭହିଁ ଉପୁଜିବ ।"

**ସାର୍ ନରମାନ ଆଞ୍ଜେଲ**
ନୋବେଲ ଶାନ୍ତି ପୁରସ୍କାର ପ୍ରାପ୍ତ

"ଆପଣ ନିଜର ଏକ ମୁଦ୍ରଣାଳୟ ଆରମ୍ଭ କରିବାକୁ ଯାଉଛନ୍ତି ଶୁଣି ଖୁସି ହେଲି । ଭଲ ଭଲ ବହିର ସୁଲଭ ସଂସ୍କରଣମାନ ପ୍ରକାଶ କରି ଆପଣ ସାହିତ୍ୟ ଜଗତର ସେବା କରି ପାରିବେ ବୋଲି ମୁଁ ଆଶା କରୁଛି । ମୁଁ ଆପଣଙ୍କର ସଫଳତା ଓ ଉନ୍ନତି କାମନା କରୁଛି ।"

**ଅଧ୍ୟାପକ ଡକ୍ଟର ହୁମାୟୁନ କବିର**

ଭାରତର ଶିକ୍ଷା ଓ ବୈଜ୍ଞାନିକ ଗବେଷଣା ବିଭାଗର ଭୂତପୂର୍ବ ମନ୍ତ୍ରୀ

"ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ" ନାମରେ ଆପଣ ନିଜର ଏକ ମୁଦ୍ରଣ ତଥା ପ୍ରକାଶନ ସଂସ୍ଥା ଆରମ୍ଭ କରିବାକୁ ଯାଉଛନ୍ତି ଜାଣି ମୁଁ ଭାରି ଖୁସି ହେଲି । ଉଦ୍ୟମଟିର ସଫଳତା କାମନା କରି ଆମେ ପଠାଉଥିବା ଏ ଭେଟିକୁ ଆପଣ ଗ୍ରହଣ କରିବେ ବୋଲି ମୋର ଅନୁରୋଧ ।

**ଶ୍ରୀ କୃଷ୍ଣ ଆର୍. କୃପାଳାନି**

ସମ୍ପାଦକ, ସାହିତ୍ୟ ଏକାଡେ଼ମୀ

"ଭାରତବର୍ଷରେ ଉନ୍ନତ ଧରଣର ପୁସ୍ତକ ମୁଦ୍ରଣକୁ ଉତ୍ସାହିତ କରିବା ସର୍ବଦା ଆନନ୍ଦଦାୟକ, ସେଥିଯୋଗୁଁ "ପ୍ରଫୁଲ୍ଲ ପ୍ରେସ" ନାମରେ ନୂତନ ମୁଦ୍ରଣାଳୟ ଉଦ୍‌ଘାଟନ ହେଉଥିବା ଶୁଣି ମୁଁ ପ୍ରୀତ ହେଲି ଏବଂ ତାହାର ସକଳ ସଫଳ କାମନା କରୁଛି ।"

**ସାର୍ ଷ୍ଟେନଲି ଅନ୍‌ଉଇନ୍**

ବିଶ୍ୱବିଖ୍ୟାତ ଲେଖକ-ପ୍ରକାଶକ

"ଦେହର ଅସୁସ୍ଥତା ସତ୍ତ୍ୱେ ତୁମେ ଯେ, ନୋବେଲ ପୁରସ୍କୃତ ବିଶ୍ୱ-ସାହିତ୍ୟର ଶ୍ରେଷ୍ଠ ଉପନ୍ୟାସ 'ଧରିତ୍ରୀ'ର ଅନୁବାଦ ପ୍ରକାଶନରେ ବ୍ରତୀ ହୋଇଛ ଏହା ଅତି ଆନନ୍ଦର ତଥା ବିସ୍ମୟର କଥା । ଭଗବାନ ଶିଘ୍ର ତୁମକୁ ଆରୋଗ୍ୟ କରନ୍ତୁ ।"

**କାହ୍ନୁଚରଣ**

ସାହିତ୍ୟ ଏକାଡେ଼ମୀ ପୁରସ୍କାରପ୍ରାପ୍ତ

ଆପଣ ନିଜର ଏକ ପ୍ରକାଶନ ସଂସ୍ଥା ଖୋଲିବାକୁ ଯାଉଛନ୍ତି ଶୁଣି ଖୁସୀ ହେଲି । ଏହା ଦ୍ୱାରା ଆପଣ ଆପଣଙ୍କର ସ୍ୱର୍ଗତଃ ପିତୃଦେବଙ୍କର କାର୍ଯ୍ୟକୁ ଅଖଣ୍ଡ କରି ରଖି ପାରିବେ । ଏହି ସଂସ୍ଥାଟିର ସଫଳତା ଲାଗି ମୁଁ ଶୁଭକାମନା ଜଣାଉଛି ।

**ପଦ୍ମଶ୍ରୀ ସୋଫିଆ ଓ୍ୱାଦିଆ**
ଭାରତୀୟ ପି. ଇ. ଏନ୍‌ର ପ୍ରତିଷ୍ଠାତ୍ରୀ ଓ ସମ୍ପାଦିକା

୨

ନୋବେଲ ପୁରସ୍କାର ପ୍ରାପ୍ତ ଲେଖକମାନଙ୍କ ମଧ୍ୟରେ କୃଷିକୁଳର ଜୀବନକୁ କେନ୍ଦ୍ର କରି ଲେଖିଛନ୍ତି ସୁଇଡେନର ଶ୍ରୀମତୀ ସେଲମା ଲାଗରଲଫ୍, ଇଟାଲୀର ଶ୍ରୀମତୀ ଗ୍ରାତ୍ସିଆ ଦେଲେଦ୍ଦା, ଆୟର୍ଲଣ୍ଡର କବି-ନାଟ୍ୟକାର ଇଏଟସ୍, ନରଓ୍ୱେର ଶ୍ରୀ ନ୍ୟୁଟ୍ ହାମସୁନ, ଡେନମାର୍କର ଶ୍ରୀ ଯେନସେନ, ଆଇସ୍‌ଲ୍ୟାଣ୍ଡର ହ୍ୟାଲଡର ଲକ୍ସନେସ୍, ଆମେରିକାର ଶ୍ରୀମତୀ ପାର୍ଲ ବକ୍ ଏବଂ ପୋଲାଣ୍ଡର ଲାଡ଼ିସଲାସ୍ ସେଣ୍ଟ୍ ରେମଣ୍ଟ୍ ।

ରେମଣ୍ଟ୍‌ଙ୍କର ଜନ୍ମ ଶତବାର୍ଷିକୀ ପାଳିତ ହେବ ୧୯୬୮ ମସିହା ମଇ ୬ ତାରିଖ ଦିନ । ୯୭ ବର୍ଷ ପୂର୍ବେ ସେ ପୋଲାଣ୍ଡର ରୁଷ ଅଧିକୃତ ଅଞ୍ଚଳ ରାଡ଼ୋମ ନିକଟସ୍ଥ Kobiele Wielkie ନାମକ ସ୍ଥାନରେ ଜନ୍ମଲାଭ କରିଥିଲେ । କୈଶୋର ଅବସ୍ଥାରେ Chopinଙ୍କ ସଙ୍ଗୀତାବଳୀକୁ ସେ କବିତାରେ ରୂପାନ୍ତରିତ କରିଥିଲେ । ଲେଖକ ହିସାବରେ ପ୍ରତିଷ୍ଠିତ ହେବା ପୂର୍ବରୁ ଅଶାନ୍ତିପୂର୍ଣ୍ଣ ଯୌବନ ଅତିବାହିତ କରିବା ସଙ୍ଗେ ସଙ୍ଗେ କିରାଣୀ, ଯାତ୍ରା-ଦଳର ଅଭିନେତା, ମୂଲିଆ ଓ କୃଷୀ ଭାବରେ ମଧ୍ୟ କାର୍ଯ୍ୟ କରି ସେ ପ୍ରାୟ ୨୫ ଖଣ୍ଡ ପୁସ୍ତକ ରଚନା କରି ଯାଇଛନ୍ତି ।

ନୋବେଲ ପୁରସ୍କାର ପାଇଁ ରେମଣ୍ଟ୍‌ଙ୍କ ସଙ୍ଗେ ତୀବ୍ର ପ୍ରତିଦ୍ୱନ୍ଦିତା ଘଟିଥିଲା ସ୍ୱଦେଶବାସୀ ଷ୍ଟିଫାନ୍ ଜେରୋମସ୍କିଙ୍କ ସହିତ, ଠିକ୍ ଯେମିତି ଏଲିଜା ଓରଜେସକୋ ପ୍ରତିଦ୍ୱନ୍ଦୀ ହୋଇଥିଲେ ହେନରିକ୍ ସିଏନକିଭିଚ୍‌ଙ୍କ ସଙ୍ଗେ । ୧୯୨୫ ଡିସେମ୍ବର ୭ ତାରିଖ ଦିନ ରେମଣ୍ଟ୍ ଦେହ ତ୍ୟାଗ କଲେ ।

"କୃଷୀ"ର ମୂଳ ପୋଲଣ୍ଡ ଗ୍ରନ୍ଥ Chlopiର ଇଂରାଜୀ ଅନୁବାଦ The Peasants ବର୍ତ୍ତମାନ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ତାଲିକାଭୁକ୍ତ ହୋଇଥିବାରୁ ପୋଲଣ୍ଡ ଲେଖକ ସମିତି ZAIKSର ନିର୍ଦ୍ଦେଶ କ୍ରମେ ତାଙ୍କର ଜାତୀୟ ପାଠାଗାରର ପରିଚାଳକ Dr. Bogdan Horodyski ତାହା ସଦୟ ହୋଇ ଓଡ଼ିଆ ଅନୁବାଦ ପାଇଁ ଯୋଗାଇ ଦେଇଥିଲେ । ଆଉ "କୃଷୀ"ର ପ୍ରଚ୍ଛଦପଟ ପାଇଁ ପୋଲଣ୍ଡ ଜାତୀୟ ମ୍ୟୁଜିୟମର ପରିଚାଳକ Prof. Dr. Stanislaw Lorentz ଯୋଗାଇ ଦେଇଛନ୍ତି ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପୋଲଣ୍ଡ ଗଣ ଶିଳ୍ପୀ Zofia Stryjenskaଙ୍କ ଅଙ୍କିତ ବାରଖଣ୍ଡ ଚିତ୍ର । ତନ୍ମଧ୍ୟରୁ କେବଳ ମାତ୍ର ଗୋଟିଏ ପ୍ରଚ୍ଛଦପଟର ଶୋଭାବର୍ଦ୍ଧନ କରୁଅଛି । ଏହା ପାରିସର ଆନ୍ତର୍ଜାତିକ ଲଳିତକଳା ପ୍ରଦର୍ଶନୀ (୧୯୨୫)ରେ ପ୍ରଦର୍ଶିତ ହୋଇଥିଲା । କିନ୍ତୁ ୧୯୧୮ରେ ତାହା ଅଙ୍କିତ ହୋଇଥିଲା । ବିଂଶ ଶତାବ୍ଦୀର ପୋଲଣ୍ଡ କୃଷୀର ଜୀବନ ଓ ବସନ ରୂପାୟନ କରାଯାଇଛି ଏହି ଚିତ୍ରକଳା ମାଧ୍ୟମରେ ।

ପୋଲଣ୍ଡ P. E. N. ଶାଖାର ସଭାପତି ରୂପେ ଦୀର୍ଘ ତ୍ରିଶ ବର୍ଷ ଯାବତ୍ ସମ୍ମାନିତ ହୋଇ ଆସୁଥିବା ଏବଂ ୧୯୬୩ରେ ସର୍ବସମ୍ମତ କ୍ରମେ ଆନ୍ତର୍ଜାତିକ P. E. N.ର ଉପ-ସଭାପତି ରୂପେ ନିର୍ବାଚିତ ବିଶ୍ୱ-ପୂଜ୍ୟ ପୋଲଣ୍ଡ ଭାଷାର ଲେଖକ ଅଧ୍ୟାପକ ଡକ୍ଟର ଯାନ୍ ପାରାଣ୍ଡୋଭସ୍କି ତାଙ୍କର ବହୁ ମୂଲ୍ୟ ସମୟର ବିନିମୟରେ ଚିତ୍ତାକର୍ଷକ ତଥା ଚିନ୍ତୋଦ୍ଦୀପକ "ମୁଖବନ୍ଧ" ଲେଖି ଦେଇଥିବାରୁ ଓଡ଼ିଆ ସଂସ୍କରଣ ଗୌରବାନ୍ୱିତ । ଲିଭୋଭ ସହରରେ ୧୮୯୫ ମସିହାରେ ତାଙ୍କର ଜନ୍ମ । ସେ କାଥୋଲିକ ବିଶ୍ୱବିଦ୍ୟାଳୟରେ ବହୁ ବର୍ଷ ଯାବତ୍ ତୁଳନାତ୍ମକ ସାହିତ୍ୟର ଅଧ୍ୟାପକ ଥିଲେ । ହୋମର ଓ ଅନ୍ୟାନ୍ୟ କବିଙ୍କର ରଚନାର ସେ ଅନୁବାଦକ ମଧ୍ୟ । ସିଏନକିଭିଚଙ୍କ Quo Vadis ବ୍ୟତୀତ ପାରାଣ୍ଡୋଭସ୍କିଙ୍କର ରଚନା-ଗୁଡ଼ିକ ହିଁ ପୃଥିବୀର ବିଭିନ୍ନ ଭାଷାରେ ସର୍ବାଧିକ ସଂଖ୍ୟାରେ ଅନୂଦିତ ଏବଂ ପ୍ରଚୁର ହୋଇଛି ।

ନୋବେଲ ପ୍ରତିଷ୍ଠାନର ବଦାନ୍ୟ ଅନୁମତି କ୍ରମେ 'ନୋବେଲ ପୁରସ୍କାର ଭାଷଣ'ଟି ସର୍ବ ପ୍ରଥମ ଅନୂଦିତ ହୋଇ ଓଡ଼ିଆ ସଂସ୍କରଣର ବିଶେଷ ଆକର୍ଷଣ ହୋଇପାରିଛି । ଆଉ ପୋଲିଶ ପି. ଇ. ଏନ. ଶାଖାର ମୁଖ୍ୟ ସମ୍ପାଦକ ମିଖାଏଲ ରୁସିନେକ୍ 'ଅନ୍ତ କଥନ'ଟିଏ ଲେଖି ପଠାଇଥିବାରୁ ଏବଂ ପୋଲିଶ ଭାରତୀୟ ସୌହାର୍ଦ୍ଦ୍ୟ ସମିତିର ସଭାପତି ଡକ୍ଟର ଅସ୍କାର ଲଙ୍ଗ ଶୁଭେଚ୍ଛା ଜଣାଇଥିବାରୁ ଓଡ଼ିଆ ପାଠକ ନିଶ୍ଚୟ କୃତଜ୍ଞ ରହିବେ ।

ଦୀର୍ଘ ପାଞ୍ଚ ବର୍ଷ ସାତ ପୂର୍ବର ୮୯ତମ ଉଦ୍ୟମ ଏବଂ 'ପ୍ରଫୁଲ୍ଲ ପ୍ରେସ ଓ ପୁସ୍ତକାଳୟ'ର ପ୍ରଥମ ଅବଦାନ ଆଜି ପରମ ଶୁଭ ଦିନ ବାସନ୍ତିକ ଅଷ୍ଟମୀରେ ମୋର ନବଜନ୍ମର ଉଦ୍‌ଘାଟନ ଶଙ୍ଖଧ୍ୱନି ହୋଇ ବିଳମ୍ବରେ ଏସିଆ ମହାଦେଶ ତଥା ଭାରତୀୟ ଭାଷାମାନଙ୍କ ମଧ୍ୟରେ ସର୍ବପ୍ରଥମ ଓଡ଼ିଆ ଭାଷାରେ ଆତ୍ମପ୍ରକାଶ କରି ଓଡ଼ିଆ ସାହିତ୍ୟ ରସପିପାସୁମାନଙ୍କୁ ଅଭିନନ୍ଦନ ଜଣାଇବାକୁ ଯାଉଥିବା ବେଳେ ମୁଁ ତାହାର ଅନୁବାଦକ ପୁଣ୍ୟତିଥି ଭାଇ, ଏବଂ ପୋଲିଶ ଦେଶର ମହାନୁଭବ ସହଯୋଗୀବୃନ୍ଦଙ୍କୁ କ୍ଷମା ଭିକ୍ଷା କରୁଅଛି ।

ଆତ୍ମ-ବିକାଶ ପଥରେ ବହୁ ବାଧା ବିପତ୍ତି ବିଦ୍ୟମାନ, କିନ୍ତୁ ହିନ୍ଦୁ-ଧର୍ମ ବିଶ୍ୱାସ କରେ ଯେ, ଆତ୍ମାର ଶକ୍ତି ମଧ୍ୟ ଅପରିସୀମ । ହିନ୍ଦୁର ଧର୍ମ ଆଧ୍ୟାତ୍ମିକ ଜୀବନକୁ ଗଭୀର ଭାବରେ ବିଶ୍ୱାସ କରେ ଏବଂ ସେହି ସନାତନ ଧର୍ମର ପ୍ରତୀକ ଆମର ଇଷ୍ଟଦେବୀ ମା' କନକଦୁର୍ଗା ଏବଂ ମହାଯୋଗୀ ୰ ସ୍ୱାମୀ ଶିବାନନ୍ଦଙ୍କ ପାଦପଦ୍ମ ଯୁଗଳରେ "କୃଷୀ"ର ପ୍ରଥମ ଖଣ୍ଡ (ଶରତ୍ କାଳ) ସଭକ୍ତି ଉତ୍ସର୍ଗ କରି ନିଜକୁ ପରମ ସୌଭାଗ୍ୟବାନ ମନେ କରୁଛି ।

ପ୍ରଥମ ଭାଗର ପ୍ରଚାର ଓ ପ୍ରସାର ଉପରେ "କୃଷୀ"ର ୨ୟ, ୩ୟ ଓ ୪ର୍ଥ ଖଣ୍ଡର ପ୍ରକାଶନ ନିର୍ଭର କରୁଛି । ଆଶା କରେ ପ୍ରଥମ ଭାଗର ଓଡ଼ିଆ ପାଠକ ବୃନ୍ଦ ପାଇ ଅନ୍ୟାନ୍ୟ ଖଣ୍ଡମାନଙ୍କୁ ଆମନ୍ତ୍ରଣ ଜଣାଇବେ ।

"ସୁଭଦ୍ରାନିଳୟ"
ଚାନ୍ଦନୀଚୌକ, କଟକ-୨

**ପ୍ରଫୁଲ୍ଲ ଚନ୍ଦ୍ର ଦାସ**

## PREFATORY LETTER TO
## Prafulla Chandra Das.

I was very touched by your letter in which you informed me that you are publishing Reymont's "Peasants" into the Oriya language, and at the same time expressed your desire that I should write a few words for the readers of this book in your motherland. I am most grateful to you affording me an opportunity, in sending my greetings, of visiting in thought the country of Orissa, which I have not yet seen, but which I know from literature. Even now as I write it seems to me that I see the majestic temples of Puri, and it is indeed pleasant to think that some reader may sit in their shadow and read this Polish book.

It is profoundly Polish in everything it pictures: the landscape. the people, the customs, and work on the land. Poland took its name from its fields, those wide expanses of plain on which the corn ripens. Ever since the Polish tongue has been spoken here, the people who speak it have been closely bound to the land which they cultivate and love. The deeply-rooted affinity of man with the soil has been represented by Reymont in his "Peasants" and has created from his story the epopee of our nation, its work and its life, everything apportioned to man by his fate and his own soul, with its impulses and passions. These are as violent as the elements which govern the seasons of the year. The four seasons not only watch over the composition of "Peasants", but also take part in the story, forcing on

the heroes of the book the rhythm of their work, while a sky veiled by clouds or radiant in the sun is a living, watchful witness and companion of human doings and feelings. The sky in India is different from ours, as are your customs, just as the soil beneath your sky bears other fruits and draws the people working on it into a different round of toil and care, but both the workers in the paddy-fields and the cornfields have the same hearts: the characters in Reymont's "Peasants" will find kindred souls in them, who will understand and come to love them.

Litetature has no finer task than bringing nations, distant or different from one another, closer together, and in enabling them to get to know what is most precious and lofty in each nation. Just as the great poet of India, Rabindranath Tagore, whose works have been read here for over fifty years with admiration and emotion, brought us good news of our brothers by the Ganges, may our writer enable your countrymen to learn to know and like the nation and eountry by the Vistula.

[ JAN PARANDOWSKI ]
Int. Vice-President of the Int. P. E. N.

# ୟାନ୍ ପାରାଣ୍ଡୋଭସ୍କି

ରେମଣ୍ଟ୍‌ଙ୍କର 'The Peasants' ଉପନ୍ୟାସର ଓଡ଼ିଆ ଅନୁବାଦ ପ୍ରକାଶିତ ହେବାକୁ ଯାଉଛି, ଏବଂ ଭାରତୀୟ ପାଠକମାନଙ୍କ ସକାଶେ ମୋତେ ଏଥିଲାଗି ଗୋଟିଏ ମୁଖବନ୍ଧ ଲେଖିଦେବାକୁ ଅନୁରୋଧ କରାଯାଇଛି, ଏହା ଶୁଣି ମୁଁ ପ୍ରକୃତରେ ମୁଗ୍ଧ ହୋଇ ପଡ଼ିଛି । ମୋତେ ଏହି ସୁଯୋଗ ମିଳିଥିବାରୁ ମୁଁ କୃତଜ୍ଞତା ପ୍ରକାଶ କରୁଛି । ମୁଁ ଓଡ଼ିଶା ଯାଇନାହିଁ, କିନ୍ତୁ ପୁସ୍ତକରୁ ଓଡ଼ିଶା ବିଷୟରେ ପଢ଼ିଛି ଏବଂ ମୋର ମନୋଯାନରେ ସେହି ଦେଶରେ ଭ୍ରମଣ କରି ଆସିଛି । ଏହି ମୁଖବନ୍ଧଟି ଲେଖିଲାବେଳେ ମଧ୍ୟ ମୁଁ ପୁରୀର କଳାସମ୍ପଦଶାଳୀ ମନ୍ଦିରକୁ ମୋର ଆଖି ଆଗରେ ଦେଖିପାରୁଛି । ହୁଏତ ସେହି ମନ୍ଦିରର ଛାଇରେ ବସି ଦିନେ ଓଡ଼ିଶାର କେଉଁ ପାଠକ ପୋଲାଣ୍ଡ୍‌ର ଏହି ଉପନ୍ୟାସଟିକୁ ନେଇ ପଢ଼ିବସିବ, ତାହା ଚିନ୍ତା କଲାବେଳକୁ ମୋର ପ୍ରାଣ ପୁଲକିତ ହୋଇ ଉଠୁଛି ।

'Peasants' ଉପନ୍ୟାସରେ ଚିତ୍ରିତ କରାଯାଇଥିବା ସକଳ ଚିତ୍ର ହେଉଛି ପୋଲାଣ୍ଡ ଦେଶର ଅତି ସ୍ୱକୀୟ ଚିତ୍ର ; ଏହାର ପ୍ରକୃତି, ଏହାର ପାଳପାର୍ବଣି, ଏହାର ରୀତିପରମ୍ପରା ଓ ଏହାର କୃଷିକାର୍ଯ୍ୟ—ସବୁ ପୋଲାଣ୍ଡର ନିଜସ୍ୱ । ଏଠି ଆମ ଦେଶରେ ଦିଗନ୍ତ ପ୍ରସାରିତ ଯେଉଁ ଶସ୍ୟକ୍ଷେତ୍ରରେ ବରଷକୁ ବରଷ ଶସ୍ୟ ପାଚୁଛି, ସେହିଥିରୁ ହିଁ ପୋଲାଣ୍ଡ ଦେଶର ନାମ-କରଣ ହୋଇଛି । ଏହି ଦେଶରେ ପୋଲିଶ୍ ଭାଷାର ପ୍ରଚଳନ ହେବା ଦିନଠାରୁ ସେହି ଭାଷାଭାଷୀ ଜନସମୂହ ଏହି ଜମିକୁ ଆଦର କରିଆସୁଛନ୍ତି, ଏହି ଜମିକୁ କୃଷି କରୁଛନ୍ତି ଓ ଏହି ଜମିକୁ ଭଲ ପାଉଛନ୍ତି । ଏହି ଦେଶର ମାଟି ପ୍ରତି ଏହି ଦେଶର ମଣିଷର କେତେ ମାୟା ରହିଛି, ରେମଣ୍ଟ୍ ତାଙ୍କ 'Peasants' ଉପନ୍ୟାସରେ ତାହାହିଁ ଦେଖାଇଛନ୍ତି ଏବଂ ଆପଣା କଥାବସ୍ତୁର ଜରିଆରେ

ପୋଲଣ୍ଡ୍ ଜାତ, ଏହାର କର୍ମ ଓ ସମଗ୍ର ଜୀବନ, —ଏଗୁଡ଼ିକୁ ମିଶାଇ ଏକ ମହାଗ୍ରନ୍ଥ ଲେଖି ଯାଇଚନ୍ତି । ଆପଣାର ଭାଗ୍ୟ ଓ ଆପଣାର ଆତ୍ମାକୁ ନେଇ ମଣିଷ ଏହି ଦେଶର ମାଟି ଉପରେ ଯେଉଁ ସଂସାର ବସାଇଚ, ସେହି ସଂସାରର ସକଳ ବୃତ୍ତି ଓ ବାସନାକୁ ଏହି ଗ୍ରନ୍ଥରେ ଅପୂର୍ବ ଭାବରେ ଫୁଟାଇ ଦିଆ-ଯାଇଚ । ଆମଦେଶର ଖର ଓ କଠିନ ଋତୁଗୁଡ଼ିକ ପରି ସେହି ବାସନା ଗୁଡ଼ିକ ମଧ୍ୟ ବଡ଼ ଉଗ୍ର, ବଡ଼ ଉନ୍ମାଦନାମୟ । ବରଷର ଚୁରୋଟିଯାକ ଋତୁ କେବଳ ଉପରେ ରହି 'Peasants' ଉପନ୍ୟାସର ଘଟଣା ପ୍ରବାହକୁ ଅବଲୋକନ କରୁନାହାନ୍ତି, ଏମାନେ ମଧ୍ୟ ଘଟଣାର ଅଂଶସ୍ୱରୂପ ହୋଇ ରହିଚନ୍ତି, ଉପନ୍ୟାସଟିର ପାତ୍ରପାତ୍ରୀଙ୍କ ଉପରେ ଆପଣା ପ୍ରଭାବର ଛାପ ବିସ୍ତାର କରୁଚନ୍ତି । ଆକାଶ ମେଘାଚ୍ଛନ୍ନ ହୋଇଥାଉ ବା ସୂର୍ଯ୍ୟ କିରଣରେ ସ୍ୱଚ୍ଛୋଜ୍ଜଳ ହୋଇ ରହିଥାଉ, ତାହା ସର୍ବଦା ମନୁଷ୍ୟ—ଜୀବନର ଜୀବନ୍ତ ଓ ସତର୍କ ସାକ୍ଷୀ ଓ ସଙ୍ଗୀ ହୋଇ ରହିଚ । ଭାରତର ଆକାଶ ଏ ଦେଶର ଆକାଶଠୁଁ ଅନେକ ଭିନ୍ନ । ଠିକ୍ ସେହିପରି ସେହି ଦେଶର ଶୀତ ଓ ଋତୁ ଗୁଡ଼ିକ ମଧ୍ୟ ଭିନ୍ନ । ସେଦେଶର ମାଟିରେ ସେଠି ଅନ୍ୟପ୍ରକାରର ଫସଲ ଫଳେ, ସେଠି ଅନ୍ୟ ପ୍ରଣାଳୀରେ ଜମିର ଯତ୍ନ ନେବାକୁ ହୁଏ । କିନ୍ତୁ ଭାରତର ଧାନ କିଆରୀରେ ବା ପୋଲଣ୍ଡର ମାଣ୍ଡିଆ କିଆରୀରେ ଯେଉଁ କୃଷୀକୁଳ କାମ କରନ୍ତି ସେମାନଙ୍କର ହୃଦୟ ଏକ ; ରେମଣ୍ଟ୍‌ଙ୍କର 'Peasants' ଉପନ୍ୟାସରେ ବର୍ଣ୍ଣିତ ହୋଇଥିବା ଚରିତ୍ରଗୁଡ଼ିକ ଭାରତର କୃଷୀକୁଳଲଗି ମଧ୍ୟ ଆପଣାର ବୋଲି ମନେହେବ । ସେମାନେ ନିଶ୍ଚୟ ସେହି ଚରିତ୍ରଗୁଡ଼ିକୁ ବୁଝି ପାରିବେ ଓ ସେଗୁଡ଼ିକୁ ଭଲ ପାଇବେ ।

ଦୂର ଓ ଭିନ୍ନ ନାନାଦେଶକୁ ପରସ୍ପରର ନିକଟବର୍ତ୍ତୀ କରାଇବା ହେଉଚି ସାହିତ୍ୟର ସବୁଠାରୁ ସୁନ୍ଦର କାର୍ଯ୍ୟ, ପ୍ରତ୍ୟେକ ଦେଶର ଜୀବନରେ ଯାହା ସବୁଠାରୁ ମୂଲ୍ୟବାନ୍ ଓ ସବୁଠାରୁ ମହନୀୟ, ସାହିତ୍ୟ ବିଭିନ୍ନ ଦେଶର ଲୋକମାନଙ୍କୁ ତାହାହିଁ ଉପଲବ୍ଧି କରାଇବାକୁ ସମର୍ଥ କ[illegible] । ଆମ-ଦେଶର ଅଧିବାସୀମାନେ ପ୍ରାୟ ପଚିଶବର୍ଷରୁ ଅଧିକ କା[illegible] ଭାରତର ମହାନ୍ କବି ଶ୍ରୀ ରବୀନ୍ଦ୍ରନାଥ ଠାକୁରଙ୍କର ରଚନାମାନ ପ[illegible]ନ୍ତି,

ଓ ସେହି ରଚନାକୁ ଶ୍ରଦ୍ଧା କରି ପାରିଚନ୍ତି । ଏହି ରଚନାବଳୀ ଆମକୁ ସୁଦୂର ଗଙ୍ଗା ନଦୀର କୂଳରେ ବାସ କରୁଥିବା ଆମର ସାଥୀଭାଇ ମାନଙ୍କର ଜୀବନ ସନ୍ଦେଶ ଆଣିଦେଇଛି । ଠିକ୍ ସେହିପରି ଭିସ୍ଥୁଲ ନଦୀର ଜଳଦ୍ୱାରା ଧୌତ ହେଉଥିବା ଏହି ଦେଶ ଓ ଜାତିର ଜୀବନକୁ ଭାରତର ମଣିଷ ଯେପରି ଜାଣିପାରିବ ଓ ତାହାକୁ ଭଲପାଇ ପାରିବ, ଆମଦେଶର ଲେଖକ ଯେମାନଙ୍କୁ ସେତକ ସାମର୍ଥ୍ୟ ଦିଅନ୍ତୁ, ମୁଁ ଏହାହିଁ କାମନା କରୁଛି ।

୧୯ ଫେବୃୟାରି, ୧୯୫୯
ୱାରସ, ପୋଲଣ୍ଡ

## ସାହିତ୍ୟରେ ନୋବେଲ୍ ପୁରସ୍କାର : ୧୯୨୪

### ଜାତୀୟ ଗଦ୍ୟ-ମହାକାବ୍ୟ "The Peasants" ବିଷୟରେ ଏକ ଭାଷଣ

ପୋଲଣ୍ଡ୍ ଭାଷାରେ ଲେଖା ହୋଇଥିବା ଏହି ମହାନ୍ ସାହିତ୍ୟିକ କଳ୍ପନା କୃତିକୁ ମୂଳତଃ ଏକ ପ୍ରକୃତିବାଦୀ ବା ଯଥାର୍ଥବାଦୀ ଉପନ୍ୟାସ ବୋଲି ବୁଝିହେବ ପାରିବ । ଫ୍ରାନସ୍‌ର ଉପନ୍ୟାସକାର ଏମିଲ ଜୋଲାଙ୍କ ହାତରେ ଯଥାର୍ଥବାଦୀ ଉପନ୍ୟାସ ଯେପରି ଆକୃତି ଧାରଣ କରିଥିଲା, ଏଠାରେ ଆଲୋଚିତ ପୋଲଣ୍ଡ୍ ଉପନ୍ୟାସଟିକୁ ମୁଁ ପ୍ରଧାନତଃ ସେହି ଆକୃତିର ବୋଲି କହିବି । ରେମଣ୍ଟ୍ ନିଜେ ସ୍ୱୀକାର କରିଚନ୍ତି ଯେ La Terre (ଧରା-ତଳ) ଉପନ୍ୟାସଟି ପଢିବାପରେ ତାଙ୍କ ମନରେ 'Peasants' ଉପନ୍ୟାସଟି ଲେଖିବାର ବିଚାରର ଉନ୍ମେଷ ହୋଇଥିଲା । La Terre ର ଗୁଣରେ ମୁଗ୍ଧ ହୋଇ ନୁହେଁ, ମାତ୍ର ଉପନ୍ୟାସଟି ପଢି ତାଙ୍କ ମନରେ ଜାତ ହୋଇଥିବା ବିତୃଷ୍ଣା ଓ ବିରୋଧ ହେତୁ ହିଁ ସେ 'Peasants' ଉପନ୍ୟାସଟି ଲେଖିବାରେ ପ୍ରବୃତ୍ତ ହୋଇଥିଲେ । ସମାଜର ଯେଉଁ ମାନବିକ ଜୀବନସ୍ତରରେ ତାଙ୍କର ପ୍ରତିପାଳନ ହୋଇଚି, ବାଲ୍ୟକାଳର ସକଳ ସ୍ମୃତି ଓ ସଂସ୍କରଣ ଦେଇ ସେ ଯେଉଁ ସ୍ତରଟିକୁ ଚିରଦିନ ଭଲପାଇ ଆସିଚନ୍ତି, La Terre ଉପନ୍ୟାସରେ ସେହି ଜୀବନସ୍ତରର କେବଳ ଏକ ଅତି ଗତାନୁଗତିକ, ବିକୃତ ଓ ଶାଳୀନତାବିହୀନ ଚିତ୍ରଣ କରାଯାଇଚି ବୋଲି ସେ ହୃଦୟଙ୍ଗମ କରି ପାରିଥିଲେ । ସମାଜର ଏହି ଜୀବନସ୍ତରଟି ସହିତ ତାଙ୍କର ପ୍ରତ୍ୟକ୍ଷ ଓ ଅନ୍ତରଙ୍ଗ ପରିଚୟ ରହିଥିଲା । ବାହାରେ ଥାଇ ନିରୀକ୍ଷଣ କରିବାକୁ ଆସିଥିବା ଜଣେ ସାମ୍ବାଦିକ ପରି ଏମିଲ ଜୋଲା ଆଗରୁ ଆପଣାର କାର୍ଯ୍ୟକ୍ରମ ପ୍ରସ୍ତୁତ କରି ଏବଂ ଏହି ସମାଜରେ ସେ ଯାହାଯାହା ଦେଖିବାକୁ ପାଇବେ, ସେହି ଅନୁମାନଗୁଡ଼ିକୁ ହିଁ ସତ୍ୟରୂପେ ପ୍ରତିପାଦିତ କରିବାଲାଗି

କୋଲ୍ ତରତର କରି ଏହି ସମାଜର ଅଧ୍ୟୟନ କରିଥିଲେ । କିନ୍ତୁ ରେମଣ୍ଟ୍ ଏହି ସମାଜଟିକୁ ଯଥାର୍ଥରେ ଓ ପରିପୂର୍ଣ୍ଣ ଭାବରେ ଅଧିଗମି ପାରିଥିଲେ । ଆପଣାର ମନଃପ୍ରସୂତ ସିଦ୍ଧାନ୍ତ ଓ ଅନୁମାନଗୁଡ଼ିକ ଦ୍ୱାରା କୌଣସି ପ୍ରକାରେ ବିକୃତ ନକରି ସେ ଏହି ସମାଜର ଯଥାର୍ଥ ରୂପକୁ ସାହିତ୍ୟରେ ଫୁଟାଇ ପାରିବାର ଅଭିଳାଷ ରଖିଥିଲେ । କିନ୍ତୁ ଅନ୍ୟ ଏକ ଦୃଷ୍ଟିରୁ ଦେଖି ବସିଲେ ଏହି ରଚନାଟି ଲାଗି ରେମଣ୍ଟ୍ କୋଲଙ୍କର ପ୍ରବନ୍ଧରୁ ଅନେକ ଉପାଦାନ ଆହରଣ ମଧ୍ୟ କରିଥିଲେ । ସମଗ୍ରତଃ କୋଲଙ୍କର ଗ୍ରନ୍ଥଗୁଡ଼ିକରୁ ତାଙ୍କୁ ମିଳିଥିବା ଏହି ଉପାଦାନଗୁଡ଼ିକ ବ୍ୟତୀତ ହୁଏତ ଆମେ ପ୍ରସ୍ତୁତ ଉପନ୍ୟାସ "The Peasants" ର କଳ୍ପନା ହିଁ କରି ପାରିନଥାନ୍ତୁ । ଯାବତୀୟ ସମ୍ଭାବନାର ଉଦ୍‌ଘାଟନ କରି ପରିବେଶର ବିଶଦ ଓ ପ୍ରାଞ୍ଜଳ ବର୍ଣ୍ଣନା, ଜନମନ ଉପରେ ଯେଉଁ ବର୍ଣ୍ଣନାଗୁଡ଼ିକର ସମବେତ ସଙ୍ଗୀତମୟ ପ୍ରଭାବ, ମଣିଷର ଜୀବନ ଓ ବାହାରେ ତାକୁ ବେଷ୍ଟନ କରି ରହିଥିବା ପ୍ରକୃତି ମଧ୍ୟରେ ଏକ ଛନ୍ଦୋମୟ ସମାବେଶ, —ଏଠାରେ ମୁଁ ଏହିସବୁ ଉପାଦାନର ଉଲ୍ଲେଖ କରିବାକୁ ଇଚ୍ଛା କରୁଛି ।

ତଥାପି "The Peasants" ଉପନ୍ୟାସଟି କେବଳ ଏକ ଯଥାର୍ଥ-ବାଦୀ ଉପନ୍ୟାସ ନହୋଇ ସମ୍ପୂର୍ଣ୍ଣ ଭିନ୍ନ ଆପଣାର ଏକ ବିଶିଷ୍ଟ ପ୍ରକୃତି ଧାରଣ କରିଛି । ଏହାର ଅନ୍ତର୍ଗତ ବିଶିଷ୍ଟ ପ୍ରାଣପ୍ରେରଣା ଏହାକୁ ଏକ ଗଦ୍ୟ-ମହାକାବ୍ୟର ସ୍ତରକୁ ଉନ୍ନୀତ କରିନେଇଛି । ଯଥାର୍ଥବାଦୀ ଉପାଦାନ-ଗୁଡ଼ିକ ଅବଶ୍ୟ ଲୁପ୍ତ ହୋଇ ଯାଇନାହିଁ, କିନ୍ତୁ ତଥାପି ଗ୍ରନ୍ଥଟି ଏକ ଗଦ୍ୟ-ମହାକାବ୍ୟରେ ରୂପାନ୍ତରିତ ହୋଇଯାଇଛି ।

ଆମେ ଆଧୁନିକମାନେ କୌଣସି କବିତାକୁ ମହାକାବ୍ୟବୋଲି କହିବା ପୂର୍ବରୁ ସାଧାରଣତଃ ସେଥିରେ ନିମ୍ନଲିଖିତ ଉପାଦାନଗୁଡ଼ିକର ପ୍ରତ୍ୟାଶା କରିଥାଉ । ତାହା ପରିପୂର୍ଣ୍ଣତା ଓ ଛନ୍ଦୋମୟତାର ଆବେଶ ସୃଷ୍ଟି କରି ପାରୁଥିବ, ଘଟଣାବଳୀର ଚିତ୍ରଣରେ ଯେତେଯେତେ ଦୁଃଖ ଓ ସଂଘର୍ଷ ରହିଥାଉ ପଛକେ, ସାଧାରଣତଃ ସେଥିରୁ ଏକ ଶାନ୍ତିମୟତାର ଅନୁଭୂତି ମିଳୁଥିବ । ଶବ୍ଦବନ୍ଧର ସାଧନ ଦେଇ ଏହି ପ୍ରଭାବଟିକୁ ପ୍ରକାଶ କରିପାରିବା

ଆଦୌ ସହଜ ନୁହେଁ, କାରଣ ଏହି ପ୍ରଭାବ ହେଉଛି ମୂଳତଃ ଅନୁଭୂତିଲବ୍ଧ । ସକଳ ସଂଘର୍ଷ ଓ ଅଶାନ୍ତିର ଉପାଦାନଗୁଡ଼ିକ କ୍ରମଶଃ ଆମର ଚେତନା ସମକ୍ଷରେ ସମତଳ ଓ ଶାନ୍ତ ହୋଇ ଆସିଲେ ହିଁ ଆମେ ଏହି ଅନୁଭୂତି ଲାଭ କରିଥାଉ । ପରସ୍ପରର ସଂଘାତରେ ପରସ୍ପରକୁ ଆକୁଳ କରି ରଖିଥିବା ତରଙ୍ଗଗୁଡ଼ିକ କ୍ରମେ ଶାନ୍ତ ହୋଇ ଜଳସମତଳରେ ବିଲୀନ ହୋଇ ଯିବାପରି ଏହି ପ୍ରଭାବଟି ଆପଣାକୁ ଅନୁଭୂତ କରାଇଥାଏ । ଚଞ୍ଚଳ ଓ ସଂଘାତମୟ ତରଙ୍ଗରାଜିର ଚୂଡ଼ାଗୁଡ଼ିକ କଦାପି କବିତାଟିର ସୀମାଙ୍କିତ କରୁଥିବା ଶାନ୍ତ ଚକ୍ରବାଳକୁ ସ୍ପର୍ଶ କରି ପାରନ୍ତିନାହିଁ । ତରଙ୍ଗର ଶୃଙ୍ଖଳ ସେଠାରେ ଆଉ କୌଣସି ପ୍ରଶ୍ନ ଉତ୍ଥାପିତ କରି ପାରେନାହିଁ ଏବଂ ସେହି ସୀମାର ସେ ପାଖକୁ କୌଣସିପ୍ରକାର ବିଳାପ ବା ବେଦନା ବହନକରି ନେଇଯାଇ ପାରେନାହିଁ । ଆମ ଚକ୍ଷୁର ସମ୍ମୁଖରେ ବିସ୍ତୀର୍ଣ୍ଣ ହୋଇ ରହିଥିବା ଜଗତ ଅବଶ୍ୟ ସୀମିତ, ଏହାର ପତ୍ତନଗୁଡ଼ିକ ଅବଶ୍ୟ ବଡ଼ ନିର୍ଦ୍ଦିଷ୍ଟ ଓ ଅପରିବର୍ତ୍ତନୀୟ । କିନ୍ତୁ ଏହି ଜଗତ କଦାପି ଏକ କାରାଗାର ନୁହେଁ, କୌଣସି ବାଧ୍ୟବାଧକତାର ରାଜତ୍ୱ ଏଥିରେ ଚଳେନାହିଁ । ଆପଣାର ଶକ୍ତି ଅନୁସାରେ ଆପଣାକୁ ପ୍ରକାଶିତ କରିବାଲାଗି ପ୍ରତ୍ୟେକ ମଣିଷର ଯେତିକି ପରିସର ଲୋଡ଼ା, ଏହି ଜଗତରେ ସେହି ପର୍ଯ୍ୟାପ୍ତ ପରିସର ଅବଶ୍ୟ ରହିଛି । ତେଣୁ କବିତାଟିରେ ଯେତେ କମ୍ ବା ଯେତେ ବେଶୀ ସୁଖର ବର୍ଣ୍ଣନା କରାଯାଇ ଥିଲେ ହେଁ, କବିତାଟିର ମହାକାବ୍ୟିକ ରୂପରେ ଆମେ ଏକ ଛନ୍ଦୋମୟଶାନ୍ତି ହିଁ ଅନୁଭବ କରିଥାଉ । ଆମର ବାସ୍ତବ ଓ ଆଦର୍ଶର କଳ୍ପନା ମଧ୍ୟରେ ରହିଯାଇଥିବା ବିଭେଦ ଆମକୁ ଯେଉଁ ଅନିବାର୍ଯ୍ୟ ଦୁଃଖରେ ଭାଗୀ କରାଇଥାଏ, ମହାକାବ୍ୟରେ ସେହି ଦୁଃଖର ଲେଶମାତ୍ର ନଥାଏ,—ବା ଏହି ଦୁଃଖ ଅନ୍ତତଃ ଆମର ଚେତନା ଭିତରେ କଦାପି ଧରାଦିଏ ନାହିଁ । କୌଣସି ଜୀବନ-ଏକକକୁ ଭିତରୁ ହିଁ ସମୂଳେ ଛିନ୍ନଭିନ୍ନ କରିଦେଉଥିବା ଭଳି ଏକ ସ୍ଥାୟୀ ଓ ଅତଢିକ୍ତ ବିସ୍ଫୋରଣାତ୍ମକତାର ଜନ୍ମ ଏପର୍ଯ୍ୟନ୍ତ ଏହି ସଂସାରରେ ସଂଘଟିତ ହୋଇ ନାହିଁ । ଜୀବନ-ରଙ୍ଗମଞ୍ଚର ଶ୍ରେଷ୍ଠ ବଡ଼ ନାନା ଭୂମିକାରେ ଅବତୀର୍ଣ୍ଣ ଏହି କଳେବରଗୁଡ଼ିକ ଶୁଭଦ ବା ଅଶୁଭଦ

ଯେପରି ସୂଚନା ଦେଉଥାନ୍ତୁ ପଛକେ, ତଥାପି ସେଗୁଡ଼ିକ ଏକ ଗଠନକ୍ଷମ ସୌନ୍ଦର୍ଯ୍ୟ ଓ ମହନୀୟତା ନେଇ ଆମ ସମକ୍ଷରେ ଆବିର୍ଭୂତ ହୋଇଥାଆନ୍ତି ।

"The Peasants" ଉପନ୍ୟାସରେ ଲେଖକ ଏହି ଲକ୍ଷ୍ୟରେ ଉପନୀତ ହେବାକୁ ସମର୍ଥ ହୋଇଛନ୍ତି । ଏହି ଲକ୍ଷ୍ୟରେ ଉପନୀତ ହେବାଲାଗି ସମ୍ପୂର୍ଣ୍ଣ ଅନନୁକୂଳ ଏକ ଆଧୁନିକ ଦୃଷ୍ଟିପଦ୍ଧତିରେ ତାଲିମ ହୋଇଥିବା ସତ୍ତ୍ୱେ ମଧ୍ୟ ସେ ଏହି ଲକ୍ଷ୍ୟରେ ଉପନୀତ ହୋଇଛନ୍ତି । ଆଧୁଣିକ ଉପନ୍ୟାସଟି ଲାଗି ସେ ଯେଉଁ ବିଷୟ ବସ୍ତୁର ନିର୍ବାଚନ କରିଛନ୍ତି, ସେହି ବିଷୟବସ୍ତୁ ହିଁ ତାଙ୍କ ରଚନା ଭିତରେ ଏକ ମହାକାବ୍ୟିକ ରୂପ ଆଣି ଦେଇପାରିଛି ବୋଲି ମୁଁ କହିବି । ହୁଏତ ଲେଖକ ନିଜେ ମଧ୍ୟ ଏପରି ଏକ ସୃଷ୍ଟିମାଧ୍ୟମର ଅନ୍ୱେଷଣ କରିବାକୁ ଯାଇନଥିଲେ, ତାଙ୍କର ଅନ୍ୟାନ୍ୟ ରଚନାରୁ ଏପରି ଅନୁମାନ କରିବାଲାଗି ଯଥେଷ୍ଟ କାରଣ ମଧ୍ୟ ରହିଛି । କିନ୍ତୁ "The Peasants"ର ବିଷୟବସ୍ତୁ ତାଙ୍କର ହାତରେ ଏହି ସୃଷ୍ଟି-ମାଧ୍ୟମଟିକୁ ଆଣି ଯୋଗାଇ ଦେଇଛି, ଲେଖକ ଏହି ମାଧ୍ୟମଟିର ଉପାଦେୟତାକୁ ହୃଦୟଙ୍ଗମ କରିଛନ୍ତି ଓ ତାହାର ଅନୁସରଣ କରିଛନ୍ତି । ଏହା ତାଙ୍କର ପ୍ରତିଭାର ହିଁ ପରିଚୟ ଦେଇଛି ଓ ତାଙ୍କୁ ଅତ୍ୟୁଚ୍ଚ ସମ୍ମାନର ଅଧିକାରୀ କରାଇ ପାରିଛି ।

ଅତି ଆଦିମ ଓ ହୀନହୀନ ଅବସ୍ଥାରେ ଜୀବନଯାପନ କରୁଥିବା ତାଙ୍କର ପୋଲିଶ୍ କୃଷୀମାନେ ହୁଏତ ସେହି କାରଣରୁ ହିଁ ସରଳ ସ୍ୱଭାବର ଦୃଷ୍ଟାନ୍ତ ହୋଇ ରହିଛନ୍ତି । ମହାକାବ୍ୟିକ କଳାର ସୃଷ୍ଟି କରିବାଲାଗି ଅତ୍ୟାବଶ୍ୟକ ଏକ ପ୍ରାଚୀନତା ମଧ୍ୟ ସେମାନଙ୍କର ଜୀବନ ପରିବେଶରେ ପରିପୂର୍ଣ୍ଣ ହୋଇ ରହିଛି । ରଚନାଟିରେ ଅନ୍ୟାନ୍ୟ ଦିଗରେ ନାନାପ୍ରକାର ଅପୂର୍ଣ୍ଣତା ସୃଷ୍ଟିକରି ଏହି ପ୍ରାଚୀନତାକୁ ବଜାୟ ରଖିବାକୁ ପଡ଼ିଥିଲେ ହେଁ ସୌନ୍ଦର୍ଯ୍ୟାନୁଭୂତିର ଉପାଦାନ ଯୋଗାଇଦେବା ଦୃଷ୍ଟିରୁ ଏହାର ଅତିବେଶୀ ମୂଲ୍ୟ ନିଶ୍ଚୟ ରହିଛି । ଆମେ ଚରିତ୍ର କହିଲେ ସାଧାରଣତଃ ଯାହା ବୁଝିଥାଉ, ଉପନ୍ୟାସ-ଟିରେ ବର୍ଣ୍ଣିତ ଅନେକାନେକ ବ୍ୟକ୍ତିଙ୍କ ମଧ୍ୟରେ ସେହି ଚରିତ୍ରର ହୁଏତ ଲେଶମାତ୍ର ହିଁ ନାହିଁ । ପୁରୁଷ ଭୂମିକାଗୁଡ଼ିକ ମଧ୍ୟରୁ ମାତ୍ର କେତେଜଣଙ୍କ

ଠାରେ ଯେଉଁ ମାନସିକ ଶକ୍ତି ଓ ଦୃଢ଼ତାର କଞ୍ଚିତ୍ ପରିଚୟ ମିଳୁଛି, ହୁଏତ ସେଇଥିରୁ ସେମାନଙ୍କ ଭିତରେ ଚରିତ୍ରର କିଛି ଅପକ୍ୱ ଉପାଦାନ ରହିଛି, ବୋଲି କୁହାଯାଇ ପାରିବ । ପୁଣି ଏହି ଉପାଦାନଗୁଡ଼ିକୁ ସେମାନେ ଯେପରି ଭାବରେ ଆପଣା ଜୀବନରେ ଆଣି ପ୍ରୟୋଗ କରୁଚନ୍ତି, ସେଥିରୁ ସେମାନଙ୍କ ପ୍ରତି କୌଣସି ପ୍ରକାର ସମ୍ମାନ ମଧ୍ୟ ଜାତ ହୁଏନାହିଁ । ପୁରୁଷୋଚିତ ଚରିତ୍ର ମଧ୍ୟରେ ଆମେ ସାଧାରଣତଃ ଯେଉଁ ଆତ୍ମଶୃଙ୍ଖଳା, ଦାୟିତ୍ୱଜ୍ଞାନ ଓ ହିତାହିତବୋଧର ପ୍ରତ୍ୟାଶା କରିଥାଉ, କେବଳ ଏକ ସମଷ୍ଟିଗତ ଓ ଅସ୍ପଷ୍ଟ ଯୌଥାନୁଭୂତ ବ୍ୟତୀତ କାହାରିଠାରେ ଏହିସବୁ ଗୁଣର ଅନ୍ୟ କୌଣସି ବିକାଶ ମଧ୍ୟ ହୋଇନାହିଁ । ସେମାନଙ୍କର ଜୀବନ ଭିତରେ ଯେଉଁଠି ବିବେକଗୁଣର କଞ୍ଚିତ୍ ଆଭାସ ମିଳୁଚି, ତାହାକୁ ବ୍ୟକ୍ତି ଜୀବନର କୌଣସି ଉପାର୍ଜିତ ଗୁଣ ବୋଲି ନ କହି ଗ୍ରାମଗୋଷ୍ଠୀର କେବଳ ଏକ ସାଧାରଣ ଜୀବନଭୂମି ବୋଲି କୁହାଯାଇ ପାରିବ । ଗ୍ରନ୍ଥର ସ୍ତ୍ରୀଚରିତ୍ର ଗୁଡ଼ିକରୁ ମଧ୍ୟ ଆମେ ଏହାଠାରୁ ଅଧିକ କିଛି ଆଶା କରି ପାରିବା ନାହିଁ ।

ମନ୍ଦଗାମିନୀ ନଦୀତଟରେ ଅବସ୍ଥିତ ଏହି ସମତଳ ଗ୍ରାମଭୂଇଁର ଜୀବନରେ ଆମେ କ୍ୱଚିତ୍ କୌଣସି ନୈତିକ ମେରୁଦଣ୍ଡ ରହିଥିବାର ଦେଖିବାକୁ ପାଇବା । ନଳବଣରେ ଝଡ଼ପବନ ବହିଯିବା ପରି ଏକ ଅତି-ପ୍ରଖର ବାସନାମୟିତା ଏହି ଗ୍ରାମବାସୀଙ୍କର ଇଚ୍ଛାଶକ୍ତିକୁ ପ୍ରଧାବିତ କରି ରଖିଚି । ପବନର ଶ୍ୱାସ ବାଜିବା କ୍ଷଣି ସେହି ଇଚ୍ଛାଶକ୍ତି ଆତ୍ମସମର୍ପଣ କରି ନଇଁପଡୁଚି, ନିଆଁର ଗୋଟାଏ ମାତ୍ର କଣା ଆସି କୋଉଠି ପଡ଼ିଯିବା ମାତ୍ରକେ ସମଗ୍ର ବଣଟାଯାକ ହୁରୁହୁରୁ ହୋଇ ଜଳିଉଠୁଚି । ଏମାନଙ୍କର ସାଧୁତାଜ୍ଞାନ ଉପରେ ମଧ୍ୟ ଆମେ ଖୁବ୍‌ବେଶୀ ନିର୍ଭର କରି ପାରିବାନାହିଁ । କାରଣ ସାଧୁତାର କୌଣସି ବିକାଶଲାଗି ଅନ୍ତତଃ ଯେତିକି ସ୍ୱାଧୀନତାର ବାତାବରଣ ଅବଶ୍ୟ ଦରକାର, ସେତିକି ସ୍ୱାଧୀନତାରୁ ମଧ୍ୟ ଏହି ମଣିଷ-ପ୍ରାଣୀମାନେ ବଞ୍ଚିତ ହୋଇ ରହିଚନ୍ତି । କାଳକାଳରୁ ଏହି ଲୋକମାନଙ୍କୁ ଜମିମାଲିକମାନଙ୍କର ଅତ୍ୟାଚାରରୁ ବହୁକଷ୍ଟରେ ଆପଣାକୁ ବଞ୍ଚାଇ ରଖିବାକୁ ପଡ଼ିଚି । ଏବଂ ଏହି ଜମିକୁ ଛାଡ଼ିଦେଲେ ଏମାନଙ୍କ ପାଖରେ ବଞ୍ଚିବାର

ଅନ୍ୟ କୌଣସି ସମ୍ବଳ ମଧ୍ୟ ନାହିଁ । ସମାନ ପରିସ୍ଥିତିରେ ସ୍ଲାଭୋନିକ୍ ଜାତିର ଅନ୍ତର୍ଗତ ପଡ଼ୋଶୀ ଦେଶମାନଙ୍କର ଅଧିବାସୀମାନଙ୍କ ମଧ୍ୟରେ ଯେଉଁ ଉଦାସୀନତା, ଭାଗ୍ୟବାଦ ଓ ସରଳ ଆତ୍ମସମ୍ମାନ-ଜ୍ଞାନ ପ୍ରଭୃତି ଗୁଣଗୁଡ଼ିକର ବିକାଶ ହୋଇଥିଲା, ପୋଲିଶ୍ ଲୋକପ୍ରକୃତିରେ ସେହିସବୁ ଗୁଣ ପରିଲକ୍ଷିତ ହୁଏନାହିଁ । ବରଂ ପୋଲିଶ୍ କୃଷୀ ଭିତରେ ଅତି ସହଜରେ ଉତ୍ତେଜିତ ବା କାତର ହୋଇ ପଡ଼ିବାର ଏକ ଅଦ୍‌ଭୁତ ଭାବ ରହିଛି, ଯାହାକି ଆମେ ଆଉ କୌଣସି ଦେଶର କୃଷୀକୁଳରେ ଦେଖିବାକୁ ପାଇବାନାହିଁ । ପ୍ରଚଣ୍ଡ କ୍ରୋଧ— ଓ ହିଂସ୍ର ତାପରବଶ ନାନା କାର୍ଯ୍ୟମଧ୍ୟରେ ଏହି ଉତ୍ତେଜନା ଓ କାତରତା ଆପଣାକୁ ପ୍ରକାଶ କରିବାକୁ ଚେଷ୍ଟା କରିଥାଏ । ଯୁଗଯୁଗର ନିଷ୍ପେଷଣ ସତ୍ତ୍ୱେ ସେମାନଙ୍କର ଗର୍ବବୋଧ ତଥାପି ଭାଙ୍ଗି ଯାଇନାହିଁ, କିନ୍ତୁ ଏହି ଗର୍ବବୋଧ ମଧ୍ୟରେ ଏକ ବୃଥା ଦମ୍ଭଭାବ ମଧ୍ୟ ଅନେକାଂଶରେ ସମ୍ମିଶ୍ରିତ ହୋଇ ରହିଛି । ବଡ଼ ସ୍ପର୍ଶକାତର ଏହି ଦମ୍ଭରେ କେଉଁଠି ହେଲେ କୌଣସି ଭାରସାମ୍ୟ ନାହିଁ, ଏବଂ ମନୁଷ୍ୟର ମନୁଷ୍ୟୋଚିତ ସମ୍ମାନକୁ ବଜାୟ ରଖିବାକୁ ଏହା କୌଣସି ପ୍ରକାରେ ସହାୟତା କରି ପାରୁନାହିଁ । ସେମାନଙ୍କ ଗୁଣଗୁଡ଼ିକର ମୂଳ ଠିକ୍ ସାନପିଲାଙ୍କର ଗୁଣଗୁଡ଼ିକ ପରି ଆଦୌ ଗଭୀରକୁ ଭେଦି ପାରିନାହିଁ, କିନ୍ତୁ ଏଣେ ଅପର ଦିଗରେ ସେମାନଙ୍କର ଜୀବନ ଠିକ୍ ସାନପିଲାଙ୍କର ଜୀବନପରି ବଡ଼ ଜୀବନମୟ ଓ ଆକର୍ଷକ ମଧ୍ୟ ହୋଇରହିଛି । ସେମାନଙ୍କ ଜୀବନରେ ବଙ୍କା ବା ତେଢ଼ା ବୋଲି କହିବାକୁ କିଛିହେଲେ ନାହିଁ, ସେମାନଙ୍କ ଜୀବନ ଭରି ଏକ ସହଜ ସଂବେଦନଶୀଳତା ବିରାଜିତ କରୁଛି । କିନ୍ତୁ ଏହି ମଣିଷମାନଙ୍କ ଜୀବନର ସର୍ବପ୍ରଧାନ ଆକର୍ଷଣ ହେଉଛି ସେମାନଙ୍କର ଶକ୍ତିମୟ କଳ୍ପନାପ୍ରବଣ ଜୀବନ : ଦାରୁଣ ଦାରିଦ୍ର୍ୟ ଓ ଅକିଞ୍ଚନତାର ମଧ୍ୟରେ ବାସକରି ମଧ୍ୟ ଏକ ସ୍ୱପ୍ନଚ୍ଛବିମୟ ଜଗତ ଅଭିମୁଖରେ ସେମାନଙ୍କର ଜୀବନ ବାତାୟନ ନିରନ୍ତର ଉନ୍ମୁକ୍ତ ହୋଇ ରହିଛି । ସେମାନଙ୍କ ଜୀବନରେ ଯାହାକିଛି କୋମଳ, ଯାହାକିଛି ଭଲ ଓ ଯାହାକିଛି ସୁନ୍ଦର,—ସବୁ ଏହି ସ୍ୱପ୍ନର-ଜଗତ ଭିତରେ ହିଁ ପବନ ଓ ପାଣିପାଇ ବଢ଼ୁଛି ।

ଗାଆଁର ଗୀର୍ଜା ହିଁ ସେମାନଙ୍କ ଲାଗି ଏହି ଆଶ୍ରୟ-ସଦନକୁ ସମ୍ଭାଳି ରଖିଛି । ଗୀର୍ଜା ପ୍ରତି ଏହି ଅଧିବାସୀମାନଙ୍କ ମନରେ ଗଭୀର ଶ୍ରଦ୍ଧା ରହିଛି, କର୍ତ୍ତବ୍ୟ-ବୋଧ ଓ ଅନୁରାଗ ମଧ୍ୟ ରହିଛି । ଏହି ଗୀର୍ଜାର ଜରିଆରେ ସେମାନଙ୍କ ଜୀବନରେ ଦିନେ ପ୍ରାଚୁର୍ଯ୍ୟ ଓ ପରିତ୍ରାଣ ଅବଶ୍ୟ ଆସିବ ବୋଲି ସେମାନେ ଆଶା କରି ରହିଛନ୍ତି,— ଏବଂ କବି ଆଖିର କଳନା ଦେଇ ଦେଖିଲେ ସେମାନେ ଆପଣାର ବର୍ତ୍ତମାନ ଜୀବନରେ ମଧ୍ୟ ଏହିସବୁ ଶୁଭର ଆସ୍ୱାଦ ଲାଭକରି ସାରୁଛନ୍ତି । ସେମାନଙ୍କ ଜୀବନର ଏହି ଦିଗଟିକୁ ବାରମ୍ବାର ଦର୍ଶାଇଦେଇ ଉପନ୍ୟାସକାର ଗଦ୍ୟ-ମହାକାବ୍ୟଟିର ବାତାବରଣରେ ସୌନ୍ଦର୍ଯ୍ୟ ଭରାଇ ରଖିବାରେ ସଫଳ ହୋଇଛନ୍ତି ।

ଯେକୌଣସି ମହାକାବ୍ୟରେ ଯେତିକି ପରିମାଣରେ ଆରତାର ପ୍ରଭାବ ରହିବା ଦରକାର, କୌଣସି ଚେଷ୍ଟା ନକରି ମଧ୍ୟ ଲେଖକ ତାଙ୍କର ଉପନ୍ୟାସରେ ଏହି ପ୍ରଭାବର ସନ୍ନିବେଶ କରାଇ ପାରିଛନ୍ତି । ଅବଶ୍ୟ ଉପନ୍ୟାସଟିର ବିଷୟବସ୍ତୁ ଦୃଷ୍ଟିରୁ ବିଚାର କଲେ ତାଙ୍କୁ ଆରୋଚିତ ଚରିତ୍ର ମିଳିବାର ହୁଏତ କୌଣସି ସମ୍ଭାବନା ନଥିଲା । କିନ୍ତୁ ଅପର ପକ୍ଷରେ ତାଙ୍କର ଚରିତ୍ରମାନେ ଆନ୍ତର ଓ ଗଭୀର ଭାବରେ ମାଟି ପ୍ରତି ଆସକ୍ତ ହୋଇ ରହିଛନ୍ତି । ସେମାନେ ସେଇଠିରୁ ହିଁ ଶକ୍ତି ପାଉଛନ୍ତି । ସେହି ମାଟି ସେମାନଙ୍କୁ ଜୀବନ ଦେଉଛି, ସେମାନଙ୍କର ଜୀବନ ନେଉଛି ଓ ସେମାନଙ୍କର ଯାବତୀୟ ସଂଘର୍ଷ ଓ ଭୁଲ ପାଇବାରେ ସେହି ମାଟି ହିଁ ପ୍ରାକୃତିକ ଶକ୍ତିର 'ମହନୀୟତା ଭରି ଦେଉଛି । ଗ୍ରାମ୍ୟ-ସନ୍ନିବିଷ୍ଟ ଏକ ଚକ୍ରର ମାଧ୍ୟମରେ ଜୀବନ ଚକ୍ରକୁ ଏକ ସାହିତ୍ୟ ରୂପ ଦେବାର ଲେଖକ ଯେଉଁ ପ୍ରତିଭାସମ୍ପନ୍ନତା ଦେଖାଇଛନ୍ତି, ତାହା ମଧ୍ୟ ଉପନ୍ୟାସଟିକୁ ଏକ ମହାକାବ୍ୟର ଉପାଦାନରେ ମଣ୍ଡାଇ ରଖିଛି । ଜୀବନର ଏକ ସମଗ୍ର ଚିତ୍ରରେ ଲେଖକ ଅତି ନିପୁଣ ଭାବରେ ଗ୍ରାମ୍ୟଜୀବନର ବୈଷମ୍ୟ ଓ ଐକ୍ୟଗୁଡ଼ିକୁ ଏକତ୍ର ଆଣି ଗୁନ୍ଥି ଦେଇଛନ୍ତି ଏବଂ ଏହି ବର୍ଣ୍ଣନା ଭିତରେ ଆମ ପୃଥିବୀର ଚିରନ୍ତନ ଯୌବନ ଶକ୍ତି ସମ୍ବେଗ ମନ୍ଦ୍ରିତ ହୋଇ ଉଠିଛି ।

ଗୃହୀକୁଳ ଜୀବନକୁ ଅତି ତନ୍ନତନ୍ନ କରି ବର୍ଣ୍ଣନା କରିବାଦ୍ୱାରା ଉପନ୍ୟାସଟି ନୀରସ ହୋଇ ପଡ଼ିବ ବୋଲି ଯେଉଁ ଆଶଙ୍କା ରହିବା ଅତି ସ୍ୱାଭାବିକ, ଲେଖକ ବିଷୟସାମଗ୍ରୀର ବୈଚିତ୍ର୍ୟବିଭବ ଓ ବେଗମୟତା ଦ୍ୱାରା ଅତି ସଫଳ ଭାବରେ ସେହି ନୀରସତାକୁ ଏଡ଼ିଦେଇ ପାରିଚନ୍ତି । ଗମ୍ଭୀର ନିଷ୍ଠାର ସହିତ ଉପନ୍ୟାସକାର ଆପଣା ଦେଶର ଗୃହୀକୁଳର ସଙ୍କୋଚହୀନ ଜୀବନର ଯେଉଁପରି ବର୍ଣ୍ଣନା କରିଚନ୍ତି, ସତେ ଯେପରି ତାହା ଉପନ୍ୟାସର ନାୟିକା ଯୁଗ୍‌ନାର ଚରିତ୍ର ମଧ୍ୟଦେଇ ଏକକ ରୂପରେ ପ୍ରସ୍ଫୁଟିତ ହୋଇ ଉଠିଚି । ଆପଣାର ଗ୍ରନ୍ଥଟି ଲାଗି ସେ ଯୁଗ୍‌ନାର ଚରିତ୍ରକୁ ଏକ କରୁଣ ବ୍ୟଞ୍ଜନାମୟ ଭଙ୍ଗୀରୂପେ ବ୍ୟବହାର କରିଚନ୍ତି । କେଉଁଠି ହେଲେ ସେ ବିଚାରପତିର ଆସନରେ ବସି ସ୍ପଷ୍ଟଭାବରେ କାହାରି ବିଚାର କରିବାକୁ ଯାଇନାହାନ୍ତି, କିନ୍ତୁ ଗ୍ରନ୍ଥଟିର ସଂଯୋଗାତ୍ମକ ଭାବଟିକୁ ମଧ୍ୟ ସେ କୌଣସି ପ୍ରକାରେ କ୍ଷୁଣ୍ଣ କରିଦେଇ ନାହାନ୍ତି ।

ଉପସଂହାରରେ ମୁଁ ଉପନ୍ୟାସଟିକୁ ହୃଦୟୋଦ୍‌ଭାସକ ଓ ଶକ୍ତିଶାଳୀ କଳାର ଏକ ନିଦର୍ଶନ ବୋଲି କହିବି । ଏହି ଗ୍ରନ୍ଥର ମୂଲ୍ୟ ଓ ସମ୍ମାନ ଅବଶ୍ୟ ଚିରକାଳ ସ୍ଥାୟୀ ହୋଇ ରହିବ । କେବଳ ପୋଲାଣ୍ଡ ଦେଶର ସାହିତ୍ୟରେ ନୁହେଁ, ଯେଉଁ ଉପନ୍ୟାସ-ଶୈଳୀର ମାଧ୍ୟମରେ ଏହି ଗ୍ରନ୍ଥଟିକୁ ଏକ ବିଶିଷ୍ଟ ଓ ପ୍ରକାଶିତ ଆକାର ଦେବା ସମ୍ଭବ ହୋଇଚି, ସେହି ଉପନ୍ୟାସ-ଜଗତରେ ମଧ୍ୟ ଏହି ଗ୍ରନ୍ଥ ଏକ ସ୍ଥାୟୀ ଆସନ ଅଧିକାର କରି ରହିବ । *

**ଡା: ପିଅର୍ ହାଲ୍‌ଷ୍ଟ୍ରମ୍**
ସୁଇଡ଼େନ ଦେଶରେ ନୋବେଲ
କମିଟିର ସଭାପତି

* **Discourse of Dr. Per Hallstrom, Chairman, Nobel Committee of the Academy, Sweden.**

# ଶରତ୍‌କାଳ

"ଭଗବାନ ଯୀଶୁଙ୍କର ଜୟ ହେଉ !"

"ଅନନ୍ତ ଅତୁଳ ସାମ୍ରାଜ୍ୟର ଅଧିକାରିଣୀ ହୋଇଥାଅ !—କିନ୍ତୁ ଆଗାଥା, କହିଲ୍, ବର୍ତ୍ତମାନ ତୁ ଏପରିଭାବରେ କୁଆଡ଼େ ବୁଲିବାରେ ଲାଗିଛୁ ?"

ଆଗାଥା ଉତ୍ତର ଦେଲା : "ହଁ ପ୍ରଭୁ, ଏହି ଜଗତରେ ବୁଲୁଚି, ଏହି ଜଗତର ଦାଣ୍ଡରେ ମୁଁ ଅରକ୍ଷ ହୋଇ ବୁଲୁଚି !"—ଉତ୍ତର ଦେଉଦେଉ ସେ ଆପଣାର ବାଡ଼ି ସାହାଯ୍ୟରେ ପୂର୍ବ ଓ ପଶ୍ଚିମ ଦିଗ ଆଡ଼କୁ ନିର୍ଦ୍ଦେଶ କରି ଦେଖାଇ ଦେଲା ।

ଆଗାଥାର ହସ୍ତନିର୍ଦ୍ଦେଶ ଅନୁସାରେ ପାଦ୍ରୀ ଆଖି ବୁଲାଇ ସେହି ଦିଗକୁ ଅନାଇଲେ, କିନ୍ତୁ ପଶ୍ଚିମ ଆକାଶରେ କିରଣ ଦେଉଥିବା ସୂର୍ଯ୍ୟଙ୍କର ଧାସରେ ତାଙ୍କର ଆଖି ବୁଜି ହୋଇଗଲା । ତା'ପରେ ଈଷତ୍ ଧୀର ଓ କୁଣ୍ଠିତ ସ୍ୱରରେ ସେ କହିଲେ :

"ତେବେ କ୍ଲେମ୍ବାଙ୍କ ପରିବାରରୁ ତୋତେ କ'ଣ ବାହାର କରି ଦେଇଚନ୍ତି କି ? ନା—ଘରେ କାହାରି ସହିତ କୌଣସି କଳିଆ କରି ତୁ ସେଠାରୁ ବାହାରି ଚାଲିଆସିଛୁ ?"

ଆଗାଥା ଆଉ ଟିକିଏ ପାଖକୁ ଆଗେଇ ଆସିଲା ଏବଂ ଉତ୍ତର ଦେବା ପୂର୍ବରୁ ଚତୁର୍ଦ୍ଦିଗକୁ ଚାହିଁ ଶରତ୍‌କାଳର ଲମ୍ବା ଶସ୍ୟକ୍ଷେତ ଓ ଫଳ ବଗିଚା-ଦ୍ୱାରା ପରିବେଷ୍ଟିତ ହୋଇ ରହିଥିବା ଗାଆଁଟିର ଘର ଗୁଡ଼ିକ ଉପରେ ଥରେ ଆଖି ବୁଲାଇ ନେଲା ।

"ନାହିଁ,—ସେମାନେ ମୋତେ ଘରୁ ବାହାର କରିଦେବେ କାହିଁକି ? ସେମାନେ କେଡ଼େ ଭଲ ଲୋକ, ମୋ'ର ଆପଣା ଲୋକଙ୍କଠାରୁ ବଳିଯାନ୍ତି । କଳିଆ କରି ବାହାରି ଆସିଥିବା କଥା ଆପଣ ପଚାରୁଥିଲେ ନା ? ନାହିଁ,—

କଳଙ୍କ ଲଗିବ କାହିଁକି ? କଳଙ୍କ ଫଳଙ୍କ କିଛି ଲଗିନାହିଁ । ମୁଁ ଭାବି ଦେଖିଲି ଯେ ମୋର ସେହି ଘରଛାଡ଼ି ବାହାରକୁ ବାହାରି ଆସିବା ବରଂ ଅଧିକ ଉଚିତ ହେବ । ବାପ୍,—କଥା ଭିତରେ ଏତିକି । କଥାରେ କହନ୍ତି ନାହିଁ,—'ପାଣି ଭିତରକୁ ଡେଇଁବି ପଛକେ କାହାର ନାବ ଉପରେ ଗୋଡ଼ ଦେଇ ତାକୁ ହନ୍ତସନ୍ତ କରିବ ନାହିଁ !' ଏହିପରି ଭାବି ମୁଁ ତାଙ୍କ ଘରଛାଡ଼ି ବାହାରି ଆସିଲି । ଯେଉଁଘରେ ପ୍ରକୃତରେ ମୋ'ଲାଗି ଆଉ କୌଣସି କାମ କରିବାକୁ ନଥିଲା । ହଁ, ଏଥର ଶୀତକାଳ ମାଡ଼ିଆସିବ,—କିନ୍ତୁ ତା'ବୋଲି ମୋରୁ ଆଉ ଗୃହ କ'ଣ ? ମୁଁ ଘରେ କୁଟା ଖଣ୍ଡିକୁ ମଧ୍ୟ ଦୁଇଖଣ୍ଡ କରି ବି ନାହିଁ, ଖାଲି କୁଣିଆପରି ସେମାନେ ମୋ'ପାଇଁ ଖାଇବା ସଜାଡ଼ି ଥିବେ ଆଉ ଶୋଇବାପାଇଁ ଜାଗା ଛାଡ଼ି ଦେଉଥିବେ ? ହଁ, ପୁଣି ତାଙ୍କର ବାଛୁରୀ ଏବେ ମାଆକାଠ ଛାଡ଼ିଛି । ଘର ଭିତରେ କେଉଁଠି ଗୃହଖଣ୍ଡେ ଥାନ ବାହାରକରି ତ ପୁଣି ତା'ପାଇଁ ମଧ୍ୟ କଣେ ଜାଗା କରିବାକୁ ପଡ଼ିବ ! ନହେଲେ ଏହି ଶୀତ ହେମାଳ ରାତରେ ବିଚାରି ବାଛୁରୀଟି ଶୋଇବ କୋଉଁଠି ? ତେଣୁ ଏଣେ ମୁଁ ଘରର ଏତେଖଣ୍ଡାଏ ଜାଗା ମାଡ଼ିବସିଲେ ଆଉ ଚଳିବ କିପରି ? କାହିଁକି, ଖାଲି ମଣିଷଠାରେ କ'ଣ ଜୀବ ମରିହୋଇଛି, ପଶୁ ହେଲିବୋଲି କ'ଣ ବାଛୁରୀଟାର ଜୀବନ ନାହିଁ ? ଠାକୁର କ'ଣ ତାକୁ ମଧ୍ୟ ତିଆରି କରି ନାହାନ୍ତି ?···କିନ୍ତୁ ଯେତେ ଯାହା ହେଲେ ମଧ୍ୟ ତାଙ୍କ ଘରେ ସମସ୍ତେ ଭାରି ଭଲଲୋକ, ଭାରି ଦୟାଶୀଳ ଲୋକ । ଝିଅବିନେ ତ ସେମାନେ ମୋତେ ଆପଣା ଇଚ୍ଛାରେ ଘରଜାଗା ଛାଡ଼ି ଦିଅନ୍ତି, କୌଣସି ପ୍ରକାରେ କୌଣସି କଷ୍ଟନା ହୁଅନ୍ତି ନାହିଁ, ଆପଣାର ଖାଇବା ଚଳରୁ ମୋ'ଲାଗି ମଧ୍ୟ ଗୋଟାଏ ଅଂଶ ଭାଗ ବାଣ୍ଟି ଦିଅନ୍ତି । ଆଉ ଖରାମାସ ଯାଇ ଶୀତମାସ ଆସିଲେ ମୁଁ ମଧ୍ୟ ଆପେ ଆପେ ଘରଛାଡ଼ି ସଂସାରକୁ ଗୋଡ଼କାଢ଼େ, ଭିକ ମାଗି ପେଟ ପୋଷେ ।···ମୁଁ ତ ଗୋଟାଏ ମଣିଷ, ମୋ'ର ବା କେତେ ଦରକାର ? ଦୟାବନ୍ତ ମଣିଷମାନଙ୍କଠାରୁ ଭିକ ମାଗି ମୁଁ ସେତିକି ଯୋଗାଡ଼ କରିନିଏ । ଭଗବାନ ଯୀଶୁ ମାଲିକ ଅଛନ୍ତି, ତାଙ୍କର ଉପରେ ଭରସା କରି ପୁଣି ବସନ୍ତ କାଳ ଆସିବା ଯାଏ ମୋର ଆଉ ଚିନ୍ତା କରିବାକୁ କିଛି ରହିବ ନାହିଁ ।

ଆପଣା ପେଟ ମାଣକ ପୂରାଇ ମୁଁ କିଛି ସାଇତ ମଧ୍ୟ ରଖିପାରିବି । ଭଗବାନ୍ ଯୀଶୁ, କରୁଣାମୟ ଉଦାର ହୃଦୟ ଯୀଶୁ, ସେ କେବେହେଲେ ତାଙ୍କର ଗରିବମାନଙ୍କୁ ନିରାଶ୍ରି କରି ଫୋପାଡ଼ି ଦେବେନାହିଁ !"

"ନା—ଭଗବାନ କେବେହେଲେ ଏପରି କରିବେ ନାହିଁ,"—କିଷ୍ଟା ଗଦ୍‌ଗଦ କଣ୍ଠରେ ପାଦ୍ରୀ ତାକୁ ଆଶ୍ୱାସ ଦେଇ କହିଲେ ଓ ଆପଣାର ହାତ ଦେଇ ଗୋଟିଏ ରୌପ୍ୟମୁଦ୍ରା ଥରି କରି ତା'ର ହାତ ଭିତରେ ନେଇ ଗୁଞ୍ଜିଦେଲେ ।

"ଅନେକ ଧନ୍ୟବାଦ, ପ୍ରଭୁ, ଅନେକ ଧନ୍ୟବାଦ । ଭଗବାନ ତୁମର କଲ୍ୟାଣ କରିଆନ୍ତୁ !" ଆପଣାର ମୁଣ୍ଡଟିକୁ ତଳକୁ କରି ଆଗାଥା ପାଦ୍ରୀଙ୍କର ଆଣ୍ଠୁ ପର୍ଯ୍ୟନ୍ତ ନୁଆଁଇ ଆଣିଲା । ତା'ର ଗାଲ ଉପର ଦେଇ ବଡ଼ ବଡ଼ ଅଶ୍ରୁ ଟୋପାମାନ ଖସିପଡ଼ିବାରେ ଲଗିଥାଏ, ଅଶ୍ରୁର ଧାର ବହିଯାଇ ତା'ର ମୁହଁ ଉପରଟା ନୂଆ ଧରାହୋଇଥିବା ଶରତ୍‌କାଳର ସିଆରିକଟା ଝାବଝାବଡ଼ିଆ ଚୃଷଜମି ପରି ଦେଖାଯାଉଥାଏ ।

ଏହି ଦୃଶ୍ୟ ଦେଖି ହଠାତ୍ ପାଦ୍ରୀ କିଛିତ୍ ଇତସ୍ତତଃ ଅନୁଭବ କରିବାକୁ ଲଗିଲେ ।

"ଆଚ୍ଛା ତୁ ଯା' । ଭଗବାନ ତୋତେ ନିରାପଦରେ ବାଟ କଢ଼ାଇ ନିଅନ୍ତୁ ।"—ଆଗାଥାକୁ ତଳୁ ଉଠାଉ ଉଠାଉ ପାଦ୍ରୀ ସକୁଣ୍ଠ ହୋଇ କହିଲେ ।

ଥରି ଥରି ହାତରେ ଶୂନ୍ୟରେ ଗାରକାଟି ଆଗାଥା କ୍ରସ୍‌ଚିହ୍ନ ଅଙ୍କିତ କଲା, ତଳେ ଥୁଆହୋଇଥିବା ଆପଣାର ଝୁଲି ଓ ବାଡ଼ିଟିକୁ ଉଠାଇ ହାତରେ ଧରିଲା ଏବଂ ରାସ୍ତା ଧରି ଗୋଟିଏ ଗୋଟିଏ ବାଟ ଚାଲିବାକୁ ଆରମ୍ଭ କଲା । ଚଉଡ଼ା ରାସ୍ତା, ଗାଡ଼ିର ଚକ ଲଗି ଲଗି ଧରସା କାଟିହୋଇ ଯାଇଚି, ଆଗରେ ଜଙ୍ଗଲ । ବେଳେବେଳେ ପଛକୁ ମୁହଁ ବୁଲାଇ ଆଗାଥା ଗାଆଁଟି ଉପରେ ପୁଣ୍ଣି ଥରକପାଇଁ ଦୃଷ୍ଟି ବୁଲାଇ ନେଉଥାଏ । ଗାଆଁର କ୍ଷେତମାନଙ୍କରେ ଆଳୁ ଖୋଳା ହେଉଚି, କେତେ କେତେ ଗୋରୁଗୋଠରୁ ଧୂଆଁ ଉଠି ଶସ୍ୟ କଟାହୋଇଥିବା କିଆରିଗୁଡ଼ିକ ଉପରେ ଗୁହ୍ମ ଆପରି ଝୁଲିରହିଚ ।

ଆଗାଥା ଆସି ପହଞ୍ଚିବା ପୂର୍ବରୁ ପାଦ୍ରୀସାହେବ ଲଙ୍ଗଳ ଉପରେ ବସିଥିଲେ, ଆଗାଥା ବଦାମ୍ଭ ନେଇ ଯିବାପରେ ସେ ବର୍ତ୍ତମାନ ପୁଣି ସେହି ସ୍ଥାନରେ ଯାଇ ବସିଲେ ଓ ନାକରେ ଚୁମୁଟାଏ ନାସ ଟାଣିନେଇ ଆପଣାର କର୍ମ-କାଣ୍ଡ ପୁସ୍ତକ ଉପରେ ଆଖି ପକାଇବାକୁ ଲଗିଲେ। କିନ୍ତୁ ମଝିରେ ମଝିରେ ତାଙ୍କର ଆଖି ପୁସ୍ତକଟିର ନାଲିନାଲି ଛପା ଅକ୍ଷର ଉପରେ ସ୍ଥିର ହୋଇ ରହି ନପାରି ଶାରଦ ଶାନ୍ତିର ଅଙ୍କଭିତରେ ଶୟାନ ହୋଇ ରହିଥିବା ପ୍ରସାରିତ ଶୋଭାଭୁବନ ଆଡ଼କୁ ବିକ୍ଷିପ୍ତ ହୋଇ ଯାଉଥାଏ। କେତେବେଳେ ଉପରକୁ ମୁହଁ ଟେକି ସେ ବିବର୍ଣ୍ଣ ନୀଳାକାଶ ଆଡ଼କୁ ଅନାଇ ରହୁଥାନ୍ତି ବା ସମ୍ମୁଖସ୍ଥ କ୍ଷେତରେ ହଳ କରୁଥିବା ହଳିଆମାନଙ୍କୁ ଅନାଇ ତାଗିଦା କରି ଦେଉଥାନ୍ତି।

"ହେ,— ହେ,—ଭ୍ୟଲେକ୍। ସେଠି ଗୋଟାଏ ସିଆର ବଙ୍କା ରହିଗଲା, ତାକୁ ସିଧା ମଡ଼ାଇଦେଇ ଯାଆ,"—ବସିକରି ସେ ହୁକୁମ କରୁଥାନ୍ତି। ହଳ ଚଳାଉଥିବା କସରା ଘୋଡ଼ାମାନଙ୍କର ଖୋଜ ପଛେ ପଛେ ତାଙ୍କର ଦୁଇ ଆଖି ଅନୁସରଣ କରିବାରେ ଲଗିଥାଏ।

ସେ ପୁଣି ଆପଣାର ପୁସ୍ତକ ଉପରକୁ ଆଖି ଫେରାଇ ଆଣିଲେ ଏବଂ ନିମିଷକ ମଧ୍ୟରେ ତାଙ୍କର ଓଠ ଦୁଇଟା ପୁଟୁ ପୁଟୁ ହେବାକୁ ଆରମ୍ଭ କଲା। କିନ୍ତୁ ତଥାପି ଆଖି ଦୁଇଟା ବଡ଼ ଅଜାଣତରେ ପୁଣି ଘୋଡ଼ାମାନଙ୍କ ପାଖକୁ ଦଉଡ଼ିଯିବାକୁ ଆଦୌ ଅଧିକ ସମୟ ଲଗିଲା ନାହିଁ। ନୂଆକଟା ସିଆର ଉପରେ ଲମ୍ବା ଲମ୍ବା ଅଣ୍ଟାଗୁଡ଼ାକୁ ବଢ଼ାଇ ଦେଇ ପଂଝାଏ କାଉ ଫଳଫଳ ହୋଇ ବୁଲିବାରେ ଲଗିଥାନ୍ତି। କେତେବେଳେ ହଳିଆର ପାଞ୍ଚଣରୁ ଟିକିଏ ପାଏଁ କରି ଶବ୍ଦ ହେଲାବେଳକୁ ବା ଘୋଡ଼ାମାନେ କୋଉଠି ମୋଡ଼ ବୁଲିଲା ବେଳକୁ କୁଆଗୁଡ଼ାକ ଫଡ଼କରି ଉଡ଼ି ପଳାଉଥାନ୍ତି ଏବଂ ପୁଣି ଯାଇ ହଳ ପଛରେ କୌଣସି ଜାଗା ଦେଖି ବସି ଯାଉଥାନ୍ତି, ସଦ୍ୟ ଓଲଟା ହୋଇଥିବା ଖରାପଡ଼ି ମାଟିର ଟାଣୁଆ ଢେଲ ଉପରେ ଅଣ୍ଟାଗୁଡ଼ାକୁ ଘଷି ପକାଇ ନେଉଥାନ୍ତି।

"ଭ୍ୟଲେକ୍, ଡାହାଣପାଖର ଛଡ଼ାଟାକୁ ଟିକିଏ ପାହାରେ ବଜାଇ ଚଙ୍ଗା କରିଦେବୁଟି, ସେ ଯେପରି ପଛଉଥିବା ପରି ମନେହେଉଚି!"

ପାଦ୍ରୀଙ୍କର ଆଦେଶ ପାଳନ କରାଗଲା ଓ ତାହାର ପ୍ରତ୍ୟାଶିତ ଫଳ ମଧ୍ୟ ଜରୁର ଫଳିଲା । ପାଦ୍ରୀ ମନେ ମନେ ଖୁସିହୋଇ ମୁରୁକି ହସୁଥାନ୍ତି । ଘୋଡ଼ାମାନେ ରାସ୍ତାପାଖ ଦେଇ ବୁଲି ଯାଉଥିବାବେଳକୁ ସେ ଦଉଡ଼ିଆସି ଅତି ଆଦରରେ ସେମାନଙ୍କର ବେକ ଉପରେ ଆପୁଡ଼ାଇବାକୁ ଲାଗିଲେ । ପଶୁଜାତି ହେଲେ କ'ଣ ହେଲା, ଘୋଡ଼ାଗୁଡ଼ିକ ଏହି ଆଦର-ପ୍ରଦର୍ଶନର ପ୍ରତ୍ୟୁତ୍ତର ଦେଇ ପାଦ୍ରୀଙ୍କର ମୁହଁଆଡ଼କୁ ଆପଣାର ଥୋଡ଼ଗୁଡ଼ାକୁ ବଢ଼ାଇ ଦେଲେ ଓ ପୁଲକ ପ୍ରକାଶ କରି ସଅଁ ସଅଁ ହେବାକୁ ଲାଗିଲେ ।

"ହେଉ—ଆ—ହା !"—ସେଉଠୁ ଭ୍ଲେକ୍ ଆପଣାର ଗୀତ ଆରମ୍ଭ କରିଦେଲା । ସିଆରି ଭିତରୁ ଚୂପାରଙ୍ଗର ଲଙ୍ଗଳଲୁହାଟାକୁ ବାହାର କରି-ଆଣି ସେ ଅତି ନିପୁଣ ଭାବରେ ଲଙ୍ଗଳଟାକୁ ଉଠାଇ ଧରିଲା ଓ ଘୋଡ଼ା ଦୁଇଟାକୁ ଭଲ କରି ଅଡ଼ାଇଦେଇ ଚକଚକ ଲୁହାଟାକୁ ପୁଣି ମାଟିଭିତରକୁ ଭୁସି ଦେଲା । ପାଞ୍ଚଣରୁ ପାଁ କରି ଗୋଟାଏ ଶବ୍ଦ ବାହାରିବା ମାତ୍ରକେ ଘୋଡ଼ାମାନେ ପୁଣି ଲଙ୍ଗଳ (ଧରି) ଟାଣିବାକୁ ଲାଗିଲେ । ସେମାନଙ୍କର ବେକ ଉପରେ ପଡ଼ିଥିବା ଜୁଆଳି ମଟମଟ ଶବ୍ଦ କରିବାକୁ ଆରମ୍ଭ କଲା ଓ ସେମାନେ ଖେତଟିର ଏହି ଲମ୍ବା ପଟିଟିକୁ ଚଷିବାରେ ଲାଗି ପଡ଼ିଲେ । ଜମି ଖଣ୍ଡିକ ରାସ୍ତାକୁ ସମକୋଣ କରି ଅନେକ ଦୂରକୁ ପ୍ରଲମ୍ବିତ ହୋଇ ରହିଛି, ମଝିରେ ଗୋଟାଏ ଜାଗାରେ ଚାଲୁ ହୋଇ ଟାଣି ବନ୍ଧା ହୋଇଥିବା ଠିକ୍ ସେଇଏ ଢୋଟପରି ସେପାଖ ଗଡ଼ନ୍ତିର ଶ୍ରେଷ୍ଠ ଗାଆଁଟି ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଛି । ଫଳବଗିଚାର ନାଲି ଓ ହଳଦିଆ ପତ୍ରର ସମାହାର ଭିତରେ ଗାଆଁଟି ପରମ ଶାନ୍ତିରେ ବିରାଜମାନ କରୁଛି ।

ଶରତ୍‌କାଳ ବର୍ତ୍ତମାନ ଶେଷ ହୋଇ ଆସିଲାଣି, କିନ୍ତୁ ପାଗଟା ତଥାପି ସେହିପରି ଗରମ ଆଉ ସାଲୁଆ ହୋଇ ରହିଛି । ଏପର୍ଯ୍ୟନ୍ତ ମଧ୍ୟ ଦେହକୁ ଖରା କାଟୁଛି । ଦକ୍ଷିଣ ପଶ୍ଚିମ ଦିଗରେ ଅରଣ୍ୟର ସୀମା ଉପରେ ସୂର୍ଯ୍ୟ ଲଟକି ରହିଥିଲା ପରି ମନେହେଉଛି । ସେହି ସୂର୍ଯ୍ୟର କିରଣ ପଡ଼ି ବଣବୁଦା, ସିଅର୍ ଫଳର ଗନ୍ଧ ଓ ଟାଣ, ଶୁଖିଲା ମାଟିହିଡ଼ରୁ ମଧ୍ୟ ବହଳିଆ ଶୀତଳ ଭାପମାନ ଜମ୍ଭିହୋଇ ପଡ଼ୁଛି ।

ବାୟୁମଣ୍ଡଳରେ ଆଜ ଏକ ଅନବଦ୍ୟମୟ ମାଧୁର୍ଯ୍ୟ ଓ ମୃଦୁଳତା ପରିପୂର୍ଣ୍ଣ ହୋଇ ରହିଛି, ସୂର୍ଯ୍ୟକିରଣ ଲାଗି ସ୍ୱର୍ଣ୍ଣବର୍ଣ୍ଣରେ ଉଦ୍‌ଭାସିତ ହୋଇ ଉଠୁଥିବା ଧୂଳିକଣାମାନ ମେଘର ପଟଳ ବାନ୍ଧି ସଦ୍ୟ ଫସଲ କଟାହୋଇ ଯାଇଥିବା ଶସ୍ୟକ୍ଷେତଗୁଡ଼ିକ ଉପରେ ଝୁଲିକରି ରହିଥିବାପରି ଦେଖା-ଯାଉଛି, ପୁଣି ଉପରେ ନୀଳ ଆକାଶରେ ବିପୁଳକାୟ ଶୁଭ୍ର ମେଘଖଣ୍ଡମାନ ଠିକ୍ ପ୍ରବଳ ତୋଫାନରେ ଉଡ଼ିଯାଉଥିବା ବରଫଖଣ୍ଡ ପରି ଦେଖା-ଯାଉଛନ୍ତି ।

ତଳ ଆଡ଼କୁ ଅନାଇ ଦେଖିଲେ ଆଖି ଯେତେଦୂରକୁ ଯାଉଛି, କେବଳ ନୀରସ ମାଟିଆ ରଙ୍ଗର କ୍ଷେତଗୁଡ଼ିକ ବ୍ୟତୀତ ଅନ୍ୟ କୌଣସି କିଛି ଦୃଷ୍ଟିଗୋଚର ହେଉନାହିଁ । ହଠାତ୍ ଅନାଇଦେଲେ ତେବେଳକୁ ଠିକ୍ ଗୋଟିଏ ବୃହତ୍ ଅବବାହିକା ପରି ମନେ ହେଉଛି, ଉପରେ ଥିବା କଳା ଅରଣ୍ୟର ନୀଳ ଧାରଗୁଡ଼ିକ ଏହି ଅବବାହିକାର ସୀମାପରି ଦେଖାଯାଉଛି । ଅବବାହିକାଟିର ବନ୍ଦଦେଇ ବହିଯାଇଥିବା କ୍ରେଞ୍ଚିଆ ନଦୀର ଗତିପଥଟି ଠିକ୍ ରେଶମ ସୂତା ସରିଏ ପରି ଝଲ୍‌ପଡ଼ି ଚକ୍‌ଚକ୍ କରି ଉଠୁଛି । ଆପଣାର ଦୁଇ ତଟରେ ଅବସ୍ଥିତ ଥିବା କେତେକେତେ ଗଛ ଭିତରେ ବଙ୍କାଟଙ୍କା ବାଟ କାଟି ନଦୀଟି କେତେ ସୁନ୍ଦରରେ ବହି ଗୁଳିଯାଉଛି । ଗାଆଁ ଭିତରକୁ ଆସି ନଦୀର ଧାର ବେଶ୍ ଚଉଡ଼ା ହୋଇ ଯାଇଛି, ବେଶ୍ ଗୋଟାଏ ବଡ଼ ମୋଡ଼ କାଟି ନଈର ପାଣି ଗୋଟିଏ ଗଣ୍ଡ ତ ଆରକରି ରଖିଛି; ଓ ତା'ପରେ ପୁଣି ଅଣଓସାରିଆ ହୋଇ ପାହାଡ଼ଭୂମି ଭିତରେ ଅଦୃଶ୍ୟ ହୋଇଯାଇଛି । ଉପତ୍ୟକାର ନିମ୍ନ ଦେଶରେ ଏହି ଜଳଭଣ୍ଡାରକୁ ଆବୋରି ରହିଥିବାପରି ଗାଆଁଟି ଅବସ୍ଥିତ ରହିଛି, ଗାଆଁର ଅଗଣିତ ଫଳବଗିଚ୍ଚୁଗୁଡ଼ିକର ବିଚିତ୍ର ଶାରଦରଙ୍ଗର ସମାହାର ଭିତରେ ଧନବେଳର ଖପ୍ ନାଚନାଚ ବୁଲୁଛି । ତା'ପରେ, ଏକାବେଳେକେ ଅରଣ୍ୟର କିନାରପର୍ଯ୍ୟନ୍ତ କେବଳ ଗ୍ରୀନ୍‌ର ଲର ପଟିମାନ ପ୍ରଲମ୍ବିତ ହୋଇ ରହିଛି । ଧୂସର ରଙ୍ଗର ବାଲିଗୁଡ଼ିକ, —ତା'ମଝିରେ ଅଣଓସାରିଆ ବାଟଗୁଡ଼ିକ ସୂତାସରିପରି ଛନ୍ଦଛନ୍ଦ ହୋଇ ରହିଛି । ସେହି ବାଟଗୁଡ଼ିକର କଡ଼େ କଡ଼େ ପିଅର ଫଳର ଗଛ ଆଉ କଣ୍ଟା

ଭୂଦୀ । ପାଉଁଶିଆ ରଙ୍ଗର ଏହି ଉଦ୍‌ଭଦ ଆସ୍ତରଣ ଉପରେ ସୁବାସିତ ନାନା ଫୁଲର ସ୍ୱର୍ଣ୍ଣପୀତ ଶୋଭାମୟତା ଏକ ମନୋମୁଗ୍‌ଧକର ବୈଚିତ୍ର୍ୟ ସୃଷ୍ଟି କରରଖିଚ । ପୁଣି କେଉଁଠି କେଉଁ ଶୁଷ୍କଧାର ଝରଣାର ସିକତା ମଣ୍ଡଳିନ ପଡ଼ିଯାଇଥିବା ରୂପାପଣ ଦୃଷ୍ଟିଗୋଚର ହୋଇଯାଉଚ । ମଝିରେ ମଝିରେ ବାଲରେ ପୂର୍ଣ୍ଣ ହୋଇରହିଥିବା ଶାନ୍ତ ରାସ୍ତାଗୁଡ଼ିକ,—ଦୁଇପାଖରେ ଡେଙ୍ଗା ପତ୍‌ଲର୍ ଗଛମାନ ;—ଗଛର ଅତକାୟ ଛାଇମାନ ରାସ୍ତାର ପ୍ରସାରକୁ ଗ୍ରାସ କରି ମାଡ଼ିରହିଚ । ରାସ୍ତାଟି କ୍ରମେ ଉଠାଣି ଉଠି ପର୍ବତ ଆଉ ଅରଣ୍ୟ ଭିତରେ ଅଦୃଶ୍ୟ ହୋଇଯାଇଚ ।

ପାଦ୍ରୀ ଏହି ପ୍ରକୃତିର ସାମନା ସାମନି ମଉନ ହୋଇ ବସି ଧ୍ୟାନ ନିମଗ୍ନ ହୋଇ ଯାଇଥିଲେ । ଠିକ୍ ଏହି ସମୟରେ ନିଦ ଭାଙ୍ଗିଗଲା ପରି ହଠାତ୍ ତାଙ୍କର ଧ୍ୟାନ ଭଗ୍ନ ହେଲା । ଅନତି ଦୂରରୁ ସେ ଏକ ବ୍ୟକୁଳ, ଦୀର୍ଘ ଓ କରୁଣ ସ୍ୱର ଶୁଣିବାକୁ ପାଇଲେ । ଏହି ସ୍ୱର ଶୁଣି କାଉପଲ ଗୁଡ଼ାକ ମଧ୍ୟ ହଠାତ୍ ବସିବାଥାନରୁ ଉଡ଼ିଯାଇ ଖୋଲା ହୋଇଥିବା ଆଲୁସିଆର ପାଖରେ ଯାଇ ବସିପଡ଼ିଲେ । ସେମାନଙ୍କ ଦେହର ଉଜ୍ଜଳ ଛାଇଗୁଡ଼ାକ ଅଧା ତୃଣା ସରଥିବା ଗୃହଜମି ଉପରଦେଇ ଭାସି ଭାସି ଚାଲିଗଲା । ଭୂରୁ ଉପରେ ହାତଦେଇ ଆଖିକୁ ଛାଇ ଉଢୁଆଳ କରି ରଖି ସେ ସୂର୍ଯ୍ୟ ଓ ଅରଣ୍ୟ ଆଡ଼କୁ ଅନାଇ ଦେଖିବାକୁ ଲଗିଲେ । ଦେଖିଲେ ଗୋଟିଏ ଅଳ୍ପବୟସ୍କା ଝିଅ ସେହି ବାଟଦେଇ ତାଙ୍କର ଆଡ଼କୁ ଆସୁଚ । ତା'ର ହାତରେ ଥିବା ପଘାରେ ବନ୍ଧା ହୋଇ ଛୋଟିଆ ନାଲି ଗାଈଟିଏ ମଧ୍ୟ ପଛେ ପଛେ ଚାଲିଛି । ପାଖକୁ ଆସି ଝିଅଟି କହିଲା, "ଭଗବାନଙ୍କର ଜୟ ହେଉ ।" ଏତକ କହୁ କହୁ ସେ ପାଦ୍ରୀଙ୍କର ହାତ ପାପୁଲି ଉପରେ ଚୁମ୍ବନ ଦେବବୋଲି ଆଗଭର ହୋଇଆସୁଚ , ଠିକ୍ ଏହିସମୟରେ ଗାଈଟା ତାକୁ ଗୋଟାଏ ନାଡ ମାରିଲା ଏବଂ ପୁଣି ବୋବେଇବାକୁ ଆରମ୍ଭକଲା ।

"ଗାଈଟିକୁ କ'ଣ ତୁ ହାଟକୁ ନେଇ ବାହାରିଚୁ ?"—ପାଦ୍ରୀ ପଚ୍ଛରିଲେ ।

ଝିଅଟି ଉତ୍ତର ଦେଲ, ନାଇଁ ଆଜ୍ଞା, ହାଟକୁ ଯାଉନାଇଁ । ଯାଉଚି ଏଇ ଚକବାଲ ପାଖକୁ । ହେ ମୁଦେଇ ଗାଈ , ତୁ କ'ଣ ଥରହୋଇ ଠିଆହୋଇ ପାରୁନୁ ? ତୋତେ କ'ଣ ଭୂତ ଲଗିଚି ନା, କ'ଣ ?''— କହୁ କହୁ ସେ ଧଇଁସଇଁ ହୋଇଗଲା ପରି ହେଉଥାଏ ଓ ଗାଈଟିକୁ ଆସ୍ତରେ ଆଣିବାକୁ ଚେଷ୍ଟା କରୁଥାଏ । କିନ୍ତୁ ଗାଈଟା କି ସହଜେ ସମ୍ଭାଳହେବା ଜନ୍ତୁ ? ସେ ଝିଅଟିକୁ ଟାଣିଟାଣି ନେଇଯାଉଥାଏ । ଏହାପରେ ଯାଉ ଯାଉ ଦୁହେଁ ଧୂଳି-ପଟଳ ଭିତରେ ଅଦୃଶ୍ୟ ହୋଇଗଲେ ।

ଖଣେକ ପରେ ସେହି ଧୂଳିଆ ରାସ୍ତାଦେଇ ଜଣେ ଇହୁଦୀ ବେପାରୀ ମଧ୍ୟ ଆସି ପହଞ୍ଚିଲା । ଛିଣ୍ଡାକନା ଓ କଣ୍ଡାମାନ ସଂଗ୍ରହ କରିବା ହେଉଚି ତାର ବେପାର । ତାର ପିଠିଉପରେ ଏହିସବୁ ସଂଗୃହୀତ ସମ୍ପଦର ଗୋଟାଏ ପର୍ବତ ସମାନ ଗଣ୍ଠିରି ପଡ଼ିଥାଏ । ସେହି ଗଣ୍ଠିରିଟା ଏତେ ବେଶୀ ଭାର ହୋଇଥାଏ ଯେ ବିଚରା ବେପାରୀକୁ ଘଡ଼ିକେ ଦଣ୍ଡକେ ଥରେ ଠିଆହୋଇ ଦମ୍‌ ମାରିବାକୁ ପଡ଼ୁଥାଏ ।

ବଡ଼ପାଟିକରି ଡାକି ପାଦ୍ରୀ ପଚାରିଲେ, ''ହେ ମୋଶେକ, କ'ଣ ଖବର ?''

''ଖବର କ'ଣ ? ଯେଉଁମାନେ ଭାଗ୍ୟବାନ, ସେମାନଙ୍କପାଇଁ ଖବର ସବୁ ଭଲ । ଭଗବାନ ମାଲିକ ଅଛନ୍ତି, ତାଙ୍କର ଦୟାରୁ ଆଳୁଫସଲଟା ଏଥର ଖୁବ୍ ଭଲ ହୋଇଥିବାପରି ମାଲୁମ ହେଉଚି । ଯାହାକୁ ଯେତେ ଆଳୁ ! ହଁ, ମାଣ୍ଡିଆ ବି କୌଣସି ପ୍ରକାରେ ଊଣା ହୋଇନାହିଁ, ବନ୍ଧାକୋବି ମଧ୍ୟ ବେଶ୍‌ ଦେଦାର ମିଳିବ । ଯେଉଁ ଚାଷୀମାନେ ଏବର୍ଷ ଆଳୁ,ମାଣ୍ଡିଆ ଆଉ ବନ୍ଧାକୋବି କରିଚନ୍ତି, ଏବର୍ଷଟା ଯାକ ସେମାନଙ୍କର ପୁଷ୍ପମାସ ।'' ଭକ୍ତିଭରେ ସେ ପାଦ୍ରୀଙ୍କର ଆସ୍ତିନ୍‌ ଉପରେ ଚୁମ୍ବନ କଲା ଏବଂ ତା'ପରେ ମୁଣ୍ଡଉପରର ବୋଝଟାକୁ ସଜାଡ଼ିଦେଇ ଆଗରେ ଥିବା ଗଡ଼ାନ୍ତିଆ ରାସ୍ତା ଗଡ଼ି ଗୋଟିଏ ଗୋଟିଏ ଚାଲିଗଲା । ସେ ଚାଲିଯାଉଥିବା ବାଟଉପରେ ତାହାର ଖୋଜ ବାଜି ଯେଉଁ ଧୂଳି ଉଡ଼ୁଥିଲା, ସେହି ଧୂଳିଭିତରୁ ମଝିରାସ୍ତାରେ ଜଣେ ଅନ୍ଧ ଭିକାରୀର-ଆବିର୍ଭାବ ହେଲା । ତା' ହାତରେ ଗୋଟିଏ ଦଉଡ଼ିରେ କୁକୁରଟିଏ ବନ୍ଧା-

ହୋଇଚ । କୁକୁରଟି ଖାଇପିଇ ବେଶ୍ ମୋଟାସୋଟା ଓ ବଳୁଆ ମାଲୁମ ହେଉଚ । ଏହି ସମୟରେ ଜଙ୍ଗଲ ଆଡ଼ୁ ଗୋଟିଏ ପିଲ ମଧ୍ୟ ଆସୁଥିବାର ଦେଖାଗଲା । ତା'ହାତରେ ସେ ବୋତଲଟିଏ ଧରିଥାଏ । ରାସ୍ତା ଉପରେ ପବିତ୍ର ପାଦ୍ରୀସାହେବଙ୍କୁ ଠିଆ ହୋଇଥିବାର ଦେଖି ପିଲଟି ତାଙ୍କୁ ଦୂରରୁ ଥାଇ ଦଣ୍ଡବତ କଲା ଓ ବିଲ ଭିତରେ ସଳଖ ବାଟ କାଟି ଗାଆଁରେ ଥିବା ଚଟିଘରକୁ ଚାଲିଗଲା ।

ଆରଗାଆଁରୁ ଜଣେ ଗୃଷୀ ଚଟିଘରକୁ ଅଟାପେଷି ଆସୁଥାଏ । ତା'ପଛକୁ ପଲେ ବତକ ଅଡ଼ାଇ କୌଣସି ଇହୁଦୀ ଘରର ଜଣେ ଘରଣୀ ମଧ୍ୟ ସେହି ବାଟଦେଇ ଚାଲିଗଲା । ପ୍ରତ୍ୟେକଙ୍କ ସହିତ ପାଦ୍ରୀଙ୍କର ସାକ୍ଷାତ ହେଲା, ପ୍ରତ୍ୟେକେ 'ଭଗବାନଙ୍କର ଜୟ ହେଉ' ବୋଲି କହିଗଲେ ଓ ଏହି ଶୁଭସମ୍ଭାଷଣର ପ୍ରତ୍ୟୁତ୍ତର ଦେଇ ପାଦ୍ରୀ ମଧ୍ୟ ପ୍ରତ୍ୟେକଙ୍କୁ ପଦେଅଧେ ଭଲକଥା କହିଲେ, ସୌହାର୍ଦ୍ଦ୍ୟପୂର୍ଣ୍ଣ ଗୃହାଣୀରେ ଥରେ ସେମାନଙ୍କ ଆଡ଼କୁ ଚାହିଁଲେ । ଏବଂ ତା'ପରେ ସେମାନେ ଆପଣା ଆପଣା ବାଟରେ ଚାଲିଗଲେ ।

ସେତେବେଳକୁ ଖରା ନଇଁଯାଇଲାଣି । ବସିବା ଥାନରୁ ଉଠି ଠିଆହୋଇ ପାଦ୍ରୀ ଗ୍ୱଲେକ୍‌କୁ ଡାକି କହିଲେ : "ବାସ୍, ଆଜି ଏହି ଭୁର୍ଜଗଛର ଧାଡ଼ିପର୍ଯ୍ୟନ୍ତ ସମସ୍ତ ଜମି ଧରି ତା'ପରେ ତୁ ଘରକୁ ଚାଲିଯିବୁ । ବିଚରା ଘୋଡ଼ାଗୁଡ଼ାକ ମଧ୍ୟ ଭାରି ଥକିଗଲେଣି ।"

ବିଲମଝିରେ ଯାଇଥିବା ରାସ୍ତା ଦେଇ ଯାଉ ଯାଉ ସେ ମନେମନେ ଆପଣାର ନିତ୍ୟକୃତ୍ୟ ପ୍ରାର୍ଥନାମନ୍ତ୍ରଗୁଡ଼ିକୁ ଉଚ୍ଚାରଣ କରି କରି ଯାଉଥାନ୍ତି ଏବଂ ବାରବାର ସମ୍ମୋହିତ ଓ ଛଳଛଳ ଆଖିକୁ ବୁଲାଇ ଚତୁର୍ଦ୍ଦିଗର ଦୃଶ୍ୟମାନ ଦେଖିବାରେ ଲାଗିଥାନ୍ତି । ନାଲିଆ ପରିଧାନ ପିନ୍ଧି କୃଷକ ଗୃହିଣୀମାନେ ଆଳୁ ଖୋଳା ହେଉଥିବା ସିଆରି ଉପରେ ଧାଡ଼ି ବାନ୍ଧି ବସିଥାନ୍ତି, ଆପଣାର ଟୋକେଇଟିମାନ ଭରିଯିବା ସଙ୍ଗେ ସଙ୍ଗେ ତାହାକୁ ନେଇ ଗାଡ଼ିଭିତରେ ଖାଲି କରି ନେଇ ଆସୁଥାନ୍ତି । ଏଠି ସେଠି ମଞ୍ଜି ବୁଣାହେବା ଲାଗି ଜମିରେ ଓଡ଼ ଧରା ହେଉଥାଏ । ଏପର୍ଯ୍ୟନ୍ତ ଲଙ୍ଗଳ

ଲଗିନଥିବା ଜମିରେ ପଲେ ଗୋରୁ ଚରିବାରେ ଲଗିଥାନ୍ତି । କେତେକ ଜମିରେ ପାଉଁଶିଆ ଧୂସର ରଙ୍ଗ ନୂଆ ଗଜୁରି ଆସୁଥିବା ଶସ୍ୟ-ପସର ସବୁଜ ଆଭା କ୍ରମେ ରୂପାନ୍ତରିତ ହେବାକୁ ଆରମ୍ଭ କରୁଥାଏ । କଣ୍ଟା କଣ୍ଟା ଘାସଭୂଇଁ ଉପରେ କେଉଁଠି ଚରିବୁଲୁଥିବା ହଂସଗୁଡ଼ିକ ଧଳା ଧଳା ବରଫ ଭେଳା ପରି ଦେଖାଯାଉଥାନ୍ତି । କୋଉଠି କେତେଦୂରରୁ ଗୋଟାଏ ଗୋରୁର ହମ୍ବାରଡ଼ି ଶୁଣାଯାଉଚି । ଘରମାନଙ୍କରେ କୁହୁଡ଼ି ପଡ଼ି ସାରିଲାଣି, ଜମିଉପରେ ନୀଳବର୍ଣ୍ଣର ପ୍ରଲମ୍ବିତ ମେଘଖଣ୍ଡମାନ ଭାସି ବୁଲୁଚନ୍ତି । କେଉଁଠି କେଉଁଠି ଜମିରେ ହୁଡ଼ବନ୍ଧା ହେଉଚି, ସେହିସବୁ ସ୍ଥାନରୁ ଧୂଳିମେଘର ଘନଖଣ୍ଡମାନ ଉଠି ଉପରେ ଭାସି ଭାସି ପୁଣି ଯାଇ ପର୍ବତର ପାଦଦେଶରେ ଶାନ୍ତ ଓ ବିଲୀନ ହୋଇ ବସିଯାଉଚି । ସତେ ଅବା କେଉଁ ମେଘଖଣ୍ଡର ଗର୍ଭ ଭିତରୁ ବାହାରି ଆସିଲାପରି ତାହାରି ତଳୁ ଜଣେ ଚାଷୀର ଆବିର୍ଭାବ ହେଲା । ତା'ର ମୁଣ୍ଡରେ କୌଣସି ଆଭରଣ ନାହିଁ, ଗୋଡ଼ରେ କୌଣସି ପରିଧାନ ମଧ୍ୟ ନାହିଁ । ଗୋଟାଏ ଲୁଗାରେ ମାଣ୍ଡିଆ ବନ୍ଧାହୋଇ ତା'ର ଅଣ୍ଟା ଚାରିପାଖରେ ଗୁଡ଼ିଅ ହୋଇଚି । ଚାଷୀଟି ଗୋଟିଏ ଗୋଟିଏ ଗୁଣ୍ଡିଣି ପାଦ ପକାଇ ଧୀରେ ଧୀରେ ଚାଲିବାରେ ଲଗିଚି । ହାତ ମୁଠାରେ ମୁଠାଏ ମୁଠାଏ ଶସ୍ୟ ନେଇ ସେ ଅତି ଗମ୍ଭୀରଭାବରେ ସତେଅବା କାହାକୁ ଆଶୀର୍ବାଦ କରୁଥିବାର ବରଦ ମୁଦ୍ରାରେ ମାଟିଉପରେ ବିଞ୍ଚି ବିଞ୍ଚି ଚାଲିଯାଉଚି । ଆବାଦ ହୋଇ-ସାରିଥିବା ଜମିର ଶେଷମୁଣ୍ଡରେ ପହଞ୍ଚି ସେ ପୁଣି ବୁଲିପଡ଼ି ଧୀରେ ଧୀରେ ଉଠାଣି ଉଠିବାକୁ ଆରମ୍ଭ କରୁଚି । ଦିକ୍‌ରେଖା ଉପରେ ସବାଆଗ ତାର ଅଲରା ବଲରା ବାଳଗୁଡ଼ାକ ଦୃଶ୍ୟ ହେଉଚି, ତା'ପରେ କାନ୍ଧ, ତା'ପରେ ତା'ର ସମସ୍ତ ଶରୀର । କିନ୍ତୁ ତା'ର ଭାବଟା ଠିକ୍ ସେହି ପୂର୍ବପରି ଗମ୍ଭୀର । ସେହି ପୂର୍ବପରି ବରଦ ଓ ପ୍ରଶାନ୍ତ । ହଁ, ସେ କେବଳ ମଣିଷ ଚାଷୀ ନୁହେଁ । ସବୁ ଚାଷୀପରି ସେ ପ୍ରକୃତରେ ମାଟିଉପରେ ଆଶୀର୍ବାଦ ବିଞ୍ଚି ବିଞ୍ଚି ଯାଉଚି, ଏକ ଅତି ପବିତ୍ର କାର୍ଯ୍ୟ ସମ୍ପାଦନ କରୁଚି, ତା'ର

ହାତମୁଠାରୁ ସୁନାରଙ୍ଗର ଅକ୍ଷତମୁଠି ଅର୍ଦ୍ଧବୃତ୍ତାକାର ହୋଇ ତା'ର ଗୃରିପାଖରେ ଛିଞ୍ଚାଡ଼ିହୋଇ ପଡ଼ୁଚି ।

ପାଦ୍ରୀଙ୍କର ପଦକ୍ଷେପ କ୍ରମେ ଅଧିକରୁ ଅଧିକ ଧୀର ହୋଇ ଆସୁଥାଏ । କେତେବେଳେ ସେ ନିଶ୍ୱାସ ନେବାଲାଗି ଠିଆହୋଇ ଯାଉଥାନ୍ତି, କେତେବେଳେ ତାଙ୍କର ଦୁଇଟିଯାକ କସରା ଘୋଡ଼ାଙ୍କ ଆଡ଼କୁ ଅନାଇବାକୁ ବା ଗୋଟାଏ ବଡ଼ ପିଅର୍ ଗଛକୁ ଢେଲା ପକାଇବାରେ ବ୍ୟସ୍ତ ଥିବା ଦଳେ ପିଲଙ୍କୁ ଗୃହିଁ ଦେଖିବାକୁ ସେ ପଦଘନ୍ଦକେ ଅଟକି ଯାଉଥାନ୍ତି । ପିଲମାନେ ତାଙ୍କୁ ଦେଖିବାମାତ୍ରକେ ଦଉଡ଼ି ଦଉଡ଼ି ତାଙ୍କପାଖରେ ଆସି ପହଞ୍ଚିଲେ, ଆପଣାର ହାତଗୁଡ଼ାକୁ ପଛପଟେ ଲୁଚ୍ଛାଇକରି ରଖି ସେମାନେ ପାଦ୍ରୀଙ୍କର ପରିଧାନ ଉପରେ ଚୁମ୍ବନ କରିବାକୁ ଲଗିଲେ ।

ସେମାନଙ୍କର ଛୋଟିଆ ମୁଣ୍ଡଉପରେ ଆଦରରେ ଥାପଡ଼ାଇ ଦେଉ ଦେଉ ସେ ତଥାପି ଆକଟ କରିବାର ସ୍ୱରରେ କହିବାକୁ ଲଗିଲେ : "ଫଳ ଖାଇଲେ ଖାଅ ପଛକେ, କିନ୍ତୁ ଡାଳପତ୍ରର ଯେପରି କୌଣସି ଲୋକସାନ ନହୁଏ । ଏବର୍ଷ ଡାଳପତ୍ର ଭାଙ୍ଗିଦେଲେ ଆରବର୍ଷକୁ ଗୋଟିଏ ହେଲେ ଫଳ ଧରିବନାହିଁ ।"

ଦଳଭିତରୁ ଅପେକ୍ଷାକୃତ ଅଧିକ ସାହସୀ ଗୋଟିଏ ପିଲ ଭରସିକରି ଉତ୍ତର ଦେଲା, "ଆଜ୍ଞା, ଆମେ କ'ଣ ଫଳକୁ ଢେଲା ମାରୁଥିଲୁ କି ? ଗଛଉପରେ ଗୋଟାଏ ଚଢ଼େଇବସା ଅଛି,—ଆମେ ସେଇଟାକୁ ଢେଲା ପକାଉଥିଲୁ ।"

ସୌହାର୍ଦ୍ଦପୂର୍ଣ୍ଣ ଈଷତ୍ ହସ ହସି ପାଦ୍ରୀ ପୁଣି ଆଗକୁ ଚାଲିବାକୁ ଲଗିଲେ ଏବଂ ଅଳ୍ପସମୟ ଭିତରେ ସେ ଯାଇ ଆଳୁ ଖୋଳୁଥିବା ଗୃଷୀମାନଙ୍କ ପାଖରେ ପହଞ୍ଚିଲେ ।

"ଭଗବାନ୍ ତୁମମାନଙ୍କର କାମକୁ ଅତିଶୀଘ୍ର ସାରିଦିଅନ୍ତୁ !"

"ଭଗବାନ ଆପଣଙ୍କର ମଙ୍ଗଳ କରିଥାନ୍ତୁ !"— ସମ୍ମିଳିତ ସ୍ୱରରେ ଗୃଷୀମାନେ ଉତ୍ତର ଦେଲେ । ତା'ପରେ ସମସ୍ତେ ଗୋଟିଗୋଟି କରି ଆପଣାର ପ୍ରିୟ ପାଦ୍ରୀଙ୍କର ହାତକୁ ଚୁମ୍ବନ କରିବା ଲାଗି ଉଠିଆସିଲେ ।

ପାଦ୍ରୀ କହିଲେ, "ମୋର ମନେହେଉଛି, ଭଗବାନ ଏବର୍ଷ ଆମକୁ ଦେବାର ଆଳୁ କୃପା କରିଚନ୍ତି । ପୋଷାକ ଭିତରୁ ନାସଡ଼ିବା ବାହାର କରି ସେ କୃଷୀମାନଙ୍କ ହାତକୁ ବଢ଼ାଇଦେଲେ । କୃଷୀମାନେ ଅତ୍ୟନ୍ତ ସମ୍ଭ୍ରମର ସହିତ ତାହା ଗ୍ରହଣ କଲେ । ଅବଶ୍ୟ ପାଦ୍ରୀଙ୍କର ଉପସ୍ଥିତିରେ ନାସ ଗ୍ରହଣ କରିବାଲାଗି ସେମାନଙ୍କର କାହାରି ସାହସ ହେଲାନାହିଁ ।

"ଆରେ ବାପ୍‌ରେ, ଏବର୍ଷ ଯୋଉ ଆଳୁ ଫଳିଚି, ତାହାକୁ ତ ଆଳୁ କୁହାଯିବନାହିଁ, ତାହା ହେଉଚି ଗୋଟାଏ ଗୋଟାଏ ବଳେଇମୁଣ୍ଡ ! ଗୋଟାଏ ଗୋଟାଏ ମୂଳରୁ ପୁଣି କେତେବେଶୀ ଆଳୁ ବାହାରୁଚି !"

"କିନ୍ତୁ ଏଣେ ଆଳୁ ଫସଲ ଭଲ ହେଲେ କ'ଣ ହେଲା, ତେଣେ ଘୁଷୁରିର ଦାମ୍ ଭାରି ବଢ଼ିଯିବ ଯେ ! ଏଥିରେ ହେଉ କି ସେଥିରେ ହେଉ; ପଇସା ସରିବନାହିଁ ସରିବ ।"

"ବର୍ତ୍ତମାନ ଏବେ ଘୁଷୁରି କୋଉ ଶସ୍ତା ହୋଇଚନ୍ତି ? ଏବର୍ଷ ଖରାମାସରେ କୁଆଡ଼ୁ ଗୋଟାଏ ଘୁଷୁରିମଡ଼କ ଆସି ପହଞ୍ଚିଲା ଯେ ବର୍ତ୍ତମାନ ଏ ଦେଶରେ ମଧ୍ୟ ହାଟରୁ ଘୁଷୁରି କିଣିବାକୁ ପଡ଼ୁଚି !"

"ହଁ, ହଁ, ସତକଥା, ସତକଥା ! ଆଚ୍ଛା, ତୁମେମାନେ କାହା ବିଲରୁ ଏ ଆଳୁ ଖୋଳୁଚ ?

"କାହିଁକି, ବୋରିନାର ବିଲରୁ !"

"କିନ୍ତୁ ବୋରିନା ତ କାହିଁ ତୁମମାନଙ୍କ ସହିତ ଏଠାରେ କାମ କରୁନାହିଁ । ସେହି କାରଣରୁ ମୁଁ ସେ କଥାଟା ଠଉରାଇ ପାରିନଥିଲି ।

"ମୋ' ଗେରସ୍ତ ସହିତ ବାପା ବର୍ତ୍ତମାନ ଜଙ୍ଗଲକୁ କାମ କରି ଯାଇଚନ୍ତି ।"

"ଆଚ୍ଛା, କିଏ ଉତ୍ତର ଦେଲା ? ହାଙ୍କା ? ତୋର ଖବର କ'ଣ, ହାଙ୍କା ?"— ଏପାଖକୁ ମୁହଁ ବୁଲାଇ ପାଦ୍ରୀ ଗୋଟିଏ ସୁନ୍ଦରୀ ଯୁବତୀ ବାଳିକାକୁ ଲକ୍ଷ୍ୟ କରି କହିଲେ । ବାଳିକାଟି ଆପଣାର ଲାଲ ରୁମାଲଟିକୁ ମୁଣ୍ଡ ଚାରିପାଖରେ ଗୁଡ଼ାଇ ବାନ୍ଧିଦେଇଥାଏ । ହାଙ୍କା ସଙ୍ଗେ ସଙ୍ଗେ କାମ କରୁଥିବା ଜାଗାରୁ ପାଦ୍ରୀଙ୍କ ପାଖକୁ ଉଠିଆସିଲା । ହାତଦୁଇଟା ମାଟି ବାଲି

ବଳ ହୋଇଥାଏ । ତେଣୁ ହାତ ଉପରେ ଆପଣାର ପଣନ୍ତକାନିଟା ପକାଇଦେଇ ସେ ଚୁମ୍ବନ ଦେବା ଉଦ୍ଦେଶ୍ୟରେ ପାଦ୍ରୀଙ୍କର ହାତକୁ ଆପଣା ଆଡ଼କୁ ଟେକିନେଲା ।

"ଆଚ୍ଛା କହିଲୁ ସେଦିନ ମୁଁ ତୋର ଯେଉଁ ଛୁଆପୁଅଟିର ସମର୍ପଣ କରାଇଥିଲି, ସେଇଟି ବର୍ତ୍ତମାନ କିପରି ଅଛି ? ଯେଇ ଫସଲକଟା ସମୟରେ—"

"ଭଗବାନ ଆପଣଙ୍କର କୋଟି କଲ୍ୟାଣ କରନ୍ତୁ, ମାଲିକ । ସେଇ ପିଲାଟି ଖୁବ ଭଲ ଅଛି, ଗୃହଦାକଳାପରି ବଢ଼ୁଚି ।"

"ଭଗବାନ ତୁମ ସମସ୍ତଙ୍କର ମଙ୍ଗଳ କରିଥାନ୍ତୁ ।"

"ଆପଣଙ୍କର ମଧ୍ୟ ମଙ୍ଗଳ କରିଥାନ୍ତୁ ।"

ସେଠାରୁ ବୁଢ଼ା ପାଦ୍ରୀ ଏଥର ଡାହାଣହାତ ବାଟ ଧରି ଆଗକୁ ଚାଲିଲେ । ଗାଆଁର ଏଇପାଖରେ ହେଉଚି ଗାଆଁର ଶ୍ମଶାନ,—ପାଖରେ ସେଇଟି ରାସ୍ତାଟିଏ ଚାଲିଯାଇଚି,— ରାସ୍ତାର ଦୁଇକଡ଼ରେ ଦୁଇଧାଡ଼ି ପପ୍‌ଲାର୍ ଗଛ । ଲୋକମାନେ ପଛରୁ ଥକାହୋଇ କିଛି ସମୟ ପର୍ଯ୍ୟନ୍ତ ତାଙ୍କର ଯିବାବାଟକୁ ଚାହିଁ ରହିଲେ । ପାଦ୍ରୀଙ୍କର ଈଷତ୍‌ବଙ୍କ କ୍ଷୀଣ ଶରୀରଟି କ୍ରମେ ପଥରର ପାଚେରି ପାରହୋଇ ମଡ଼ାଭୂଇଁର ଉପାସନା ମନ୍ଦିର ଭିତରେ ପ୍ରବେଶ କଲା । ଭୂର୍ଜ ଓ ଆହୁର କେତେପ୍ରକାର ବୃକ୍ଷର ପତ୍ରଗୁଡ଼ିକ ହଳଦିଆ ଓ ନାଲିଆ ରଙ୍ଗରେ ଚକଚକ କରୁଥାଏ । ପାଦ୍ରୀ ତାହାର ସେପାଖରେ ଅଦୃଶ୍ୟ ହୋଇଯିବା ପରେ ଲୋକମାନେ ପୁଣି ତୁଣ୍ଡ ଫିଟାଇଲେ ।

ସ୍ତ୍ରୀଲୋକମାନଙ୍କ ଭିତରୁ ଜଣେକେହି କହିଲା : "ସଂସାରଟାଯାକରେ ଏମିତ ଜଣେ ଭଲ ମଣିଷ କେଉଁଠିହେଲେ ନଥିବେ ।"

କଥାରେ ତାଳଦେଇ ହାଙ୍କା କହିଲା, "ହଁ, ହଁ, ନିଶ୍ଚୟ ।" ସଦ୍ୟ ଖୋଳାହୋଇଥିବା ସିଆରି ଓ ଶୁଖିଲା ଆଳୁନଟା ଭିତରେ ଅତି ସ୍ପଷ୍ଟଭାବରେ ଦେଖାଯାଉଥିବା ହଳଦିଆ ଆଳୁଗଦାରେ ଆପଣା ଟୋକେଇର ଆଳୁତକ ଅଜାଡ଼ି ଦେଉଦେଉ ସେ କହିଚାଲିଥାଏ : "ସେମାନେ ପରି ତାଙ୍କୁ ଏଠି

ନେଇ କୋଉ ସହରରେ ରଖିବେବୋଲି ଠିକ୍ କରି ସାରିଥିଲେ । କିନ୍ତୁ ମୋ'ବାପା ପଧାନଙ୍କୁ ସାଙ୍ଗରେ ନେଇ ବିଶପଙ୍କ ପାଖକୁ ଗଲେ ଓ ତାଙ୍କୁ ନାନାପ୍ରକାରେ ପ୍ରବର୍ତ୍ତାଇବା ପରେ ଯାଇ ସେ ପୁଣି ପାଦ୍ରୀଙ୍କୁ ଆମଗାଆଁରେ ରଖିବାକୁ ରାଜି ହେଲେ । କିନ୍ତୁ ସେସବୁ କଥା ବର୍ତ୍ତମାନ ଥାଉ । ତୁମ୍ଭେମାନେ ଟିକିଏ ଟାଉଟାଉ କରି ହାତ ଚଳାଇବଟି । ଦିନ ନଇଁ ଆସିଲାଣି, କିଆବାଟା ମଧ୍ୟ ସରି ଆସିଲାଣି ।"

ପୁଣି ସମସ୍ତେ ଚୁପ୍ ହୋଇ କାମରେ ଲାଗିପଡ଼ିଲେ । ମଟାଳ ମାଟିଭିତରେ କୋଦାଳର ଲୁହାଟା ଗଳିଗଲା ବେଳକୁ ଯେଉଁ ଟାଏଁ ଟାଏଁ ଶବ୍ଦ ହୁଏ, କେବଳ ସେହି ଶବ୍ଦ ହିଁ ଶୁଣାଯିବାକୁ ଲାଗିଲା । ହଁ, କୋଉଠି ଗୋଡ଼ି ବା ପଥରରେ ଲୁହାଟା ବାଜିଗଲେ ତତ୍‌କ୍ଷଣାତ୍ ଝଣ୍ କରି ମଧ୍ୟ ଗୋଟାଏ ଶବ୍ଦ ଶୁଣାଯାଉଥାଏ ।

ସେଠି ପ୍ରାୟ କୋଡ଼ିଏଜଣ ସରିକି ମୂଲିଆ କାମ କରୁଥା'ନ୍ତି । ସେମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ବୁଢ଼ୀ ଆଉ କୋଠିଆ । ଅନତିଦୂରରେ ଦୁଇଯୋଡ଼ା ଖୁଣ୍ଟକୁ ପଞ୍ଜରକୁ ଛେଦ କରୁଥିବା ଅବସ୍ଥାରେ ପୋତି ଦିଆଯାଇଥାଏ ଏବଂ ସେଥିରେ ଲଗାହୋଇଥିବା ଦୋଳିରେ ଦୁଇଟି କୁନିକୁଆ ଝୁଲିବାରେ ଲାଗିଥା'ନ୍ତି ଏବଂ ବେଳେବେଳେ କୁଆଁ କୁଆଁ ହୋଇ କାନ୍ଦୁଥାନ୍ତି ।

"ତେବେ ବର୍ତ୍ତମାନ ବୁଢ଼ୀ ପାରିଧିରେ ବାହାରିଚ ?"—କିଛିସମୟ ପରେ ସ୍ୱେନୁର୍କିଙ୍କୁ ପଚାରିଲା ।

ଆନ୍ନା ଓଲଟା ପ୍ରଶ୍ନ ପଚାରିଲା, "ବୁଢ଼ୀ ? କୋଉ ବୁଢ଼ୀ ?"

"ସେଇ ମ,—ସେଇ ଆଗାଥା ।"

"ପାରିଧିରେ ?—ନା,—ଭିକମାଗି ?"

"ହଁ, ହଁ,—ଭିକମାଗି ! ଖୁସିରେ କ'ଣ କିଏ କେବେହେଲେ ଏପରି ଭାବରେ ଦାଣ୍ଡକୁ ଗୋଡ଼ କାଢ଼ି ବାହାରେ ? ଖରାମାସତକ ସେ ଆପଣା ଜାତିମାନଙ୍କ ଘରେ ରହି ସେମାନଙ୍କୁ ସବୁପ୍ରକାର କାମରେ ସାହାଯ୍ୟ କଲା, ସବୁପ୍ରକାର ଖଟଣି ଖଟିଲା ;— ଆଉ ବର୍ତ୍ତମାନ ସେମାନେ ତାକୁ

ନଆଗ୍ରି କର ଘରୁ ବାହାର କରଦେଲେ,— ତାକୁ ଆକାଶତଳର ମୁକ୍ତବିହାରକୁ ପଠାଇଦେଲେ ! ଶୀତ ଯାଇ ବସନ୍ତଋତୁ ଆସିଲେ ସେ ପୁଣି ଲେଉଟିଆସିବ, ଆପଣାର ଛୋଟେଇ ଭଉଣୀ ଆଉ ବୁଢ଼ା ସାଙ୍ଗରେ ନେଇ ଆସିଥିବ, କିଛି ପଇସା ମଧ୍ୟ କାନରେ ବାନ୍ଧି ଆଣିଥିବ । ସେତେବେଳେ ସମସ୍ତେ ତାକୁ କେତେ ଆଗଭର ହୋଇ ଆପଣାର କରନେବେ । କେତେ ସୁଆଗ ଦେଖାଇବେ । ତାକୁ ଘରେ ଜାଗା ଦେବେ । ତା'ପାଇଁ ଶେଯ ପାତଦେବେ, କୌଣସି କାମରେ ତାକୁ ହାତ ବଜାଇବାକୁ ଦେବେନାହିଁ, ଖାଲି ବାବୁଆଣୀ ହୋଇ ବସିରହିବାକୁ କହିବେ । ସେତେବେଳେ କିଏ ଡାକିବ ମାଉସୀ ତ ଆଉ କିଏ ଡାକିବ ଖୁଡ଼ୀ । କିନ୍ତୁ ତା'ର କାନରୁ ସବୁ ପଇସାତକ ଫିଟାଇ ନେବାପର୍ଯ୍ୟନ୍ତ ସିନା ଏସବୁ ସୁଆଗ ! ମାସପରେ ମାସ କଟିଯିବ । ଶେଷକୁ ଗ୍ରୀଷ୍ମ ଯାଇ ଶରତ୍‌କାଳ ଆସିବ । ସେତେବେଳକୁ ଆଉ ତାପାଇଁ ଘରେ ଜାଗା ନଥିବ । ବାଟଘରେ ନୁହେଁ କି ଗୋହରିଘରେ ମଧ୍ୟ ନୁହେଁ, ଘୁମୁରି ବନ୍ଧାହେଉଥିବା ଗୁହାଳଭିତରେ ମଧ୍ୟ ନୁହେଁ । ହାଇରେ ଭଗବାନ୍, ସେମାନେ କ'ଣ ମଣିଷ ? ସେମାନେ ହେଉଚନ୍ତି ରକତ ଶୋଷିନେବା ଲୋକ ! ସେମାନଙ୍କୁ ମଣିଷ କହିଲେ ଭୁଲ ହେବ । ସେମାନେ ହେଉଚନ୍ତି ଗୋଟାଏ ଗୋଟାଏ ପଶୁ !''

ଆପଣାର କଥାକୁ ସ୍ୱସୁଷ୍ଟିଙ୍କା ଏପରି ଭାବପ୍ରବଣ ଓ ଉତ୍ତେଜିତ ଭାବରେ କହୁଥାଏ ଯେ କଥା କହୁ କହୁ ତାର ମୁହଁଟାଉପରେ ଗୋଟାଏ ରଙ୍ଗୀ ସର ପଡ଼ିଆସୁଥାଏ ।

ଆଉଜଣେ ବୁଢ଼ା କୋଠିଆ, ଜୀବନଯାକ ମିହନ୍ତ ଖଟିଖଟି ତା'ର ଦେହ ଧୋକଡ଼ା ହୋଇଗଲଣି, ମୁହଁ ଉପରେ ବରକ୍ତର ରେଖା ପଡ଼ି-ସାରଲଣି,— ସେ ମୁହଁଫିଟାଇ କହିଲା : ନହେଲେ କ'ଣ କଥାରେ କହନ୍ତି : ଶରଦ ମାଇପ ସମସ୍ତଙ୍କର......।''

ଟାଉକର ମାଡ଼ିବସିଲା ପରି ହାଙ୍କା କହିଲା : ''ଆରେ ବାବୁ, ଏଥର ବଚନକା ବନ୍ଦଥାଉ,ଏଥର ଟିକିଏ ହାତଫୁର୍ତ୍ତି କର ଭଲ !'' କଥାଟା ବର୍ତ୍ତମାନ ଯେଉଁ ବାଙ୍କରେ ଯିବାକୁ ବସୁଥିଲା, ସେଇଟା ତାକୁ ଆଦୌ ଆଗ୍ରେଉ

ନ ଥାଏ । କିନ୍ତୁ ସ୍ତ୍ରିଷ୍ଟିଙ୍କର ତୁଣ୍ଡ ସମ୍ଭାଳ ହୋଇ ରହୁଚ କେତେବେ, ସେ ମୁହଁଟାକୁ ଉପରକୁ କରିଦେଇ ପୁଣି କହିବାକୁ ଆରମ୍ଭ କଲା :

"ସେମାନଙ୍କର ବୟସ ଆସି କେତେକେତେ ହେଲଣି କହିଲ ? ମୁଣ୍ଡରୁ ତ ବାଳ ଉପୁଡ଼ିବାକୁ ଆରମ୍ଭ କଲଣି ।"

ଆଉ ଜଣେ ଦୁଅଦେଇ କହିଲ, "କିନ୍ତୁ ତେବେ ବି ବାହାସାହା ହେବାର କଥା ସେମାନଙ୍କର ମୁଣ୍ଡରେ ପଶୁନାହିଁ !"

"କିନ୍ତୁ ଏଣେ କେତେ ଅଭିଆଡ଼ୀ ଝିଅ ବି ବୁଢ଼ୀ ହେବାକୁ ବସିଲେଣି ବା ଘର ଛାଡ଼ି ଆଉ କେଉଁ ଜାଗାରେ ଯାଇ କାମ କରିବାକୁ ବାଧ୍ୟ ହେଉଚନ୍ତି !"

"ଆଉ ତେଣେ ସେମାନଙ୍କର ମାଣ ମାଣ ଜମି ପଡ଼ିରହିଚ । ଅସୁମାରି ବୋଲି କହିଲେ ମଧ୍ୟ ଭୁଲ ହେବ ନାହିଁ । ହଁ, ତାହାଛଡ଼ା ଗୋଚର ଭୂଇଁ ମଧ୍ୟ ରହିଚ ।"

"କିନ୍ତୁ ସେମାନଙ୍କର ଯୋଉ ମାଆ, ସେ କ'ଣ କେବେହେଲେ ସେମାନଙ୍କୁ ବାହାହେବାକୁ ଦେବ ନା, ଆଉକିଛୁ କରିବାକୁ ଦେବ ?"

"ହଁ, ଲୋ ମା',—ପୁଅଝିଅମାନେ ବାହାହୋଇ ଗୁଲଗଲେ ଘରେ ଦୁଧ ଦୁହଁିବ କିଏ, ଲୁଗା କାଚିବ କିଏ, ବିଲବାଡ଼ି ଆଉ ଘୁଷୁରିଙ୍କର ତଦ୍ଧି ନେବ କିଏ ?"

"ହଁ, ଆପଣାର ମାଆ ଆଉ ସ୍ୱଗ୍ନା ପାଇଁ ସେମାନଙ୍କୁ ଘର ସମ୍ଭାଳି ରହିବାକୁ ହିଁ ପଡ଼ିବ । ତା' ନହେଲେ ସ୍ୱଗ୍ନା ପୁଣି ସାଆନ୍ତାଣୀ ବୋଲାଇବ କିପରି ? ବାବୁଆଣୀ ହୋଇ ବେଶ ଫେଶନ ହେବ ଆଉ କେତେବେଳେ ? ଆପଣାର ଦେହକୁ ନାନା ଯତନରେ ଘଷିମାଜି, ଆରସିରେ ନିକୁଟିକର ମୁହଁ ଦେଖି ଧନକୁ ପଗୃରିବାର ବେଣୀ ସଜାଡ଼ିବ କେତେବେଳେ ?"

"ହଁ,— ତା' ସାଙ୍ଗକୁ ପୁଣି ଘଇତା କରିବ କେତେବେଳେ ? ଯୋଉଧନ ଝିଏ ଆସି ହାବୁଡ଼ି ଗଲା, ସେଇ ତ ହେଲା ଘଇତା—ଖାଲି ବେଅସ ବଳ ରହିଥିଲେ ହେଲା !"— ବଡ଼ ବିଦ୍ୱେଷପୂର୍ଣ୍ଣ ମୁଖଭଙ୍ଗୀ କରି ସ୍ତ୍ରିଷ୍ଟିଙ୍କା ଛିଗୁଲେଇ କହିଲା ।

"ସେଦିନ ଯୋଶେଫ୍ ବନ୍‌ଡ୍ରେକ୍ ଭଡ୍‌କାର ଭାର ସାଙ୍ଗରେ ଦେଇ ତା'ପାଖକୁ ଭଲଲୋକ * ପଠାଇଥିଲା । କିନ୍ତୁ ଝିଅଙ୍କର ପସନ୍ଦ ହେଲା ନାହିଁ ।"

"ପୋଡ଼ିଯାଆନ୍ତୁ ସେ ଝିଅ ! ତାଙ୍କ ଶେଲବସର ହେବାକୁ ଥିବ୍ ବୋଲି କହିବ ।"

"ଆଉ ସେ ବୁଢ଼ୀଟାର ବାଲ୍ଙ୍ଗି କ'ଣ କମ୍ କି ? ଏଣେ ଗୀର୍ଜାକୁ ଯାଇ ତଗ ତଗ କରି ପ୍ରାର୍ଥନା ପୁସ୍ତକ ଗାଇଦିବାରେ କୌଣସି ହେଲା ନାହିଁ । କିନ୍ତୁ ଗୀର୍ଜାରୁ ବାହାରିଲେ ଯୋଉଆଡ଼କୁ ପାପ ଡାକିବ ସିଏ କେବଳ ସେଇଆଡ଼କୁ ଗୋଡ଼ ବଢ଼ାଇବାବାଲି !"

"ଆଲୋ, ସେ ଗୋଟାଏ ଡାଆଣି; ତୁଚ୍ଛା ଡାଆଣୀ ! ଖ୍ରିବ୍‌ରେକ୍ ଘରର ଗାଈର ଥନରୁ କ୍ଷୀର ହରିନେଲା କିଏ କହିଲୁ । ଆଉ ସେଦିନ ଯ୍ଭାଶେକ୍‌ର ଛୁଆ ପୁଅଟା ବାଶରୁ କେଇଟା କୋଳି ଛିଣ୍ଡାଇ ନେଲା ଯେ, ତା' ଉପରେ ସେ ମନଇଚ୍ଛା ଗାଳି ବରଷିବାକୁ ଲଗିଲା । ତାକୁ ସେ କେତେ ନିସର୍ମିତ ସେଦିନ ?"

"ଯୋଉଘରେ ଏପରି ରାକ୍ଷସୁଣୀମାନେ ରହିଛନ୍ତି, ସେଇଘର ଉପରେ ଭଗବାନଙ୍କର ଦୃଷ୍ଟି କିପରି ପଡ଼େ କେଜାଣି ?"

ଯ୍ଯୁଷ୍ଟିଙ୍କା ଉତ୍ତର ଦେଲା, "ସିଏ ଅନେକଦିନ ତଳର କଥା ଲୋ ଭଉଣୀ । ସେତେବେଳେ ମୁଁ ବାପଘରେ ଗାଈ ଚରାଉଥାଏ । ସେମାନେ ଆମଘରୁ ଲୋକମାନଙ୍କୁ ଛଡ଼ାଇ ନେବାକୁ କେତେ ଯେ ଚକ୍ରାନ୍ତ କରିଚନ୍ତି, ମୁଁ ସେକଥା କ'ଣ କହିବ ?······କିନ୍ତୁ କିଏ ସେମାନଙ୍କର କ'ଣ କରିବ ଲୋ ମାଆ,—ତାଙ୍କର ପକ୍ଷ ନେବାକୁ କ'ଣ ସଂସାରରେ ଲୋକ ଅଭାବ ଅଛନ୍ତି ?"
—କ୍ରମେ ତା'ର କଣ୍ଠସ୍ୱର ଧୀର ଓ କ୍ଷୀଣ ହୋଇଆସିଲା । ସବାଆଗ ଧାଡ଼ିରେ

---

* ଦେଶର ରୀତି ଅନୁସାରେ ଦୁଇଜଣ ଭଲଲୋକ ଭଡ଼କା (ମଦ)ର ଭାର ଧରି ଝିଅଘରକୁ ଯାଆନ୍ତି । ଝିଅ ସେହି ମଦକୁ ସେବନ କଲେ ଯେ ବିବାହ ପ୍ରସ୍ତାବରେ ରାଜି ହେଲା ବୋଲି ଧରିନିଆଯାଏ ।

ଆଳୁ ଖୋଳୁଥିବା ହାଙ୍କା ଆଡ଼କୁ ବଙ୍କେଇକରି ଗୃହି ଦେଇ ସେ ଫୁସ୍‌ଫୁସ୍ କରି ପାଖରେ କାମ କରୁଥିବା ଲୋକମାନଙ୍କୁ କହିଲା : "ସେଇ ହାଙ୍କାର ଯୋଉ ଗେରସ୍ତ ଜଣକ, ଯେଇ ତ କହିଲେ ବାହାରପଡ଼ ସେଇ ମାଇପିଟାର ପଛ ନେବାକୁ ଆସିବ ! ସ୍ୱଗ୍ନା ଘୋଉଠିକି ଯିବ, ସିଏ ମଧ୍ୟ ତା' ପଛେ-ପଛେ ଠିକ୍ କୁକୁରପରି ଗୋଡ଼ାଇଥିବ !"

"ଆଲୋ, ତୋତେ ମୁଁ ଠାକୁରଙ୍କର ଦୁହାଇ ଦେଇ କହୁଚ, ତୁ ମୁହଁ ବନ୍ଦକର ଭଲ ! ଆମକୁ ତୁ କପରି ଭୟଙ୍କର କଥାମାନ କହୁଚୁ କହୁଛୁ ! ଏପରି କଥାମାନ ତୁଣ୍ଡରେ ପୁରାଇଲେ ତୋ'ର ପାପ ହେବନାହିଁ, ଭଗବାନ ତୋତେ ଦଣ୍ଡ ଦେବେନାହିଁ ?"— ପାଖରେ ଥିବା ଲୋକମାନେ ଫୁସ୍‌ଫୁସ୍ କରି ଉତ୍ତର ଦେଲେ ଓ କାନ୍ଧ ଦୁଇଟାକୁ ଧନୁପରି ବଙ୍କା କରି ଆଳୁ ଖୋଳିବାରେ ଲାଗିଲେ ।

"ସେଇ କ'ଣ ଗୋଟାଏ ଲୋକ ? ଗାଆଁ ଯାକ ଯେତେ ଟୋକା, ସମସ୍ତେ ପରା ତା'ରି ପଛରେ ଲାଗିଚନ୍ତି, ଠିକ୍ ମାଈକୁକୁର ପଛରେ ସବୁ ଭୁଆ ଲାଗି ରହିଥିଲା ପରି !"

"ହଁ, ହଁ, କିନ୍ତୁ ଭଗବାନ ତାକୁ ସେଇଲାଗି ରୂପ ଦେଇନଥିଲେ କ'ଣ ତାହା ହୁଅନ୍ତା ? ଠିକ୍ ଖାଇପିଇ ଶସିଆଳ ହୋଇ ବଢ଼ିଥିବା ଗୋଟିଏ ନଡ଼ାପରି ତା'ର ଦେହ । ମୁହଁ ଠିକ୍ ଦୁଧସର ପରି ଗୋରା, ଆଖି ଦୁଇଟି କେଡ଼େ ସୁନ୍ଦର ତଉଲତାଉଲ, ଦେହରେ ବଳ ଭରତି ହୋଇ ରହିଚ । କେଡ଼େକେଡ଼େ ମରଦ ଆସିଲେ ମଧ୍ୟ ତା'ପାଖରୁ ହଟିଯିବେ !"

"କିନ୍ତୁ ବସି ଖାଇଲେ ମଣିଷ ତଉଲତାଉଲ ହେବନାହିଁ ତ ଆଉ କ'ଣ ହେବ ? ଦିନରେ କହିଲା ଖାଲି ଖାଇବା ଆଉ ଶୋଇବା ଛଡ଼ା ସେ ଆଉ କେଉଁ କୁଟାଖଣ୍ଡିକ ଦିଖଣ୍ଡ କରୁଚ ?"

ତା'ପରେ ସମସ୍ତେ ଚୁପ୍‌ଚାପ । ଆପଣା ଆପଣାର ଟୋକେଇ ଭିତରୁ ସେମାନେ ଆଳୁତକ ଗଦାଉପରେ ନେଇ ଅଜାଡ଼ି ଦେଉଥାନ୍ତି । ତା'ପରେ ଗପସପଟା ଅନ୍ୟ ପ୍ରସଙ୍ଗ ଆଡ଼କୁ ଲଙ୍ଟେଇ ଗୃଲିଗଲା । ଠିକ୍ ଏହି ସମୟରେ ବୋରନାର ଝିଅ ସୁଜ୍‌କାକୁ ଖେତର ସେପାଖରୁ ନଅର ପସର ହୋଇ

ଧାଇଁ ଆସୁଥିବାର ଦେଖାଗଲା । ତାକୁ ଦେଖି ସମସ୍ତେ କଥା ବନ୍ଦକଲେ । ଅଣନିଶ୍ୱାସୀ ହେଲପର ଦଉଡ଼ି ଦଉଡ଼ି ଆସି ୫ଣ୍ଡେଦୂରରୁ ସୁଜକା ଏଡ଼େବଡ଼ ପାଟି କରି କହିବାକୁ ଲଗିଲା :

"ହାଙ୍କା, ତୁ ଧଅସି ଘରକୁ ଆ' । ତେଣେ ଆମ ଗାଈର କ'ଣ ହୋଇଯାଉଚ !"

"ହେ ଭଗବାନ, କୋଉ ଗାଈର ?"

"ସେଇ ନାଲିଆ ଆଉ ଧଳା ମିଶା ଛୁପିଛୁପିକିଆ ଗାଈର ।"

ଆଶ୍ୱସ୍ତ ହୋଇ ହାଙ୍କା ନିଶ୍ୱାସ ମାରିଲା । "ହେ ଭଗବାନ୍ ! ମୁଁ ତ ତୋ'ର କଥା ଶୁଣି ଗୋଟାସୁଦ୍ଧା ଛୁଇଁଆ ହୋଇ ଯାଇଥିଲି । ମୁଁ ଭାବିଥିଲି ମୋ' ଗାଈ ବୋଲି !"

"ଭିଟେକ୍ ବର୍ତ୍ତମାନ ସେହି ଗାଈକୁ ଅଡ଼ାଇ ଆଣି ଘରେ ପହଞ୍ଚିଲା । ଗାଈଆଳି ଗୃକର ତାକୁ ଗୋଠରୁ ବାହାର କରି ଦେଇଥିଲା । ସହଜରେ ତ ତା'ର ଦେହଟା ଭାରି ମୋଟା, ବାଟଯାକ ଦଉଡ଼ି ଦଉଡ଼ି ଗାଈଟି ଏପରି କ୍ଲାନ୍ତ ହୋଇ ଯାଇଥିଲା ଯେ ଗୁହାଳ ଦୁଆରମୁହଁରେ ଆସି ପହଞ୍ଚିଲା ମାତ୍ରକେ ସେ ଢୁଲ୍‌କରି ତଳେ ପଡ଼ିଗଲା । ସେତିକିବେଳୁ ସେ ମୁହଁରେ ଦାନା ମାରିବାକୁ ନାହିଁ । ପାଣି ମୋହିଁ ଦେଲେ ମଧ୍ୟ ପିଇବାର ନାଆଁ ଧରୁନାହିଁ । ଖାଲି ମାଟିଉପରେ ପଡ଼ି ଗଡ଼ିବାରେ ଲଗିଚ ଆଉ ଭାରି ବିକଳ ହୋଇ ରଡ଼ି କରୁଚ ।"

"ବାପା ଘରକୁ ଫେରିଆସିଲେଣି ନା ନାହିଁ ?"

"ନା,—ଏପର୍ଯ୍ୟନ୍ତ ଫେରିନାହାନ୍ତି । ହେ ଠାକୁରେ, ଏଭଳିଆ ଗାଈର ପୁଣି ଏପରି ଦଶା ଭୋଗିବାକୁ ଥିଲା ! ଥରକରେ ଦୁଇସେର ଦୁଧ ଦେବାର ଦୁଧିଆଳୀ ଗାଈ ସେ । ତୁ ଟିକିଏ ଚଞ୍ଚଳ ଚାଲିବୁଟି ! ଆଉ ଡେରି କରନା !"

"ହଁ, ହଁ, ମୋର ଆଉ ଡେରି ନାହିଁ । ମୁଁ ସଙ୍ଗେସଙ୍ଗେ ଯାଉଚ ।"

ହାଙ୍କାର ଲୁଗା ଛୁଆଟି କନାଦୋଳରେ ଝୁଲୁଥିଲା । ସେଠାରୁ ଛୁଆଟିକୁ ନେଇ ସେ ଏପରି ତରବର ହୋଇ ସେଠାରୁ ବାହାରି ପଡ଼ିଲା ଯେ କାମବେଳେ ଅଣ୍ଟାରେ ଖୋସା ହୋଇଥିବା ଲୁଗାକୁ ପୁଣି ଆଣ୍ଠୁତଳକୁ

ଖସାଇ ଦେବାକୁ ଅଉ ତା'ର ଖିଆଲ ରହିଲା ନାହିଁ । ମୁଜ୍‌କା ପନ୍ଥରେ ବାଟ ଗୁଲ୍‌ଗୁଲ୍ ବାଲି ଭିତରେ ତା'ର ଗୋଡ଼ ଦୁଇଟି ଟଳଟଳହୋଇ କେଉଁଠି ଯେ ପଡ଼ୁଥାଏ, ସେ ବିଷୟରେ ତା'ର କୌଣସି ହୋ'ସ୍ ନଥାଏ ।

ଆଳୁ ଖୋଳୁଥିବା ମୂଲିଆମାନଙ୍କର କାମର ତ୍ୱରା କ୍ରମେ ଧୀରହୋଇ ଆସିଲା, ସେମାନଙ୍କର ଦୁଇଗୋଡ଼ ମଝିରେ ଗୁଳ୍ଥିବା କୋଦାଳଗୁଡ଼ିକର ବେଗ କ୍ରମେ ବଳହୀନ ମନେହେଲା । ଏଥର ଆଉକିଛି କହିବାକୁ ତ କେହି ନାହାନ୍ତି, ଗୋଡ଼େଗୋଡ଼େ ଗାଳି ଦେଇ ଫୁର୍ତ୍ତି କରାଇବାକୁ ତ କେହି ନାହାନ୍ତି, ତେଣୁ ଏଡ଼େ ତରବର୍ କଅଁ ?

ସୂର୍ଯ୍ୟ ଦେତେବେଳକୁ ପଶ୍ଚିମ ଆକାଶ ଉପରକୁ ଚାଲି ଯାଣିଲେଣି । ସ୍ପଷ୍ଟ ମଧ୍ୟଗଟା ଯାକ ତାଙ୍କର କିରଣରେ ପାଚ ନାଲି ଟହଟହ ଦିଶୁଚ । ସତେଯେପରି ତରଳ ହୋଇ ଖସି ଯାଉଥିବାରୁ ସେ ଆହୁରି ପାଚିଲା ଦେଖାଯାଉଚନ୍ତି । ପଶ୍ଚିମ ଦିଗ୍‌ବଳୟର ଉଚ୍ଚ କୃଷ୍ଣବର୍ଣ୍ଣ ଅରଣ୍ୟରେଖା ଉପରେ ତାଙ୍କର ବିରାଟ ଗୋଲେଇଟି ନିଆଁ ରଙ୍ଗର ପିଣ୍ଡୁଳାଟିଏ ହୋଇ ଝୁଲୁଚ । କ୍ରମେ ଗୋଧୂଳି ଘନ ହୋଇ ଆସିଲାଣି ଓ ଧରଣୀର ଗାତ୍ର ଉପରେ ପ୍ରସାରିତ ହେବାକୁ ଲଗିଲାଣି । କିଆରିର ସିଆରିମାନ ସେହି ଗୋଧୂଳିର ଝାପ୍‌ସା ଆଲୁଅରେ ପୂର୍ଣ୍ଣହୋଇ ଗଲାଣି, କେଉଁଠି କେତେ ଖାଲ ଓ ଗାଡ଼-ଭିତରେ ଏହି ଗୋଧୂଳି ଲୁଚକାଳି ଖେଳୁଚ, ବଣ ବୁଦାର ଆଢୁଆଳ ଦେଖି ବିଶ୍ରାମ ନେଉଚ ଏବଂ ପ୍ରସାରିତ ଧରାପୃଷ୍ଠ ଉପରେ କ୍ରମେ ବ୍ୟାପ୍ତ ହୋଇ ଯାଉଚ । ସେହି ଗୋଧୂଳିର ସ୍ରୋତମୁହଁରେ ପଡ଼ି ଧରଣୀର ସମସ୍ତ ରଙ୍ଗ-ବୈଚିତ୍ର୍ୟ କ୍ରମେ ଘନତର ହୋଇ ଶେଷକୁ ଅନ୍ତର୍ହିତ ହୋଇ ଯାଉଚ । ଶେଷକୁ ଖାଲି ବୃକ୍ଷରାଜିମାନ ଓ ଗାଆଁ-ଗୀର୍ଜାର ମୁନିଆଁ ଅଗ୍ରଭାଗଟି ଅନ୍ଧାରଭିତରୁ ଜକଜକ ହୋଇ ଫୁଟି ଦେଖାଯାଉଚ । ଆଜି ଦିନମାନର କାମ ସାରି ମୂଲିଆମାନେ ଗୋଟିଏ ଗୋଟିଏ ଘରକୁ ଫେରିବାକୁ ଆରମ୍ଭ କଲେଣି ।

ଚାରିଆଡ଼ୁ କେବଳ ଡାକହାକ, ନାନା ଚିତ୍କାର ଓ ହମ୍ବାରବ ଶୁଣା-ଯାଉଚ । କେଉଁଠି ଶଗଡ଼ ଚକିଆର ଡାକ ଶୁଭୁଚ । ପାଖକୁ ପାଖକୁ ଆସୁଥିବା

ସଙ୍ଗେସଙ୍ଗେ ସେହି ଡାକ ଅଧିକରୁ ଅଧିକ କର୍କଶ ହେବାରେ ଲଗିଚ ଏବଂ ଶାନ୍ତ ସାନ୍ଧ୍ୟସମୀରକୁ ସତେଅବା ଦୋହଲାଇ ଦେଉଚ । କିନ୍ତୁ ହଠାତ୍ ଗୀର୍ଜା ଉପରେ ଥିବା ଘଣ୍ଟାଘରୁ ଘଣ୍ଟା ଶବ୍ଦ ହେବାକୁ ଲଗିଲି ଓ ସେହି ଶବ୍ଦର ସ୍ପର୍ଶାଘାତ ବାଜିବା ମାତ୍ରକେ ଯେପରି ଅନ୍ୟାନ୍ୟ ଯାବତୀୟ ପ୍ରକାରର ଶବ୍ଦ କ୍ରମେ ନିସ୍ତବ୍ଧ ହୋଇଯିବାକୁ ଲଗିଲା । ସେହି ଘଣ୍ଟାଶବ୍ଦର ଗାମ୍ଭୀର୍ଯ୍ୟପୂର୍ଣ୍ଣ ସ୍ପନ୍ଦନ ଭିତରେ ଯେପରି ଗୃହଆଡ୍ଡୁ ଅର୍ଦ୍ଧସ୍ଫୁରିତ କଣ୍ଠସ୍ୱରରେ ପ୍ରାର୍ଥନାମାନ ଧ୍ୱନିତ ହେବାକୁ ଲଗିଲା । ଗଛରୁ ପତ୍ରମାନ ଖସିଆସିଲେ କାନର ପର୍ଦ୍ଦା ଉପରେ ତାହାର ଶବ୍ଦାଘାତ ବାଜି ଯେପରି ଶୁଭେ, ଠିକ୍ ସେହିପରି ।

ଗୋଧୂଳି ଆସିଲା, ଗୋଧନ ବାହୁଡ଼ାର ସମୟ ମଧ୍ୟ ହୋଇ ଆସିଲା । ଆନନ୍ଦରେ ନାନା ପ୍ରକାର ରବକରି ଗାଈଗୋଠ ଘରକୁ ଫେରିଆସିଲେ । କେତେପ୍ରକାର ଶବ୍ଦ ଓ ସଙ୍ଗୀତର ସମ୍ମିଳିତ ମିଶ୍ରତାନରେ ଗ୍ରାମପଥ ମୁଖରିତ ହୋଇଉଠିଲା । ଧୂଳିର ପଟଳ ଉଡ଼ି ଆଉ କିଛି ଦୃଶ୍ୟ ହେଲାନାହିଁ । କେବଳ ସେହି ଧୂଳିମେଘର ଫାଙ୍କ ଭିତରୁ ବେଳେବେଳେ ଗୋରୁମାନଙ୍କର ବିଶାଳ-କାୟ ଓ ଶିଙ୍ଗ ସମନ୍ୱିତ ମୁଣ୍ଡଗୁଡ଼ିକ ମୁହୂର୍ତ୍ତକ ପାଇଁ ଦୃଷ୍ଟିଗୋଚର ହୋଇ ଯାଉଥାଏ ।

ଗୋରୁପଲଙ୍କ ସହିତ ମେଣ୍ଢାପଲ ମଧ୍ୟ ଘରକୁ ଫେରିଆସୁଥାନ୍ତି । ମାଳମାଳ ହଂସ ଶସ୍ୟଖେତ ଉପରେ ଧାଡ଼ିବାନ୍ଧି ଉଡ଼ି ଯାଉଥାନ୍ତି ଏବଂ ପଶ୍ଚିମ ଆକାଶର ବର୍ଣ୍ଣଭାସ୍ୱରତା ଭିତରେ ଅଦୃଶ୍ୟ ହୋଇ ଯାଉଥାନ୍ତି । କେବଳ ସେମାନଙ୍କର କଣ୍ଠରୁ ନିସୃତ ହୋଇ ଉଠୁଥିବା ମୁଖର କାକଳି ସେମାନେ ଏପର୍ଯ୍ୟନ୍ତ ମଧ୍ୟ ଉଡ଼ିଯାଉଚନ୍ତି ବୋଲି ଯାହା ସୂଚନା ଦେଇ-ଯାଉଥାଏ ।

"ବର୍ତ୍ତୃବା ସେହି ଗ୍ରୁପଗ୍ରୁପିକିଆ ଗାଈର ପେଟରେ ବାଛୁରୀ ମଧ୍ୟ ଥିଲା ।"

"ଯାହାହେଉ, ବୋରିନା ଥିଲବାଲି ଲେକ । ନହେଲେ ଏହି ଷଡଟା ଖୁବ୍ ଆଘାତ ଦେଇଥାନ୍ତା ।"

"କିନ୍ତୁ ଧନ କ'ଣ ସ୍ୱର୍ଗକୁ ନେଇଯିବ ? ଏତେ ବଡ଼ିଆ ମଜଭୁତ ଗୋରୁ-ଟାଏ ଗୁଲଗଲେ ତାହାକୁ କେବଳ ଦୁର୍ଭାଗ୍ୟ ବୋଲି କୁହାଯିବ ସିନା !"

"ବୋରନାର ଘରକୁ ତ ଘରଣୀ ନାହିଁ । ତେଣୁ ଗୃହିଣୀରୁ ପାଣି ଗଲାଗଲା ପରେ ତା'ର ସବୁ ସମ୍ପତ୍ତି କେବଳ ଉଜୁଡ଼ିବାରେ ଲଗିଚ !"

"ହଁ, ଘର ସମ୍ଭାଳିବାକୁ ହାଙ୍କା ଯେମିତ ପାରୁଆ ମଣିଷ, ସେକଥା ତ ସମସ୍ତଙ୍କୁ ଭାରି ଭଲକରି ଜଣାଅଛି !"

"ଘରକଥା ସିନା ସମ୍ଭାଳି ପାରେନାହିଁ, କିନ୍ତୁ ଆପଣାର କଥା ସମ୍ଭାଳିବାକୁ ତା'ର ଭାରି ବୁଦ୍ଧି ଅଛି । ଯେମାନେ ସମସ୍ତେ ତା'ର ବାପ ପାଖରେ ଠିକ୍ କୋଠିଆ ରହିଲାପରି ରହିଥାନ୍ତି । କିନ୍ତୁ ପ୍ରତ୍ୟେକେ ଓର ଖୋଜୁଥାନ୍ତି କିପରି ତା'ପାଖରୁ ଆପଣାଲାଗି ଅଧିକରୁ ଅଧିକ ଲଭ ମାରି-ନେବେ । କିନ୍ତୁ ବୋରନାର ସମ୍ପତ୍ତି ଦେଖିବାକୁ ଆଉ କାହାର ଭେକ ସରୁଚ ? ଯେ ସମ୍ପତ୍ତି ରହିଲେ କେତେ ଗଲେ କେତେ ?"

"ୟୁଜ୍‌କା ତ ପିଲଲୋକ, ତା'ର ବା କି ବୁଦ୍ଧି ହେଲାଣି ? ସେ କ'ଣ କରି ପାରିବ ?"

"କିନ୍ତୁ ବୋରନା ଇଚ୍ଛାକଲେ କଣ ଆପଣାର ଜମିବାଡ଼ିକୁ ଆନ୍ତେକ୍ ହାତରେ ଦେଇ ପାରନ୍ତା ନାହିଁ ?"

"ହଁ, ହଁ, ଖାସା କଥା ତୁ କହିଲୁରେ ! ଆପଣା ଜମିକୁ ତା' ହାତରେ ଦେଇଦଅନ୍ତା, ଆଉ ତା'ଠାରୁ ଭିକମୁଠି ମାଗି ଖାଆନ୍ତା !"— ଭାରି ଗରମ ହୋଇ ସ୍ତ୍ରୀଲୋକଙ୍କ ଉତ୍ତର ହେଲା । "ଭାଉରେକ, ତୁ ଆସି ବୁଢ଼ୀଟିଏ ହେଲୁଣି, କିନ୍ତୁ ତଥାପି ତୋ' ମୁଣ୍ଡଭିତରେ ଖାଲି ଗୋବର ଭର୍ତ୍ତି ହୋଇ ରହିଚ । ଆରେ, ବୋରନାର ବୟସ ତ ପଳାଇ ଯାଇନାହିଁ । ସେ ମନକଲେ ଅଉ ଗୋଟାଏ ବାହା ନହେବ କାହିଁକି ? କିନ୍ତୁ ତା'ନକରି ଆପଣାର ସବୁ ସମ୍ପତ୍ତିକୁ ପିଲଙ୍କ ହାତରେ ପାଣି ଛଡ଼ାଇଦେଲେ ସମସ୍ତେ ତାକୁ ଗୋଟାଏ ନମ୍ବର୍ ବୋକାବୋଲି କହିବେ ସିନା !"

"ବୟସ ସିନା ପଳାଇ ଯାଇନାହିଁ,— କିନ୍ତୁ ଆସି ତନକୋଡ଼ିକୁ ଛୁଇଁଯାଉଲାଣି ।"

"ଆରେ ଛାଡ଼ିରେକ, ସେଥିପାଇଁ ଚିନ୍ତା କରିବାର କ'ଣ ଅଛି ? ଯେ ଖାଲି ମନ କଲେ କେତେ ଝିଅ ତା'ର ହାତ ଧରିବାକୁ ବାହାରିବେ ।"

"କିନ୍ତୁ ସେ ଗୋଟାଏ ପରେ ଗୋଟାଏ କରି ଦୁଇଟା ମାଇପ ଖାଇ ସାରିଲାଣି ଯେ !"

"ଭାବନ୍ତା ଏବେ ଖାଉ, ସେଥିରେ ତୋ'ର କ'ଣ ଯାଉଛି ? କିନ୍ତୁ ଭଗବାନ ତା'ପ୍ରତି ଦୃଷ୍ଟି ରଖି ଥାନ୍ତୁ ! ଯେ କହୁଥିବା ତାଙ୍କ ଆପଣାର ସମ୍ପତ୍ତିକୁ ପିଲାଙ୍କ ହାତରେ ସମର୍ପି ଦେବାକୁ ଯେପରି କୌଣସି ଦିନ ତା'ର ଦୁର୍ବୁଦ୍ଧି ନହେଉ ! ସେମାନଙ୍କ ହାତରେ ଯେପରି ସେ ଖୋକେହେଲେ ଭୂମି ମଧ୍ୟ ନଦେଉ ! ତାଆଣା ଅସୁର ଗୁଡ଼ାକ ! ଚାଲି ଛୁଆଣଙ୍କଠାରୁ ବଳନ୍ତୁ । ହାତକୁ ଜମି ଆସିଲେ ସେମାନେ ବାପକୁ ଯାହା ଫସଲରୁ ଭାଗ ଦେବେ, ସେକଥା ମାଆ ଗଙ୍ଗେଇ ଜାଣନ୍ତୁ । କେଉଁଟାଦିନ ଯାଇନଥିବ, ତାକୁ ସେମାନେ ଜବରଦସ୍ତ ଧରି ଆଣି ବଳରେ କାମ କରିବାକୁ କହିବେ । କହିବେ, "ଖାଇବୁ ଯଦି କାମ କର, ନହେଲେ ଉପାସ ରହ । ଇଚ୍ଛା ହେଉଚି ତ ଯାଆ କୋଉଠି କାହାଦୁଆରୁ ମାଗିକରି ଖାଇବୁ !" ସଂସାରଟା ସବୁଠାରେ ସେମିତିଆ । ଆପଣା ଅର୍ଜିଲା ସମ୍ପତ୍ତିକୁ ଆପଣା ପିଲାଙ୍କ ହାତରେ ସମର୍ପିଦିଅ, ସେମାନେ ତୁମକୁ ଗୋଟିଏ ଦଉଡ଼ି କିଣିବାକୁ ଯେତିକି ଅର୍ଥ ଦରକାର ସେତିକି ଅର୍ଥ ଦେବେ । ତୁମେ ତାହାର ସାହାଯ୍ୟରେ ଦଉଡ଼ିଦେଇ ମରିବ, ନଚେତ୍ ବେକରେ ପଥର ବାନ୍ଧି ପାଣିକୁ ଡେଇଁପଡ଼ିବ !"

"ଚାଲ, ଘରକୁ ଯିବା ଚାଲ । ଏଣେ ଅନ୍ଧାର ହୋଇ ଆସିଲାଣି ।"

"ହଁ, ଅନ୍ଧାର ହୋଇ ଆସିଲାଣି, ସୂର୍ଯ୍ୟ ମଧ୍ୟ ଢଳି ପଡ଼ିଲେଣି ।"

ଏହାପରେ ସେମାନେ ତରତର ହୋଇ କୋଦାଳଗୁଡ଼ିକୁ କାନ୍ଧ-ଉପରେ ପକାଇଦେଲେ ଏବଂ ହାତରେ ଟୋକେଇ ଓ ଖାଇବା କଂସାଟିମାନ ଧରି ଗୋଟିଗୋଟି ହୋଇ ଧାଡ଼ି ବାନ୍ଧି ବାଟରେ ଚାଲିବାକୁ ଆରମ୍ଭ କଲେ । ବୁଢ଼ୀ ସ୍ମୁରୁଷ୍କିଙ୍କା ଆପଣା ପିଲା ଓ ଅନ୍ୟମାନଙ୍କ ପିଲାମାନଙ୍କୁ ସମ୍ଭାଳି ଧରି ଭାରି ଉଦ୍‌ବେଗର ସହିତ ବାଟ ଚାଲି ଯାଉଥାଏ ।

ଆଉଗୋଟାଏ ବାଟ ଦେଇ ଗୋଟିଏ ଝିଅ ମଧ୍ୟ ଅଦୂରରେ ଘରକୁ ଫେରି ଯାଉଥିଲା । ଆଗରେ ଚୃଲିଥିବା ଗୋଟିଏ ମାଈ ଘୁଷୁରିକୁ ସେ ଅଡ଼େଇ ଘରକୁ ନେଉଥିଲା । ବାଟଚୃଲି ଯାଉଯାଉ ତା'ର କଣ୍ଠରୁ ଚେଁ ଚେଁ ସ୍ୱରରେ ଗୀତ ମଧ୍ୟ ଉଚ୍ଛୁଳି ପଡ଼ୁଥିଲା ।

"ଶୁଣ ବା ସେଇ ଅଲକୁଣ୍ଡୀ ଝିଅଟାକୁ । ସତେ ଯେପରି ତା'ର ଆଖିଆଗ ଦେହଉପରୁ କିଏ ଗ୍ଳାନି ଉତାରି ନେଉଥିଲା ପରି ସେ କିପରି ରଡ଼ି କରିବାରେ ଲାଗିଛି !"

## କୁକୁର

ଇତ ମଧ୍ୟରେ ବୋଉନାର ଘରଦୁଆରେ ସାହିପଡ଼ିଶାର ଅନେକ ଲୋକ ଆସି ଜମାହୋଇ ଯାଇଥିଲେ । ଦୁଆରର ଡାହାଣପାଖରେ ଡାହାଧାଡ଼ି ଘର, ଅନ୍ୟ ପାଖରେ ରାସ୍ତା । ରାସ୍ତା ଓ ଦୁଆର ମଝିରେ ଫଲବଗିଚା । ନାଲି ଆଉ ଧଳାରଙ୍ଗର ସେହି ଗ୍ରୁପ ଗ୍ରୁପିକିଆ ଗାଈଟି ଆଡ଼କୁ ବିସ୍ମୟ ଓ କାରୁଣ୍ୟ-ପୂର୍ଣ୍ଣ ଦୃଷ୍ଟିରେ ଅନାଇ କେତେ ସ୍ତ୍ରୀଲୋକ କେତେକେତେ ପରାମର୍ଶ ଦେଉଥାନ୍ତି, କେତେ ଉପାୟ ବତାଉଥାନ୍ତି । ଗୁହାଳ ଘରର ଠିକ୍ ସମ୍ମୁଖରେ ଗୋବର ବାଟ ବାଟ ହୋଇଥିବା ମାଟିଉପରେ ପଡ଼ିରହି ଗାଈଟି ବୋବାଳି ଛାଡ଼ିବାରେ ଲାଗିଥାଏ ।

ସେଇ ଗାଆଁର ଗୋଟାଏ ବୁଢ଼ା କୁକୁର,— ଗୋଟାଏ ଗୋଡ଼ରେ ଟିକଏ ଖ୍ରୋଟା, ପିଠିଉପରୁ ଗୋଟାଏ ଗୋଟାଏ ଜାଗାରେ ଲୋମ ଗ୍ରୁଡ଼ିଗ୍ରୁଡ଼ି ଯାଇଥାଏ । ସେହି କୁକୁରଟି ମଧ୍ୟ ରହିରହି ଗାଈର ଏଠୁସେଠୁ ନାକମାରି ଶୁଙ୍ଘୁଥାଏ ଓ ଭୁକିବାରେ ଲାଗିଥାଏ । କେତେବେଳେ ସେ ବାଡ଼ ଆଡ଼କୁ ଦଉଡ଼ି ଚୃଲିଯାଉଥାଏ ଓ ବାଡ଼ଉପରେ ଚଢ଼ି ଗାଈଟିକୁ ଦେଖିବାଲାଗି ବଡ଼ ଉତ୍ସୁକ ହୋଇ ଅନାଇ ରହିଥିବା ସାନସାନ ପିଲାମାନଙ୍କୁ ଡରାଇ ହୁରୁଡ଼ାଇ ଦେଉଥାଏ । କୁକୁରଟି ପୁଣି କେତେବେଳେ ଘରପାଖରେ ଶୋଇ ମୁହଁ

ଘରରେ ଗଅଁ ଗଅଁ ହୋଇ ଆପଣାର ଗୃହୋଷ୍ଟି ଧଳା ଲୁନକୁଆଙ୍କୁ ଦୁଧ ଦେବାରେ ବ୍ୟସ୍ତ ଥିବା ମାଈ ପୁସୁରଟି ଆଡ଼କୁ ମଧ ଦଉଡ଼ ଯାଉଥାଏ ।

ପରେ ପହଞ୍ଚିବା ମାତ୍ରକେ ହାଙ୍କା ସିଧାଯାଇ ଗାଈଟି ପାଖରେ ପହଞ୍ଚିଲ ଏବଂ ସଙ୍ଗେ ସଙ୍ଗେ ତା'ର ମୁହଁ ଓ ମୁଣ୍ଡକୁ ହାତରେ ବାଡ଼େଇ ଦେଖିବାକୁ ଲଗିଲ ।

"ବିଚରା ନାଲ ଆଉ ଧଉଳୀ ଗାଈର କ'ଣ ହେଲ ଲୋ !"— ତା'ର ଆଖିରୁ ଲୁହଧାର ବୋହି ଆସୁଥାଏ ଏବଂ ସେ ଭଗ୍ୟକୁ ଅଭିଶାପ ଦେଇ ରୋଦନ କରବାରେ ଲଗିଥାଏ ।

ବାଧିକଥିବା ଗୋରୁଟି ପାଇଁ କେତେବେଳେ କ'ଣ ଉପାୟ ବତାଇ ସେଠାରେ ରୁଣ୍ଡ ହୋଇଥିବା ସ୍ତ୍ରୀଲୋକମାନେ ନାନାପ୍ରକାର ପରାମର୍ଶ ଦେଉଥାନ୍ତି । ଗାଈଟିକୁ କେତେବେଳେ ଲୁଣପାଣି ପିଆଇ ଦିଆ ଯାଉଥାଏ, କେତେବେଳେ ଠାକୁରଘରର ମହମବତୀରୁ ତରଳ ଖସିପଡ଼ିଥିବା ମହମକୁ ଦୁଧପହିତ ମିଶାଇ ତା'ର ମୁହଁଭିତରେ ଢାଳଦିଆ ଯାଉଥାଏ । ଆଉଜଣେ ଆସି ଉପାୟ କହିଲ ଯେ, ସାବୁନକୁ ଘୋଳ ଦହିରେ ଫେଣ୍ଟି ପିଆଇଦେଲେ ଗାଈଟି ଆରାମ ହୋଇଯିବ, ଆଉଜଣେ କହିଲ ଗାଈଟିର ଦେହରୁ କିଛି ରକ୍ତ ବାହାରଗଲେ ଉପକାର କରବ ପରା ! କିନ୍ତୁ ଏ ସମସ୍ତ ପରାମର୍ଶର ପୂର୍ଣ୍ଣ ପ୍ରୟୋଗ ହେଲ ପରେ ମଧ ଗାଈଟିର ଅବସ୍ଥାରେ କୌଣସି ପରବର୍ତ୍ତନ ଲକ୍ଷ୍ୟ କର ହେଲନାହିଁ । ବେଳେବେଳେ ସେ ଆପଣାର ମୁଣ୍ଡଟି ଉପରକୁ ଟେକ ଦେଉଥାଏ ଏବଂ ସତେଅବା ବଡ଼ କାକୁସ୍ଥ ହୋଇ ସାହାଯ୍ୟ ପ୍ରାର୍ଥନା କଲପର ଧୀରେ ଧୀରେ ଆର୍ତ୍ତନାଦ କର ଉଠୁଥାଏ । ତା'ର ସୁନ୍ଦର ବଡ଼ ବଡ଼ ଆଖିଦିଓଟି କ୍ରମେ ବିବର୍ଣ୍ଣ ଓ ନିଷ୍ପ୍ରଭ ଦେଖାଯାଉଥାଏ । ତା'ପରେ ଦାରୁଣ ଯନ୍ତ୍ରଣାରେ ଅତିଶୟ ପରଶ୍ରାନ୍ତ ହୋଇପଡ଼ି ଗାଈଟି ମୁଣ୍ଡର ଶିଙ୍ଗ ଦୁଇଟିକୁ ନୁଆଁଇ ଆଣୁଥାଏ ଏବଂ ଜିଭଟାକୁ ବଢ଼ାଇଦେଇ ହାଙ୍କାର ହାତକୁ ଚାଟିବାରେ ଲଗିଥାଏ ।

ଉପସ୍ଥିତ ଥିବା ସ୍ତ୍ରୀଲୋକମାନଙ୍କ ଭିତରୁ ଜଣେ ପଚାରିଲ, "ଆମ୍ଭେ-ଙ୍କୁ ଡାକିଲେ ସେ କିଛି ସାହାଯ୍ୟ କର ପାରନ୍ତା ନାହିଁ ?"

"ହଁ, ହଁ, ଜନ୍ତୁଙ୍କର ବେମାର ବିଷୟରେ ତାଙ୍କୁ ଅନେକ ବିଷୟ ଜଣାଅଛି ।"

"ସ୍ମୁଜ୍‌କା, ତୁ ଧଅସି ତା'ପାଖକୁ ଦଉଡ଼ିକରି ଯାଆ ! ଏଇ ଟିକିଏ ଆଗରୁ ସେ ଗୀର୍ଜାରେ ଘଣ୍ଟା ବଜାଉଥିଲା । ତେଣୁ ବର୍ତ୍ତମାନ ଗୀର୍ଜାର ଆଖପାଖରେ ନିଶ୍ଚୟ କୋଉଠି ଥିବ । ହେ ଭଗବାନ ! ବାପା ଘରକୁ ଫେରି ଆସିଲେ କୋଧରେ ନିଆଁ ହୋଇଯିବେ ସିନା ! କିନ୍ତୁ ତଥାପି ଏଥିରେ ଆମର ଆଉ କି ଦୋଷ ଅଛି ?"— ହାଙ୍କା କାଇଁ କାଇଁ ହୋଇ କାନ୍ଦିବାକୁ ଲାଗିଲା ।

ତା'ପରେ ସେଠାରୁ ଉଠିଯାଇ ସେ ଘୁହାଳର ଦୁଆରବନ୍ଧ ଉପରେ ବସିପଡ଼ିଲା ଏବଂ ସେଠାରେ କ୍ରୋଧରେ କାନ୍ଦୁଥିବା ଆପଣାର ପିଲାଟିକୁ ଆପଣା ଶୁଭ୍ରବର୍ଣ୍ଣ ସ୍ତନଟିକୁ ବାହାର କରି ଦୁଧ ଦେବାକୁ ଲାଗିଲା । ତେଣେ ଦୁଧ ଦେଉଥାଏ, ଏଣେ ସଶଙ୍କ ଦୃଷ୍ଟିରେ ଯନ୍ତ୍ରଣାରେ କଷ୍ଟ ପାଉଥିବା ଜନ୍ତୁଟି ଆଡ଼କୁ ଅନାଇ ରହିଥାଏ । ଏବଂ କାଳେ ବୋଉନା ଆସି କେତେବେଳେ ଘରେ ପହଞ୍ଚିଯିବ, ଏହି ଭୟରେ ବେଳେବେଳେ ବଡ଼ ଆଶଙ୍କା ଭାବରେ ବାଡ଼ ସେପାଖକୁ ତରକି ତରକି ଚାହୁଁଥାଏ ।

କିଛି ସମୟ ଗତ ହୋଇଯିବା ପରେ ସ୍ମୁଜ୍‌କା ଅମ୍ବ୍ରୋଜ୍‌କୁ ସାଙ୍ଗରେ ନେଇ ଫେରିଆସିଲା । ଅମ୍ବ୍ରୋଜ୍‌ର ବୟସ ଆସି ଶହେର ସୀମାକୁ ସ୍ପର୍ଶ କରିବାକୁ ବସିଲାଣି । ଗୋଟିଏ ଗୋଡ଼ ନଥିବାରୁ ବାଡ଼ି ଉପରେ ଭରାଦେଇ ବାଟ ଚାଲେ । ତଥାପି ତା'ର ଦେହଟା ସବୁବେଳେ ତାର ପରି ସିଧା ହୋଇ ରହିଥାଏ । ତା'ର ମୁହଁଉପରେ ପୁରୁଣା ଆଳୁପରି ଶୁଖିଲା ଦାଗସବୁ ପଡ଼ି ଆସିଲାଣି । ମୁହଁଟି ଦାଢ଼ି କରି ଝିଅର ହୋଇଛି, କିନ୍ତୁ ତଦ୍ଦ୍ୱାରା ମୁହଁର କଟାଦାଗଗୁଡ଼ିକ ଅଧିକ ସ୍ପଷ୍ଟ ହୋଇପଡ଼ୁଛି । ମୁଣ୍ଡର ବାଳ ଦୁଧଫେଣ ପରି ଧଳା । ଜଟାଗୁଡ଼ାକ ଲମ୍ବିହୋଇ ଆସି ମୁହଁ ଉପରେ ଓ କାନ୍ଧଉପରେ ପଡ଼ିଛି । ଆମ୍ବ୍ରୋଜ୍ ସିଧା ଗାଈଟି ପାଖକୁ ଯାଇ ଏକଦୃଷ୍ଟିରେ ଦେଖିବାକୁ ଲାଗିଲା ।

କହିଲା, "ମୋର ଯେତେଦୂର ମନେହେଉଚି, ତୁମ୍ଭ କପାଳରେ ଆଜି ଚଟକା ମାଉଁସ ଖାଇବାର ଯୋଗ ଲେଖାହୋଇ ରହିଚି ।"

ତା'କଥା ଶୁଣି ଯୋଜିଆ କାନ୍ଦକାନ୍ଦ କହିଲା, "ତୋତେ ଠାକୁରଙ୍କ ଦୋହାଇ, ତୁ ଯେପରି ଅମଙ୍ଗଳ କଥା ତୁଣ୍ଡରେ ଧରନା । ତୋର ଗୋଡ଼ତଳେ ପଡ଼ୁଚି, ତୁ ଯେମିତିହେଲେ ପ୍ରାଣୀଟିର ଜୀବନ ରକ୍ଷା କର । ସବୁରି କି ଅର୍ଣ୍ଣି ଟଙ୍କାର ଗାଈ, ପୁଣି ଏବେ ଫଳ ଯାଇଚି ! ଆମ୍ବ୍ରୋଜ୍, ଯେପରି ହେଉ ପଛକେ, ତୁ ତା'ର ଜୀବନ ରକ୍ଷା କର !"

ଆମ୍ବ୍ରୋଜ୍ ଗୋଟିଏ ଛୁରୀ ବାହାରକରି ଆପଣାର ଜୋତାଉପରେ ଆଗ ତାକୁ ପଜାଇନେଲା, ତା'ପରେ ଆକାଶର ପୃଷ୍ଠଭୂମିଉପରେ ରଖି ଛୁରୀଟିର ଦାଢ଼କୁ ଭଲକରି ଦେଖିନେଲା ଏବଂ ସେଉଠୁ ଗାଈଟିର ପେଟରେ ଗୋଟିଏ ଥାନରେ ଚର୍ କରି କାଟିଦେଲା । କିନ୍ତୁ ରକ୍ତ ବୋହିବାର କୌଣସି ନା'ଗନ୍ଧ ନାହିଁ । ହଁ, କଳା ଓ ଫେଣୁଆ ହୋଇ ମାତ୍ର କେତୋଟା ଠୋପା ବାହାରିଲା, କିନ୍ତୁ ସେ ନବାହାରିବାର ସମାନ ।

ଗୃହପାଖରୁ ସମସ୍ତେ ଉଦ୍‌ଗ୍ରୀବ ହୋଇ ଅନାଇ ରହିଥାନ୍ତି,— କାହାରି ଆଖିରେ ପିଛୁଳା ପଡ଼ୁ ନାହିଁ, ସତେଯେପରି ସମସ୍ତଙ୍କର ନିଶ୍ୱାସ ମଧ୍ୟ ବନ୍ଦହୋଇ ଯାଇଚି !

ଦୁଃଖ ପ୍ରକାଶ କରି ଆମ୍ବ୍ରୋଜ୍ କହିଲା, "ବଡ଼ ବିଳମ୍ବ ହୋଇଗଲାଣି । ହଁ, ବଗୃବି ଜନ୍ତୁଟିର ଅଣ୍ଟାଗୃଣ ବହିବାକୁ ଆରମ୍ଭ କଲାଣି । ହୁଏତ ଗୋମଡ଼କ ବା ଆଉ କୌଣସି ଦୁଃସାଧ୍ୟ ବେମାରି ହୋଇଥିବ । ରୋଗର ଉକ୍ତ ହେଉ-ହେଉ ମୋତେ ଖବର ଦେଇଥିଲେ ହୁଏତ ମୁଁ କିଛି କରିପାରି ଥାନ୍ତି । କିନ୍ତୁ ସେଇ ସ୍ତ୍ରୀଲୋକ ବୁଢ଼ାଙ୍କର ବୁଦ୍ଧି ବା କେତେ ? ଖାଲି କାନ୍ଦି ଜାଣନ୍ତି । ଆଉ କୌଣସି କାମ ପଡ଼ିଲାବେଳକୁ ଆବୁକାବୁ ହୋଇଯାଆନ୍ତି । କାମ କରିବାବେଳେ ଖାଲି ନିକମା ହୋଇ ବସି ବାହୁନିବାରେ ଲାଗିଯାଆନ୍ତି । ଏମାନଙ୍କୁ ମଣିଷ ନକହି ମେଣ୍ଢାପଲ କହିଲେ ଅଧିକ ଠିକ୍ ହେବ !"

କଥା କହୁ କହୁ ଆମ୍ବ୍ରୋଜ୍ ଏକାଧିକବାର ମୁହଁ ଭିତରର ଛେପକୁ 'ଥୂ' 'ଥୂ' କରି ବାହାରକୁ ପକାଇ ଦେଉଥାଏ । କଥା କହିସାରି ସେ ପୁଣିଥରେ

ଗାଈଟିର ଆଖି ଓ ଜିଭକୁ ପର୍ଯ୍ୟାୟକରି ଦେଖିଲା, ତା'ପରେ ଆପଣାର ହାତରେ ଲାଗିଥିବା ରକ୍ତକୁ ଗାଈର ଚମଡ଼ାଉପରେ ଘଷି ପୋଛିଦେଲା ଏବଂ ଯିବାଲାଗି ସଜବାଜ ହେଲା ।

"ଏ ଗାଈଟିକୁ ପୋତିବାଲାଗି ମୁଁ ଗୀର୍ଜାର ଘଣ୍ଟା ବଜାଇବିନାହିଁ ।"

"ହେଇ ବାପା ଆଉ ଆଲେକ୍ ଆସିଲେଣି !"— ଯୁଜ୍‌କା ଅତ୍ୟନ୍ତ ଆଗ୍ରହଭରେ ହୋଇ କହିଲା । କହି ସେ ସେମାନଙ୍କୁ ଭେଟିବବୋଲି ସେଠାରୁ ଉଠି ଦଉଡ଼ିଗଲା । ପୋଖରୀର ସେପାଖରୁ ସେମାନଙ୍କର ଆସିବା ଶବ୍ଦ ଶୁଣାଗଲା, ତା'ପରେ ସେମାନଙ୍କର ଗାଡ଼ୀ ଓ ସେଥିରେ ଯୋଚ୍ଚହୋଇଥିବା ଘୋଡ଼ାମାନେ ଦୃଷ୍ଟିଗୋଚର ହେଲେ । ଅସ୍ତଗାମୀ ସୂର୍ଯ୍ୟର ଶୋଣିତବର୍ଣ୍ଣ ରଙ୍ଗର ଉଦ୍‌ଭାସ ଭିତରୁ ଗାଡ଼ୀଟି ଓ ଘୋଡ଼ାମାନେ ଘନ କୃଷ୍ଣବର୍ଣ୍ଣ ଦେଖା ଯାଉଥିଲେ ।

ଯୁଜ୍‌କା ଚିତ୍କାର କରି ବଡ଼ ପାଟିରେ କହିଲା, "ବାପା, ବାପା, ଆମ ଗ୍ରୁପଗ୍ରୁପିକଆ ଗାଈଟି ବର୍ତ୍ତମାନ ଶେଷ ଅବସ୍ଥାରେ ଆସି ପହଞ୍ଚିଛି । ବୋଉନା ଗାଡ଼ିରୁ ଓହ୍ଲାଇ ପୋଖରୀର ହୁଡ଼ାରେ ଆସୁଥାଏ, ଆଲେକ୍ ଗାଡ଼ୀରୁ ଓହ୍ଲାଇ ତଳେ ଠିଆ ହୋଇଥାଏ । ଗାଡ଼ୀରେ ଗୋଟାଏ ବଡ଼ କାଠଗଡ଼ ବୋଝାଇହୋଇ ରହିଥିବାରୁ ଗାଡ଼ୀଟିକୁ ସେହି ବାହାରେ ରଖି ତାକୁ ଓହ୍ଲାଇ ଆସିବାକୁ ପଡ଼ିଲା ।

ଘୋଡ଼ାକୁ ଅଡ଼ାଇକରି ଆଣୁଆଣୁ ସେ ଉତ୍ତର ଦେଇ କହିଲା, "ମିଛଟାରେ କାହିଁକି ବାଜେକଥା ଗୁଡ଼ାକ କହୁଛୁ ?"

"ନାଇଁ-ନାଇଁ — ବାଜେକଥା ନୁହେଁ, ସତକଥା । ଆନ୍ତୋକ୍ ଗାଈର ପେଟ ଚିରି ରକ୍ତ ବାହାର କରିବାକୁ ଚେଷ୍ଟାକଲା, କିନ୍ତୁ ପାରିଲାନାହିଁ । ଗାଈର ପାଟିରେ ତରଳା ମହମ ପିଆଇ ଦିଆଗଲା, କିନ୍ତୁ ସେଥିରେ କୌଣସି ଫଳ ହେଲାନାହିଁ । ଲୁଣପାଣି ପିଆଇ ମଧ୍ୟ ବଞ୍ଚାଇ ହେଲାନାହିଁ । ନିଶ୍ଚୟ ତାକୁ ଗୋମଡ଼କ ଆସି ଧରିଥିଲା । ଭିତେକ୍ କହୁଛି, ଯେ ଜଙ୍ଗଲଭିତର ବାଘ ତାକୁ ଜଙ୍ଗଲ ଭିତରୁ ତଡ଼ି ବାହାର କରିଦେଲେ ଏବଂ ତା'ପରେ ଗ୍ରୁପଗ୍ରୁପି-

କିଆ ଗାଈ ଭଳେପଡ଼ି ବୋବାଳି ଘୁରିବାକୁ ଲାଗିଲା । ଏବଂ ସେଥିପାଇଁ ସେ ତାକୁ ଆଣି ଏଠାରେ ଘୁରାଇଦେଇ ଗଲେ ।''

''ଘୁପଘୁପିକିଆ ଗାଈ, ଆମ ଗାଈଙ୍କ ଭିତରେ ସବୁଠାରୁ ଭଲ ଗାଈଟି ? ତା'ହେଲେ ଏଠି ଏହି ଶାଧମାନେ ବସି କ'ଣ କରୁଥିଲେ ? ତୁମେମାନେ ଯେପରି ଉପରମୁହାଁ ହୋଇ ଗାଈଗୋରୁଙ୍କର ତତ୍ତ୍ୱ ବୁଝୁଚ, ସେଥିପାଇଁ ତୁମକୁ ସଇତାନରଦଣ୍ଡ ଭୋଗିବାକୁ ପଡ଼ୁ ।''

ସ୍ତ୍ରୀଲୋକମାନେ ଆଶ୍ଚ ହୋଇଗଲେ । ଏ ପର୍ଯ୍ୟନ୍ତ ଭିତେକ୍ ସେଇଠି ରହି ଏଇଟା ସେଇଟା କରି ଘରର ନାନା କାର୍ଯ୍ୟ କରିବାରେ ବ୍ୟସ୍ତ ଥିଲା, ବୋଉନାର ଗରମ ମିଜାଜ ଦେଖି ଭୟରେ ଘୁନଆ ହୋଇ ଯେ ବଗିଗୃଆଡ଼େ ଖସି ବାହାରିଗଲା । ଏପରିକି ହାଙ୍କା ମଧ୍ୟ ଆଚମ୍ବିତ ଓ ଶଙ୍କିତ ହୋଇପଡ଼ି ଦୁଆରବନ୍ଧ ଉପରେ ଠିଆହୋଇ ରହିଲା ।

ବୁଢ଼ା ବୋଉନା ଅନେକ ସମୟ ପର୍ଯ୍ୟନ୍ତ ଏକ ନଜାରେ ଗାଈଟି ଆଡ଼କୁ ଅନାଇ ରହିଲା, ଏବଂ ତା'ପରେ ଚିତ୍କାର କରି କହିଉଠିଲା :

''ହଁ, ହଁ, ତା'ର କଥା ସରିଗଲାଣି । କିନ୍ତୁ ସେଇ ପାଜିଗୁଡ଼ାଙ୍କ ସକାଶେ ହିଁ ଏହି ଘଟଣା ଘଟିଲା ! ମୋ'ର ବେଳକୁ ସବୁ ନିକମାଦାଣ୍ଡି-ଗୁଡ଼ାକ ଆସି ବନ୍ଧାହୋଇଚନ୍ତି ! ଖାଇ ବସିବା ବେଳକୁ ଭୀମସେନ, କିନ୍ତୁ ଗାଈ ଜଗିଲା ବେଳକୁ ସବୁ ଅତୁଆ ! କେଡ଼େ ବଢ଼ିଆ ଗାଈଟାର କି ଦଶା ହେଲା ଦେଖିଲ ! ଏ ଘରୁ ଟିକିଏ କୁଆଡ଼କୁ ଗୋଡ଼ କାଢ଼ିଲେ ହିଁ କୌଣସି ନା କୌଣସି ଦୁର୍ଘଟଣା ଘଟିବ ହିଁ ଘଟିବ, କୌଣସି ନା କୌଣସି ଦୁର୍ଯୋଗ ପଡ଼ିବ ହିଁ ପଡ଼ିବ !''

ସଫେଇ ଦେବାକୁ ଯାଇ ହାଙ୍କା କହିଲା, ''କିନ୍ତୁ ଆଜି ଉପରଓଳି ମୁଁ କ'ଣ ଘରେ ଥିଲି ? ମୁଁ ପରା ମଲ୍ଲିଆମାନଙ୍କ ସହିତ ଆଳୁ ଖୋଳି ଯାଇଥିଲି !''

ରାଗରେ ତମତମ ହୋଇ ବୋଉନା ତା'ଆଡ଼କୁ ମୁହଁ ବୁଲାଇ କହିଲା, ''ତୁ ? ଘରେ କୋଉଠି କ'ଣ ସୁବିଧା ଅସୁବିଧା ହେଲା କି ନହେଲା, ସେକଥା ଦେଖିବାକୁ ତୋ'ର ଟିକିଏ ହେଲେ ଖାତର ଅଛି ? ମୋ'ର ସମ୍ପତ୍ତିଲାଗି ତୁ

କେବେହେଲେ କୌଣସି ହେପାଜତ କରୁ ? ଏମିତଆ ଗାଈଟାଏ ଆଉ ଏ ଚକଡ଼ା ଗୋଟାକରେ କୋଉଠି ମିଳିବ କହିଲୁ ?"

କିଛି ସମୟଯାଏ ଗାଈଟିକୁ ଝୁଣ୍ଟୁର ବୋଗନା ଅନେକ କଥା କହିଲ । ଗାଈଟିକୁ ନାନା ପ୍ରକାରେ ପରୀକ୍ଷା କରି ଦେଖିଲ, ତାକୁ ଉଠାଇ ଠିଆ କରାଇବାକୁ ଚେଷ୍ଟା କଲ ଏବଂ ପାଟି ଆଁ କରାଇ ଭିତରକୁ ଅନାଇ ଦେଖିଲ । ସେତେବେଳକୁ ଗାଈର ନାକବାଟେ ଖର ନିଶ୍ୱାସ ଉଠୁଥାଏ ଓ ପଡୁଥାଏ, ନିଶ୍ୱାସ ମାରିବାବେଳକୁ ତଣ୍ଟି ଭିତରୁ ଘଡ଼ଘଡ଼ ଶବ୍ଦ ଶୁଭୁଥାଏ । ପେଟପାଖରେ କଟାହୋଇଥିବା ଜାଗାରୁ ରକ୍ତର ଧାର କେତେବେଳୁ ବନ୍ଦ ହୋଇ ରକ୍ତ ମୁଣ୍ଡାହୋଇ ବସିଯାଇଥାଏ, ଠିକ୍ ଅଙ୍ଗାରମୁଣ୍ଡା ପରି କଳା ହୋଇ ଦେଖାଯାଉଥାଏ ।

"ବର୍ତ୍ତମାନ ମୁଁ କ'ଣ କରିବି ମୋତେ କିଏ ବୁଦ୍ଧି ଦିଅ ଭଲ ! ବର୍ତ୍ତମାନ ଗାଈଟିକୁ ମାରିଦେଲେ ସବୁଠାରୁ ଭଲ ହୁଅନ୍ତା ନାହିଁ ? ଘର-ପୋଡ଼ରୁ କିଛି ନହେଲେ କୁଟାଖିଅକ ତ ବଞ୍ଚାଇ ରଖିହେବ !"

ଏହିପରି ମନରେ ପାଞ୍ଚି ସେ କଟୁରି ଆଣିବାକୁ ଖଳାଘର ଭିତରକୁ ଗଲ । ଚୁହାଲ ପାଖରେ ପଡ଼ିଥିବା ଗୋଟାଏ ଚକ ଉପରେ ଦୁଇତିନି ଥର ଘଷି ସେ କଟୁରିଟିକୁ ପଜାଇନେଲ ଏବଂ ତା'ପରେ ଦେହରୁ ଆପଣାର କୋଟ୍ ଉତାରିଦେଇ ଓ କମିଜର ହାତ ଦୁଇଟାକୁ ଉପରକୁ ଉଠାଇଦେଇ ତା'ର ଅପ୍ରିୟ କର୍ମଟିକୁ କରିବାକୁ ଉଦ୍ୟତ ହେଲ ।

ପରୁ ହେଲେ କ'ଣ ହେବ, ବର୍ତ୍ତମାନ ଆଖର ସମୟ ଆସି ଉପସ୍ଥିତ ହେଲବୋଲି ସମ୍ଭବତଃ ଜାଣିପାରି ଗ୍ରୁପଗ୍ରୁପିକିଆ ଗାଈ ଧୀରେ ଧୀରେ ଆପଣାର ମୁଣ୍ଡଟିକୁ ଉପରକୁ ଟେକିଲ ଏବଂ ଅତି କ୍ଷୀଣ ଓ ଅସ୍ପଷ୍ଟ ଭାବରେ ଏକ ବିକଳ ଶବ୍ଦ କରି ତଣ୍ଟିରେ କଟୁରି ବସିବା ମାତ୍ରକେ ଚାରି ଗୋଡ଼ ଫାଙ୍କକଟା କରି ନିର୍ଜୀବହୋଇ ଭୂଇଁ ଉପରେ ପଡ଼ିରହିଲ । ପ୍ରାଣବାୟୁ ଉଡ଼ିଯିବା ପୂର୍ବରୁ ତା'ର ଗୋଡ଼ଗୁଡ଼ାକ ଥରେ ଦୁଇଥର ବାତ ମାରିଲପରି ଛଟିପିଟି ହୋଇ ଉଠିଲ । ଏହି କରୁଣ ଦୃଶ୍ୟ ଦେଖୁଦେଖୁ ହାଙ୍କା ଆଉ ମୁଜ୍‌କା ଭୋ' ଭୋ' ଡକା ପାରିବାକୁ ଆରମ୍ଭ କଲେ ।

ଧାରେ ରକ୍ତ ବହିଯାଇ ମାଟିଉପରେ ବହଳ ହୋଇ ବସିଯିବା ପୂର୍ବରୁ କୁକୁର୍‌ଟା ତାହାକୁ ଚାଟି ଖାଇବାକୁ ଆରମ୍ଭ କରିଦେଲା ।

ଆନ୍ତ୍ରେକ୍ ଠିକ୍ ସେହି ସମୟରେ ଆସି ଘଟଣାସ୍ଥଳରେ ପହଞ୍ଚିଥାଏ । କଇଁକଇଁ ହୋଇ କାନ୍ଦୁଥିବା ଆପଣାର ଭାରିଯାକୁ ସେ ରାଗ ତମତମ ହୋଇ କହିଲା :

"ତୁ କାହିଁକି ଶୁଖିଲାଟାରେ କାନ୍ଦୁଚୁ, ବାଲୁଙ୍ଗା ଟା ? ବାପର ଗାଈ ମଲା, ବାପର କ୍ଷତି ହେବ । ସେଥିରେ ଆମର କ'ଣ ହେବ ?"

ଏତକ କହି ସେ ଘୋଡ଼ାମାନଙ୍କୁ ଫିଟାଇବାକୁ ବାହାରିଗଲା । ଅନ୍ତେକ୍ ଘୋଡ଼ାମାନଙ୍କୁ ଖୁହାଳ ଭିତରକୁ ନେଇଗଲା ।

"ଆଳୁଫସଲ ଏବର୍ଷ କେମିତି ହେଇଚି ? ଭଲ ନା ଖରାପ ?"— କୂଅପାଖରେ ବସି ହାତ ଧୋଉଧୋଉ ବୋଉନା ପଚାରିଲା ।

"ଖରାପ କାହିଁକି ହେବ ? ପ୍ରାୟ କୋଡ଼ିଏ ବସ୍ତା ସରୁ ଆଳୁ ମିଳିବ ।"— ଉତ୍ତର ଆସିଲା ।

"ଖୋଳା ହୋଇଥିବା ଆଳୁକୁ ଆଜି ଘରକୁ ଆଣିବା ଗୃହ !"

"ତୁମେ ନିଜେଯାଇ ନେଇଆସ",— ଚେଡ଼ିଦେଇ ଆନ୍ତ୍ରେକ୍ ଉତ୍ତର ଦେଲା । "ମୁଁ ଖାଲି ହାଲିଆ ହୋଇ ପଡ଼ିଚି । ମୋର ଆଉ ଚଳଚଳ ହେବାକୁ ଶକ୍ତିନାହିଁ । ଗୋଟାଏ ପଟ ଘୋଡ଼ାର ମଧ୍ଯ ଗୋଟାଏ ଆଗଗୋଡ଼ ଖଞ୍ଜିଆ ହୋଇଯାଇଚି ।"

"ମୁଳ୍କା, ତୁ ଯାଆ କୁବାକୁ କହିଦେବୁ ଆଜି ଏତକରେ ଆଳୁ-ଖୋଳା ବନ୍ଦ କରିଦେବ । ଖଞ୍ଜିଆ ଘୋଡ଼ାଟାକୁ ଫିଟାଇଦେଇ ସେ ସାନ ଘୋଡ଼ୀଟିକୁ ତା' ଜାଗାରେ ଯୋଚିବ ଏବଂ ଆଜି ଯେକୌଣସି ମତେ ଖୋଳା ହୋଇଥିବା ଆଳୁକୁ ଘରକୁ ନେଇଆସିବ । ଆଜି ରାତିରେ ପାଣି ବରଷିଲା ପରି ମନେହେଉଚି ।"

ବୋଉନାର ଭିତରଟା ରାଗ ଆଉ ଲଜ୍ଜାରେ ସତେଅବା ଟକଟକ ହୋଇ ଫୁଟିବାରେ ଲଗିଥାଏ । ମଝିରେ ମଝିରେ ବସିବା ଥାନରୁ ଉଠିଯାଇ ସେ ନିହତ ହୋଇଥିବା ଗାଈଟିକୁ ଥରେ ଚାହିଁଦେଇ ଫେରି ଆସୁ ଥାଏ ଏବଂ

ନୁଇ ଉତ୍ତେଜିତ ଭାବରେ ମନକୁମନ ଆପଣାକୁ ଭର୍ତ୍ସନା କରିବାରେ ଲାଗିଥାଏ । ପୁଣି କେତେବେଳେ ସେ ତରତର ପାହୁଣ୍ଡ ପକାଇ ଖଳାଘର ଏପାଖରୁ ସେପାଖଯାଏ ଚାଲିଯାଉଥାଏ, ଗୁହାଳ, ଅମାରଘର ଆଉ ଗୋରୁ ବନ୍ଧାହେବା ଅଡ଼ାଆଡ଼କୁ ଅନାଇ ରହୁଥାଏ । ଆପଣାର ଦୁଃଖ ଓ କ୍ଷତିରେ ସେ ଏତେଦୂର ବିହ୍ୱଳ ହୋଇ ପଡ଼ୁଥାଏ ଯେ ସେ ବର୍ତ୍ତମାନ କ'ଣସବୁ କରୁଛି, ସେ ବିଷୟରେ ତା'ର କୌଣସି ଖିଆଲ ମଧ୍ୟ ନଥାଏ ।

"ଭିତେକ୍‌ ! ହେ ଭିତେକ୍‌ !",— ଶେଷରେ ସେ ଗର୍ଜନ କଲାପରି ଭିତେକ୍‌କୁ ବଡ଼ ପାଟି କରି ଡାକିଲା ଓ ଡାକୁ ଡାକୁ ଆପଣାର ଅଣ୍ଡାଗୃହ ପାଖରେ ବନ୍ଧାହୋଇଥିବା ଚମଡ଼ାର ପଟିଟିକୁ ଖୋଲିବାକୁ ଲାଗିଲା । କିନ୍ତୁ ଭିତେକ୍‌ଠାରୁ ସେ କୌଣସି ଜବାବ ପାଇଲାନାହିଁ ।

ସାଇପଡ଼ିଶାର ଲୋକମାନେ ସେତେବେଳକୁ ସେଠାରୁ ଯିଏ ଯାହାର ଘରକୁ ଚାଲିଗଲେଣି । ଏପରି ଏକ ଅସହ୍ୟ ଓ ଅପୂରଣୀୟ ଦୁଃଖ ଭୋଗ କରିବାର ପରିଣାମ ସ୍ୱରୂପ ଯେ ଘରେ ମାର୍‌ ଧର୍‌ ଓ ବାଡ଼ିଆପିଟାର ଅଭିନୟ ହେବ, ଏହିପରି ଅନୁମାନ କରି ସେମାନେ ସେଠାରୁ ଗୋଟି ଗୋଟି ହୋଇ ଖସି ଚାଲିଯାଇଥିଲେ । ବୋରିନା ମଧ୍ୟ ଏହିପରି ଗୋଟାଏ ମୁହଁ ପାଇଁ କେତେ-ବେଳେ ହେଲେ ପଛକୁ ହଟିଯିବାର ଲୋକ ନଥିଲା । କିନ୍ତୁ ଆଜି ଅବଶ୍ୟ ସେ ସେସବୁର କୌଣସି ଲକ୍ଷଣ ପ୍ରକାଶ ନକରି କେବଳ ଆପଣା ଓ ଆଉ ସମସ୍ତଙ୍କ ଉପରେ ବାକ୍ୟବାଣ ନିକ୍ଷେପ କରିବାରେ ଲାଗିଥାଏ ।

କୁଡ଼ିଆ ଆଡ଼କୁ ଅଗ୍ରସର ହୋଇ ଖୋଲା ଝରକାବାଟେ ସେ ଗର୍ଜନ କରି କହିଲା : "ହେ ହାଙ୍କା, ମୋତେ ଭାରି ଭୋକ କଲାଣି । ମୋତେ କ'ଣ ଗଣ୍ଡାଏ ଶୀଘ୍ର ଖାଇବାକୁ ଦେ' !"— କହି ସେ ଆପଣାର ଶୋଇବାଘର ଆଡ଼କୁ ଚାଲିଗଲା ।

ତା'ର ଶୋଇବାଘରଟି ଦେଶର ଯେକୌଣସି ଚାଷୀର ଶୋଇବାଘରର ନକ୍‌ସା ଅନୁସାରେ ତିଆରି ହୋଇଛି । ଦୁଇପାଖରେ ଦୁଇଟି କୋଠରୀ, ମଝିରେ ଓସାରିଆ ପିଣ୍ଡା, ଯିବାଆସିବାର ବାଟ । ପଛପଟକୁ ଦୁଆର । ସାମନାପଟର ଚାରୋଟିଯାକ ଝରକାବାଟେ ଅନାଇଲେ ଦାଣ୍ଡପଟରେ ଥିବା

ବଗିଚ୍ଚ ଓ ରାସ୍ତା ଦେଖାଯାଉଛି । ବଗିଚ୍ଚପଟ କୋଠରୀଟିରେ ବୋଉନା ଓ ତା'ର ଝିଅ ସୁଜ୍କା ଶୋଉଥିଲେ । ଅନ୍ୟପଟଟିରେ ଆନ୍ଥେକ୍ ଆପଣାର ପରିବାରକୁ ନେଇ ରହୁଥିଲା । ଗାଈଆଳ ଚାକର ଓ କୋଠିଆମାନେ ଗୁହାଳଘରେ ଶୋଉଥିଲେ ।

ବେଳ ବୁଡ଼ି ଆସିଲାଣି । ତେଣୁ ଘରଭିତରଟା କ୍ରମଶଃ ଅନ୍ଧାର ହୋଇ ଆସୁଛି । କେବଳ ଯାହା ଛୋଟିଆ ଛୋଟିଆ ଝରକାଗୁଡ଼ିକର ବାଟ ଦେଇ ବାହାରର କିଛି ଆଲୁଅ ଆସି ଘରଭିତରେ ପଡ଼ୁଛି, ସେତିକି । ଏହି ଆଲୁଅ-ଉପରେ ମଧ୍ୟ ବାହାରୁ ଘରଗୁଡ଼ିକ ଓ ବଗିଚ୍ଚରେ ଥିବା ଗଛଗୁଡ଼ିକର କଳାଛାଇ ଆସି ପଡ଼ୁଛି । ଚୂନଧଉଳା କାନ୍ଥଉପରେ କଳା ଫ୍ରେମ୍‌ଭିତରେ ଟଙ୍ଗା-ହୋଇଥିବା ପବିତ୍ର ଦେବଦେବୀମାନଙ୍କର ଚିତ୍ରପଟର କାଚଗୁଡ଼ିକ ଅନ୍ଧାର ଭିତରେ ଜକଜକ କରୁଉଠୁଛି । ଘରଟି ପ୍ରକୃତରେ ବେଶ୍ ଓସାରିଆ, କିନ୍ତୁ ଆଡୁ ନୁଆଁଣିଆ ଥିବାରୁ ଘର ଅଣଓସାରିଆ ପରି ମନେହେଉଛି । ଆଡୁତଳେ ଆଡୁକୁ ସମ୍ଭାଳି ରଖିବାପାଇଁ ବଡ଼ ବଡ଼ କାଠର ଓଗିମାନ । ଘରଯାକ ନାନାପ୍ରକାର ଆସବାବ ଭର୍ତ୍ତି ହୋଇ ରହିଛି, କେବଳ ନିଆଁ ଜଳାହେବା ଜାଗାରେ ହାତଗୋଡ଼ ଚଳବାଭଳି ଟିକିଏ ଖାଲି ଥାନ ଛାଡ଼ି ଦିଆ ହୋଇଛି ।

ସେହିଠାରେ ପହଞ୍ଚି ବୋଉନା ଆପଣା ଗୋଡ଼ରୁ ବୁଟ୍‌ଜୋତା ଓହ୍ଲାଇଦେଲା ଏବଂ ତା'ପରେ ଗୋଟିଏ ଅଧବଖୁରି ଭିତରେ ପ୍ରବେଶ କରି ଭିତରୁ କବାଟ ବନ୍ଦ କରିଦେଲା । ଗୋଟିଏ ଝରକାର କାଚଉପରୁ ଯେ ପର୍ଦ୍ଦା ଉଠାଇନେବା ମାତ୍ରକେ ସୂର୍ଯ୍ୟାସ୍ତରାଗର ରକ୍ତରଙ୍ଗ ବନ୍ୟାର ଜଳପରି ସମସ୍ତ ଘରଟିକୁ ପ୍ଳାବିତ କରିଦେଲା ।

ବଖରାଟି ଅତି ସଙ୍କୀର୍ଣ୍ଣ, ଏଠାରେ ମଧ୍ୟ ନାନାପ୍ରକାର ଘରକରଣାର ଦରବମାନ ଭର୍ତ୍ତି ହୋଇ ରହିଛି । ଗୋଟାକପରେ ଗୋଟାଏ ହୋଇ କେତେ ଅଲଗୁଣି ଉପରୁ କେତେକେତେ ଲୁଗାପଟା ଓ ସୁକ୍‌ମାନା (ପୋଲଣ୍ଡର ଚାଷୀମାନେ ବ୍ୟବହାର କରୁଥିବା ଏକ ଲମ୍ବା କୋଟ୍) ଝୁଲିକରି ରହିଛି । ଏଠିସେଠି ଗଦାଗଦା ହୋଇ ସୂତା, କୁଚ କୁଚ ହୋଇ ମେଣ୍ଢାମାନଙ୍କ

ଦେହରୁ କଟାହୋଇ ଆସିଥିବା ପଶମ । ଅଖାମାନଙ୍କରେ ଭର୍ତ୍ତି ହୋଇ ଚଢ଼େଇପରମାନ ମଧ୍ୟ ସାଇତା ହୋଇ ରହିଚ । ବୋଉନା ଅଲଗୁଣି ଉପରୁ ଗୋଟିଏ ଧଳାରଙ୍ଗର ସୁକ୍‌ମାନା କାଢ଼ି ଆପଣା ହାତରେ ଧରିଲା, ନାଲରଙ୍ଗର ଗୋଟିଏ କମରପଟି ବାହାର କରି ଆଣିଲା, ତା'ପରେ କେତେ-ସମସ୍ତ ପର୍ଯ୍ୟନ୍ତ ଶସ୍ୟ ପୂର୍ଣ୍ଣହୋଇ ରହିଥିବା ଘୁମ୍ପମାନଙ୍କରେ ହାତ ପୂରାଇ କ'ଣସବୁ ଦେଖିଲା । ସେଠୁ ଆଉ ପଦୁଣ୍ଡେ ଆଗକୁ ଆସି ଗୋଟାଏ କଣକୁ ଚମଡ଼ା ଓ ପୁରୁଣା ଲୁହାର ଜିନଷପାତିଗୁଡ଼ାକ ଉପରେ ମଧ୍ୟ ହାତ ଅଣ୍ଡାଳି-ନେଲା । ଏତିକିବେଳେ ଆରଘରୁ ହାଙ୍କାର କଣ୍ଠସ୍ୱର ଶୁଣିପାରି ସଙ୍ଗେ ସଙ୍ଗେ ପର୍ଦ୍ଦାଟାକୁ ଟାଣିଦେଲା ଏବଂ ଶସ୍ୟ ପରି ରହିଥିବା ଘୁମ୍ପଭିତରେ ପୁଣି ହାତ ବୁଲାଇବାକୁ ଲଗିଲା ।

ଝରକା ତଳକୁ ତା'ର ରାନ୍ଧିଖୋଜନ ସଜଡ଼ାହୋଇ ରହିଥାଏ । ଘ୍ରାମକୁଣ୍ଡ ପରି ଗୋଟାଏ ଏଡ଼େ ବଡ଼ ପାତ୍ରରେ ବନ୍ଧାକୋବି ପତ୍ର ରନ୍ଧା-ହୋଇଥିବା ମାଉଁସ,— ବେଞ୍ଚ ଉପରେ ଥୁଆ ହୋଇଥିବା ସେହି ପାତ୍ରଟିରୁ ମହମହ ସଜରନ୍ଧାର ବାମ୍ଫ ବାହାରିଯାଉଚ । ପାଖରେ ଆଉ ଗୋଟିଏ ଆଲଆରେ ରଖାହୋଇଥିବା ଅଣ୍ଡାସନ୍ତୁଳାର ମହକ ପବନ ଭିତରକୁ ଆସି ମାଉଁସ ତୁ'ଣର ମହକ ସହିତ ଏକାଠି ହୋଇ ମିଶିଯାଉଚ ।

ବୋଉନା ପଚାରିଲା, "ଆଜି ସକାଳେ ଭିତେକ୍ ଗାଈପଲକୁ କେଉଠିକି ଚରାଇବାକୁ ନେଇଥିଲ ?"—କହି ପାଉଁରୁଟିର ମୁଣ୍ଡାଟାରୁ କୁଲପରି ଗୋଟାଏ ବଡ଼ ଚୁରୁଲା କାଟିବାକୁ ଲଗିଲା ।

"ତୋଟା ଆଡ଼କୁ । ତୋଟା ଜଙ୍ଗଲ ସେଠାରୁ ଗାଈପଲକୁ ହୁରୁଡ଼ାଇଦେଲ ।"

"ଶଳା ଗୋରୁଖିଆ ଶାଗୁଣା ଗୁଡ଼ାକ ! ସେହିମାନେ ହିଁ ମୋର ଗାଈକୁ ମାରିଚନ୍ତି ।"

"ହିଁ ଆମର ନାଲ ଛୁପଛୁପିକିଆ ଗାଈଟି ଦଉଡ଼ି ଦଉଡ଼ି ଏପରି ଧଇଁସଇଁ ହୋଇ ଯାଇଥିଲ ଯେ ତା'ଫଳରେ ତା'ର ପେଟରେ କି ଛାତିରେ କିଷ୍ଟପୁ କେଉଁଠି କ'ଣ ନଷ୍ଟପୁ ଫୁଲିଗଲା ।"

"ଶଳା ଭିକମଗା କୁକୁରଗୁଡ଼ାକ ! ସେଠି ଆମେ ଆମର ଗାଈ ନେଇ ଚରାଇଲୁ ତ ସେମାନଙ୍କ ବାପର କ'ଣ ଯାଉଥିଲା ? ସରକାରର ଆଇନ୍ ବହିରେ ଏଡ଼େ ଏଡ଼େ ଅକ୍ଷରରେ ତ ଏହି ଆଇନ୍ ଲେଖାହୋଇ ରହିଚି ! କିନ୍ତୁ ତଥାପି ଶଳାଗୁଡ଼ାଙ୍କର ଆଖିକୁ ଦିଶୁନାହିଁ ଯେ ଆମେ ସେଠାକୁ ଟାଇ ଚରାଇ ନେଲେ ହିଁ ସେମାନେ ଗାଈପଲକୁ ସେଠାରୁ ତଡ଼ି ବାହାର କରି ଦେଉଚନ୍ତି । ଆଉ କହୁଚନ୍ତି ଯେ ଏପରି ବେଆଇନ୍ ଗାଈ ଚରାଇବାକୁ ଆମର କୌଣସି ଅଧିକାର ନାହିଁ ।"

"ସେମାନେ ସବୁ ଗୃହୀଙ୍କ ଗାଈଙ୍କୁ ମଧ୍ୟ ଠିକ୍ ଏହିପରି ତଡ଼ି ବାହାର କରି ଦେଇଚନ୍ତି ! ଖାଲି କ'ଣ ସେତିକି କି,— ଭିଲେଜ୍‌ର ଗୃହକରଟୋକାକୁ ମାଡ଼ ମାରି ନୋଲା ଫଟାଇଛନ୍ତି ।"

"ଆଚ୍ଛା, ଏଡ଼େ ଗର୍ଭ ସେମାନଙ୍କର ? ମୁଁ ହୁଏତ କଚେରିକୁ ଯାଇ ମକଦ୍ଦମା କରିବି, ନଚେତ୍ ସରକାରୀ କମିଶନରଙ୍କର ଅଫିସରେ ଅଭିଯୋଗ କରିଆସିବି । ବିକା ହୋଇଥିଲେ ମୋର ଗାଈ ପଚିଶି ଟଙ୍କାରେ ବିକା ହୋଇଥାଆନ୍ତା !"

"ନିଶ୍ଚୟ, ନିଶ୍ଚୟ !"— ହ୍ୱାଙ୍ଗ ମୁଣ୍ଡ ଟୁଙ୍ଗାରି ଉତ୍ତର ଦେଲା । ଯାହାହେଉ ଭାଗ୍ୟକୁ ବାଘାର ଚାରଟା ଆଜି ତା'ଉପରେ ବରଷିଲାନାହିଁ, ଏହା ଭାବି ସେ ମନେ ମନେ ଭାରି ଆଶ୍ୱସ୍ତି ଅନୁଭବ କରୁଥାଏ ।

"ଆନ୍‌ଟ୍ରେକ୍‌କୁ ଯାଇ କହିଦେ', ଆଜି ଉତ୍ତକ ଘରକୁ ଆଣିପାରିବା ଘରେ ସେମାନେ ସଙ୍ଗେ ସଙ୍ଗେ ଯାଇ ଗାଈଟାରୁ ଗ୍ଭଲ ଉତାରିବେ ଏବଂ ସାଗୁଆଡ଼ ତିଆରି କରି ରଖିବେ । ମୁଁ ସାଇରୁ ଫେରିଲେ ଅବଶ୍ୟ ଯାଇ ସେମାନଙ୍କୁ ସାହାଯ୍ୟ କରିବ । ଫଡ଼ିଆଗୁଡ଼ାକୁ ନେଇ ଓଗ୍ରରେ ଟାଙ୍ଗିଦେବାକୁ ପଡ଼ିବ, ଯେପରି କି କୁକୁର ବା ମାଛି ସେଠାରେ ଯାଇ ପହଞ୍ଚି ପାରିବେନାହିଁ ।"

ଭୋଜନ ସମାପନ କରି ବାହାରକୁ ଯିବବୋଲି ବୋରିନା ଲୁଗାପଟା ପିନ୍ଧିବାକୁ ଗଲା । କିନ୍ତୁ ସେତିକିବେଳେ ତା'ର ଦେହଟା ଏପରି ଗରୁ ଲାଗିଲା ଓ ହୃଦର ପ୍ରକୋପରେ ଆଖି ଉପରଟା ଏପରି ମାଡ଼ିମାଡ଼ି ପଡ଼ିଲା

ସେ ସେ ଯାଇ ନଥି କର ବଛଣା ଉପରେ ପଡ଼ିଗଲା ଏବଂ ଆଗ କେତେଦଣ୍ଡ ଶୋଇପଡ଼ି ତା'ପରେ ବାହାରିବ ବୋଲି ସ୍ଥିର କଲା ।

ହାଙ୍କା ଆସି ଅଇଁଠାବାସନଗୁଡ଼ାକ ଘରଭିତରୁ ଉଠାଇ ନେଇଗଲା । ମଝିରେ ମଝିରେ ସେ ଝରକା ପାଖକୁ ଯାଇ ଉର୍ଦ୍ଧ୍ୱମାର୍ଗ ଆନ୍ତେକ୍ ଆଡ଼କୁ ଅନାଉଥାଏ । ଘର ସାମନାରେ ଥିବା ବାହାରପିଣ୍ଡାରେ ବସି ଆନ୍ତେକ ସେତେବେଳେ ତା'ର ରାତ୍ରିଭୋଜନରେ ବ୍ୟସ୍ତ ଥାଏ । ଆପଣାର ଖାଇବା-ଥାଳୀ ପାଖରୁ ସେ ବେଶ୍ ଖଣ୍ଡେଦୂରକୁ ବସିଥାଏ ଏବଂ ପାତ୍ରରୁ କୋଶ କୋଶ ଗ୍ରାମଚପରେ ଗ୍ରାମଚ ଖାଇବାରେ ଲାଗିଥାଏ । ତା'ର ହାତରେ ବା ଖାଇବାରେ କୌଣସି ତ୍ୱରା ନଥାଏ । ମଝିରେ ମଝିରେ ଖାଇବାଥାଳୀ ଉପରୁ ମୁହଁ ଟେକି ସେ ଗଡ଼ିଆ ଆଡ଼କୁ ଅନାଇ ଦେଉଥାଏ । ସୂର୍ଯ୍ୟାସ୍ତର ଛଟା ବାଜି ଗଡ଼ିଆ ପାଣିର ଉପରଭାଗରେ ସେତେବେଳକୁ ସୁନା ଓ ତାଉରଙ୍ଗର କେତେ କୁଣ୍ଡଳ କାଟିହୋଇ ଯାଉଥାଏ । ସେହି କୁଣ୍ଡଳକଟାର ଉତ୍ସବ ଭିତରେ ଦଳେ ଧଳା ବତକ ପହଁରିବାରେ ଲାଗିଥାନ୍ତି । ସତେଅବା ଇନ୍ଦ୍ରଧନୁର ଗ୍ରଶପାଖରେ ମେଞ୍ଚାଏ ଧଳାମେଘ ଆସି ଲାଗିଯାଇଚ, ପୋଖରୀ ଆଡ଼କୁ ଅନାଇଲେ ହଠାତ୍ ସେହିପରି ମନେହେଉଥାଏ । ସେମାନଙ୍କର ଏଣ୍ଟଉପରୁ ବିନ୍ଦୁ ବିନ୍ଦୁ ପାଣି ଖସିପଡ଼ିଲା ବେଳକୁ ରକ୍ତରାଗମଣିର ହାରମାନ ଖସି ପଡ଼ିଲା ପରି ଭ୍ରମ ହେଉଥାଏ ।

ମଣିଷମାନଙ୍କର ଭିଡ଼ ଓ କୋଳାହଳରେ ଗାଆଁ ଭିତରଟା ଉଠୁଚି ଆଉ ପଡୁଚି । ପୋଖରୀର ଦୁଇପାଖରେ ପଡ଼ିଥିବା ଦୁଇଟିଯାକ ରାସ୍ତାଉପରେ ଧୂଳିର ମେଘମାନ ଘଟଳ ବାନ୍ଧି ରହିଚ । ଗାଡ଼ୀମାନ ଗ୍ଳଲିଗଲା ବେଳକୁ କେଁ କଟର ଶବ୍ଦରେ କାନଅତଡ଼ା ପଡ଼ିଯାଉଚ । ପୋଖରୀ ଭିତରେ ପ୍ରାୟ ଆଣ୍ଠୁଏ ପାଣିରେ ଗୋରୁପଲ ଠିଆହୋଇ ରହିଚନ୍ତି ଏବଂ ରହିରହି ଘଡ଼ିକେ ଦଣ୍ଡକେ ସଅଁ ସଅଁ କରି ପାଣି ପିଇବାରେ ଲାଗିଚନ୍ତି । ଥରେ ପାଣି ଶୋଷିନେଇ ସେମାନେ ଆପଣାର ସତେଅବା ଚିନ୍ତାସଙ୍କୁଳ ମସ୍ତକ-ଗୁଡ଼ିକୁ ଉପରକୁ ଟେକୁଚନ୍ତି । ସେମାନଙ୍କର ଦାନ୍ତର ମାଢ଼ିଭିତରୁ ମୁକୁତା ଝରିବାପରି ଜଳବିନ୍ଦୁର ହାର ମାନ ଝରିପଡୁଚି । ପୋଖରୀର ସେପାଖରେ

ଥିବା ଧୋବାଘରଠ ମଧ୍ୟ ଯାବତୀୟ କାର୍ଯ୍ୟବ୍ୟସ୍ତତାରେ ବଡ଼ ତତ୍ପର ହୋଇ-ଉଠିଛି । ଧୋବଣୀମାନେ ହାତରେ କାଠର ମୁଷଳମାନ ଧରି କାଚୁଥିବା ଲୁଗାପଟା ଉପରେ ବଡ଼ ବଡ଼ ପାହାର ପକାଇବାରେ ଲାଗିଛନ୍ତି ।

"ଆନ୍ଦ୍ରେକ୍, ଏ କାଠଗୁଡ଼ାକୁ ଟିକିଏ ଚିରଦେଇ ଯାଆ ! ମୋ'ଦେଇ ଏ କାମ ହୋଇପାରିବ ନାହିଁ,"— ଲାଜ ଗରଗର ହୋଇ ଆନ୍ଦ୍ରେକ୍‌ର ଘରଯା ଆନ୍ଦ୍ରେକ୍‌କୁ ଡାକି କହିଲା । ଗେରସ୍ତକୁ ତା'ର ପ୍ରାଣେ ଭୟ । କାରଣ ଟିକିଏ ସୁଯୋଗ ପାଇଲେ ତା'ମୁହଁରୁ ଯେ କୋଉ ବାଣ ବରଷି-ପଡ଼ିବ ବା ଦେହ ଉପରେ ଯେ ଉତ୍ତମ-ମଧ୍ୟମ ଆସି ବାଜିଯିବ, ସେକଥା କିଏ କହିପାରିବ ?

ଆନ୍ଦ୍ରେକ୍ ହୁଁ କି ଚୁଁ କୌଣସି ଜବାବ ଦେଲାନାହିଁ, ସତେ ଯେପରି ଘରଯାର କଥା ଯାଇ ତା'କାନରେ ବାଜିନାହିଁ, ସେହିପରି ଅଭିନୟ କରିବାକୁ ଲାଗିଲା । ଘରଯାର ମଧ୍ୟ ଭରସି କରି ଆଉ ଥରେ ତାକୁ ବୋଲି ବତାଇବାକୁ ସାହସ ହେଲାନାହିଁ । ତେବେ ଆଉ ଗୃହୀ କଣ, ଆପଣା ଦ୍ୱାରା ଯେତିକି ହୋଇପାରିବ, କାଠଗଡ଼ ଗୁଡ଼ାକରୁ ସେତିକି ନାଲୁଆଣି ସଂଗ୍ରହ କରି ଆଣିବାକୁ ସେ ବାହାରି ପଡ଼ିଲା । ଗେରସ୍ତ ଅସଲ ମନୁଆ, ଏତେ ଦିନମାନର ହାଡ଼ଭଙ୍ଗା ମେହନତ ପରେ ତା'ର ଦେହରେ ସତେଅବା ଆଉ ଜୀଅ ନଥିଲା । ସେ ଯୋଉଠି ବସିଥିଲା, ସେହିଠାରେ ବସିରହି ବାଆଁ-ରେଇ ହେଲା ପରି ପୋଖରୀର ସେପାଖ ହୁଡ଼ାକୁ ଅନାଇ ରହିଲା । ସେପାଖ ହୁଡ଼ାରେ ଗୋଟିଏ ଶ୍ରେଣିଆ ଘର—ଚୂନ ଧଉଳା କାନ୍ଥ ଓ କାଚଦିଆ ଝରକା ଉପରେ ଅସ୍ତଗତ ସୂର୍ଯ୍ୟର ଆଭା ପଡ଼ି ଚକଚକ ଦେଖାଯାଉଛି । ଘରର ଗୁରିପାଖରେ ଅଳପ ଉଚ୍ଚ ଗୋଟିଏ ପାଚେରୀ ବୁଲିଛି, ପାଚେରୀ ସେପାଖରୁ ଘରଅଗଣାରେ ଥିବା ଡାଲିଆ ଗଛର ସୁରଙ୍ଗ ଫୁଲଗୁଡ଼ିକ ଉର୍ଦ୍ଧ୍ୱମାରି ଅନାଇଲା ପରି ଦେଖାଯାଉଛି । ଫୁଲଗୁଡ଼ିକ ଘରକାନ୍ଥର ଧବଳ ପୃଷ୍ଠଭୂମି ଉପରେ ଭାରି ଚମତ୍କାର ଶୋଭା ଧାରଣ କରିଛି । ଘରଟିର ଆଗରେ ଥିବା ଫଳବଗିଚାର ଉଚୁଆଳ ଭିତରେ କାହାର ଏକ ଡେଙ୍ଗା ଦେହ ଗୁଲିଯାଉଥିବା ପରି ମନେ ହେଉଛି । ହଁ, ସେହି ଆକୃତିଟି ବଗିଚା

ଭିତରୁ ଦାଣ୍ଡପିଣ୍ଡା ଉପରକୁ ଉଠିଗଲା ଓ ଦେଖୁଦେଖୁ ଘର ଭିତରକୁ ଅଦୃଶ୍ୟ ହୋଇଗଲା ;— କିଏ ବୋଲି ଚିହ୍ନି କରି କହିବା ଆଉ ସମ୍ଭବ ହୋଇ ପାରିଲାନାହିଁ ।

ବସିଥିବା ଜାଗାରୁ ଆନ୍ତ୍ରେକ୍ ବାପର ଘୁଙ୍ଗୁଡ଼ିଶବ୍ଦ ଶୁଣିବାକୁ ପାଇଲା । ଶୁଣିବା ମାତ୍ରକେ ତା'ର ବ୍ରହ୍ମ ଏକାବେଳେକେ ଜଳି ଉଠିଲା । ଅଧଣସ୍ଥ ଉତ୍କ୍ଷିପ୍ତ ହୋଇ ସେ କହିଉଠିଲି, "ସେ ସବୁ ଘରର ମାଲିକ, ସେ ଧନମାନ ଶୋଇ ରହିଲେ ତୁ ପାଟି ଫିଟାଇବାକୁ କିଏ ? ତୁ'ତ ମୂଲିଆ, ଘରର ସବୁ ପାଇଟି କରିବୁ, ଧନ ଯାଇ ବୁଢ଼ା ହେଲେ ମଧ୍ୟ ପାଇଟି କରୁଥିବୁ !"

ଦୁଆର ଭିତରକୁ ଉଠିଯାଇ ସେ ଗାଈଟି ଉପରେ ଆଉ ଥରେ ଆଖି ବୁଲାଇ ଦେଖିଲି ।

"ଗାଈଟା ସିନା ବାପର ଗାଈ, ତଥାପି ଏଥିରେ ଆମକୁ ମଧ୍ୟ ଭାରି ଲୋକସାନ ପଡ଼ିଲି ।"— ଭାରିଯାକୁ ଉଦ୍ଦେଶ୍ୟ କରି ଆନ୍ତ୍ରେକ୍ କହିବାକୁ ଲାଗିଲି । ଭାରିଯା ସେତେବେଳକୁ କାଠଗଡ଼ରୁ ନାଗୁଆଣି ବାହାର କରିସାରି ଗାଡ଼ୀପାଖକୁ ଯାଇଥାଏ । ଠିକ୍ ଅଳ୍ପସମୟ ପୂର୍ବରୁ ଗାଡ଼ୀ ସହିତ ଜୁବା ଆସି ଘରେ ପହଞ୍ଚିଥାଏ ।

"ଆଳୁ ସାଇତି ରଖିବା ପାଇଁ ଏ ପର୍ଯ୍ୟନ୍ତ ଗାତ ଖୋଳା ସରିନାହିଁ । ତେଣୁ ବର୍ତ୍ତମାନ ପାଇଁ ଆଳୁଗୁଡ଼ିକୁ ଘରକୋଠାରେ ଗଦାକରି ରଖିବାକୁ ପଡ଼ିବ ।"

"କିନ୍ତୁ ବାପା ସବୁ କହିଗଲେ ଯେ ତୁମେ ଆଗ ଗାଈଟାରୁ ଛାଲ ଉତାରି ଦେବ ଆଉ ଫଡ଼ିଆବୁଡ଼ାକ ଅଲଗା କରିଦେବ ? ଜୁବା ତ ଘରକୁ ଆସିଲଣି, ସେ ମଧ୍ୟ ତୁମକୁ ଏଥିରେ ସାହାଯ୍ୟ କରିବ ।"

"ଏହି ଦୁଆରଟାରେ ଗାଈ ଆଉ ଆଳୁପାଇଁ ଯଥେଷ୍ଟ ଥାନ ହୋଇଯିବ,"— ଖଳାଘରର ଦୁଆରଟାକୁ ମେଲାକରି ଦେଉଦେଉ ଜୁବା କହିଲି ।

ଆନ୍ତ୍ରେକ୍ ତେଚ୍ଚି ଦେଲାପରି ଉତ୍ତର ଦେଲା, "ମୁଁ କ'ଣ କଂସେଇ-ଖାନାର କଂସେଇ ହୋଇଛି ଯେ ମଲା ଗାଈଟା ଦେହରୁ ଛାଲ ଉତାରିବାକୁ ଯିବି ?"

ଆଉ କାହାରି ତୁଣ୍ଡରୁ କୌଣସି କଥା ଶୁଣା ଗଲାନାହିଁ । ଖଳାଘର ଦୁଆର ଉପରେ ଆଳୁ ଗଦା କରାଯାଉଥିବାର ଶବ୍ଦ ଶୁଣାଯିବାକୁ ଲାଗିଲା ।

ଇତ୍ୟବସରରେ ସୂର୍ଯ୍ୟଦେବ ମାଆ କୋଳକୁ ଯାଇ ସାରଲେଣି । କିନ୍ତୁ ସୂର୍ଯ୍ୟାସ୍ତପରର ଗାଢ଼କୃଷ୍ଣ ରକ୍ତ ଓ ସୁନେଲି ରଙ୍ଗମାନ ପୋଖରୀପାଣିର ସମତଳ ଉପରେ ତଥାପି ପ୍ରତିବିମ୍ବିତ ହୋଇ ରହିଥାଏ । ପୋଖରୀର ସ୍ଥିର ଜଳ ରହି ରହି ସତେଅବା କମ୍ପି ଉଠିବା ପରି ମନେ ହେଉଥାଏ, ସତେଅବା କେଉଁ ନିଦ୍ରାଳସ କ୍ଷୀଣ ଶବ୍ଦାଘାତରେ ସ୍ପନ୍ଦିତ ହୋଇ ଉଠୁଥାଏ ।

ମୁହୂର୍ତ୍ତକ ମଧ୍ୟରେ ସମସ୍ତ ଜନବସତିଟି ରାତିର ଅଗଣିତ ଛାଇଭିତରେ ନିମଗ୍ନ ହୋଇ ରହିଲା, ଶରତ୍‌ରାତିର ଗମ୍ଭୀର ନିସ୍ତବ୍ଧତାର ଆବରଣ ତଳେ ଲୁକ୍‌କାୟିତ ହୋଇ ରହିଲା । ବାସ ଘର ଗୁଡ଼ିକର ଆକୃତି କ୍ରମେ ଗ୍ରେଟ ହୋଇଆସିଲା । ସେଗୁଡ଼ିକ ସତେ ଯେପରି କ୍ରମଶଃ ମାଟି ଭିତରେ ପୋତି-ହୋଇ ପଡ଼ିବାକୁ ବସିଲେ, ସେମାନଙ୍କର ଉପରେ ଧୂମ୍ରାବୃତ୍ତ କଳେବର ପ୍ରସାରି କରି ଠିଆ ହୋଇଥିବା ବୃକ୍ଷ ସମୂହର ଗର୍ଭଭିତରେ ସେମାନେ ସତେ ଅବା ବିଲୀନ ହୋଇଗଲେ । ଆନ୍ତ୍ରେକ୍ ଆଉ କୁବା ଏକାଠି ମିଶି ଆଳୁକୁ ଗାଡ଼ିଉପରୁ ଖଳାଘର ଦୁଆରକୁ ବୋହି ନେଉଥାନ୍ତି । କାଙ୍କା ଆଉ ମୁଜକା ଏଠିସେଠି ନାନା ଘରକରଣାରେ ବ୍ୟସ୍ତ ଥାଆନ୍ତି । ହୁଏତ ବତକଗୁଡ଼ାଙ୍କୁ ପୋଖରୀ ଆଡୁ ହୁରୁଡ଼ାଇ ଘରକୁ ଆଣୁଥାନ୍ତି ବା ଲେକ ଦାଉରେ ଗଣଗଣ ହୋଇ ପିଣ୍ଡା ଉପରକୁ ଉଠି ଆସୁଥିବା ଘୁଷୁରି ଗୁଡ଼ାକୁ ଖାଇବାକୁ ଦେବାରେ ବ୍ୟସ୍ତ ଥାଆନ୍ତି । ଏସବୁ କାମ ସରିଲେ ତେଣେ ଗାଈ ଦୁହିଁବା ମଧ୍ୟ ବାକି ରହିଛି । ଭିତେକ୍ ମଧ୍ୟ ଏଇ ଅଳ୍ପସମୟ ହେଲା ସେମାନଙ୍କୁ ଗୋଠରୁ ନେଇ ଘରକୁ ଫେରିଛି ଓ ସେମାନଙ୍କ ଆଗରେ ପୁଳାଏ ପୁଳାଏ ପାଳକୁଟା ପକାଇ ଦେଇଛି । ମୁହଁ ପାଖରେ କୁଟା ପଡ଼ିଥିବାତକ ସେମାନେ ଆଉ ଦୁଧ ଦୁହାଁ ହେଲାବେଳେ କୌଣସି ହଲ୍ଲପଲ୍ଲ କରିବେ ନାହିଁ ।

ମୁକ୍‌ନା ସକବାଜ ହୋଇ ପଡ଼ିଲ ଗାଈଟିକୁ ଦୁହିଁବାକୁ ଯାଉଚ, ଏହି ସମୟରେ ଥରଥର ଗଳାରେ ଭଟେକ୍ ତାକୁ ଡାକି କହିଲ, "ମୁକ୍‌ନା, ଆଜି ଖାମିନ୍ଦ ମୋ'ଉପରେ ଭାରି ରାଗିଚନ୍ତି, ନୁହଁ ?"

ମୁକ୍‌ନା ଉତ୍ତର ଦେଇ କହିଲ, "ହେ ଭଗବାନ୍, ନରାଗିଚନ୍ତି ବୋଲି କ'ଣ ଲେଶମାତ୍ର ସନ୍ଦେହ କରିବାକୁ ଅଛ ? ସେ ତ ତୋତେ ଆଗ ପାହାରେ ଦ'ପାହାର ପକାଇ ତା'ପରେ ଯାଇ ମନ ଶାନ୍ତ କରିବେ ବୋଲି ବସିରହି ଅପେକ୍ଷା କରିଚନ୍ତି ।"— କହି ସେ ଆପଣାର ମୁହଁକୁ ଆଲୁଅ ଆଡ଼କୁ ବୁଲାଇନେଲ ଏବଂ ଗାଈ ଦୁହିଁବାକୁ ହାତ ବଢ଼ାଇଲ । ମାଛିଗୁଡ଼ାକ ଭଣଭଣ ହୋଇ ଭାରି ହଇରାଣ କରୁଥାନ୍ତି । ସେମାନଙ୍କର ଦାଉରେ ଅସ୍ଥିର ହୋଇ ଗାଈଟା ଆପଣାର ପୁଚ୍ଛକୁ ଏପରି ଭାବରେ ହଲାଇଦେଲା ଯେ ତାହା ଆସି ମୁକ୍‌ନାର ମୁହଁ ଉପରେ ପିଟିହୋଇଗଲ ।

"କିନ୍ତୁ ଜଙ୍ଗଲଭିତର ଲୋକମାନେ ଗାଈଗୋଠକୁ ଏପରି ନିର୍ଘାତିଆ ହୋଇ ତଡ଼ିଦେଲେ, ସେଥିରେ ମୋର ଆଉ କି ଦୋଷ ରହିଲ ? ସରକାରି ଜଗୁଆଳଟା ମୋତେ ବି ମାଡ଼ ମାରିବବୋଲି ବାହାରିଥିଲ, କିନ୍ତୁ ମୁଁ ଆଖିବୁଜି ସେଠାରୁ ଦଉଡ଼ି ପଳାଇ ଆସିଲି । ବାଟରେ ଦେଖିଲି ନାଲି ଛିଟପିଟିପିକିଆ ଗାଈଟା ଭୂଇଁରେ ପଡ଼ି ବଡ଼ କରୁଣ ଭାବରେ ବୋବାଳି ଛାଡୁଚି । ତେଣୁ ତାକୁ ମୁଁ ସେଠାରୁ ଅଡ଼ାଇକରି ଘରକୁ ନେଇ ଆସିଲି ।"

ସେ ଆଉ ଅଧିକ କିଛି କହିଲ ନାହିଁ । ମୁକ୍‌ନା ବେଶ୍ ଶୁଣିବାକୁ ପାଇଲ ଯେ ସେ ନାକ ସୁଉଁ ସୁଉଁ କରି ଚୁପ୍‌ଚୁପ୍ କାନ୍ଦିବାରେ ଲାଗିଚ ।

"ଭଟେକ୍ ତୁ କଣ କଅଁଳା ବାଛୁରି ହୋଇଚୁ ଯେ ଏଇ କଥାରେ କାନ୍ଦିପକାଉଚୁ ? ଗୁନ ହ ! ବାପା କ'ଣ ଆଗରୁ ତୋତେ କେବେ ମାରିନାହାନ୍ତି ଯେ ତୁ ତାଙ୍କର ମାରିବାକୁ ଆଜି ନୂଆ ହୋଇ ଡରୁଚୁ ?"

"ନାଇଁ—ନୂଆ ହୋଇ ଡରିବି କାହିଁକି ? ତାଙ୍କର ମାଡ଼ ତ ମୁଁ କେତେଥର ସହିଚି ! କିନ୍ତୁ ଏହି ମାଡ଼କୁ ମୁଁ କେତେବେଳେ ହେଲେ ସହିପାରେନାହିଁ । ସେଥିପାଇଁ ମୋତେ ଏହି ମାଡ଼କୁ ସବୁବେଳେ ଭାରି ଡରମାଡ଼େ ।"

"ତୁ କେଡ଼େ ଓଲମା ମଣିଷଟାଏ ବା ! ଏଡ଼େବଡ଼ ମରଦଟାଏ ହେଲୁଣି, ତେବେହେଲେ ବି ତୋତେ ଡର ମାଡ଼ୁଛି ? ଆଚ୍ଛା, ମୁଁ ବାପାଙ୍କୁ ସବୁକଥା ବୁଝାଇକରି କହିଦେବି ।"

"ସତରେ ତୁ କହିବୁ, ସୁଜ୍‌କା ?"— ଭିତେକ୍ ଆନନ୍ଦରେ ଗଦ୍‌ଗଦ ହୋଇ ଉଠିଲା ।

"ହଁ, କହିବି । ତୁ ଆଉ ଏପରି ଡରିମରି ନା !"

"ଯଦି ତୁ ପ୍ରକୃତରେ ମୋ' ପାଇଁ ଏତିକି କରିପାରିବୁ, ତେବେ ତୋ'ପାଇଁ ମୁଁ ଗୋଟିଏ ଚଢ଼େଇ ଆଣିଛି, ଦେଖ୍ !"— ଖୁବ ଖୁସୀ ହୋଇ ଭିତେକ୍ ସୁଜ୍‌କାର କାନପାଖରେ ଫୁସ୍‌ଫୁସ୍ କରି କହିଲା ଏବଂ ଆପଣାର ଛାତିଭିତରୁ ସୁନ୍ଦର ଖେଳନାଟିଏ ବାହାର କରି ଦେଖାଇଲା । "ଦେଖିଲୁ, ଏ ଚଢ଼େଇଟା କେମିତି ଡଗଡଗ ହୋଇ ଚାଲି ଯାଉଛି, ଅବିକଳ ଜୀଅନ୍ତା ଚଢ଼େଇ ପରି !"

ଭିତେକ୍ ଚଢ଼େଇଟିକୁ ଦୁଆରବନ୍ଧ ଉପରେ ରଖି ସେଥିରେ ଚାବି ଦେଇଦେଲା । ସଙ୍ଗେସଙ୍ଗେ ଲମ୍ବଲମ୍ବ ଗୋଡ଼ ଦୁଇଟାକୁ ଉଠାଇ ଓ ମୁଣ୍ଡଟାକୁ ହଲାଇ ଚଢ଼େଇଟି ଚାଲିବାକୁ ଆରମ୍ଭ କଲା ।

"ହେ ଭଗବାନ୍ ! ଏଇଟା ହେଉଛି ଗୋଟାଏ କାଣ୍ଡିଆ ବଗ, ଠିକ୍ ଜୀଅନ୍ତା ଚଢ଼େଇପରି ଗୋଡ଼ ପକାଇ ଚାଲୁଛି !"— ବିସ୍ମୟ ଚକିତ ଭାବରେ ସୁଜ୍‌କା ଚିତ୍କାର କରି ଉଠିଲା । ଦୁଧ ଠେକଟାକୁ ତଳକୁ ରଖିଦେଇ ସେ ଘୁରୁଣ୍ଡିଲି ପରି ହୋଇ ଅତିଶୟ ଉଲ୍ଲାସର ସହିତ ଏହି ଦୃଶ୍ୟ ଦେଖିବାକୁ ଲାଗିଲା ।

"ତୁ ସତରେ କେତେ ବୁଦ୍ଧି ଖରଚ କରି ଏଇଟିକୁ ତିଆରି କରି ଆଣିଛୁ ! ଏଇ ଚଢ଼େଇଟା ଆପଣା ମନକୁମନ ଚାଲୁଛି ନା,— ସତ କହିଲୁ !"

"ହଁ ସୁଜ୍‌କା, ମନକୁ ମନ ! ପହିଲୁ ଯାହା ମୁଁ ଏହି କାଠ ଖିଲ୍‌ଟି ସାହାଯ୍ୟରେ ଟିକିଏ ଚାବି ଦେଇଦେଉଛି, ସେତିକି ! ଦେଖ୍ ଦେଖ୍, ପେଟେ ଖାଇସାରି ବାବୁମାନେ ଯେମିତି ଘୁଣୁଣି ହାତୀ ପରି ଚାଲନ୍ତି, ଚଢ଼େଇଟି

ଠିକ୍‌ ସେହିପରି ଗ୍ଭଲଯାଉଚି ।''— ଚଢେଇଟିକୁ ହାତରେ ଧରି ଭିଡେକ୍‌ ଏପାଖ ସେପାଖ ବୁଲାଇ ଦେଖାଇବାକୁ ଲାଗିଲା । ଛୋଟ ଛୋଟ ଗୋଡ଼ ଦୁଇଟିକୁ ବଡ଼ କୌତୁକପୂର୍ଣ୍ଣ ଆଡ଼ମ୍ବରରେ ପକାଇ ପକାଇ ଚଢ଼େଇଟି ଗ୍ଭଲିବାରେ ଲାଗିଥାଏ,— ଗ୍ଭଲିବାବେଳକୁ ତାର ବେକଟି ମଧ୍ୟ ଆଗକୁ ଓ ପଛକୁ ଉହୁଙ୍କି ପଡୁଥାଏ ।

ଚଢେଇର ଏହିସବୁ କରାମତି ଦେଖିଦେଖି ହଠାତ୍ ଦୁହିଁ କ୍ଷୁଦୁହେଁ ହସି ଉଠିଲେ । ସୁଜ୍‌କା ସତେଅବା ଭିଡେକ୍‌ର ବାହାଦୁରୀର ପ୍ରଶଂସା କଲାପରି ବାରବାର ତା'ଆଡକୁ ଅନାଇ ରହୁଥାଏ ।

ହଠାତ୍‌ ଏତିକିବେଳେ ବୋରିନାର ତୁଣ୍ଡ ଶୁଣାଗଲା, ସେପାଖ ଦୁଆରରୁ ସେ ସୁଜ୍‌କାକୁ ଡାକୁଥିଲା ।

ସୁଜ୍‌କା ଉତ୍ତର ଦେଇ କହିଲା, ''କ'ଣ ? ମୁଁ ଏଇଠି ଅଛି !''

''ଏଠିକି ଆ !''

''ମୁଁ ପରା ଗାଈ ଦୁହୁଁଚି । ବର୍ତ୍ତମାନ କିପରି ସେଠିକି ଯିବି ?''

''ଆଚ୍ଛା, ମୁଁ ଗାଆଁ ଆଡେ଼ ଯାଉଚି''— ଏତିକି କହି ବୋରିନା ଅନ୍ଧାର ଗୁହାଳ ଆଡ଼କୁ ଅନାଇଦେଲା । ରାଗରେ ଜଳିଉଠିଲା ପରି କହିଲା : ''ଆରେ, ସେ ବେଧୁଆ ଗ୍ଭକରଟା ବି ସେଇଠି ବସିଚି ନା ?''

''କିଏ, ଭିଡେକ୍‌ ? ସେ ଆନ୍ତେକ୍‌ ସାଙ୍ଗରେ ତେଣେ ଯାଇଚି ।'' — ବଡ଼ ଅପ୍ରସ୍ତୁତ ହେଲାପରି ସୁଜ୍‌କା ତରତର ହୋଇ ଉତ୍ତର ଦେଲା । ସେତେବେଳକୁ ଭୟରେ ଗୋଟାସୁଦ୍ଧା ଛୁନିଆ ହୋଇ ଭିଡେକ୍‌ ତା'ପଛକୁ ଆସି ଗୁଣ୍ଡି ହୋଇ ବସିଥାଏ ।

''ଶଳା, ଚଡାକାଟି ସେ ମୋ' ହାବୁଡ଼ରୁ ଖସି ପଳାଇ ଯାଇଚି ! ଶଳା ଗଧ ଘୁଷୁରି,—ମୋର କେଡ଼େ ବଢ଼ିଆ ଗାଈଟାକୁ ଖତମ କରିଦେଲା !'' —କହି ବୋରିନା ଆପଣାର ନୂଆ ଧଳା ସୁକ୍‌ମାନାଟିକୁ ପିନ୍ଧିବ ବୋଲି ପୁଣି ଖଞ୍ଜା ଭିତରକୁ ଗ୍ଭଲିଗଲା । ମୁଣ୍ଡରେ ମଧ୍ୟ ଗୋଜିଆ କଳା ଟୋପିଟିକୁ ପିନ୍ଧି ବାହାରକୁ ଯିବାକୁ ହେବ । ତା'ପରେ କମର ଉପରେ ନାଲିଆ କମର ପଟିଟି କଷି ସେ ଅଟାପେକ୍ଷା ହେଉଥିବା ଘର ଅଭିମୁଖରେ ବାହାରିଲା ।

ବାଟରେ ଗ୍ଲ ଯାଉଯାଉ ସେ ମନେ ମନେ କହିବାରେ ଲଗିଥାଏ, "ଇଥାପି ଏତେଗୁଡ଼ାଏ କାମ ବର୍ତ୍ତମାନ ମଧ୍ୟ ବାକୀ ରହିଚ ! ଶୀତଦିନଲଗି ଜାଳେଣି କାଠ ସଂଗ୍ରହ କରି ରଖିବାକୁ ହେବ । କେତେଟା ଚକ ଏପର୍ଯ୍ୟନ୍ତ ବୁଣା ହୋଇନାହିଁ, ଯେଉଁଗୁଡ଼ାକ ବୁଣାହେବ । ବନ୍ଧାକୋବିଗୁଡ଼ାକ ଏପର୍ଯ୍ୟନ୍ତ ପଟାଳି ଉପରୁ ଘରକୁ ଆସିନାହିଁ ! ଆଳୁ ଖୋଲା ସରିଲେ ସେଇ କ୍ଷେତଗୁଡ଼ାକରେ ମଧ୍ୟ ହଳ ଧରିନେବାକୁ ପଡ଼ିବ । ଯଅ ଜମିଡକ ମଧ୍ୟ ଧରାହେବ । ହାଇରେ ବିଧାତା, ଯେତେ ତରତର ହେଲେ ମଧ୍ୟ ଏ ମଣିଷର କାମ କେତେବେଳେ ହେଲେ ସରିବନାହିଁ ! କାନ୍ଧରେ ଯୁଆଳି ପଡ଼ିଥିବା ବଳଦ ଯାହା, ମଣିଷ ମଧ୍ୟ ସେଇଆ । ହଁ, ତେଣେ ପୁଣି ଅଦାଲତ କାମ ମଧ୍ୟ ବାକୀ ରହିଚ ।...ସେ ମାଇକନଆଟାର ପୁଚି ଏଡ଼େ ଭୂରୁଡ଼; ମୋର ଭେକ ସରୁ ନଥିଲ ଯେ ମୁଁ ତା' ସହିତ ଶୋଇବାକୁ ଯାଉଥିଲି ! — ସେ ଯୋଉସବୁ ସୃଷ୍ଟିଛଡ଼ା ମିଛକଥା ମାନ କହୁଚ, ଏଥିରେ ତା'ର କଭ କେମିତ ଛୁଡ଼ ନ ପଡ଼ି ରହିବ, କହିଲ ?" ବଡ଼ ଉତ୍ତେଜିତ ଭାବରେ ସେ ଥୁ' ଥୁ' କରି ନଣ୍ଡା ନଣ୍ଡା ଛେପ ପକାଇବାକୁ ଲଗିଲ । ଆପଣା ପାଇପ୍‌ରେ ତମାଖୁ ଭରିନେଇ ଚଲମ ଲଗାଇଲ । ଦାଆସିଲି କାଠିଗୁଡ଼ାକ କୋଉଠୁ ପାଣି ଲଗି ଘାର କାଉଁଦା ହୋଇ ଯାଇଚ, ଗୋଡ଼ର ଜୋତାରେ ମାରି ତାହା ଲଗାଇବାକୁ ହେଲ ।

ତା'ପରେ କଳ କଳ ଧୂଆଁ ଟାଣି ସେ ଗୋଟିଏ ଗୋଟିଏ ବାଟ ଗ୍ଲିବାକୁ ଲଗିଲ । ଆପଣାର କେତେ ଦୁଃଖ ଓ କେତେ ଦହଗଞ୍ଜ ବିଷୟରେ କେତେ ଭାବନା ଆସି ତା'ର ମୁଣ୍ଡକୁ ଭାରିକରି ଦେଇଥାଏ । ହଁ, ଆଜି ମରିଥିବା ଗାଈଟା କଥା ମଧ୍ୟ ତା'ର ମନେ ପଡ଼ିଯାଉଥିଲି ।

ଏ ପୃଥିବୀରେ ଆଜିଠାରୁ ସେ ବଡ଼ ଏକୁଟିଆ ହୋଇଗଲି, ଠିକ୍ ରାସ୍ତାଉପରର ବତୀଖୁମ୍ବ ପରି । ଆପତ୍ତି ବା ଅଭିଯୋଗ କରିବାକୁ, କୌଣସି କାମରେ ବା କଥାରେ ମନ ନମାନିଲେ କାହାପାଖରେ ଯାଇ କହିବାକୁ ତା'ର ଏହି ପୃଥିବୀରେ ଆଉ କେହି ନାହାନ୍ତି । ଆପେ ସବୁ କଥା ନ ଭାବିଲେ ତା'ପାଇଁ ଭାବିବାକୁ ଆଉ କେହି ନାହାନ୍ତି । ସେ ଏକା ସବୁ ଚନ୍ତା କରିବ,

ସବୁ ଠିକଣା କରିବ, ସବୁ କଥାର ହେପାଜତ କରିବ । ଠିକ୍ ଗୋଟାଏ କୁକୁରର ଜୀବନ ! କାହାସହିତ ପଦେ କଥା କହିବ ବା କାହାପାଖରେ ଯାଇ ଗୋଟାଏ କିଛି ପରାମର୍ଶ କରିବ ବୋଲି ଆଉ ତା'ର କିଏ ଅଛି ? କିଏ ତାକୁ କୌଣସି କାମରେ ସାହାଯ୍ୟ କରିବାକୁ ଅଛି ? ତେଣୁ ଫଳରେ ଯାହା ହେବାର ବର୍ତ୍ତମାନ ତାହାହିଁ ହେବାରେ ଲଗିଛି,— ସୋଟମୁହିଁରେ ପାଣି ଗଲପରି ତା'ର ଲୋକସାନ ପରେ କେବଳ ଲୋକସାନ ହେବାରେ ହିଁ ଲଗିଚି !

ଗାଆଁ ଭିତରଟା ମଧ୍ୟ କ୍ରମେ ଅନ୍ଧାର ହୋଇ ଆସିଲଣି । ଭଲକରି ଶୀତ ପଡ଼ିନାହିଁ । ତେଣୁ ଅନେକ ଘରର କବାଟ ଆଉ ଝରକାମାନ ଏପର୍ଯ୍ୟନ୍ତ ମେଲାହୋଇ ରହିଚି ଏବଂ ଘର ଭିତରେ ଜଳୁଥିବା ନିଆଁର ଧାସ ବାହାରେ ଆସି ପଡ଼ୁଚି । କୋଉଠି ଚୂଲି ଉପରେ ଆଳୁ ସିଝା ହେଉଚି, କୋଉଠି ମାଉଁସ ପଡ଼ି ପଇତ ରନ୍ଧା ହେଉଚି । ରନ୍ଧା ଦରବର ସୁବାସରେ ରାସ୍ତା ମହକି ଉଠୁଚି । ପିଣ୍ଡା ଉପରେ ବସି କୋଉ ପରିବାର ରାତ୍ରି ଭୋଜନରେ ବ୍ୟସ୍ତ ଅଛନ୍ତି । ହୁଏତ କେଉଁମାନେ ଅଗଣାରେ ବସି ଖାଉଚନ୍ତି ଏବଂ ଗ୍ରାମଚି ଝଣ ଝଣ ଶବ୍ଦର ତାଳ ସହିତ ତାଳ ମିଳାଇ ଖୁସୀ-ଗପ କରିବାରେ ଲଗିଚନ୍ତି ।

ବୋଉନାର ଗତି କ୍ରମେ ମନ୍ଦ ହୋଇ ଆସିଲା । ଆଜି ଦିନଟାଯାକ ତା'ର ନାନା ଉତ୍ତେଜନା ଭିତରେ କଟିଯାଇଚି, ସେହିସବୁ ଉତ୍ତେଜନା ତାକୁ କ୍ଲାନ୍ତକରି ପକାଇଚି ବୋଲି ମନେ ହେଉଥାଏ । ଏହି ସାଲେ ବସନ୍ତ ସମୟରେ ତା'ର ଭାରିଯାକୁ ମଧ୍ୟ ସେ କବରି ଦେଇ ଆସିଚି । ସେହି କଥା ହଠାତ୍ ମନେ ପଡ଼ିସିବା ମାତ୍ରକେ ତା'ର ଦୁଃଖ ତାକୁ ଏକା ବେଳେକେ କବଳିତ କରି ପକାଇଲା ଏବଂ ମୁହଁ ଉପରେ ଉଚ୍ଛୁଳି ପଡ଼ୁଥିବା ଏକ ଶୋକୋଚ୍ଛ୍ୱାସକୁ ସେ ପାରୁପର୍ଯ୍ୟନ୍ତ ଚୋକନେବାକୁ ଚେଷ୍ଟା କଲା ।

"ନାଇଁ, ନାଇଁ,— କଦାପି ନୁହେଁ ! ଆଜି କେଡ଼େ ଜଳ ଜଳ ହୋଇ ମୋର ତା'ର କଥାଗୁଡ଼ାକ ମନେ ପଡ଼ିଯାଉଚି ! ସିଏ ଯଦି ଆଜି ବଞ୍ଚିଥାଆନ୍ତା, ତେବେ କ'ଣ ମୋତେ ଏଡ଼େ ବଡ଼ଆ ଗାଈଟାକୁ ହରାଇବାକୁ ପଡ଼ିଥାଆନ୍ତା ?

ତା'ପରି ଗୋଟାଏ ଘରଣୀ ଆଉ କୋଉଠି ମିଳବେ ନାହିଁ, ହଁ, ତା'ର ତୃଣ୍ଟା ଅବଶ୍ୟ ଟିକିଏ ଖର ଥିଲ ସିନା ! କାହାକୁ ହେଲେ ସେ କେବେ ଭୁଲରେ ମଧ୍ଯ ଭଲ କଥା ପଦିଏ କହୁ ନଥିଲ । କନ୍ତୁ ଘର ସମ୍ଭାଳବାକୁ ସେ ଭାରି ମଜବୁତ୍, ଭାରି ପାକୁଆ ଥିଲ । ଘରର ଯାବତୀୟ ଟିକିନିକି କଥା ତା'ର ଆଖି ଆଗରେ ରହୁଥିଲ !''— ଏହିପରି ଭାବିବା ପରେ ସେ ମନେ ମନେ ଭାର୍ଯ୍ଯା ଉଦ୍ଦେଶ୍ୟରେ ପଦେ ପ୍ରାର୍ଥନାମନ୍ତ୍ର ଉଚ୍ଚାରଣ କଲ । ତା'ର ଆତ୍ମାର ସଦ୍‌ଗତି ଲାଗି ଈଶ୍ୱରଙ୍କୁ ଜଣାଇଲ । ଅତୀତ କଥାଗୁଡ଼ିକର ସ୍ମରଣ କରି ତା'ର ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥାଏ ।

ଦିନଶେଷରେ କାମଧନ୍ଦା କରି କ୍ଳାନ୍ତ ଶ୍ରାନ୍ତ ହୋଇ ଘରକୁ ଫେରିଲେ ଭାର୍ଯ୍ଯା ଘରେ ସାଇତି ରଖିଥିବା ସବୁଠାରୁ ଭଲ ଫଳ ଆଣି ତା'ଆଗରେ ବାଢ଼ି ଦେଉଥିଲ । ପିଲଙ୍କଠାରୁ ଲୁଚାଇ ରଖିଥିବା ମାଉଁସ ଖଣ୍ଡେ କି ମିଠାଇଟାଏ ବାହାର କରି ସେ କେତେ ଆଦରରେ ତାକୁ ଖାଇବାକୁ ଆଣିଦେଉଥିଲ । ପିଲାଗୁଡ଼ାକ ମଧ୍ଯ ମାଆ ବଞ୍ଚିଥିଲାତକ ଭାରି ଭଲରେ ବଢ଼ୁଥିଲେ । ଗାଈ ବାଛୁରୀ ଜନ୍ମ କରୁଥିଲ, ବତକ ଛୁଆ କରୁଥିଲେ, ଘୁଷୁରି ଛୁଆଙ୍କର ସଂଖ୍ୟା କେବଳ ବଢ଼ିବାରେ ଲାଗିଥିଲ । ଯାନଯାତ୍ରା ଦିନ ସହରକୁ ହାତରେ ଧରି ନେବାକୁ ଏଇଘରେ ନାନାପ୍ରକାର ସମ୍ପଦ ଭରତି ହୋଇ ରହିଥିଲ । ମନକଲେ ଏଇ ଘରୁ ଦଶ ପଚିଶି ନଗଦ ମଧ୍ଯ ବାହାରୁଥିଲ, ସମସ୍ତ ଅସମୟବେଳେ କାମରେ ଆସିବ ବୋଲି ସବୁବେଳେ କିଛି ନା କିଛି ସାଇତା ହୋଇ ରହିଥିଲା । କନ୍ତୁ ବର୍ତ୍ତମାନ ?

ଆନ୍ଦ୍ରେକ୍ ତ ଦିନକୁ ଦିନ ବାଆଁ ଖାଡ଼ିଆ ଦେଇ ଅଲଗା ହୋଇ ଯାଉଚି । କମାରଶାଳ ବସାଇଥିବା ତା'ର ଜୁଆଁଇଟା ମଧ୍ଯ କିଛି କମ୍ ନୁହେଁ । ଯେତେବେଳେ ପାରୁଚି ଆସି ତା'ପାଖରୁ କିଛିନା କିଛି ବାହାରକରି ନେଇଯାଉଚି । ଆଉ ଯୁଜ୍‌କା ?— ସେଇଟାର କ'ଣ ବୟସ ହେଲାଣି ? ଭଗବାନ ତ ତା'ର ଖପୁରି ଭିତରେ ବୁଦ୍ଧି ପରିବର୍ତ୍ତିରେ କେବଳ ତମ୍ଭ ଭର୍ତ୍ତି କରି ରଖିଚନ୍ତି । ପୁଣି ସେଥିରେ ବା ଆଚମ୍ବିତ ହେବାର କ'ଣ ଅଛି । ଦଶବରଷର ବାଳୁତ ପିଲାଟାର ଆଉ କେତେ ବୁଦ୍ଧି ହୁଅନ୍ତା ?

ଆଉ ବାଙ୍କା ?— ସେଇଟା ତ ଖାଲି ହିଣ୍ଡିକାପର ଏଣେତେଣେ ଡେଇଁ ବୁଲିବାରେ ଲଗିଛ । ତା' ଉପରକୁ ପୁଣି ବାରମାସରେ ବଶାଶହେ ବେମାର । ତା'ଦେଇ କ'ଣ ହୋଇପାରିବ ? ଆପଣା ଦେହଦୁଃଖର ପେଖନା କରି ଖାଲି କୁକୁରପରି ଘାଲେଇ ପଡ଼ିରହିବାହିଁ ତା'ର କାମ ।

ଏହିପରି ପୁଅଗୁଡ଼ିକୁ ଗୃହିଁଦେଖିବ, ସିଆଡ଼ ଭାଙ୍ଗି ଗୂନା ହୋଇ-ଯାଉଛ, ସବୁ ଭୂଷୁଡ଼ି ପଡ଼ି ତା'ର ଏଡ଼େ ବଡ଼ ସଂସାରଟା ଖାଲି ଉଜୁଡ଼ିଯିବାକୁ ବସିଛ । ଆଜ ଏଡ଼େ ବଡ଼ିଆ ଗାଈଟା ଗଲା, ଫସଲ ଅମଳ ସମୟରେ ଗୃମୁଣ୍ଡାଏ ଯାଇଥିଲା । କାଉଗୁଡ଼ାକ ଯେ ଝାମ୍ପମାରି କେତେ ବତକ ଛୁଆ ନେଇଗଲେ, ଯାଇଯାଇ ବର୍ତ୍ତମାନ ଆଉ କେବଳ ଅଧେ ବାଙ୍କା ରହିଚନ୍ତି । କେତେ କେତେ ଲୋକଯାନ କହିଲ ! କେତେବଡ଼ ଷତ କହିଲ ! କେବଳ ପ୍ରମାଦ ପରେ ପ୍ରମାଦ ପଡ଼ିବାରେ ଲଗିଚ ! ତାହାର ସମସ୍ତ ଧନସମ୍ପତ୍ତି କେବଳ ଉଜୁଡ଼ି ଯିବାରେ ଲଗିଚ । ଗୃଲୁଣି ଫୋଡ଼ଦେଇ ପାଣି ବୋହିଯିବା ପରି ଖାଲି ବୋହିଯିବାରେ ଲଗିଚ !'

"କିନ୍ତୁ ମୁଁ ସହଜରେ ଗ୍ଭଡ଼ିଦେବା ଲୋକ ନୁହେଁ !"— ସେ ପାଟିକରି କହି ଉଠିଲ, "ଯେତେ ଦନଯାଏ ଏଇ ଗୋଡ଼ହାତ ଚଳୁଚ, ସେତେଦନ-ଯାଏ ମୁଁ ଗୋଟାଏ ମାଣ ଜମି ମଧ୍ଯ କାହାକୁ ଛାଡ଼ିଦେବ ନାହିଁ ।"

"ଜୟ ଗ୍ରମ !"— ବାଟରେ ଯାଉଯାଉ କିଏ ଜଣେ ତାକୁ ନମସ୍କାର କରି କହିଲ ।

"ମଙ୍ଗଳ ହୋଇଥାଉ !"— ଯନ୍ତ୍ରଚାଳିତ ପରି ବଡ଼ ଅଭ୍ୟସ୍ତ ଭବରେ ସେ ଜବାବ ଦେଇ ମୁହଁ ବୁଲଇ ଦୁଇପାଖରେ ବାଡ଼ ବସା ହୋଇଥିବା ଗଳିଟି ଭିତରକୁ ଅନାଇଲ । ଗଳିମୁଣ୍ଡରେ ପଧାନ ଘର ।

ଘରର ଝରକା ଭିତରୁ ବାହାରକୁ ଆଲୁଅ ଜକ୍ଲିହୋଇ ପଡ଼ୁଚ୍ଛ । କୁକୁର ଗୁଡ଼ାକ ଗନ୍ଧପାଇ ଭୋ' ଭୋ' କରିବାକୁ ଆରମ୍ଭ କରିଦେଲେ । ବୋରିନା ସିଧା ସେଇଆଡ଼କୁ ବାଟ ଭାଙ୍ଗି ଗୃଲିଲ ।

"ପଧାନେ ଘ'ଟି ଅଛନ୍ତି ?"— ଦୋଳପାଖରେ ହାମୁଡ଼େଇ ପଡ଼ି ଗୋଟିଏ ପିଲାକୁ ଦୁଧ ଦେଉଥିବା ଜଣେ ମୋଟାସୋଟା ଆକୃତିର ସ୍ତ୍ରୀଲୋକକୁ ଦେଖି ସେ ପଗ୍ଭରିଲ ।

"ନାହିଁ, ନାହାନ୍ତି । କିନ୍ତୁ ଏଇଲଗେ ସେ ଘରକୁ ଆସୁଥିବେ । ବସ ବାପ, ବସ । ତାଙ୍କ ପାଇଁ ଆଉ ଜଣେ କିଏ ମଧ୍ୟ ଅପେକ୍ଷା କରି ବସିଛି ।"—କହି ସ୍ତ୍ରୀଲୋକଟି ନିଆଁ ଉହ୍ମେଇ ଜଳୁଥିବା ଜାଗାରେ ବସିଥିବା ଭିକାରୀଟି ଆଡ଼କୁ ଅନାଇଲା । ଭିକାରୀଟି ଅନ୍ଧ, ସାଙ୍ଗରେ ଗୋଟିଏ କୁକୁର । ପାଠକ-ମାନଙ୍କର ଏହି ଭିକାରୀଟି ସହିତ ଆଗରୁ ଥରେ ସାକ୍ଷାତ ହୋଇଛି । ଉହ୍ମେଇରେ ଜଳୁଥିବା କାଠନିଆଁର ଧାସ ପଡ଼ି ତା'ର ଚିକଣ ମୁହଁ, ଲଣ୍ଡା ମୁଣ୍ଡ ଆଉ ମେଲହୋଇ ରହିଥିବା ଏଡ଼େଏଡ଼େ ଆଖି ଦୁଇଟା ରଙ୍ଗରେ ପାଚି ଲାଲ ଦେଖାଯାଉଥିଲା । ଆଖି ଉପରେ ଗୋଟିଏ ପାତଳା ଧଳା ପରଳମାଡ଼ି ରହିଥିଲା, ଧୂସର ପତାତଳେ ଆଖି ଦୁଇଟି ସ୍ଥିର ଓ ନିଷ୍ପନ୍ଦ ହୋଇ ରହିଥିଲା ।

"ଆରେ, ତୁ କେମିତି ଏଠିକି ଆସିଲୁ ମ ?"—ଉହ୍ମେଇର ଏପାଖରେ ଯାଇ ବସୁ ବସୁ ବୋଉନା ତାକୁ ପଚାରିଲା ।

"ବାଟରେ ବୁଲିବୁଲି ଏଇଠି ଆସି ପହଞ୍ଚିଗଲି, ଯାଆନ୍ତୁ ! ମୋ' କପାଳରେ ଆଉ ଏହାଠାରୁ ଅଧିକ କ'ଣ ଲେଖା ଅଛି ?"— ବଡ଼ କରୁଣ ଉଦାସ କଣ୍ଠରେ ଭିକାରୀ ଉତ୍ତର ଦେଲା । ଆପଣାର ପ୍ରତ୍ୟେକଟି ଶବ୍ଦକୁ କାନଡେରି ଶୁଣୁଶୁଣୁ ଭିକାରୀ ଆପଣାର ନାସ-ଡବା ବାହାରକଲା ।

"ଚମୁଟାଏ ନିଅ, ଯାଆନ୍ତୁ !"

ହାତ ବଢ଼ାଇ ବୋଉନା ଚମୁଟାଏ ନାସ ଆଣିଲା । କିନ୍ତୁ ସେଇ ଗୋଟାଏ ଚମୁଟାରେ ଯେ ଏତେବେଶୀ ନାସ ଆଣି ନାକରେ ଟାଣିଦେଲା ଯେ ତାହା ଫଳରେ ତାକୁ ଛଅଥର ଛିଙ୍କିବାକୁ ପଡ଼ିଲା, ଆଉ ଏଣେ ଆଖିବାଟେ ପାଣି ବାହାରି ପଡ଼ିଲା ।

"ଖୁବ କଡ଼ା ନାସରେ ବାବା !"— ନାସ୍ତାନାବୁଦ ହୋଇପଡ଼ି କାନ୍ଥ କାନ୍ଥ ସେ କହୁଣୀଦେଇ ଆଖିରୁ ଲୁହ ପୋଛିଦେବାକୁ ଲାଗିଲା ।

"ଇଏ ହେଉଛି ପିଟର୍ସବର୍ଗ ନାସ,— ଅସଲ ନାସ । ଆଖିକୁ ଭାରି ଉପକାରୀ । ତୁମ ଆଖିକୁ ମଧ୍ୟ ଉପକାର କରିବ ।"

"କାଲିଆଡ଼କୁ କେତେବେଳେ ଆମ ଘରଆଡ଼େ ଆସିବୁ ? ଆମଘରେ ଗୋଟାଏ ଗାଈ ମରିହୋଇଚି ।"

"ଭଗବାନଙ୍କ ବରଦ । କିନ୍ତୁ ବୋଇନା, ତୁମେ ପ୍ରକୃତରେ ସତ କହୁଚ ? "

"ତୋ'ର ଅନୁମାନ ପ୍ରକୃତରେ ସତ ।"

"ତୁମ କଥାରୁ ମୁଁ ସବୁ ଠଉରାଇ ନେଲି ନା !"

"ଆଚ୍ଛା, ତୁ'ତ ଦୁନିଆଁଗୋଟାକ ସବୁଆଡ଼େ ବୁଲୁଚୁ । ଖବରସବୁ କ'ଣ କହିଲୁ !"

"ଖବର ? ହଁ— ଭଲ ଖବର ଅଛି, ଖରାପ ଖବର ବି ଅଛି, ଭଲ କି ଖରାପ କିଛି ନୁହେଁ, ଏଭଳି ଖବର ମଧ୍ୟ ଅଛି । ଏଇଆ ତ ହେଲା ଏହି ଦୁନିଆର ଖିଅ ! ଭିକାରୀକୁ ମୁଠାଏ ଭିକ ଦେବାକୁ ପଡ଼ିଲିବେଳକୁ ସିନା ଲୋକମାନେ କେତେ ପେଖନା ବାହାର କରନ୍ତି, କେତେ ବଙ୍କେଇ ମୋଡ଼ି କଥା କହନ୍ତି । କିନ୍ତୁ ଭଡ଼୍‌କା ପିଇଲାବେଳକୁ ସେମାନଙ୍କର ହାତ କେତେ-ବେଳେ ଖାଲି ନଥାଏ ।"

"ତୁ ସତକଥା କହୁଚୁ । ଏକାବେଳେକେ ସତକଥା !"

"ଆରେ, କହିବିନାହିଁ ? ଭଗବାନଙ୍କର ପୃଥିବୀଯାକ ବୁଲି ମୁଁ କ'ଣ ନଦେଖୁଚି କହିଲ ? କୋଉ କଥା ମୋ' ଆଖିରେ ନପଡ଼ୁଚି ?"

"ଆଚ୍ଛା କହିଲୁ,"— ପଧାନ ଘରଣୀ ଏତେବେଳକେ ପଦେ କଥା ପଚାରି ବସିଲା,— "କହିଲୁ, ଆର ବର୍ଷ ଯୋଉ ପିଲାଟା ତୋ' ସହିତ ହାତଧରି ବୁଲୁଥିଲା, ସିଏ କୁଆଡ଼େ ଗଲା ?"

"ତା'କଥା ଆଉ କହନା ! ମୋ' ମୁଣ୍ଡାରୁ ପଇସାପତ୍ର ଧରି ସିଏ ଚମ୍ପଟ ଦେଲା । କେତେକେତେ ଭଲଲୋକ ଦୟା କରି ମୋତେ ପାହୁଲାଏ ପଇସାଏ ଦେଇଥିଲେ, ମୁଁ ତାକୁ ଠାକୁରାଣୀଙ୍କ ଦେଉଳରେ ଲାଗି କରିବି ବୋଲି ରଖିଥିଲି । କିନ୍ତୁ ସେଇ ଛତରା ପିଲାଟୀ ଆଉ ସେକଥା କରାଇ ଦେଲାନାହିଁ, ପଇସାତକ ଧରି କୋଉ ସୂତରରେ କୁଆଡ଼େ ଖସି ପଳାଇ ଗଲା । କିନ୍ତୁ ଏଥର କଥା ବନ୍ଦକର,— ମୋର ଅନୁମାନ ହେଉଚି ଯେ

ପଧାନେ ଆସି ଘରେ ପହଞ୍ଚିଗଲେଣି ।" କହି ସେ ହାତରେ ଧରିଥିବା ଡୋରଟିକୁ ଟିକିଏ କସିକରି ଟାଣିଦେଲା ଓ ସେହି ଡୋରରେ ବନ୍ଧା ହୋଇଥିବା କୁକୁରଟି ଭୌ' ଭୌ' କରି ଭୁକୁଥିଲା, ଇସାରା ପାଇ ତୁନି ହୋଇଗଲା ।

ତା'ର ଅନୁମାନ ପ୍ରକୃତରେ ଠିକ୍ । ପଧାନେ ଘର ଭିତରକୁ ପଶି ଆସିଥିଲେ ଓ ଦୁଆରବନ୍ଧ ପାଖରେ ଠିଆହୋଇ ଆପଣାର ବାଡ଼ିଟିକୁ ଘରର ଗୋଟିଏ କଣକୁ ପକାଇଦେଇ ବଡ଼ ପାଟିରେ କହିଲେ :

"ହେ, ଶୁଭୁଚ ! ମୋ' ପାଇଁ ଶୀଘ୍ର ଖାଇବାକୁ ଆଣ । ଭୋକରେ ପେଟ ଜଳିବାରେ ଲାଗିଚି । ଆରେ ମାଥିଆସ୍, ତୋ' ଖବର କଣ ? ଆରେ, ତୁ ବୁଢ଼ା କେତେବେଳେ ଆସିଲୁ, କ'ଣ ସବୁ ଖବର ?"

"କାଲି କଚେରୀରେ ହାଜର ଦେବାକୁ ଅଛି ନା, ସେଇଥିଲାଗି ତୁମକୁ ପଚାରିବାକୁ ଆସିଥିଲି ?"

"ହଉ, ହଉ, ବସ୍ ବସ୍ ! ମୁଁ ପିଣ୍ଡାରେ ବସୁଚି, କିଛି ଚିନ୍ତା କରନା । ନା— ମୁଁ ସବୁ ବୁଢ଼ାମଣିଷ, ତେଣୁ ଜୁଆଁ ପାଖରେ ବସିଲେ ମୋର ସବୁଠାରୁ ଭଲ ହେବ । ହଁ— ତୋ'ର ଆଳୁ ଓ ତୋ'ର ଗହମରୁ ମୋତେ କିଛି ମିଳିଲେ ମୁଁ ଅବଶ୍ୟ ତୋ'ପାଇଁ ଚେଷ୍ଟା କରିବି, ଚେଷ୍ଟା ନ କରିବି କାହିଁକି ? ଟଙ୍କା ଦେବା ଯାହା, ଆଳୁ ବା ଗହମ ଦେବା କ'ଣ ଠିକ୍ ସେଇକଥା ନୁହେଁ ?"

"ଆପଣ ଆଗ ବସ । ଆଗ ଖିଆପିଆ କର । ଏଇ ଥାନଟି ଏପରି ଉଷୁମ ହୋଇଚି ଯେ ରାତିରେ ଏଠି ଶୋଇଲେ ମଧ୍ୟ କିଛି ଅସୁବିଧା ହେବନାହିଁ ।"

ପଧାନେ ମଣୋହିରେ ବସିଲେ । ଆଗରେ ବଢ଼ା ହୋଇଥିବା ଖାଇବା ଥାଳୀରୁ ମହମହ ବାମ୍ପ ବାହାରୁଚି । ଆଳୁ ଚକଟା, ସେଥିରେ ପୁଣି ମାଉଁସ ପଡ଼ିଚି । ଥାଳୀ ପାଖକୁ ଗୋଟାଏ ଥାଳରେ ଥାଳିଆଏ ଘୋଳଦହି ।

"ବସ୍‌, ମାଥିଆସ୍‌, ବସ୍‌ ! ଯାହା ଘରେ ଅଛି, ତୁମକୁ ଖାଇବାକୁ ଠିକ୍‌ ସେଇଆ ମିଳିବ ।" ଅତି ସମ୍ଭ୍ରମ ଦେଖାଇ ପଧାନ ଘରଣୀ ବୋଉନାକୁ କହିଲେ ଓ ଟେବୁଲ୍‌ ଉପରେ ଆଉ ଗୋଟିଏ ଚାମଚ ଆଣି ରଖିଦେଲେ ।

"ନାଇଁ, ନାଇଁ, ଧନ୍ୟବାଦ୍‌ ! ଜଙ୍ଗଲରୁ ଘରକୁ ଲେଉଟି ଆଜି ମୁଁ ଘରେ ପେଟେ ଖାଇ ଆସିଛି ।"

"ଚାମଚେ ଦି'ଚାମଚ ଖାଇଲେ କ'ଣ ବା ଲୋକସାନ ହୋଇଯିବ ? ଏଣିକି ଏଣିକି ତ ରାତି ବଡ଼ ହେବାକୁ ବସିଲାଣି ।"

ତଗ ପକାଇ ଭିକାରୀଟି ଗାଇଲା :

ଠାକୁରଙ୍କୁ ଜଣାଣ, ପେଟଲାଗି ଭୋଜନ,
ଯେତେ ବେଶୀ ହେଲେ ପଡ଼େ ନାହିଁ କିଛି ଲୋକସାନ !

ଭଦ୍ରତା ଦେଖାଇ ବୋଉନା କେତେ ସମୟ ଯାଏ ନାହିଁ ନାହିଁ କରୁଥାଏ, କେତେମନ୍ତେ ଗୋଡ଼ ଲମ୍ବାଉଥାଏ । କିନ୍ତୁ ଶେଷକୁ ଯେତେବେଳେ ରନ୍ଧା ମାଉଁସର ମୋହକ ସୁଗନ୍ଧ ଆସି ତା'ର ନାକପୁଡ଼ା ଭିତରେ ବାଜିବାକୁ ଲାଗିଲା, ସେତେବେଳେ ସେ ଆଉ ଅଟକି ରହିପାରିଲା ନାହିଁ । ସୁନାପୁଅ ପରିବସି ଖାଇବାକୁ ଆରମ୍ଭ କଲା । କିନ୍ତୁ ଭାରି ଧୀରେ ଧୀରେ ଖାଉଥାଏ, ଭାରି ଲାଜ କଲାପରି ଯାଆନ୍ତିଆ ତଳଣିରେ ହାତ ଚଳାଉଥାଏ ।

ଭିକାରୀର କୁକୁରଟି ସେତେବେଳକୁ ଭାରି ଅସ୍ଥିର ହୋଇ ଏପାଖ ସେପାଖ ହେବାକୁ ଆରମ୍ଭ କଲିଣି ଏବଂ ଖାଇବାର ଆଶାରେ କ୍ଷୀଣ ଶବ୍ଦ ମଧ କରିବାକୁ ଲାଗିଲଣି ।

"ବୁରେକ୍‌, ଚୁପ୍‌ ! ଗୃହୀ କୁଟୁମ୍ବର ସମସ୍ତେ ଖାଇବସିଚନ୍ତି । ତୋତେ କ'ଣ ତୋ'ର ଭାଗ ବଳେ ମିଳିବନାହିଁ ! ଅପେକ୍ଷା କର !"— ସାନ୍ତ୍ୱନା-ଦେଇ ଭିକାରୀ କୁକୁରଟିକୁ ଥିର କରିବାକୁ ଚେଷ୍ଟା କଲା । ନିଆଁ ପାଖରେ ବସି ସେ ହାତଦୁଇଟାକୁ ଉଷୁମ କରିବାରେ ଲାଗିଥାଏ ଆଉ ରନ୍ଧା ଖାଦ୍ୟ-ଦ୍ରବ୍ୟର ମହକକୁ ଅତି ଆନନ୍ଦରେ ଆଘ୍ରାଣ କରୁଥାଏ ।

ପହିଲ କେତେପଣ ଭୋଜ ସରିଯିବା ଉତ୍ତାରେ ମାଥିଆସ୍‌ ଆଡ଼କୁ ଅନାଇ ପଧାନେ କହିଲେ : ମୁଁ ଯାହା ଶୁଣିବାକୁ ପାଇଲି, ଇଏ ତୋ' ନାଆଁରେ କଚେରୀରେ କ'ଣ ସବୁ ଅଭିଯୋଗ କରିଛି ।"

"ଇସ୍ ? ସେଇ ଛଉଁଟା ? ମୁଁ ଶପଥ କରି କହୁଚି— ! ହଁ, ତାକୁ ମୁଁ ତାର ପାଉଣା ଦେଇନାହିଁ,—ଏଇଥିପାଇଁ, ନୁହେଁ ? କିନ୍ତୁ ଭଗବାନ ତ ପୃଥିବୀ ଉପରେ ରହି ସବୁକଥା ଦେଖୁଚନ୍ତି ! ତା'ର ଯେତେ ପାଇବା କଥା, ମୁଁ ତା'ଠାରୁ ଅଧିକ ଦେଇଚି । ହଁ, ପୁଣି ଯେତେବେଳେ ତା'ର ସେଇ ପିଲଟା ଜନମ ହେଲା, ସେତେବେଳେ ମଧ୍ୟ ମୁଁ ମୋ'ଆଡୁ ଆପଣା ଇଚ୍ଛାରେ ବସ୍ତାଏ ଯଅ ପାଦ୍ରୀଙ୍କ ଘରକୁ ପଠାଇଦେଲି ତା'ର ପିଲାଟିର ଦୁଅଁ କାମରେ ଲଗିବ ବୋଲି !"

"କିନ୍ତୁ ସେ କହୁଚି ଯେ କୁଆଡ଼େ ତୁଇ—"

"ସତେ ? ତା'ର ଏଡ଼େ ସାହସ ! ବଡ଼ ସାହସିଆ କଥା ଏ ! ତା'ର କ'ଣ ମୁଣ୍ଡ ଖରାପ ହୋଇଚି ନା କ'ଣ ? ମୁଣ୍ଡ ଖରାପ ହୋଇଚି ?"

"ଆରେ, ବୟସ ସିନା ଗଲଣି, କିନ୍ତୁ ଭଗବାନ କ'ଣ ତୋତେ ସେଥିପାଇଁ ଅକ୍ଷମତା କରିଚନ୍ତି ?"—ପଧାନ ଆଉ ପଧାନ ଘରଣୀ କରକର ହୋଇ ହସିବାକୁ ଲଗିଲେ ।

ଅନ୍ଧ ଭିକାରୀଟି ମଧ୍ୟ କଥା ସହିତ କଥା ଯୋଡ଼ିଦେଇ କହିଲା, "ବୟସ ହେଲେ ତ ଜ୍ଞାନ ହୁଏ ; ଆଉ ଜ୍ଞାନ ହେଲେ ମଣିଷ ବାଗ ପାଏ ।"

"କିନ୍ତୁ ସେ ଛୁଣ୍ଡାଳ ଡାହା ମିଛକଥା କହୁଚି ! ମୁଁ ସେ ପୋଇଲାଟାକୁ କେବେହେଲେ ଥରେ ସ୍ପର୍ଶ ବି କରିନାହିଁ ! ତା'ର ତ ଘର ନଥିଲା, ସେ ନିଆଶ୍ରୀ ହୋଇ ବୁଲୁଥିଲା । ଛତରଖାଇ ହୋଇ ଭିକମାଗି ବୁଲୁଥିଲା । ଦିନେ ଆମଘରକୁ ଆସି ମୁଣ୍ଡ ଗୁଞ୍ଜିବାକୁ ଆଶ୍ରା ମାଗି କେତେ ନେହୁରା ହୋଇ କହିଲା । ଖାଲି ଗଣ୍ଡାଏ ଖାଇବ ଆଉ ଶୋଇବାଲାଗି କୋଉଠି କଣେ ହେଲେ ଜାଗା ତାକୁ ମିଳିବ ! ଶୀତକାଳ ମାଡ଼ିଆସୁଥାଏ । ମୁଁ ତ ସିଧାସିଧା ନାହିଁ କରିଦେଲି । କିନ୍ତୁ ମୋର ଘରଯା ସେତେବେଳେ ବଞ୍ଚିଥାଏ । ସେଇ କହିଲା, ତାକୁ ଆମଘରେ ରଖିବା । ସେ ଘରକାମ କରିବ, ଗଣ୍ଡାଏ ଖାଇବାକୁ ପାଇବ । ପାଖରେ ଆସି ଜଣେ ପହଞ୍ଚିଥିବା ବେଳେ ଆମେ ଆଉ କାହିଁକି କୋଉଠି ଚାକରାଣୀ ଖୋଜିବାକୁ ଯିବା ? କିନ୍ତୁ ଏହି ପ୍ରସ୍ତାବଟି ଆଦୌ ମୋର ମନକୁ ପାଉନଥାଏ । ଶୀତକାଳ,—ବଡ଼ ଦହଗଞ୍ଜ କାଳ ! ସେତେ-

ବେଳେ ଆଉ ଗୋଟାଏ ମଣିଷକୁ ରୋଜ ରୋଜ ଖାଇବାକୁ ଦେବା କ'ଣ ସହଜ କଥା ? ଶୀତଦିନରେ ଘରେ କୋଉ ବଡ଼ କାମ ଅବା ରହୁଚ ? କିନ୍ତୁ ଭାରିଯା କହିଲା : "ତୁମେ କିଛି ଚିନ୍ତା କରନା । ଆଉ କିଛି କାମ ନଥିଲେ ମଧ୍ୟ ଲୁଗା ଆଉ ପଟ ବୁଣିବା ତ ତାକୁ ଜଣାଅଛି । ତାକୁ କାମ ଯୋଗାଇ-ଦେବାର ଦାୟିତ୍ୱ ପଛେ ମୁଁ ନେଉଚି । ଯେକୌଣସି ସମୟରେ ମଧ୍ୟ ଘରେ ତା'ପାଇଁ କିଛିନା କିଛି କାମ ଅବଶ୍ୟ ରହିଥିବ । ଏହିପରି ଭାବରେ ସେ ସେହିଦିନଠାରୁ ଆମଘରେ ରହିଲା, ଦିନକୁଦିନ ଖାଇ ପିଇ ମଜବୁତ ହେବାକୁ ଲାଗିଲା । ଏବେ ପୁଣି ତା'ର ଝିଅ ମଧ୍ୟ ଜନମ ହୋଇଚି । କିନ୍ତୁ ବର୍ତ୍ତମାନ ପ୍ରଶ୍ନ ହେଉଚି, କାହାଆଡୁ ଏଇ ଝିଅଟା ଜନ୍ମ ହେଲା ?"

"କିନ୍ତୁ ସିଏ ତ କହୁଚି ଯେ ତୋ' ଆଡ଼ୁ—"

"ସେ ଏପରି କଥା କହିଲେ ମୁଁ ତାକୁ ଖୁନ୍‌ କରିବି । ଛତରଖାଇ ଏତେ ମିଛ କଥା କହିଲା କାହିଁ ?"

"କେଜାଣି କ'ଣ ହୋଇଥିବ ! କିନ୍ତୁ ସେ ଯାହାହେଉ ପଛକେ ତୋତେ କଚେରୀରେ ଯାଇ ଠିଆହେବାକୁ ପଡ଼ିବ ।"

"ଠିଆହେବାକୁ ହେଲେ ମୁଁ ଠିଆ ନହେବି କାହିଁକି ? ଆପଣ ମୋତେ ଏତିକି ସମ୍ବାଦ ଦେଲେ, ଭଗବାନ ଆପଣଙ୍କର ମଙ୍ଗଳ କରିଥାନ୍ତୁ । କାରଣ ମୁଁ ଭାବିଥିଲି ସିଏ ତା'ର ବେତନ ବିଷୟରେ କଚେରୀରେ ଯାଇ ଫେରାଦ ହୋଇଥିବ । କିନ୍ତୁ ମୁଁ ତାକୁ ତା'ର ସମସ୍ତ ବେତନ ପରିଶୋଧ କରିଦେଇଚି । ଏକଥା ପ୍ରମାଣ କରିବାଲାଗି ମୋ'ପାଖରେ ସାକ୍ଷୀ ମହଜୁଦ ରହିଚନ୍ତି । ସେ ମିଛେଇକୁ ଯଖମା ହୋଇଯାଉ ! କି ଅପବାଦ ଏ ? ଘୁଷୁରି ଭିକାରୁଣୀଟା ବି ଆସି ଶେଷକୁ ମୋ'ର ମୁଦେଇ ହେବାକୁ ବସିଚି ? ହେ ଭଗବାନ ! ଗୋଟାଏ ପରେ ଗୋଟାଏ କରି ଆଉ କେତେଟା ବଜ୍ର ମୋ' ମୁଣ୍ଡରେ ତୁମେ ପକାଇବ ? ମୁଁ କଦାପି ଏସବୁ ସହ୍ୟ କରି ପାରିବିନାହିଁ । ଏତେ ବଡ଼ିଆ ଗାଈକୁ ମୋତେ ଶେଷକୁ ହତ୍ୟା କରିବାକୁ ହିଁ ପଡ଼ିଲା ! ତେଣେ ବିଲରେ ମଧ୍ୟ କେତେ କାମ ବାକୀ ପଡ଼ିରହିଚି । ଆଉ ଏଣେ ମୁଁ ଏକାଟିଆ ମଣିଷ, ଯାଙ୍କୁ ହେମତ କରିବାକୁ ସଂସାର ଗୋଟାକରେ ଜଣେ-ହେଲେ କେହି ନାହାନ୍ତି !"

"ମାଇପ ମରିଗଲା ପରେ ଏପରି ଝୁରି ମରୁଥିବା ମଣିଷଙ୍କୁ ମଣିଷ ନକହି ଗଧିଆ ହାବୁଡ଼ରେ ପଡ଼ିଥିବା ମେଣ୍ଢା ବୋଲି କୁହାଯାଏ ।" —ଅନ୍ଧ ମନ୍ତବ୍ୟ ପ୍ରକାଶ କଲା ।

"ମୁଁ ବି ଗାଈ ବିଷୟରେ ସବୁ ଶୁଣିଚି । ଗାଆଁ ବାଲା ମୋତେ କହିଚନ୍ତି ।"

"ସେ ବିଷୟରେ ମଧ୍ୟ ମୋର ଗୋଟାଏ ଅଭିଯୋଗ କରିବାର ଅଛି । ଜଙ୍ଗଲତ୍ତ୍ରି କର୍ମଚାରୀ ଆମ ଗାଈପଲକୁ ଜଙ୍ଗଲରୁ ତଡ଼ି ବାହାର କରିଦେଲେ ବୋଲି ମୁଁ ଶୁଣିବାକୁ ପାଇଲି । ଆମ ସବୁ ଗାଈଙ୍କ ଭିତରେ ସେ ସବୁଠାରୁ ବଢ଼ିଆ ଗାଈ ଥିଲା,—ବିକା ହୋଇଥିଲେ ଅଶୀଟଙ୍କାରେ ବି ମୁଁ ମଙ୍ଗିନଥାନ୍ତି । ବିଚାରୀର ପେଟରେ ପୁଣି ଛୁଆ ବି ଥିଲା । ଦଉଡ଼ି ଦଉଡ଼ି ସେ ଏପରି କ୍ଳାନ୍ତ ହୋଇ ପଡ଼ିଲା ଯେ ଏହା ଫଳରେ ତା'ର ପ୍ରାଣାନ୍ତକ ଆସି ପହଞ୍ଚିଲା ପରି ଅନୁମାନ ହେଲା । ଶେଷକୁ ସେଇଟିକୁ ମାରି ମାଉଁସତକ ରଖିବା ବ୍ୟତୀତ ମୋର ଆଉ ଅନ୍ୟ ଉପାୟ ନଥିଲା । ନା—ମୁଁ ଏକଥାଟା ସହଜରେ ଛାଡ଼ି ଦେବିନାହିଁ । ମୁଁ ମକଦ୍ଦମା କରିବି ।"

ଏଣେ ପଧାନେ ହେଉଚନ୍ତି ସରକାରୀ କର୍ମଚାରୀଙ୍କର ସାଙ୍ଗ, ତେଣୁ ସେ ବୋରନାଭ କୋପ ଶାନ୍ତ କରିବାକୁ ନାନାପ୍ରକାରେ ପାକଲା ପାକଲି କଲେ : ଆରେ, ରାଗିଲେ ମଣିଷର ବିବେକ ମଧ୍ୟ ହଜିଯାଏ । ତେଣୁ ରାଗର ପ୍ରକୋପରେ ପଡ଼ି ସେ ଅଣବୁଝିଆର ହୋଇ କିଛି କରିପକାଇବାଟା ଆଦୌ ଉଚିତ ହେବ ନାହିଁ । ତା'ପରେ କଥାଟାକୁ ଅନ୍ୟଆଡ଼େ ମୋଡ଼ିଦେବାର ମତଲବରେ ପତ୍ନୀଆଡ଼କୁ ଇସାରା ଦେଇ ସେ କହିଲେ !

"ମାଥିଆସ୍, ତୁ ହେଉଚୁ ମରଦପୁଅ । ତୋର ଆଉ ଗୋଟାଏ ଘରଣୀ ଆଣିବା ଉଚିତ । ଘରକୁ ଆଉ ଜଣେ ଆସିଲେ ସିନା ତୋ'ର ଘର ସମ୍ଭାଳିବା ସମ୍ଭବ ହେବ !"

"ଆପଣ କ'ଣ ମୋ'ସହିତ ରହସ୍ୟ କରୁଚନ୍ତି ? ସେଦିନ ପରଦିନ ପରି ମୋତେ ଅଠାବନ ପୂରି ଅଣଷାଠି ପଶିଲା । ଆପଣ କ'ଣ ସପନ ଦେଖୁଚନ୍ତି ? ପୁଣି ମାଇପ ମରିବା ତ କାଲିପରି ଯାଇଚି, ଏପର୍ଯ୍ୟନ୍ତ ଚୁଲି ଶୀତଳ ହୋଇନାହିଁ !"

"ଆରେ, ଏଥିରେ ଅସୁବିଧା କ'ଣ ଅଛି ? ଆପଣାର ବୟସକୁ ଅନାଇ ତୁମେ ଆଉ ଗୋଟାଏ ବାହାହୋଇ ପଡ଼ିବ । ମାଥିଆସ୍, ଏ କଥା ମାନିଲେ ତୁମର ସଂସାରରେ ହବୁ ସୁଧୁରିଯିବ ।" —ଟେବୁଲ ଉପରୁ ସକ୍ସଡ଼ି ବାସନ ଉଠାଉ ଉଠାଉ ପଧାନ ଘରଣୀ କହିଲେ ।

"ଘରକୁ ବିନା ଘରଣୀ ଆସିଲେ ଶୋଭା ପାଏ ! ଘରଣୀ ଯଦି ଭଲ ହୋଇଥିବ, ସେ ଯଦି ହୃଦୟବତୀ ହୋଇଥିବ, ତେବେ ସେ ଗେରସ୍ତର ଜୀବନରେ ମୁକୁଟ ପରି ଝଲଝଲ ହେଉଥିବ !" —ପଧାନ ଘରଣୀ ଆଣି ଆଗରେ ରଖି ଦେଇଥିବା ଅଇଁଠା ଥାଳୀ ଆଡ଼କୁ ହାତ ବଢ଼ାଉ ବଢ଼ାଉ ଅନ୍ଧ ମତ ପ୍ରକାଶ କଲା ।

ଏଇ କଥାଟା ପ୍ରକୃତରେ କାହିଁକି ଆଜି ଯାଏ ତା' ମୁଣ୍ଡରେ ପଶି ନଥିଲା, ଏକଥା ଭାବି ବୋଉନା ମନେମନେ ଅବାକ୍ ହେଉଥିଲା । ଖୋଜି ବସିଲେ କନିଆ କ'ଣ ଅମୁରୁବ ରହିବେ ? ପୁଣି ମୋଟେ ଭାରିଯା ନଥିବା ଅପେକ୍ଷା ଜଣେ କେହି ଭାରିଯା ରହିବା ତ ସବୁବେଳେ ଭଲ ।

ଖାଉଖାଉ ଅନ୍ଧ କହିବାକୁ ଲାଗିଲା —"ମାଇପେ ଅନେକ ପ୍ରକାରର ଅଛନ୍ତି । ଜଣେ ଜଣେ ବାଲୁଙ୍ଗୀ, ମୁହଁରେ କୋଲପ ପଡ଼ିଥିବାପରି । ଖାଲି ବକାବକା ହେଉଥିବେ । ଆଉ ଜଣେ ଜଣେ କଳକୁଣ୍ଡୀ, ଖୋଜରେ ଖୋଜ ବଜାଇ କଜିଆକଳି ବାହାରିବେ । କିଏ କିଏ ପିଲାଙ୍କୁ ଅନାଦର କରିବେ ତ ଆଉ କିଏ ଫୁଲେଇ ହୋଇ ବଜାର ବୁଲୁଥିବେ । କିନ୍ତୁ ସେ ଯେପରି ହୁଅନ୍ତୁ ପଛକେ, ମୋଟେ ଭାରିଯା ନଥିବା ଅପେକ୍ଷା ଭାରିଯା ଥିବାଟା ପୁରୁଷ ପକ୍ଷରେ ସବୁବେଳେ ହିତକାରୀ ।"

"କିନ୍ତୁ ଲୋକେ କ'ଣ ଭାବିବେ କହିଲ !"— ଆପତ୍ତି କରି ବୋଉନା କହିଲା ।

"ଭାବିବେ ? ଭାବିବେ ବୋଲି କ'ଣ ସେମାନେ ତୁମର ଗାଈକୁ ଫେରାଇ ଆଣିବେ ନା ଆଉ କୌଣସି ପ୍ରକାରେ ସାହାପକ୍ଷ ହେବାକୁ ଦଉଡ଼ି ଆସିବେ ?"— ଉତ୍ତେଜିତ କଣ୍ଠରେ ପଧାନ ଘରଣୀ ଭଉଣା କଲା ।

"ନା ତୋ'ର ବନ୍ଧୁଣୀ ବସ୍ତୁଇଦେବାକୁ ଆସିବେ ?" ହେଁ ହେଁ ହୋଇ ହସି ପଧାନେ କହିଲେ ।

"ଏ ଆଖପାଖରେ କେତେକେତେ ଟୋକୀ ଅଛନ୍ତି । ଥରେ ଯାଇ ଯାଇ ବୁଲି ଆସ ଦେହ ଭିତରଟା ଯେପରି ଜଳନ୍ତା କୋଇଲା ପରି ଧକଧକ ହେବାରେ ଲାଗିବ ।"

"ଦେଖ, ଦେଖ ଅନାଇଦେଖ । ବୋଉନା ବର୍ତ୍ତମାନ ମନେମନେ କାହାକୁ ମନ କରୁଚି, ଭାବିକରି କହିଲ ?"

"ସେଇ ଗ୍ରିଗୋରିର ଝିଅ ସୋଫିକୁ ମନେ କରୁଥିବ । ଦେଖିବାକୁ ପାତଳା, ଡହଳଡାହଳ । ଯୌତୁକ୍ ମଧ୍ୟ ବେଶ୍ ମିଳିବ ।"

"ମାଥିଆସର କ'ଣ ନାହିଁ ଯେ ସେ ଯୌତୁକ ପାଇଁ ଲୋଭ କରିବାକୁ ଯିବ ? ସେ ପରା ଏହି ଅଞ୍ଚଳରେ ସବୁଠାରୁ ଅଧିକ ଥିଲାବାଲା ଗୃହୀ !"

"ଧନସମ୍ପତ୍ତି, ଜମିବାଡ଼ୀ — କାହାର ଅଧିକ ଅଛି ବୋଲି କିଏ ସ୍ୱୀକାର କରିବ କହିଲ ?"— ଅନ୍ନା ପଚାରିଲା ।

ଗାଲ କାଟିଦେଇ ପଧାନେ କହିଲେ : "ନାଇଁ, ଗ୍ରିଗୋରିର ଝିଅ ତା'ଲାଗି ହେବନାହିଁ । ପିଲା ମେଞ୍ଚଡ଼ାଟା ବଅସ ହୋଇନାହିଁ ।"

"ତା'ହେଲେ ଆଣ୍ଡ୍ରିଭର ଝିଅ କାଥରିନ୍"—ପଧାନ ଘରଣୀ ଦ୍ୱିତୀୟ ପ୍ରସ୍ତାବ ଦେଇ କହିଲେ ।

"ତା'ର ବାହାଘର ଠିକ୍ ହୋଇଯାଇଚି । ଗ୍ରୋଚ୍‌ର ପୁଅ ଆଡାମ ପାଇଁ କାଲି ଭଲଲୋକ ପଠାହୋଇ ସାରିଚନ୍ତି ।"

"ତେବେ ଷ୍ଟାଚ୍‌ର ଝିଅ ଭେରୋଙ୍କା କେମିତି ପସନ୍ଦ ହେଉଚି ?"

"ଉଁ—ହୁଁ ! ବକବକୀଟା — ଖାଲି ଚବର ଚବର ହେଉଥିବ । ଗୋଟାଏ ପାଖ ଅଣ୍ଟାଟା ବି ଟିକିଏ ଅଧିକ ଉଚ୍ଚ !"

"କିନ୍ତୁ ଟମାସ୍‌ର ବିଧବାପତ୍ନୀ ସହିତ କଲେ ତ ଭଲ ହୁଅନ୍ତା !"

"ହଁ—, କିନ୍ତୁ ଓନଓନଟା ପିଲା, ଝରମାଣ ଜମି, ଦୁଇଟା ଗାଈ ଆଉ ଗୋଟାଏ ପୁରୁଣା ମେଣ୍ଢାଗୁଳ ! ଟମାସ୍ ମଲା ପୂର୍ବରୁ ମାଇପ ପାଇଁ ଏତିକ ରଖିଯାଇଚି ।"

"ତା'ହେଲେ ଆଡ଼ାଲ୍ ବର୍ଟର ଝିଅ ଉର୍ଲସିଆ ବିଷୟରେ ପକାଇଲେ କିପରି ହୁଅନ୍ତା ? ଯାହାର ଘର ଗୀର୍ଜା ପାଖରେ ମ !"

"ହଁ, ବାନ୍ତୁଅ ମରଦ ପାଇଁ ସେ ଝିଅ ବେଶ୍ ହୁଅନ୍ତା । ତା'ର ଯେଉଁ ପିଲାଟା ଅଛି, ତାହାର ବୟସ ବି ଅନେକ ହୋଇଗଲାଣି, ଗାଈ ଚରାଇ-ଛିବାର ବୟସ ହୋଇଗଲାଣି । କିନ୍ତୁ ମାଥିଆସ୍‌ର ଗାଈଆଳ ଗୃକର ରହିବ । ଏ ପିଲାଟାକୁ ନେଇ ସେ କ'ଣ କରିବ ?"

"ସେଠି ନହେଲେ ଆହୁରି କେତେକେତେ ଝିଅ ଅଛନ୍ତି । ଜଣେ ତାହାକୁ ଉପଯୁକ୍ତ ଦେଖି ଖାଲି ଠିକ୍ କଲେ ହେଲା ।"

"କିନ୍ତୁ ଯାହା ବିଷୟରେ ପକାଇଲେ ସବୁଠାରୁ ଭଲ ହୁଅନ୍ତା, ତା'କଥା ତୁମର ଏପର୍ଯ୍ୟନ୍ତ ମନେ ପଡ଼ୁନାହିଁ ।"

"ସେ କିଏ ମ ?"

"କାହିଁକି ? ଡୋମିନିକ୍‌ର ଝିଅ ସୁଗନା ।"

"ହଁ, ସତକଥା ଏକା । ମୁଁ ତା'କଥା ଏକାବେଳକେ ପାଶୋରି ଦେଇଥିଲି ।"

"ମଜବୁତ୍ ଦେହ, ଦେଖିବାକୁ ବେଶ୍ ଉଚ୍ଚ । ଗଛ ଡାଳ ଉପରେ ବସିଲେ ଗଛ ଡାଳ ଭାଙ୍ଗିପଡ଼ିବ !"

"ସୁଗନା ?"—ବୋଉନା ଦୋହରେଇବାକୁ ଲାଗିଲା । ସେ ଏପର୍ଯ୍ୟନ୍ତ ନୀରବ ରହି କନ୍ୟାମାନଙ୍କର ତାଲିକା ଶୁଣୁଥିଲା ।" କିନ୍ତୁ ଲୋକମାନେ କହନ୍ତି ଯେ ତା'ର ପୁରୁଷମାନଙ୍କ ପଛରେ ଗୋଡ଼ାଇବାର ପ୍ରକୃତି ବି ରହିଛି !"

ପଧାନ ଘରଣୀ କଥାକୁ ମାଡ଼ିବସିଲା ପରି ଆଗଭର ହୋଇ କହିଲେ, "କିଏ କ'ଣ ଦେଖିଛି ମୁଁ ଶୁଣେ ! କିଏ କ'ଣ ଜାଣିଛି ! ପରଚର୍ଚ୍ଚା କରିବା ଛଡ଼ା ଯେଉଁମାନଙ୍କର ଆଉ କିଛି କାମ ନାହିଁ, ପରଚର୍ଚ୍ଚା ନକଲେ ସେମାନଙ୍କର ଭାତ ହଜମ ହେବ କିପରି ? ଯିଏ କହୁଥିବେ, ସେମାନେ ଖାଲି ଈର୍ଷାରେ କହୁଥିବେ !"

"ନାଁ—ମୁଁ କ'ଣ ନିଜେ ସେକଥା କହୁଚି । ସାଇପଡ଼ିଶାରେ ଯାହା ଶୁଣିଚି, ମୁଁ ତାହାହିଁ କହୁଥିଲି । ଅଚ୍ଛା, ଆଜି ଏତିକିରେ ଥାଉ । ମୋତେ ପୁଣି ଘରକୁ ଫିରିବାକୁ ହେବ ।" କମରପଟିକୁ ଟାଣିକରି ବାନ୍ଧିଦେଇ, ପାଇପ୍‌ରେ ଆଉ ଖଣ୍ଡେ ରଡ଼ନିଆଁ ପକାଇଦେଇ ଓ ସେଥିରୁ ଦୁଇ ତିନିକଳି ଧୂଆଁ ଟାଣିନେଇ ସେ ଫିରିବାକୁ ସଜହେଲା ।

"କାଲି କେତେଟା ବେଳକୁ କଚେରୀରେ ହାଜର ହେବାକୁ ପଡ଼ିବ ?"

"ନଅଟାବେଳେ । କଚେରୀର କାଗଜ ପତ୍ରରେ ତ ଏଇଆ ଲେଖା-ହୋଇଚି । ଯଦି ଚାଲିକରି ଫିରିବାର କଥା, ତେବେ କାଲି ସକାଳୁ ତୋତେ ଭାରି ସହଳ ଉଠିବାକୁ ହେବ ।"

"ନା—ମୁଁ ଭାବୁଚି କାଲି ଗାଡ଼ୀ ନେଇ ଫିରିବି । ହାଉଲେ ହାଉଲେ ଗଲେ ମଧ୍ୟ ଠିକ୍ ସମୟରେ ପହଞ୍ଚି ଯାଇପାରିବି । ଅଚ୍ଛା ନମସ୍କାର । ଆପଣ ଯେଉଁ ଉତ୍ସାହ ଆଉ ପରାମର୍ଶମାନ ଦେଇଛନ୍ତି, ସେଥିଲାଗି ଅନେକ ଅନେକ ଧନ୍ୟବାଦ ।"

"ଭଗବାନ ତୋ'ର ମଧ୍ୟ ସାହାପକ୍ଷ ହୋଇଥାନ୍ତୁ । ଆଉ ଆମେ ଆଜି ତୋ'ପାଖରେ ଯେଉଁ ପ୍ରସ୍ତାବଟି ପକାଇଥିଲୁ, ସେ ବିଷୟରେ ମଧ୍ୟ ତୁ ଚିନ୍ତାକରି ଦେଖିବୁ । ଖାଲି ତୁ ହଁ ବୋଲି କହିଦେଲେ ମୁଁ ନିଜେ ତୋ' ତରଫରୁ ଭଉଜା ଭାରି ଧରି ସେଇ ବୁଢ଼ୀ ଘରକୁ ଫିରିବି । ଆଉ ତା'ପରେ ପାଖରେ ଗୋଟାଏ ତିଥି ଦେଖି ଆମେ ବାହାଘରଟା ସାରିଦେବା ।"

ବୋରନା ହଁ କି ନାହିଁ କିଛି ଜବାବ ଦେଲାନାହିଁ । ତଥାପି ଗଲାବେଳେ ସେମାନଙ୍କୁ ଅନାଇ ଅନାଇ ଗଲା । ହୁଏତ ସେହି ଗୃହାଣୀରୁ ତା'ର ମନୋଭାବର ଯଦି କିଛି ଅର୍ଥ ପ୍ରକାଶ ପାଇଥିବ, ପାଇଥିବ ।

"ବୁଢ଼ାସାଙ୍ଗକୁ ଛଡ଼ାକୁ ଆଣି ବାହାଘର କଲାବେଳେ ଶଇତାନ ଭାରି ଆନନ୍ଦ ପାଏ, କାରଣ ସେଥିରେ ତାହାର ହିଁ ସବୁଠାରୁ ଅଧିକ ଲାଭ ହୁଏ", — ଅନ୍ଧ ଭିକାରୀ ଚନ୍ଦ୍ରତ ଗମ୍ଭୀର ଭାବରେ କହିଲା । ସେତେବେଳେ ତା'ର ମଧ୍ୟ ଭୋଜନ ସରିଲାଣି । ଥରିଥରି ପାଦ ପକାଇ ବୋରନା ଗୃହାଭି-ମୁଖରେ ଚାଲି ଯାଉଥାଏ, ପଧାନେ ଓ ପଧାନ ଘରଣୀ ବର୍ତ୍ତମାନ ତାକୁ

ଯେଉଁ ଉପଦେଶ ଦେଲେ, ସେ ଖୁବ ଗମ୍ଭୀର ହୋଇ ସେହି ବିଷୟରେ ଚିନ୍ତା କରୁଥାଏ । ବାହାହେବା ପକ୍ଷରେ ତା'ର ଯେ ମଧ୍ୟ ସମ୍ପୂର୍ଣ୍ଣ ମତ ରହିଚି, ପ୍ରଧାନ ଘରେ କାହାରିକୁ ଏହି କଥାର କୌଣସି ସୂଚନା ନଦେବାଲାଗି ସେ ଖୁବ ହୁସିଆର ହୋଇ କଥା କହିବାକୁ ଚେଷ୍ଟା କରିଥିଲା । ଏହି ସୂଚନାଟା ଦେଇଥିଲେ ତାହା କେଡ଼େ ବଡ଼ ଲାଜର ବିଷୟ ନହୁଅନ୍ତା କହିଲ ? ତା'ର ତ ଆଉ ଟୋକା ବୟସ ନୁହଁ ଯେ ବାହାଘରର ନାଆଁ ପଡ଼ିଲା କ୍ଷଣି ସେ ଝିଙ୍ଗିକା ପରି ଫରକଫରକ ଡେଇଁବାକୁ ଲାଗିଯିବ, ହୋ' ହୋ' ହୋଇ ପାଟି କରିବ ! ତା'ର ବୟସ ହେଲାଣି, ଜାଣିବାଶୁଣିବା ଗୃହୀ ହିସାବରେ ତା'ର ନାମଡ଼ାକ ଅଛି, ତେଣୁ ଫରକଫରକ ହେଲେ ଚଳିବ କିପରି ?

ସେତେବେଳକୁ ଧରଣୀ ଉପରେ ରାତ୍ରିର ପହିଲି ପଡ଼ିସାରିଲାଣି । ଅନ୍ତରୀକ୍ଷର ପ୍ରଶାନ୍ତ ଗର୍ଭର ଭିତରୁ ଚକଚକ ହେଉଥିବା ତାରାଗୁଡ଼ିକ ଠିକ୍‌ ରଜତବିନ୍ଦୁ ପରି ଦେଖାଯାଉଚନ୍ତି । ଚାରିଆଡ଼େ ସବୁ ଶାନ୍ତ, ସବୁ ସ୍ଥିର । ମଝିରେ ମଝିରେ ରହିରହି କୋଉ ଦୂରରେ କେତେଟା କୁକୁରଙ୍କର ଭୁକିବା-ଶବ୍ଦ ଶୁଣାଯାଉଚି । ତୋଟାର ଫାଙ୍କ ଭିତରୁ ଅତି କ୍ଷୀଣ ହୋଇ ଜଳୁଥିବା ଏଠିସେଠି ଗୋଟାଏ ଦୁଇଟା ଆଲୁଅ ମଧ୍ୟ ଦୂରରୁ ଦେଖାଯାଉଚି । ରହିରହି ପଡ଼ିଆ ଆଡ଼ୁ ଝଲକାଏ କରି ଶୀତଳ ସିକ୍ତ ପବନ ବହିଆସୁଚି । ସେହି ପବନର ବେଗ ବାଜି ଗଛର ଅଗଗୁଡ଼ିକ ଥରିଥରି ଦୋହଲି ଯାଉଚନ୍ତି ଏବଂ ସେଗୁଡ଼ିକର ପତ୍ରପୁଞ୍ଜ ଭିତରୁ କ୍ଷୀଣ ମର୍ମରଶବ୍ଦ ଶୁଣାଯାଉଚି ।

ଆଜି ଆଉ ଗୋଟାଏ ବାଟରେ ପୋଲ ଉପରଦେଇ ବୋରନା ଘରକୁ ଫେରିଯାଉଥିଲା । ପୋଲତଳେ ପୋଖରୀର ପାଣି କଲକଲ ସଶବ୍ଦ ଧାରରେ ଅଙ୍କାପେଙ୍କା ଘରଆଡ଼କୁ ବୋହି ଯାଉଥାଏ ଏବଂ ଶେଷରେ ଯାଇ ଗୋଟିଏ ଝରଣାର ପାଣି ସହିତ ମିଶି ଯାଉଥାଏ। ପୋଲ ପାରି ହୋଇ ସେ ଆରପାରିକୁ ଗଲା । ପୋଖରୀର କୂଳେ କୂଳେ ବାଟ ପଡ଼ିଚି । ପୋଖରୀର ପାଣି ରାତିର ଅନ୍ଧାରରେ କଳା କାଚ ପରି ଦେଖା ଯାଉଥାଏ । ପୋଖରୀହୁଡ଼ାର ଗଛ-ମାନଙ୍କରୁ ଘନକୃଷ୍ଣ ଛାଇମାନ ଲମ୍ବିଯାଇ ପାଣି ଉପରେ ପଡ଼ିଥାଏ, ଯତେ-ଯେପରି କିଏ ପୋଖରୀର ଚାରିଫାନ୍ଦକୁ କଳା ଶିଶୁକାଠରେ ଛୁଆଣି

କରି ଦେଇଛି ! ପୋଖରୀ ମଝିରେ ଗଛର ଛାଇଗୁଡ଼ିକ କ୍ରମେ ଧୂସର ହୋଇ ଆସିଥାଏ ଏବଂ ଇଷ୍ଟାତ୍ର ରଙ୍ଗର ଜଳ ଦର୍ପଣ ଉପରେ ଆକାଶର ତାରାଗୁଡ଼ିକ ପ୍ରତିବିମ୍ବିତ ହୋଇ ଉଠୁଥାନ୍ତି ।

ଆଜି ଏପରି ଗୋଟାଏ ନୂଆବାଟରେ ମାଧିଆପା କାହିଁକି ଘରକୁ ଫେରୁଛ, ସେ ନିଜେ ମଧ୍ୟ ତାହାର କାରଣ ଜାଣିନଥିଲା । ସବୁଦିନର ଚନ୍ଦ୍ରା ସିଧାବାଟ ଛାଡ଼ି ସେ ଆଜି ଏ ବଙ୍କାବାଟରେ ଯାଉଛି କାହିଁକି ? ସ୍ୱର୍ଣ୍ଣକାର ଘର ବାଟ ଦେଇ ଯିବାର ମତଲବ ରଖି ଆଉ କ'ଣ ସେ ଏହିବାଟ ଧରିଛି କି ? ବା ହୁଏତ କେବଳ ଥିରହୋଇ ଆପଣା ମନ ଭିତରେ ସବୁବିଷୟ ଚିନ୍ତା କରି ପାରିବବୋଲି ବୋଧହୁଏ ସେ ଏକୁଟିଆ ଏକୁଟିଆ ଏହି ବାଟରେ ଚାଲିଯାଉଛି ।

"ନା— ଏପରି ହେଲେ ଅଦୌ ମନ୍ଦ ହୁଅନ୍ତା ନାହିଁ । କନିଆ ବିଷୟରେ ସେମାନେ ଯାହାସବୁ ମତପ୍ରକାଶ କଲେ, ସେ ସମସ୍ତ ସମ୍ପୂର୍ଣ୍ଣ ସତକଥା । ପ୍ରକୃତରେ ସେ ଝିଅଟି ଭାରି ମଜବୁତ ।"

ତା'ର ଶରୀରଯାକ ହଠାତ୍ କ'ଣ ଗୋଟାଏ କମ୍ପିଉଠିବା ପରି ମନେହେଲା । ପୋଖରୀର ଚାରିପାଖରେ ତାକୁ ବେଶ୍ କାଳୁଆ ଓ ସନ୍ତସନ୍ତିଆ ଲାଗୁଥାଏ । ସେ ପୁଣି ପ୍ରଧାନ ଘରର ନିଆଁ ଉହ୍ଲେଇ ପାଖରୁ ସିଧାସିଧା ଏଠାକୁ ଆସିଛି !

"ଘରକୁ ଘରଣୀ ନରହିଲେ ହୁଏତ ମୋର ସର୍ବନାଶ ହେବ ବା ଶେଷକୁ ମୋତେ ବାଧ୍ୟ ହୋଇ ମୋର ଜମିବାଡ଼ିତକ ପିଲାଙ୍କ ହାତରେ ସମର୍ପଣ କରିଦେବାକୁ ପଡ଼ିବ ।"— ସେ ଭାବି ଚାଲିଥାଏ । "ଝିଅଟି ଭାରି ଭଲ, ଦେଖିବାକୁ ବି ସୁନ୍ଦର, ଠିକ୍ ଗୋଟିଏ ଫଟ ପରି । ଅଜି ମୋ' ଘରର ସବୁଠାରୁ ବଡ଼ିଆ ଗାଈ ଚାଲିଗଲା ! କାଲି ଯେ ଆଉ କ'ଣ ଯିବ, ସେକଥା କାହାକୁ ଜଣାଅଛି ? ଖୁବ୍ ସମ୍ଭବ ମୋତେ ଆଉ ଗୋଟାଏ ଭାରିଯାର ତଲାସ କରିବାକୁ ହିଁ ପଡ଼ିବ । ମୋର ପହିଲି ଭାରିଯା ମୋତେ ରାସ୍ତା ଉପରେ ବସାଇଦେଇ ଚାଲିଯାଇଛି । କିନ୍ତୁ ଡୋମିନିକର ବୁଢ଼ୀ ବିଧବାଟା,...... ସେଇଟା ଭାରି ଦୁଷ୍ଟ ! ସାଙ୍ଗରେ ବି ଛଅଗଣ୍ଡା ପିଲା, ଜମି ପନ୍ଦରମାଣ ;

ଯୁଗ୍‌ନାର ଭାଗରେ ପାଞ୍ଚମାଣ ଜମି ପଡ଼ିବ, ଘରୁ ମଧ୍ୟ ତାକୁ ଭାଗ ମିଳିବ । ଗୋରୁଗାଈରୁ ମଧ୍ୟ ମିଳିବ । ପାଞ୍ଚମାଣ ଜମି,— ମୋ' ଆଳୁବିଲର ଠିକ୍ ସରହଦକୁ ଲାଗିଚି । ମୋ, ବିଲ ସହିତ ଏକାଠି ମିଶାଇଦେଲେ ପଇଁତରିଶି ମାଣ ଆକାରର ଗୋଟାଏ ବେଶ୍ ବଡ଼ ଚକ ହୋଇଯିବ !"

ହାତରେ ହାତ ଘଷି ସେ ତା'ପରେ ଆପଣାର କମର ପଟି କଷିନେଲା । "ଏତକ ଜମି ପାଇଗଲେ ବୋଧହୁଏ ଖାଲି ଅଟାପେଷା ଘରର ମାଲିକକୁ ଛାଡ଼ିଦେଲେ ଏ ଗାଆଁରେ ମୋ'ଠାରୁ ଅଧିକ ଥିଲାବାଲା ଆଉକେହି ରହିବେନାହିଁ । ଆସନ୍ତା ସନକୁ ମୁଁ ଜମିରେ ଭଲକରି ଖତ ପକାଇଦେବି ଆଉ ସବୁଜମିରେ ଗହମ ବୁଣିବି । ହଁ, ଗୋଟାଏ ଘୋଡ଼ା ମଧ୍ୟ କିଣିବାକୁ ପଡ଼ିବ । ଛୁପଛୁପିକିଆ ଗାଈଟା ଚାଲିଗଲା, ମୋତେ ଆଉ ଗୋଟାଏ ଗାଈ ବି କିଣିବାକୁ ହେବ । ଆରେ, ମୁଁ ସବୁକଥା ଭୁଲିଯାଉଚି କିପରି ? ଯିଏ ନିଜେ ତ ବାପଘରୁ ଗୋଟାଏ ଗାଈ ନେଇ ଆସିବ !"

ଏହିପରି ଚିନ୍ତାମଗ୍ନ ହୋଇ ସେ ବାଟଚାଲି ଯାଉଥାଏ ; ସାଧାରଣତଃ ଚାଷୀଘର ପୁଅ ଯେଉଁସବୁ ସ୍ୱପ୍ନ ଦେଖେ, ସେ ସେହିସବୁ ସ୍ୱପ୍ନ ଦେଖି ଦେଖି ଚାଲିଥାଏ । ଏତେଗୁଡ଼ାଏ ଚିନ୍ତା କରିବାପରେ ତା'ର ଚିନ୍ତାଗୁଡ଼ାକ କ୍ରମେ ତା'ର ମୁଣ୍ଡକୁ ବଡ଼ ଭାରି ଭାରି ମନେହେଲା । ଏତେଗୁଡ଼ାଏ ବିଚାର ଏଇ ଛୋଟିଆ ମୁଣ୍ଡଟା ଭିତରେ ଏକାବେଳେକେ ଜାଗା ହେବ କିପରି ? କାରଣ ସେ ପ୍ରତ୍ୟେକ କଥାକୁ ଭାରି ଟିକିନଖି କରି ବିଚାର କରିବାକୁ ଆରମ୍ଭ କରି ପକାଇ ଥିଲା । ସେ ଚାଷୀଘର ପୁଅ, ତା'ର ମୁଣ୍ଡରେ କେତେ ବୁଦ୍ଧି ! କାଳେ କୌଣସି ଦରକାରୀ କଥାର ବିଚାର ନ କରି ସେ ଭୁଲରେ ଛାଡ଼ି ଯାଇଥିବ, ସେ ତାହା ହିଁ ପରୀକ୍ଷା କରି ଦେଖୁଥିଲା ।

"ସେମାନେ ଶୁଣିଲେ ଏଥିରୁ ମହାଭାରତ ସୃଷ୍ଟି କରିବେ !"—ଆପଣ ପୁଅ ଝିଅମାନଙ୍କ କଥା ମନେପକାଇ ସେ ଭାବିବାକୁ ଲାଗିଲା । କିନ୍ତୁ ଏହିପରି ଚିନ୍ତା କରିବା ସଙ୍ଗେ ସଙ୍ଗେ ତା'ର ମନଭିତରଟା ଏକ ଅଦମ୍ୟ ଆତ୍ମବିଶ୍ୱାସରେ ପୂର୍ଣ୍ଣହୋଇ ଗଲାପରି ମନେହେଲା । ସତେଅବା ଏକ ଉତ୍ସାହର ଉଚ୍ଛ୍ୱାସ ଆସି ତା'ର ଅନ୍ତରର ପାତ୍ରକୁ ପୂର୍ଣ୍ଣ କରିଦେଲା, ଆପଣାର ଉଦ୍ଦେଶ୍ୟ ବିଷୟରେ

ତାକୁ ପରିପୂର୍ଣ୍ଣ ନିର୍ଭର ଦେଇଗଲା । ଏପର୍ଯ୍ୟନ୍ତ ସବୁକଥାରେ ସେ କେବଳ ଅନିଶ୍ଚିତ ଭାବରେ ଏପାଖସେପାଖ ହେଉଥିଲା, ଏଥର ଯେପରି ସେ ଭାରି ଦମ୍ଭ ପାଇଲା !

"ଜମିର ମାଲିକ ହେଉଚି ମୁଁ, ମୋ'ସମ୍ପତ୍ତିକୁ ଦାବୀ କରିବାର ବାର କିଏ ଅଛି ବାହାରୁ ତ ଦେଖି ! ଯଦି ଏସବୁ କଥାରେ ସେମାନଙ୍କର ମନ ନ ପାଉଚି, ତେବେ······" ସେ ଆଉ ଅଧିକ କିଛି କହି ପାରିଲା ନାହିଁ । କାରଣ ଅଜାଣତରେ ଆସି ସେତେବେଳକୁ ସ୍ୱର୍ଣ୍ଣାଙ୍କ ଘର ଆଗରେ ପହଞ୍ଚି ଯାଇଥିଲା ।

ଘରେ ଏପର୍ଯ୍ୟନ୍ତ ବତୀ ନିଭି ନଥାଏ । ଡାହ୍ଲିଆ ଫୁଲର ଗଛ ଓ ବଗିଚାର ବାଡ଼ ଭେଦ କରି ଖୋଲା ଝରକା ବାଟେ ଘରର ଆଲୁଅ ରାସ୍ତାକୁ ଆଲୋକିତ କରି ରଖିଥାଏ । ଗୋଟିଏ ଗୁଇ ଜାଗା ଦେଖି ଠିଆହୋଇ ବୋଉନା ଘର ଭିତରକୁ ଆଖି ପକାଇବାକୁ ଲାଗିଲା ।

ଘରଭିତରେ ଚୁଲ୍ହୋଇରେ ଥିବା ନିଆଁ ନିଷ୍ଟସ୍ତ ଦାଉ ଦାଉ ହୋଇ ଜଳୁଚି । ଜଳୁଥିବା କାଠର ଚଡ଼ ଚଡ଼ ଶବ୍ଦ ରାସ୍ତା ଉପରୁ ମଧ୍ୟ ବେଶ୍ ଭଲକରି ଶୁଣା ଯାଉଚି । ବେଶ୍ ଓସାରିଆ ସେହି ବଖରାଟି ନାଲି ରଙ୍ଗର କୌଣସି ଆଲୁଅରେ ପ୍ଲାବିତ ହୋଇ ରହିଚି । ଅବଶ୍ୟ ଘରର କଣ ଜାଗାଗୁଡ଼ିକ ଟିକିଏ ଧୂସର ମଧ୍ୟ ଦେଖାଯାଉଚି । ଚୁଲ୍ହୋଇ ପାଖରେ ଜାକିଜୁକି ହୋଇ ବସି ବୁଢ଼ୀ ବଡ଼ ପାଟିକରି କ'ଣ ଗୋଟାଏ ବହି ପଢ଼ିବାରେ ଲାଗିଚି, ଆଉ ସ୍ୱର୍ଣ୍ଣା ଝରକା ଆଡ଼କୁ ମୁହଁ କରି ଗୋଟାଏ ଜାଅନ୍ତା ବତକରୁ ପର ଛଡ଼ାଇବାକୁ ଚେଷ୍ଟା କରୁଚି ।

"ଝିଅଟି ପ୍ରକୃତରେ ବଡ଼ ଖାସା ଝିଅ !"— ବୋଉନା ଭାବିବାକୁ ଲାଗିଲା ।

ସ୍ୱର୍ଣ୍ଣା ମଝିରେ ମଝିରେ ଉପରକୁ ମୁଣ୍ଡ ଉଠାଉ ଥାଏ, କାନ ଡେରି ପଢ଼ା ହେଉଥିବା ବହିରୁ ପଦେ ଦୁଇପଦ ଶୁଣୁଥାଏ, ଓ ତା'ପରେ ଗୋଟିଏ ଲେଖାଏଁ ଦୀର୍ଘନିଶ୍ୱାସ ପକାଉଥାଏ । ତା'ପରେ ପୁଣି ଚଢ଼େଇଟି ଦେହରୁ ପର ଛଡ଼ାଇବାରେ ଲାଗିଯାଉଥାଏ । କିନ୍ତୁ ଏପରି ଅପାରଗ ଭାବରେ

ଛଡ଼ାଜୁଥାଏ ଯେ ଚଢ଼େଇଟି ଯନ୍ତ୍ରଣାରେ ଚେଁ ଚାଁ କରି ଉଠୁଥାଏ । ବାଗ ପାଇ ତା'ର ହାତଭିତରୁ ଖସିଯାଇ ଯେତେବେଳେ ତାହା ଘରର ଗୃହଆଡ଼େ କୁଦିବୁଲିବାକୁ ଲାଗୁଥାଏ, ସେତେବେଳେ ତା'ର ଡେଣାର ପବନରେ ଉଜୁଡ଼ିହୋଇ ଯାଉଥିବା ପରଗୁଡ଼ାକ ଘରମଯ୍ୟ ହୋଇ ଉଡ଼ିବାକୁ ଆରମ୍ଭ କରୁଥାଏ । କିନ୍ତୁ ଯୁଗ୍‌ନା ତତ୍‌କ୍ଷଣାତ୍ ଦଉଡ଼ିଯାଇ ବତକଟିକୁ ଧରି ପକାଉଥାଏ ଓ ଦୁଇ ଆଣ୍ଠୁ ଭିତରେ ତାକୁ ଜାକିରଖି ପୁଣି ଆପଣାର କାମରେ ଲଗିଯାଉଥାଏ । ଚଢ଼େଇଟି ପୁଣି ବଡ଼ ବିକଳହୋଇ ଚିତ୍କାର କରୁଥାଏ, କିନ୍ତୁ ପିଣ୍ଡା ଓ ଦୁଆରଆଡ଼ୁ ଅନ୍ୟାନ୍ୟ ଚିତ୍କାରମାନ ଆସି ତା'ର ଚିତ୍କାରକୁ କୁଆଡ଼େ ବୁଡ଼ାଇ ଦେଉଥାଏ ।

"ହିଁଅଛି ପ୍ରକୃତରେ ଭାରି ସୁନ୍ଦର !"— ବୋଉନା ଭାବିବାକୁ ଲାଗିଲା । ଏକଥା ଭାବିବା ମାତ୍ରକେ କା'ଣ ଗୋଟାଏ ଉତ୍ତେଜନାର ବଶବର୍ତ୍ତୀ ହୋଇ ତା'ର ମଥା ଭିତରକୁ ରକ୍ତ ଚଢ଼ିଗଲା ପରି ମନେହେଲା । ସେହି ଆଶଙ୍କାରେ ବିଚଳିତ ହେଲପରି ସେ ମନ୍ଥର ପଦକ୍ଷେପରେ ସେଠାରୁ ପୁଣି ଆଗକୁ ଚାଲିବାକୁ ଆରମ୍ଭ କଲା । ଆଖିପତା ଉପରକୁ ହାତ ଉଠାଇ ଆଉ ହାତରେ ସେ ପୁଣି ଥରେ ଆପଣାର କମରପଟି ଭିଡ଼ିନେଲା ।

ଆପଣା ଘରହତାର ବାଡ଼ ଡେଇଁ ଫାଟକ ପାଖରେ ଆସି ପହଞ୍ଚିଲା ଜାଗାରୁ ସେ ମୁହଁ ବୁଲାଇ ପୁଣି ଥରେ ଯୁଗ୍‌ନାଙ୍କ ଘର ଆଡ଼କୁ ଅନାଇ ଦେଖିଲା ! ତାଙ୍କର ଘରଟା ଠିକ୍ ସାମନାରେ, ପୋଖରୀର ଠିକ୍ ଆରପାଖରେ । ଠିକ୍ ସେତିକିବେଳକୁ ଖୁବ୍‌ସମ୍ଭବ କେହିଜଣେ ଲୋକ ଘର ଭିତରୁ ବାହାରି ପଦାକୁ ଆସିଲା, କାରଣ କବାଟର ଫାଙ୍କ ଦେଇ ଘରର ଆଲୁଅ ପୁଣି ଥରେ ପୋଖରୀ ଉପରେ ଝଲସି ଉଠିଲା । ତା'ପରେ କାହାର ଭାରି ଭାରି ପାଦ ଶବ୍ଦ ଶୁଭାଗଲା, ତା'ପରେ ପାଣିରେ ବାଲ୍‌ଟି ବୁଡ଼ିବାର ଶବ୍ଦ ଶୁଭିଲା । ଶେଷକୁ ସେହି ଅନ୍ଧାର ଓ ଗମ୍ଭୀର ବିଲରୁ ମାଡ଼ିଆସୁଥିବା କୁହୁଡ଼ିର ଅନ୍ତରାଳରୁ ଧୀର କଣ୍ଠରେ କାହାର ସଙ୍ଗୀତ ମଧ୍ୟ ଭାସି ଆସିଲା :

"ହେ ଦୁଃଖ, ଆମ ଦୁହିଁଙ୍କ ଭିତରେ ଏହି ପାଣିର ବ୍ୟବଧାନ,—
ଏଠି ଥାଇ ଦୂରରୁ ମୁଁ କିପରି ଚୁମ୍ବନ ପଠାଇବି ?
ପଥରର ଭେଳାରେ ମୁଁ ଏହି ପାଣିକୁ ପାର ହୋଇଯିବି ।
ହେ ପ୍ରିୟ, ପାଣି ପାରିହୋଇ ମୁଁ ତୁମର ଚରଣ ତଳେ—
ଆପଣା ପ୍ରେମର ନିବେଦନ କରିବି ।"

ଏକାଗ୍ରଧ୍ୟାନରେ ବୋରିନା ଗୀତ ଶୁଣୁଥାଏ, କିନ୍ତୁ ଶେଷକୁ ଆଉ ସେହି କଣ୍ଠ ସ୍ୱର ଶୁଣାଗଲାନାହିଁ ଓ ପୁଣି ମୁହୂର୍ତ୍ତିକ ପରେ ଘରର ଆଲୁଅ ମଧ୍ୟ ଲିଭିଗଲା ।

ଆଜି ପୂର୍ଣ୍ଣିମା ରାତି । ଅରଣ୍ୟର ଗଛଦାଡ଼ିରୁ ଉଠି ଜହ୍ନ ଆକାଶକୁ ଆସିଲାଣି — ଗଛର ଅଗଗୁଡ଼ାକ ରୂପାରଙ୍ଗରେ ଧବଳ ହୋଇଯାଇଛି । ଡାଳପତ୍ରର ଅନ୍ଧିସନ୍ଧି ଭେଦକରି ସେହି ଚନ୍ଦ୍ର କିରଣ ପୋଖରୀର ପାଣି ଉପରେ ଆସି ପଡ଼ିଛି, ଘରର ଝରକା ପାଖରେ ମଧ୍ୟ ତାହା ଉଙ୍କି ମାରିବାକୁ ଆରମ୍ଭ କଲାଣି । ଏହାଭିତରେ କୁକୁରଗୁଡ଼ାକ ମଧ୍ୟ ଭୁକିବା ବନ୍ଦ କରି ଦେଲେଣି । ଏକ ଅତଳ ଓ ଅପାରଗମ୍ୟ ଶାନ୍ତିମୟତା ସମସ୍ତ ଗ୍ରାମ ଓ ସମସ୍ତ ପ୍ରକୃତିର କଳେବରକୁ ଆବୋରିଧରି ବିରାଜମାନ କରୁଛି ।

ଦୁଆରକୁ ଆସି ବୋରିନା ଆଉ ଥରେ ଆସ୍ତେ ଆଖି ବୁଲାଇନେଲା, ଘାସ ଚେରୁବାଉ ଚେରୁବାଉ ଘଡ଼ ଘଡ଼ ଶବ୍ଦ କରୁଥିବା ଘୋଡ଼ାଙ୍କ ଆଡ଼କୁ ଚାହିଁ ଦେଖିଲା, ତା'ପରେ ମୁଣ୍ଡ ଗଳାଇ ଗୁହାଳ ଭିତରକୁ ଅନାଇଲା । ରାତିରେ ଖରା ଗରମ ହେଉଥିବାରୁ ଗୁହାଳର କବାଟମାନ ମେଲାଥାଏ । ଗାଈମାନେ ଭୂଇଁଉପରେ ଶୋଇ ପାକୁଳି କରିବାରେ ଲାଗିଥାନ୍ତି ଓ ସଚରାଚର ଗାଈମାନେ ଯେପରି କ୍ଷୀଣଶବ୍ଦମାନ କରନ୍ତି, ସେହିପରି କ୍ଷୀଣଶବ୍ଦ କରୁଥାନ୍ତି ।

ଅମାର ଘର କବାଟ ବନ୍ଦ କରି ବୋରିନା ଖଞ୍ଜାଭିତରକୁ ଆସିଲା ଏବଂ ମୁଁଣ୍ଡରୁ ଟୋପି କାଢ଼ି ଆପଣାର ଶୋଇବାଘରେ ପ୍ରବେଶ କଲା । ଦରସ୍ପଷ୍ଟ କଣ୍ଠରେ ନିଜର ସନ୍ଧ୍ୟାମନ୍ତ୍ର ପାଠ କରିସାରି ସେ ନୀରବରେ ଲୁଗାପଟା ଓହ୍ଲାଇଲା ଓ ସଙ୍ଗେ ସଙ୍ଗେ ଶୋଇବାକୁ ଗଲା । ସେତେବେଳକୁ ସମସ୍ତେ ଶୋଇସାରିଲେଣି ।

କିନ୍ତୁ ତା'ର ଆଖିକୁ ଆଜି ନିଦ ଆସିଲାନାହିଁ । ଦେହ ଉପରର ରେଜେଇଟା ଭାରି ଗରମ ବୋଧହେବାରୁ ସେ ରେଜେଇଟାକୁ ଗୋଡ଼ଆଡ଼ୁ ଖସାଇ ଉପରକୁ ଟାଣିଆଣିଲା । ତା'ର ମୁଣ୍ଡ ସେତେବେଳକୁ ନାନାପ୍ରକାର ଜଟିଳ ଓ କଠିନ ଭାବନାରେ ଆନ୍ଦୋଳିତ ହେଉଥାଏ । ତା'ପରେ ତା'ର ଦେହଟା ମଧ୍ୟ ସେତେଦୂର ଭଲ ଲାଗୁ ନ ଥାଏ !

ସେ କ୍ଷୀଣ ସ୍ୱରରେ କହିଲା, "ମୁଁ ସବୁ ସତ୍ତ୍ୱଦନେ କହେ ଯେ ରାତରେ ଦହି ପିଇଲେ ତାହା ଦେହକୁ ଭାରି ଅପକାର କରେ !"

ତା'ପରେ ସେ ଆପଣାର ପିଲାମାନଙ୍କ କଥା ଭାବିବାକୁ ଲାଗିଲା । ତା'ପରେ ପୁରୁଣା ବିଷୟରେ ଶୁଣିଥିବା କଥାଗୁଡ଼ିକ ବିଷୟରେ ଚିନ୍ତା କଲା । ଶେଷକୁ ବାରଆଡ଼ୁ ବାର ପ୍ରକାର ଭାବନା ଆସି ତା'ର ମସ୍ତିଷ୍କ ଭିତରେ ଗୋଳଆମିଶା ହୋଇଗଲା ! ସେ କ'ଣ କରିବ, ଭାବି କରି କିଛି ଠିକ୍ କରି ପାରିଲାନାହିଁ । ପୁରାତନ ଅଭ୍ୟାସର ବଶବର୍ତ୍ତୀ ହୋଇ ସେ ପାର୍ଶ୍ୱବର୍ତ୍ତୀ ବିଛଣାରେ ଆଗେ ଶୋଇଥିବା ବ୍ୟକ୍ତିକୁ ପଚାରିବାଲାଗି ଉଦ୍ୟତ ହେଉଥିଲା :

" ମେରି, କହିଲ୍ ମୋ'ର ବାହାହେବା ଉଚିତ ହେବ ନା ନାହିଁ ?"

କିନ୍ତୁ ସଙ୍ଗେ ସଙ୍ଗେ ସେ ହୋସ୍‌କୁ ଫେରିଆସିଲା । ମେରି ବର୍ତ୍ତମାନ ଏହି ବିଛଣା ଉପରେ କୁଆଡ଼ୁ ଆସିବ ? ସେ ତ ଗତ ବସନ୍ତ ସମୟରୁ ଗୀର୍ଜା-ଅଗଣାରେ ଥିବା କବର ଭିତରେ ଯାଇ ଶୋଇଛି ! ସିଏ ଶୋଉଥିବା ବିଛଣାରେ ବର୍ତ୍ତମାନ ସୁଲ୍‌କା ଶୋଇଛି, ଗାଢ଼ ନିଦରେ ଶୋଇ ସାଁ ସାଁ ହୋଇ ନିଶ୍ୱାସ ମାରୁଛି । ପ୍ରକୃତରେ ତା'ର ଜୀବନ କେତେ ଦରିଦ୍ର, କେତେ ନିଃସଙ୍ଗ ! ଦରକାରବେଳେ ତା'ର ହୋଇ ପଦେ ପରାମର୍ଶ ଦେବାକୁ ତା'ର ଆଜି ଏହି ସଂସାରରେ ଜଣେହେଲେ କେହି ନାହାନ୍ତି । ଏହିପରି ଭାବି ସେ ଏକ ଗଭୀର ଦୀର୍ଘଶ୍ୱାସ ପକାଇଲା, ଶୂନ୍ୟରେ କ୍ରସ୍‌ଚିହ୍ନ ଅଙ୍କିତ କରି ପୂର୍ବପୁରୁଷମାନଙ୍କର ଆତ୍ମାର ସଦ୍‌ଗତି ନିମିତ୍ତ କେତେଥର ଦେବୀମନ୍ତ୍ର ଉଚ୍ଚାରଣ କଲା, ନରକର ପରୀକ୍ଷା ମଧ୍ୟଦେଇ ଉତ୍ତୀର୍ଣ୍ଣ ହେଉଥିବା ସକଳ ଈଶ୍ୱର-ବିଶ୍ୱାସୀ ଧର୍ମାତ୍ମାମାନଙ୍କର ଆତ୍ମାର ସଦ୍‌ଗତିଲାଗି କାମନା କଲା ।

# ତିନି

ସକାଳର କିରଣ ଆସି ଘର ଚୂଳ ଉପରେ ପଡ଼ିଲାଣି । ରାତିର ଅନ୍ଧାର ଏକାବେଳକେ ଲୁଚି ପଳାଇଗଲାଣି । ଆକାଶର ତାରା ଆକାଶ ଭିତରେ ଫିକା ହୋଇ ଲୁଚି ସାରିଲେଣି, ବୋଉନାର ଚହଳପହଳରେ ନୂତନ ଜୀବନର ସଞ୍ଚାର ଆରମ୍ଭ ହୋଇଗଲାଣି ।

କୁବା ଘୋଡ଼ା ଗୁହାଳଠାରୁ ବାହାରି ବାହାରକୁ ଆସିଲା । ବଡ଼-ସକାଳର ହେମାଳ ଧୂମ ହୋଇ ପାତଳା ସରପରି ମାଟିଉପରେ ବସି ରହିଚି । ମୋଟେ ଏଇନାକେ ରାତି ପାହିଚି । ଗୁରିଆଡ଼ର ପାଉଁଶିଆ କୁହୁଡ଼ି ଭିତରେ ପୂର୍ବଦିଗର ଆକାଶରେ ଜଳନ୍ତା ନିଆଁ ରଙ୍ଗର ଛିଟିକାମାନ ଦେଖାଯାଉଚି । କୁହୁଡ଼ିରେ ବୁଡ଼ିରହିଥିବା ଗଛଗୁଡ଼ିକର ଅଗରେ ମଧ୍ୟ ସକାଳର ପ୍ରଭା ଝଲକି ଉଠିଲାଣି । ଅଳସ ଭାଙ୍ଗି କୁବା ହାଇଟାଏ ମାରିଲା ଏବଂ ତା'ପରେ ଭିକେଙ୍କୁ ଉଠାଇବା ପାଇଁ ଗାଈ ଗୁହାଳ ଭିତରକୁ ଗଲା । ଆରେ, ଏତେବେଳେ ଯାଏ କ'ଣ ଉଠିବାକୁ ମନ ହେଉନାହିଁ ? କିନ୍ତୁ ଗାଈଆଳ ଟୋକାଟା ଆପଣାର ନିଦଭରା ମୁଣ୍ଡଟାକୁ ଉଠାଇ ନିଶା ଲାଗିଥିବା ପରି ଫୁସ୍ ଫୁସ୍ ହୋଇ କହିଲା, "ଏଇ ଉଠିଲି ବୋଲି ଜାଣ, କୁବା, ଉଠିଲି ବୋଲି ଜାଣ ।"— ଏତିକି କହି ସେ ପୁଣି ନିଦରେ ଶୋଇପଡ଼ିଲା ।

"ଆଚ୍ଛା, ବଜ୍ରାତଟା ଯଦି ଆଉ ଦଣ୍ଡେ ଶୋଇବାକୁ ଚାହୁଁଚୁ, ତେବେ ଶୋଇଥା"— କୁବା ତା'ର ଦେହ ଉପରେ ଆଉ ଗୋଟାଏ ମେଣ୍ଢାଲୋମର କୋଟ୍ ନେଇ ପକାଇଦେଲା ଏବଂ ଗୁହାଳଭିତରୁ ପଦାକୁ ବାହାରିଗଲା । ସେ ଚାଲିବାବେଳେ ଟିକିଏ ଖୋଟେଇ ଖୋଟେଇ ଚାଲେ । ଆଗେ କେତେବର୍ଷ ତଳେ ଥରେ ତା'ର ଆଣ୍ଠୁରେ ଗୋଟାଏ ଗୁଳି ଆସି ବାଜିଥିଲା, ସେହିଦିନ-ଠାରୁ ସାରା ଜୀବନଟା ପାଇଁ ତାକୁ ଖୋଟା କରିଦେଇ ଯାଇଚି । କୂଅପାଖକୁ ଯାଇ କୁବା ମୁହଁ ଧୋଇଆସିଲା, ମୁଣ୍ଡର ପାତଳା ବାଳଭିତରେ ଥରେ ହାତର ଆଙ୍ଗୁଠିଗୁଡ଼ାକୁ ବୁଲାଇ ଆଣିଲା । ରାତିରେ ବିଛଣା ଉପରେ ମାଡ଼ିମକଚି ହୋଇ ବାଳଗୁଡ଼ାକ ଅଲରା ହୋଇ ବସି ଯାଇଥିଲା, ବର୍ତ୍ତମାନ ତା'ର ହାତ ବାଜି

ସକାଳ୍ ହୋଇଗଲା । ତା'ପରେ ଘୋଡ଼ା ଗୁହାଳର କବାଟ ପାଖରେ ଆଣ୍ଠୁ ମାଡ଼ି ବସି ସେ ପ୍ରାର୍ଥନା-ମନ୍ତ୍ର ପାଠ କରିବାକୁ ଗଲା ।

ଘରର ମାଲିକ ଏପର୍ଯ୍ୟନ୍ତ ବିଛଣାରୁ ଉଠିନାହାନ୍ତି । ତାଙ୍କ ଶୋଇବା ଘରର ଝରକାଗୁଡ଼ାକ ସକାଳ କିରଣର ଆଭାସ ବାଜି ନାଲିଚକଚକ ଦେଖାଗଲାଣି । କୁବା ଆଙ୍ଗୁଠି ଭିତରେ ଗଡ଼ାଇ ଗଡ଼ାଇ ମାଳା ଜପିବାରେ ଲଗିଥାଏ । ସେ ବେଶ୍ ଅନେକ ସମୟ ଧରି ପ୍ରାର୍ଥନା କଲା, ଅବଶ୍ୟ ତଥାପି ତା'ର ଆଖିଡୋଳାଗୁଡ଼ାକ ଏଣେତେଣେ ବୁଲିବାରେ ଲଗିଥାଏ । କେତେ-ବେଳେ ଦୁଆରେ, କେତେବେଳେ ଝରକାଗୁଡ଼ାକ ଉପରେ ଓ ପୁଣି କେତେବେଳେ କୁହୁଡ଼ି ଘୋଡ଼ିନଥିବା ବଗିଚାର ଗଛମାନଙ୍କ ଉପରେ ତା'ର ଆଖି ପଇଁତରା ମାରି ଆସୁଥାଏ । ଗଛଗୁଡ଼ାକର ଗଣ୍ଡିରେ ହୀମର ସର ପଡ଼ିଯାଇଛି । ସେଉଗଛରେ ସେଉଫଳ ଭର୍ତ୍ତି ହୋଇଛି, ଗୋଟାଏ ଗୋଟାଏ ସେଉ ଠିକ୍ ତା'ର ହାତମୁଠା ପରି ହେବ ! ପାଖରେ ଧୋବଲା ଦେହକୁ ଲମ୍ବାଇଦେଇ ଲପା କୁକୁର ଶୋଇରହିଛି, ସେ ତାହାରି ଆଡ଼କୁ କ'ଣ ଗୋଟାଏ ଜିନଷ ପକାଇଦେଲା । କୁକୁରଟା କେବଳ ପ୍ରଲମ୍ବିତ ତାଳରେ ଥରେ ଚକ୍କାର କଲା, ତା'ପରେ ମୋଡ଼ିମାଡ଼ି ହୋଇ ପୁଣି ଶୋଇପଡ଼ିଲା ।

"ଶଳା ପାଜି କୁକୁର ! ତା'ର କେଡ଼େ ଗର୍ବ ଦେଖ ! ଆଜି ଖରା ପଡ଼ିଲାଣି, ତଥାପି ଶଇତାନ କୁକୁରଟାର ନିଦ ଭାଙ୍ଗୁନାହିଁ !" — କହି ସେ କୁକୁର ଉପରକୁ ଗୋଡ଼ି ପକାଇବାକୁ ଲଗିଲା । ବିଚରା କୁକୁର ଶେଷକୁ ଉପାୟାନ୍ତର ନଦେଖି ଉଠି ବାହାରକୁ ବାହାରି ଆସିଲା । ଆଗ ଦେହଟାକୁ ଟେଙ୍ଗା କରିନେଲା । ତା'ପରେ ହାଇଟାଏ ମାରିଲା ଓ ତା'ପରେ ଲାଙ୍ଗୁଡ଼ ହଲାଇ ହଲାଇ କୁବା ନିକଟକୁ ଆସିଲା,—ଭାରି ପୁଲକରେ ଖୁବ୍ ଶୁଙ୍ଘିବାକୁ ଲଗିଲା ଓ ଆପଣାର ଦାନ୍ତ ଦେଇ ରୋମ ଉପରୁ ମଇଳାଗୁଡ଼ାକ୍ ପରିଷ୍କାର କରି ପକାଇଲା ।

"ତୁମକୁ ନମସ୍କାର, ତୁମରାଜ୍ୟର ସମସ୍ତ ମୁନିଋଷିଙ୍କୁ ନମସ୍କାର । ହେ ଭଗବାନ, ମୋର ପ୍ରାର୍ଥନା-ମନ୍ତ୍ର ପାଠକରି ମୁଁ ତୁମ ସମସ୍ତଙ୍କୁ ସ୍ମରଣ କରୁଛି ! ଅମେନ୍ !"

ଆପଣାର ଛାତିଉପରେ ଏକାଧିକବାର ହାତକୁ ବାଡ଼େଇ ସେ ସିଧାହୋଇ ଠିଆହେଲ ଓ ଲପାକୁ ଡାକଲ :

"ତୁ—ତୁ—ଶଳା କୁକୁରର ନବରଙ୍ଗ ଦେଖ । ଶଳା ବାହାହୋଇ ଯାଉଥିବା କନିଆଙ୍କ ପରି ଆପଣା ଦେହରୁ ଉକୁଣି ମାରି ବସିଲଣି !"

କୁବା କେବେହେଲେ ଆପଣାର କାମରେ ମଠ କରେନାହିଁ । ଆଜି ମଧ୍ୟ ସେ ସମୟ ଅନୁସାରେ ତା'ର କାମରେ ବାହାରିଗଲ । ପ୍ରଥମେ ଘୁହାଳଘରୁ ଗାଡ଼ୀ ବାହାରକଲ, ଗାଡ଼ୀ ଚକରେ ତେଲ ଦେଲ, ଘୋଡ଼ାଙ୍କୁ ପାଣି ମୋହିଁ ଦେଲ । ସେମାନଙ୍କ ଆଗରେ କୁଟା ଫିଙ୍କାଇଦେଲ । ଘୋଡ଼ା ଗୁଡ଼ାକ ଆନନ୍ଦରେ ହେଁ ହେଁ ଶବ୍ଦ କରି ଘୁହାଳ ଘର ଭିତରେ ପଦଚାରଣା କରିବାକୁ ଲଗିଲେ । ତା'ପରେ ଅମାର ଭିତରକୁ ଯାଇ ସେ ଅଗାଡ଼ମିଶା ଘାସଦାନାରୁ ପୁଳାଏ ନେଇଆସିଲ ଏବଂ ତାକୁ ନେଇ ଘୋଡ଼ାର କୁଣ୍ଡରେ ଢଳାଇଦେଲ । ଘୋଡ଼ୀ ପାଇଁ ଏ ଘୁହାଳରେ ଅଲଗାକରି ଅଡ଼ା ତିଆରି ହୋଇଥିଲ ।

"ଖାଆଲେ ମାଆ ଖାଆ ! ତୋ'ର ପରି ଛୁଆ ହେବାର ଅଛି, ଦେହରେ ବଳ ନହେଲେ ଚଳିବ କିପରି ? ଖାଆ ! ସବୁ ଖାଇଦେ' !"— କହି ଘୋଡ଼ୀର ନାକ ଉପରେ ସେ ଅତି ଆଦରରେ ହାତ ଆପୁଳେଇବାକୁ ଲଗିଲ । ଘୋଡ଼ା ପ୍ରତ୍ୟୁତ୍ତର ଦେଲାପରି ଆପଣାର ମୁଣ୍ଡକୁ ଆଣି କୁବାର କାନ୍ଧ ଉପରେ ନେଇ ରଖିଲ ଏବଂ ଜିଭଟାକୁ ବଢ଼ାଇଦେଇ ତା' ମୁଣ୍ଡର ବାଳକୁ ଥରଥର କରି ଆହ୍ଲାଦରେ ଟାଣିବାକୁ ଲଗିଲ ।

"ଆଜି ଖରାବେଳଯାଏ ଆଲୁ ବୁହା ହେବ, ପୁଣି ସଞ୍ଜବେଳକୁ ଭାରବୋହି ଯିବାର ଅଛି । ନା — ସେଥିପାଇଁ ଡରିବାର କୌଣସି କାରଣ ନାହିଁ । ଗାଡ଼ିଏ କୁଟା ଏବେ କେତେ ଭାରି ହେବ ? କିଛି ଭୟ କରନା !"

"କନ୍ତୁ ତୁ ! ତୋ' କପାଳରେ ଆଜି କାହାଣେ ମାଡ଼ ଲେଖାହୋଇ ରହିଚି । ଶଳା ଅଲସୁଆ କେମିତି ସେଠି ଫାଆଁ ଗାଲଦେଇ ପଡ଼ିଚି ଦେଖ !"— ପାଖରେ ଠିଆହୋଇଥିବା ସୁନେଲି ରଙ୍ଗର ଘୋଡ଼ାଟାକୁ

ଉଦ୍ଦେଶ୍ୟ କରି ସେ କହିଲା । ଘୋଡ଼ାଟା ବେକକୁ ଲମ୍ବାଇଦେଇ ଘୋଡ଼ୀର ଅଡ଼ା ଭିତରକୁ ମୁହଁ ଗଳାଇବାକୁ ଚେଷ୍ଟା କରୁଥିଲା ।

" ହେ ହେ ଦାନବଦଆ, ମେଲେଚ୍ଛ ଇହୁଦୀ ! ତା'ଭିତରକୁ ମୁଣ୍ଡ ଗଳାଉଚୁ ଯଥେଷ୍ଟ ଗିଳିବୁ ବୋଲି, ନୁହଁ ? ଜନ୍ତୁ ଆଉ ଗୋଟାଏ ଖୋଜ ଆଗକୁ ପକାଇଲେ ମନେ ରଖିଥାଆ, ତୋ' ପିଠି ଜାଣେ କି ମୋ'ର ପାଞ୍ଚଣ ଜାଣେ !"

ଘୋଡ଼ାପାଖରୁ ଉଠିଯାଇ ସେ କାନ୍ଥ ପାଖରେ ଥିବା ଅଡ଼ାଭିତରକୁ ଅନାଇଲା । ଘନ ବାଦାମୀ ରଙ୍ଗର ଫ୍ରେମ ଭିତରେ ଧଳା ଚିହ୍ନ ଥିବା ମୁହଁଟାକୁ କାଢ଼ିଦେଇ ଘୋଡ଼ାଛୁଆଟି ତା'ଆଡ଼କୁ କେତେବେଳୁ ହେଲା ଅନାଇ ରହିଥିଲା । କୁବା ପହଞ୍ଚିଲାମାତ୍ରକେ ସେ ଅତି ଧୀରସ୍ୱରରେ ମୁଖରୁ ଏକ ଧ୍ୱନି ବାହାର କରି ସ୍ୱାଗତ ଜଣାଇଲା ।

"ହାଉଲେ, ବଚ୍ଚା, ହାଉଲେ ! ଆଗ ପେଟପୂରି କରି ଖାଇଦେ', ତା'ପରେ ଆଜି ଖାମିନ୍ଦକୁ ନେଇ ସହରକୁ ଯିବୁ......" କିନ୍ତୁ ତା'ର ପଛପଟଟା ଗୋଟାସୁଦ୍ଧା ମୁତ ଆଉ ଗୋବରରେ ବୁଡ଼ିଥାଏ । କୁବା ପୁଳାଏ କୁଟା ନେଇ ତା'ର ଦେହରୁ ମଇଳା ପୋଛି ପକାଇଲା । "ଛୋଟାଟା ବେଶ୍ ପାକଳ ହୋଇ ଆସିଲାଣି, ଏଥର ଫଳ ଯିବାଲାଗି ନେଇଗଲେ ବି ଚଳିବ । କିନ୍ତୁ ଭାରି ମଇଳା ! ଯେତେବେଳେ ଆସିବ, ସେତେବେଳେ ଖାଲି ଅପନାରେ ବୁଡ଼ିଥିବ । ଠିକ୍ ଗୋଟାଏ ମାଛଘୁଷୁରି ପରି ଗୁହାଳ ଭିତରୁ ବୋବାଳି ଛାଡ଼ୁଥିବ !"

ଏହିପରି ସବୁ ଜନ୍ତୁଙ୍କ ସହିତ କଥାବାର୍ତ୍ତା ହୋଇ ସେ ଗୁହାଳ ଯାଉହୋଇ ଘୁଷୁରିମାନଙ୍କ ଅଡ଼ାକୁ ଗଲା ଓ ଖାଇବାଲାଗି କୁଲୁରୁ କାଲୁରୁ ହେଉଥିବା ଘୁଷୁରିଙ୍କୁ ଅଡ଼ାଭିତରୁ ବାହାରକୁ ଛାଡ଼ିଦେଲା । ତା' ମୁହଁକୁ ବଲବଲ କରି ଅନାଇ ଲିପା ମଧ୍ୟ ତା'ର ଅନୁସରଣ କରୁଥାଏ ।

"ତୋ'ର ପୁଣି କ'ଣ ଲୋଡ଼ା କହିଲୁ ? ଆଚ୍ଛା ନେ,— ଏଠି ଖଣ୍ଡେ ବାସିଆ ରୁଟି ପଡ଼ିଚି, ପାଇଦେ ।"— ଆପଣାର ପକେଟରେ ପଡ଼ିଥିବା ଖଣ୍ଡେ ରୁଟି ବାହାରକରି ସେ କୁକୁର ଆଗରେ ହଲାଇବାକୁ ଲାଗିଲା ଓ ଉପରକୁ

ଫିଙ୍ଗିଦେଲା । ଚତୁର କୁକୁର ଶୂନ୍ୟଭିତରୁ ହିଁ ରୁଟି ଖଣ୍ଡିକୁ ଟାଉକରି ମାଡ଼ିବସିଲା ଏବଂ ମୁହଁରେ ଧରି ଆପଣାର ଶୋଇବାଥାନକୁ ଚମ୍ପଟ କଲା । କାଳେ ଘୁଷୁରିଗୁଡ଼ାକ ମାଡ଼ିଆସି ତା' ମୁହଁର ଆହାର ଛଡ଼ାଇନେବେ, ସେଇ ଭୟରେ ।

"ବାଧାତାକୁ କହିବ ! ଏଇ ଘୁଷୁରିଗୁଡ଼ାକ ମଣିଷଠାରୁ ବି ବଳିଲେଣି ! ଗୋଟାଏ ଗୋଟାଏ ମଣିଷ ଯେମିତି ପରର ଧନ ଝାମ୍ପିନେବାକୁ ହନ୍ତସନ୍ତ ହେଉଥାନ୍ତି, ଏଗୁଡ଼ାକ ଠିକ୍ ସେହିପରି ହେଉଚନ୍ତି !"

ଖଳାଘରକୁ ଆସି ସେ କାଲି ମରାହୋଇଥିବା ଗାଈଟିକୁ ଅନାଇଲା । ଗାଈଟିର ଫାଡ଼ିଆଗୁଡ଼ିକ ଓଦାଦେହରେ ଟଙ୍ଗାହୋଇ ରହିଥାଏ ।

"ଏତ୍ତେ ବୋକା ଓଲମା ଜନ୍ତୁ ! ବାପ୍, ଆପଣାର ଓଲମାପଣର ପରାପତ ପାଇଲା ! କାଲି ପଅରକୁ ଯେ ରନ୍ଧାହାଣ୍ଡି ଭିତରେ ଯାଇ ପଡ଼ିବ । ବଚ୍ଛର ଗୋରୁ ! ଆପେ ମରି ଆମ ସମସ୍ତଙ୍କ ଲାଗି ରବିବାର ଭୋଜିର ବରାଦ କରିଦେଇ ଗଲା !"

ଅଦୂର ଭବିଷ୍ୟତରେ ଅପେକ୍ଷା କରି ରହିଥିବା ଏହି ଭୋଜିର କଳ୍ପନା କରି ସେ ଭାରି ନିଶ୍ଚିନ୍ତରେ ଗୋଟାଏ ଲମ୍ବା ନିଶ୍ୱାସ ମାରିଲା ଏବଂ ତା'ପରେ ପୁଣି ଭିତେକ୍କୁ ଉଠାଇଦେବାକୁ ଗଲା । "ଆରେ, ସୂର୍ଯ୍ୟ ଆସି ଉଦୟହେବାକୁ ବସିଲେଣି, ତୁ ଆଉ କେତେବେଳଯାଏ ଶୋଇଥିବୁ ? ଉଠ୍ । ଆଜି ଗାଈମାନେ ଘାସକୁ ବାହାରିବେ ନା ନାହିଁ ?"

ଭିତେକ୍ର ଭେକ ସରୁନାହିଁ ସେ ଏଇ କଥାକୁ ଶୁଣିବାକୁ ଯିବ ! କୁବାର ଆକଟ ଶୁଣି ସେ ମେଣ୍ଢା ଗୁଲଟାକୁ ଆହୁରି ଭଲକରି ଦେହ ଉପରକୁ ଟାଣିନେଇ ଆରାମରେ ଘୁଙ୍ଗୁଡ଼ି ମାରିବାକୁ ଲାଗିଲା । କିନ୍ତୁ ଶେଷକୁ ସେ ଆପଣା ମନକୁ ବିଛଣାରୁ ଉଠି ବସିଲା, ଏବଂ ଟଳ ଟଳ ହୋଇ ଭଣଭଣ ମୁହଁ କରି ଅଗଣା ଭିତରକୁ ଆସିଲା ।

ଆଜି ସାଆନ୍ତଙ୍କର ଏତେ ବେଳଯାଏ ନିଦ ଭାଙ୍ଗିବାକୁ ନାହିଁ । ସୂର୍ଯ୍ୟ ବର୍ତ୍ତମାନ କେତେ ଉପରକୁ ଉଠିଗଲେଣି, ଧରଣୀ ଉପରେ ଲାଗି ରହିଥିବା ଲାଖ ତାଙ୍କର କିରଣ ପଡ଼ି ଝଲମଲ ଜକ୍‌ଜକ ପରି ଦେଖାଯାଉଚି

ପ୍ରତ୍ୟେକ ଘରକାର କାଚ ଓ ପ୍ରତ୍ୟେକ ପୋଖରୀ ଓ ଗଡ଼ଆ ଜଳନ୍ତା ନଆଁ ଙ୍କ ଦର୍ପଣ ପର ଦେଖାଯାଉଚ । ତଥାପି ସାଆନ୍ତଙ୍କର ଶୋଇବା ଘରେ କାହାର ହେଲେ ନିଦ ଭାଙ୍ଗି ନାହିଁ ।

ଗୋରୁ ଗୁହାଳର ଏରୁଣ୍ଡି ବନ୍ଧ ଉପରେ ବସି ଭତେକ୍ ଅଳସ ହାଇ ମାରୁଥାଏ ଓ ଦେହହାତ କୁଣ୍ଡାଇ ହେଉଥାଏ । ଘରଚଟିଆ ଚଢ଼େଇମାନ ଘର ଭିତରୁ ଆସି କୂଅଉପରେ ଯାଇ ବସିଲେଣି ଏବଂ କୂଅପାଖରେ ଥିବା ନଳାରେ ଗାଧୋଇବାରେ ଲାଗିଲେଣି । ଗୋଟାଏ ସିଡ଼ି ନେଇ ଭତେକ୍ ଚାଳଭିତରୁ ଘରଚଟିଆ ବସାର ସନ୍ଧାନ କରି ବାହାରିଲା । କାରଣ ସେଠାରେ ଝୁଡ୍‌ଝାଡ୍ କୌଣସି ଶବ୍ଦ ନଶୁଣିପାରି ଚଢ଼େଇଗୁଡ଼ାକ କାଲେ କାଲୁଆ ଲାଗି ମରିଯାଇଥିବେ ବୋଲି ସେ ଭାରି ଆଶଙ୍କା କରୁଥିଲା । ବସାମାନ ଖୋଜ ଦେଖିଲା, କେତୋଟି ଚଢ଼େଇ ସେଠି ଏକାବେଳେକେ ଜଡ଼ ହୋଇ ପଡ଼ିଚନ୍ତି, ଶୀତରେ କାଲୁଆ ହୋଇ ମଲାପରି ହୋଇ ଯାଇଚନ୍ତି । ସେମାନଙ୍କୁ ଅତି ସାବଧାନ ଭାବରେ ସେଠାରୁ ବାହାର କରି ଆଣି ସେ ଆପଣାର ଭିତଉପରେ କମିଜତଳେ ନେଇ ଧରିଲା ଓ ସେମାନଙ୍କୁ ଟିକଏ ଉଷୁମ ଦେବାକୁ ଚେଷ୍ଟା କଲା ।

"ଆଁ ଦେଖିବୁ, କୁବା ! ଏ ଚଢ଼େଇଗୁଡ଼ାକ କପରି ଶୀତରେ ମରିଯାଇଚନ୍ତି !"— କହି ସେ କୁବାକୁ ଶୁଖିଲା ଡାଙ୍ଗପରି ହୋଇଯାଇଥିବା ଚଢ଼େଇମାନଙ୍କୁ ଦେଖାଇବାକୁ ଲଗିଲା । କୁବା ଗୋଟିଗୋଟି କରି ସେଗୁଡ଼ିକୁ ହାତକୁ ନେଲା, ନେଇ କାନପାଖରେ ଧରିଲା, ସେମାନଙ୍କର ଆଖି ଫୁଙ୍କି-ଦେଲା ଏବଂ ତା'ପରେ ମତ ପ୍ରକାଶ କରି କହିଲା !

"ଆରେ, ମରିନାହାନ୍ତି । ରାତିରେ କାଲୁଆ ସହିନପାରି କେବଳ ନିର୍ଜୀବପରି ହୋଇଯାଇଚନ୍ତି । ଓଲମା ଚଢ଼େଇଗୁଡ଼ାକ, ଶୀତଦିନ ପଡ଼ିବା ଆଗରୁ ଆଉ କୌଣସି ଉଷୁମ ଦେଶକୁ ଉଡ଼ି ନଯାଇ ଏଇଠି ରହିଯାଇଚନ୍ତି । ହାସ୍ ହାସ୍ !"— କହି ସେ ଆପଣା କାମରେ ପୁଣି ମନଦେଲା ।

"ଭତେକ୍ ସେହିପରି ଭାବରେ ଖଣ୍ଟା ଆଗରେ ବସିରହିଥାଏ, ଚୂନ-ଧଉଳା କାନ୍ଥଉପରେ ଉଜ୍ଜ୍ୱଳ ସୂର୍ଯ୍ୟକିରଣ ଆକାଉଁହୋଇ ପଡୁଥାଏ ।

ମାଛମାନେ ସେତେବେଳକୁ ଭଣ ଭଣ ହୋଇ ଉଠି ଏଠିସେଠି ବସିବାକୁ ଆରମ୍ଭ କରଦେଲେଣି । ତା' ଦେହର ଉଷୁମଲାଗି ଯେଉଁ ଚଢ଼େଇଙ୍କର ଦେହରେ ଟିକିଏ ଜୀବନ ଆସିଥିଲା, ସେ ସେଗୁଡ଼ିକୁ ବାହାର କର ଭଲକର ଫୁଙ୍କିଦେଲା, ସେମାନଙ୍କର ଥଣ୍ଡା ମେଲାକର ଆପଣାର ଉଷ୍ମ ଓଠରେ ଛୁଆଁ ଛୋଁଆଇଦେଲା । ତେବେଯାଇ ସେଗୁଡ଼ିକ ଜୀଅନ୍ତା ଚଢ଼େଇପରି ଚେଙ୍ଗା-ହୋଇ ଉଠିଲେ ଓ ଆଖି ମେଲାକର ଉଡ଼ି ପଳାଇବାକୁ ପର ଫଡ଼ଫଡ଼ କରିବାକୁ ଲଗିଲେ । ତା'ପରେ କାନ୍ଥଉପରେ ବସିଥିବା ମାଛଙ୍କ ମାରି ଗୋଟାଏ ଗୋଟାଏ କର ସେ ଚଢ଼େଇଙ୍କୁ ଖାଇବାକୁ ଦେଲା ଓ ତା'ପରେ ସେମାନଙ୍କୁ ଛାଡ଼ିଦେଲା ।

"ଯାଆ, ତୁମର ମାଆପାଖକୁ ଯାଆ !"— ସାନସାନ ଚଢ଼େଇଗୁଡ଼ିକ ତା'ହାତରୁ ଉଡ଼ିଯାଇ ଗୁହାଳଘରର ଓଳିଉପରେ ବସିଲେ, ଡେଣାଭିତରେ ଥଣ୍ଡାକୁ ଘୂରାଇ ଖୁମ୍ପିବାକୁ ଲଗିଲେ । ସତେଅବା ବଡ଼ କୃତଜ୍ଞ ଭାବରେ ସେମାନେ ଭଡେକ୍‌କୁ ଧନ୍ୟବାଦ ଦେଉଚନ୍ତି, ସେହିପରି ଚୁଁ' ଚୁଁ' ଶବ୍ଦ କରିବାକୁ ଲଗିଲେ ।

ଏତେବେଳଯାଏ ଲପା ଲଙ୍ଗୁଳ ମାଡ଼ି ବସିରହି ଭାରି ଉତ୍କଣ୍ଠାର ସହିତ ଏହିସବୁ ବ୍ୟାପାର ଦେଖୁଥିଲା, ବେଳେବେଳେ ଜିଭ ମେଲାକର କ'ଣ ସବୁ କ୍ଷୀଣ ଶବ୍ଦ କରୁଥିଲା ଏବଂ ଗୋଟିଗୋଟି କର ଚଢ଼େଇ ଉଡ଼ିଗଲା ବେଳକୁ ସେ ପ୍ରତ୍ୟେକଟି ପଛରେ ତାକୁ ଧରିବାଲାଗି ଝଣ୍ଡେଦୂର ଦଉଡ଼ି ଯାଉଥିଲା । ତା'ପରେ ନିରସ୍ତ ହୋଇ ପୁଣି ଆପଣା ଥାନକୁ ଫେରଆସି ପୂର୍ବବତ୍ ଆସନରେ ବସି ଘଟଣାଗୁଡ଼ିକୁ ଲକ୍ଷ୍ୟକର ଦେଖୁଥିଲା ।

"ଯାଆ, ଯାଆ, ପବନକୁ ବି ଧରିବୁ ଯାଆ !"— ଭଡେକ୍ କୁକୁରକୁ ଉଦ୍ଦେଶ୍ୟ କର କହିଲା । ମରମର ଚଢ଼େଇଗୁଡ଼ିକୁ ବଞ୍ଚାଇବାରେ ସେ ଏତେଦୂର ନିମଗ୍ନ ଓ ବ୍ୟସ୍ତ ହୋଇ ରହିଥିଲା ଯେ ବୋରନା ଯେ କେତେ-ବେଳେ ବିଛଣାରୁ ଉଠି ଖଞ୍ଜା ବାହାରକୁ ଆସିଲାଣି, ସେ ବିଷୟରେ ତା'ର କୌଣସି ନିଘା ନଥିଲା । ବୋରନା ଆସି ଯେତେବେଳେ ତା'ର ଆଗରେ ଆସି ଠିଆହେଲା, ସେତେବେଳେ ଯାଇ ସେ ତାକୁ ଦେଖିବାକୁ ପାଇଲା ।

"ଶଳା ଚୋକର, ବାଲିଙ୍ଗି ଦେଖ ! ଚଢ଼େଇ ସାଙ୍ଗରେ ଖେଳ ଲଗିଚ, ନା ?"

ସେଠାରୁ ଦଉଡ଼ି ପଳାଇବ ବୋଲି ଭଟେକ୍ ତରବର କରି ଡେଇଁ-ପଡ଼ି ଠିଆ ହୋଇଗଲା । କିନ୍ତୁ ବୋରନା ଗୋଟାଏ ହାତରେ ତାହାର କୋଟ୍ କଲରକୁ କଷିକରି ଧରି ଆର ହାତରେ ଆପଣାର ଅଣ୍ଟାରେ ବନ୍ଧା ହୋଇଥିବା ଚମଡ଼ାର ପଟିଟିକୁ ବାହାର କରିବାକୁ ଲଗିଲା ।

"ତୁମ ଗୋଡ଼ତଳେ ପଡୁଚି ସାଆନ୍ତ, ମୋତେ ମାରନାହିଁ ।"— ବିକଳରେ ଓ ଭୟରେ ଏତିକି କହିବା ବ୍ୟତୀତ ବିଚାରା ଚୋକରର ଆଉ କୌଣସି ଚାରା ନଥିଲା ।

"ତୁ କୋଉ ବାଗିଆ ଗାଈଆଳ ହୋଇଚୁ ମୋତେ କହିବୁଟି ? ଏମିତି ଗାଈ ଜଗୁଚୁ, ନା ? ତୋ'ର ସକାଶେ କାଲି ମୋର ସବୁଠାରୁ ବଢ଼ିଆ ଗାଈର ଏ ଦଶା ହେଲା ! ଶଳା ଛତରଖିଆ, ମେଲଛ କାହାଁକା,— ଶଳା ବଜାରି ନବୁଧିଆ ! ତୋ'ର ଓସ୍ତାଦ ତ ଏହିପରି ନବୁଧିଆ, ତୁ ଆଉ କରିବୁ କଅଣ ?"— କହି ଯୋଉଠି ବାଜିବା ସମ୍ଭବ, ଚମଡ଼ା ପଟି ସାହାଯ୍ୟରେ ବୋରନା ଚୋକର ଦେହରେ ପାଏଁ ପାଏଁ ବଜାଇବାକୁ ଲଗିଲା, ମନଭିତରର ସବୁ ରାଗ ଓ ସବୁ ଓରମାନ ମେଣ୍ଟାଇବାକୁ ଲଗିଲା । ପଟିଟା ଶୂନ୍ୟରେ ଆଇ ଲହଲହ ଶବ୍ଦ କରୁଥାଏ । ଭଟେକ୍ ଉହୁଲ ବିକଳ ହୋଇ ମାଟିରେ ପଡ଼ି କୋଚଆ ପରି ଲଟରପଟର ହେଉଥାଏ ଓ ଆର୍ତ୍ତ-କଣ୍ଠରେ ଚିତ୍କାର କରି କହୁଥାଏ :

"ମରିଗଲି ଲୋ ! ହେ ଭଗବାନ୍, ଏ ସାଆନ୍ତେ ମୋତେ ମାରି-ପକାଇଲେ ଲୋ । ସାଆନ୍ତେ ! ହେ ଭଗବାନ, ମୋର ପ୍ରାଣ ରକ୍ଷାକର !—"

ଘଟଣା କ'ଣ ଦେଖିବାଲାଗି ହାଙ୍କା ସେପାଖରୁ ଉଙ୍କିମାରି ଅନାଇଲା । ଅତଶସ୍ତ ବିରକ୍ତ ଭାବରେ କୁବା ନେଥାଏ ଛେପ ପକାଇଦେଇ ଘୋଡ଼ା-ଶାଳ ଭିତରକୁ ଚାଲିଗଲା ।

ଆପଣାର ଦମ୍ ହଟିଲା ପର୍ଯ୍ୟନ୍ତ ବୋରନା ଭଟେକ୍‌କୁ ମାରିବାରେ ଲାଗିଥାଏ । ଗାଈଟା ଚାଲିଯାଇ ଥିବାରୁ ତା'ର ମନରେ ଯେଉଁ ଦୁଃଖ ଓ

ପ୍ରତିହିଂସାମାନ ରହିଥିଲା, ଗୃକରଟୋକାର ଦେହ ଉପରେ ତାହାର କ୍ଷତ-ପୂରଣ କରନେଉଥାଏ । ଭିଟେକ୍ ଅତି ଆର୍ତ୍ତକଣ୍ଠରେ ବୋବାଳି ଛାଡ଼ିବାରେ ଲଗିଥାଏ । ଶେଷରେ ସୌଭାଗ୍ୟବଶତଃ ବିଚୁରା ଟିକିଏ ସୁଯୋଗ ପାଇ ମାଲିକର କବଳରୁ ଆପଣାକୁ ବଞ୍ଚାଇ ଖସି ଗ୍ଲଲିଯାଇ ପାରିଲା ଏବଂ ଦୁଇ-ହାତରେ ଆପଣାର ଦୁଇପିଚ୍ଛକୁ ଧରି ଚକଲରେ ବଗିଚ୍ଛ ଆଡ଼କୁ ଦଉଡ଼ି ପଳାଇଲା । ଯାଉଯାଉ ବଡ଼ ପାଟିକରି ଚିତ୍କାର କରି କହୁଥାଏ :" ସାଆନ୍ତେ ମୋତେ ମାରିପକାଇଲେ ଲୋ ! ହେ ଭଗବାନ ! ମୋତେ ମାରିପକାଇଲେ ଲୋ ! ତାର ଗ୍ରୁତ ଭିତରେ କମି ଜତଲେ ଯେପର୍ଯ୍ୟନ୍ତ ରହିଥିବା ଚଢ଼େଇଗୁଡ଼ିକ ଗୋଟିଗୋଟିକରି ତଳକୁ ଖସି ପଡ଼ି ରାସ୍ତାଉପରେ ବିକ୍ଷିପ୍ତ ହୋଇ ପଡୁଥାନ୍ତି ।

ତେବେକେ ବୋରିନାର ରାଗ ଶାନ୍ତ ହୋଇନଥାଏ, ସେ ଉମତମ ହୋଇ ଆହୁରି କେତେକ'ଣ ଧମକ ଦେବାରେ ଲାଗିଥାଏ । କିଛିସମୟ ପରେ ଖଞ୍ଜାଭିତରକୁ ଆସି ସେ ଆନ୍ଟେକ୍‌ର ଶୋଇବାଘର ଭିତରକୁ ଅନାଇଲା ।

ଆନ୍ଟେକ୍ ଉପରେ ଆଖି ପଡ଼ିସିବା କ୍ଷଣି ବଡ଼ ପାଟିକରି ଡାକି କହିଲା, "କଣହେଲା ! ଖରା ଆସି ଅଧଦୁଆରେ ହେଲାଣି, ଏତେବେଳଯାଏ ବାବୁଙ୍କର ନିଦ ଭାଙ୍ଗିନାହିଁ ?"

"ନଶୋଇଲେ କପରି ହୋଇଥାନ୍ତା କହିଲ ? କାଲି ଯୋଡ଼ି ଗଧ-ଖଟଣି ଖଟି ନସ୍ତାନ୍ତ ହୋଇ ଯାଇଥିଲି, ତା'ପରେ ବିଶ୍ରାମ ନେବା ଉଚିତ ନା ନାହିଁ ?"

"ଆଜି ମୁଁ କଟେଷ୍ଟାକୁ ଯାଉଚି । ତୁ ଆଜି ଆଲୁତକ ବିଲରୁ ଘରକୁ ନେଇଆସିବୁ । ସେ କାମ ସରିଗଲେ ମୂଲିଆମାନଙ୍କୁ ଜଙ୍ଗଲକୁ ପଠାଇଦେବୁ ହିଁ, ପାରିଲେ ତୁ ନିଜେ ଯାଇ ପାତଳାକାଠ ସଂଗ୍ରହ କରି ଆଣିବୁ, ଶୀତ-ଦିନରେ ଘରଗ୍ଲରିପାଖରେ ଦେବାକୁହେବ । *

---

* ଶୀତକାଳରେ ଆପଣାର ବାସଗୃହକୁ ଟିକିଏ ଉଷ୍ମ ରଖିବାକୁ ପୋଲାଣ୍ଡର କୃଷୀମାନେ ଘରଗ୍ଲରିପାଖରେ ପ୍ରାୟ ତିନିଫୁଟର ପାତଳାକାଠ ଜମାକରି ରଖନ୍ତି । ତା'ପରେ ଘରକାନ୍ଥ ଓ ଏହିପରି ଜମା ହୋଇଥିବା

"ସେ କାମ ତୁମେ ନଜେ କରବ । ଆମର ଏକଡ଼ଙ୍କୁ ତ ସେତେ ପବନ ପିଇନାହିଁ । ତେଣୁ ଆମର କୌଣସି ଦରକାର ନାହିଁ ।"

"ଭୋ ଇଚ୍ଛା' ! ମୁଁ ତେବେ ମୋ'ପଟଟା କରନେବ । ଆଉ ତୁ, ଶ୍ରୀମାନ୍‌ ଅଲସୁଆ ଆଗ୍ରର, ଶୀତଦନ ଆସିଲେ କାଲୁଆ ହୋଇ କଷ୍ଟ ପାଉଥିବୁ ।"

ପଛରୁ କବାଟଟାକୁ ଦୁଲ୍‌କର ପକାଇଦେଇ ବୋରନା ଆପଣା ଶୋଇବାଘର ଭିତରକୁ ଗଲା । ସେତେବେଳକୁ ଘରଭିତରେ ଉଦ୍ବେଗ ଜଲସାରଲାଣି ଆଉ ସ୍ମୁକ୍‌କା ଗାଈ ଦୁହିଁବାକୁ ଯାଉଚ ।

"ମତେ ଧଅସି କ'ଣ ଗଣ୍ଡାଏ ଖାଇବାକୁ ଦେବୁଟି ! ମୋର ବାହାରକୁ ଯିବାର ଅଛ !"

"କନ୍ତୁ ମୁଁ ଏକାବେଳେକେ କପର ଦୁଇଆଡ଼କୁ ହେବ କହଲ ? ମୋର ତ ଆଉ ଗୃରଟା ହାତନାହିଁ ଯେ ତେଣେ ଦୁଧ ଦୁହିଁବ ଆଉ ଏଣେ ତୁମ-ପାଇଁ ଖାଇବାକୁ ସଜାଡ଼ିଦେବ !"

ସ୍ମୁକ୍‌କା ବାହାରକୁ ବାହାରଗଲା ।

"ଏ ଘରେ ଦଣ୍ଡେହେଲେ ଶାନ୍ତିରେ କଟିବନାହିଁ ! ଯେତେ ନାହିଁ-ନାହିଁ ହେଉଥିଲେ ମଧ୍ୟ ବାଧ୍ୟହୋଇ ସମସ୍ତଙ୍କ ଗାଳଦେବାକୁ ପଡ଼ିବ, ସମସ୍ତଙ୍କ ସହିତ କଳିଆ କରବାକୁ ହିଁ ପଡ଼ିବ !— ମନେମନେ ଏତକ କହି ସେ ଖର ବଗିଡ଼ା ମିଜାଜରେ ଲୁଗାପଟା ପିନ୍ଧିବାକୁ ଗଲା । ଆପଣା ପୁଅଟା-ସହିତ ତା'ର କେତେବେଳେହେଲେ ପଡ଼ିଲା ନାହିଁ । କଥାବାର୍ତ୍ତା ହେବାକୁ ବସିଲେ ହିଁ ତେଡ଼ାତେଡ଼ି ଆରମ୍ଭ ହୋଇ ଯିବ ! ପୁଣି ବେଳେବେଳେ ଏପର କଥା ଶୁଣିବାକୁ ପଡ଼ିବ ଯେ ତାହା ଛୁଞ୍ଚିପର ଆସି ଗ୍ରୁଡଭିତରେ ଭୁଷା ମାର ଦେଇ ଯାଉଥିବ ! ଏହିସବୁ ଖବୁଖବୁ ତା'ର ମନଭିତରଟା କ୍ରମେ ଅଧିକ ବରକ୍ତ ହେବାରେ ଲାଗି ଥାଏ । ଶେଷକୁ ସେ ଆପଣା ମନକୁମନ

---

କାଠ ମହିରେ ଥିବା ସ୍ଥାନକୁ ସେମାନେ ପାଳ, ଶୁଖିଲା ପତର, ଡାଳ ଓ ମାଟି କାଦୁଅ ଭର୍ତ୍ତି କର ଭରାଇ ଦାଅନ୍ତ ।

ଗାଳି ଗୁଲଜ ଦେବାରେ ଲାଗିଲା, ଆପଣାର ଜୋତାଗୁଡ଼ାକୁ ଘରଭିତରେ ଏଣେତେଣେ ଫୋପାଡ଼ିବାକୁ ଆରମ୍ଭ କଲା ।

"ସେମାନଙ୍କର କ'ଣ ମୋ'କଥା ମାନିବା ଉଚିତ ନୁହେଁ ? କିନ୍ତୁ ନମାନିବେତ ମଣିଷ ଆଉ ସେଗୁଡ଼ାକୁ ନେଇ କ'ଣ କରିବ ? କିନ୍ତୁ କାହିଁକି ନମାନିବେ କହିଲ ?"— ସେ ଆପଣା ମନକୁ ପଚାରିଲା ।

"ସେଇଥିପାଇଁ ପରା ମୁଁ କହେ, ମାଡ଼ ନହେଲେ ସେମାନେ କେହି ସାବାଡ଼ ହେବେନାହିଁ ! ଆଜି କାହିଁକି, ଅନେକ ଆଗରୁ ମଧ୍ୟ ମୋର ଏହା କରିବା ଉଚିତ ଥିଲି । କିନ୍ତୁ ମୁଁ ଭାବିଥିଲି, କାହିଁକି ଚୁଚ୍ଛା'ଟାରେ ଘରେ ମାଡ଼-ଗୋଳ ଲଗାଇ ଗାଆଁରେ ନାଆଁ ପକାଇବାକୁ ଦିବ ? ସେଇଥିପାଇଁ ଚୁପ୍‌ଚାପ୍ ରହିଗଲି । କାରଣ ମୁଁ କ'ଣ ଭିକାରୀ ମାଗିଖିଆ ହୋଇଚି କି ? ମୋ'ହାତରେ ଚଉଶିମାଣ ଚାଷଜମି ! ମୋ' ବଂଶ ହେଉଚି ଖାନଦାନ୍ ବଂଶ । ବୋଉନା ନାଆଁଟା ଏ ଇଲାକାରେ କାହାକୁ ଅଜଣା ଅଛି ? କିନ୍ତୁ ଯେତେ ଦୟା ବା ଉପରୋଧ ଦେଖାଇଲେ ସେ ମାଦଳଗୁଡ଼ାକ କ'ଣ ଶୁଣିବାକୁ ହେଲେ ରାଜି ଅଛନ୍ତି ?"—ସେଉଠୁ ସେ ଆପଣାର ଜୁଆଁଇ କଥା ଭାବିବାକୁ ଲାଗିଲି । ସେଠି ସେ କମାରଶାଳ ବସାଇଚି ଆଉ ଶଶୁର ବିରୁଦ୍ଧରେ ଗାଆଁ ଗୋଟାକର ସମସ୍ତଙ୍କୁ ଉସ୍‌କାଇବାରେ ଲାଗିଚି । ମୋ'ଠାରୁ ଛଅମାଣ ଚାଷଜମି ଆଉ ଚକଡ଼ାଏ ଜଙ୍ଗଲ ନେବବୋଲି ମୋ'ପଛେ ପଛେ ଗୋଡ଼ାଇଚି ! ସେ କହିଲି : "ସେତକ ଆଗନେଲେ ତା'ପରେ ପୁଣି ଅବଶିଷ୍ଟ ସମ୍ପତ୍ତିକୁ ମନ ବଳାଇବ ।"

"ହଁ, ମୋ' ଭାଗ୍ୟ ସେହିପରି ମନ୍ଦ । ମୁଁ ମରିବାତକ ଧନେହେଲେ ଏ ଦହିଗଞ୍ଜ ମୋତେ ଛାଡ଼ିବନାହିଁ ।"— ମନେମନେ ବଡ଼ ସନ୍ତପ୍ତ ହୋଇ ସେ ଭାବିବାରେ ଲାଗିଥାଏ । "ମୁଁ କେତେଥର କହିଲିଣି, 'ଆରେ ବାବୁ, ସବୁରି କର । ମୁଁ ବଞ୍ଚିଥିବାତକ ମୋର ଜମିରୁ ମୁଁ ଚମୁଟାଏ ହେଲେ ମଧ୍ୟ କାହାରିକୁ ଦେବିନାହିଁ । ଆଉ ତୁ ଛଅମାଣକୁ ମନବଳାଉଚୁ କେମିତି ?'"

ଦୁଧ ଦୁହିଁସାରି ଯୁଜ୍‌କା ଘରଭିତରକୁ ଆସିଲି । ଚୁଲାଉପରେ ଆଳୁ ହାଣ୍ଡିରେ ଆଳୁ ସିଝିବାରେ ଲାଗିଚି । ଭୋଜନ ପ୍ରସ୍ତୁତ ହେବାକୁ ଆଉ ଅଧିକ ବିଳମ୍ବ ହେବନାହିଁ ।

"ସୁଜ୍‌କା ! ମାଉଁସତକ ତୁ ନିଜେ ବନ୍ଦକରୁ । ଆଉ କାହାର ହାତକୁ ଦେବୁନାହିଁ । କାଲି ରବିବାର ଅଛି ଆଉ ଆମଘରେ ଗାଈ ମରାହୋଇଚି ବୋଲି ସମସ୍ତେ ଜାଣିଚନ୍ତି । ତେଣୁ ସମସ୍ତେ ନିଶ୍ଚୟ ଆସିବେ । କିନ୍ତୁ ମନେ-ରଖିଥା, କାହାକୁ ଜଣକୁହେଲେ ବାକି ଦେବୁନାହିଁ । ହଁ, ମଝିପଟ ଫଡ଼ଆ ଦୁଇଟା ଘରେ ଖାଇବା ପାଇଁ ରଖିଦେବୁ । ଆମ୍ଭୋଜ୍‌କୁ ତାକ ତାହାଉପରେ ଲୁଣ ମଡ଼ାଇଦେବୁ ।"

"କିନ୍ତୁ କମାରପୁଅ କ'ଣ ସେତକ କଣପାର ନାହିଁ ?"

"ହଁ, ସେ ତା'ର ଭାଗ ନପାଇ ଛାଡ଼ିବ କିପରି ? ମେଣ୍ଢାଟାରୁ ଗଧିଆକୁ ଭାଗ ନଦେଲେ ରକ୍ଷା ମିଳିବ କୁଆଡ଼ୁ ?"

"କିନ୍ତୁ ମାଗ୍‌ଡ଼ାର ମନ କଲ୍ପନା ହେବନାହିଁ ? ଏଇଟା ହେଉଚି ଆମର ଗାଈ, ଆଉ ତାକୁ ସେଥିରୁ ଗୋଟାଏ ଭାଗ ଦିଆ ଯିବନାହିଁ ?"

"ଆଚ୍ଛା, ତେବେ ତୁ ଫଡ଼ଆରୁ ଖଣ୍ଡେ କାଟି ମାଗ୍‌ଡ଼ା ଘରକୁ ପଠାଇଦେବୁ । କିନ୍ତୁ ମନେ ରଖିଥା, କମାର ପୁଅକୁ କେବେହେଲେ ତାକ ଯିବୁନାହିଁ ।"

"ମୋ' ବାପା ଭାରି ଭଲ ବାପା !"

"ଆଚ୍ଛା ଝିଅ, ମୁଁ ବାହାରିଲି । ତୁ ଘରେ ରହିଲୁ, ସବୁ କଥା ତୋତେ ଲଗିଲି । ମୁଁ ଘରକୁ ଲେଉଟିଲି ବେଳକୁ ତୋ'ପାଇଁ ସହରରୁ ମିଠାଇଟାଏ କି ନିସ୍‌କୁଡ଼ିଟାଏ ନିଶ୍ଚୟ କିଣିକରି ନେଇଆସିବି ।"

ବୋଉନା ଖାଇବସିଲା, ଖାଇସାରି କମରପଟି ବାନ୍ଧିଲା, ଆପଣାର ଦାଢ଼ୀଯୁକ୍ତ ଅଳନ୍ତି ବାଳଗୁଡ଼ାକୁ ଟିକିଏ ସାଉଁଳେଇନେଲା ଏବଂ ହାତରେ ବାଡ଼ି ଧରି ଘର ଗୁରିଆଡ଼କୁ ଅନାଇଲା ।

"ମୁଁ କିଛି ପାସୋରି ଯାଉନାହିଁ ତ ?"

ହଁ, ଆପଣାର ଅଧଦଖଲ ଭିତରକୁ ଯାଇ ଥରେ ଦେଖି ଆସିବାକୁ ତା'ର ଇଚ୍ଛା ହେଉଥିଲା । କିନ୍ତୁ ସୁଜ୍‌କାର ଆଖି ତା'ର ପଛେ ପଛେ ରହିଚି । ତେଣୁ ସେ ସଙ୍ଗେ ସଙ୍ଗେ ଶୂନ୍ୟରେ କ୍ରସ୍‌ଚିହ୍ନ ଅଙ୍କିତ କରି ଘରୁ ବାହାରି ପଡ଼ିଲା ।

ଦୁଆରକୁ ଆସି ସେ ଗାଡ଼ିରେ ବସିଲା, ହାତରେ ଲଗାମ ଧରିଲା ଓ ଘୈଣ୍ଡା କବାଟ ପାଖରେ ଠିଆ ହୋଇଥିବା ମୁଜିକାକୁ ଆଉଗୋଟାଏ ବୋଲ ବତାଇଗଲା :

"ଆଳୁଖୋଳା ସରିଗଲେ ତୁ ସେମାନଙ୍କୁ ଜଙ୍ଗଲକୁ ପଠାଇଦେବୁ । ଜାଣ୍ଟରେ ଟଙ୍ଗାହୋଇଥିବା ଫର୍ଦ୍ଦ ପଚ୍ଛରେ ଖଡ ଆଣିବାର ଅନୁମତିପତ୍ର ରହିଛି, ଜାଣିଲୁ ?......ହଁ, ସେମାନଙ୍କୁ କହିବୁ ଜଙ୍ଗଲରୁ ସେମାନେ କେତୋଟା ଗଜାଗଛ ମଧ୍ୟ କାଟି ଆଣିବେ । ଗାଡ଼ୀ ଉପରେ ବେଶ୍ ଶୁଲ୍ଆସିବ ।"

ଗାଡ଼ୀ ଯାଇ ବଗିଚ୍ଛର ବାଡ଼ ପାରହୋଇ ଗଲାବେଳକୁ ଝୋପଗଛ ଭିତରୁ ଭିଡେକ୍ ମଧ୍ୟ ଆଖିରେ ପଡ଼ିଗଲା ।

"ଆରେ ଭିଡେକ୍, ମୁଁ କହିବାକୁ ଭୁଲିଗଲି । ...ହେଁ—ହେଁ— ଭିଡେକ୍, ଶୁଭୁନାହିଁ କରେ ? ତୁ ଆଜି ଗାଈନେଇ ନଷ୍ଟ୍ରପ ପଡ଼ିଆକୁ ଯିବୁ, ବୁଝିଲୁ ? ହଁ, ସେମାନଙ୍କୁ ଭଲକରି ଚରାଇଆଣିବୁ । ନହେଲେ ମୁଁ ଘରକୁ ଆସିଲେ ପିଠିରେ ଏମିତି ବେତ ବାଜିବ ଯେ ଯେପରି ଆଉ ଘନେହେଲେ ତୁ ତାହା ଭୁଲି ପାରିବୁ ନାହିଁ ।"

"ଆଉ ତୁମେ ଯାଉଛ ସେ ମାଇପିଟାକୁ—"

"ଶଳା, ସେଥିରେ ତୋ'ର କଣ ଅଛି ବେ ? ଗାଡ଼ୀରୁ ଓହ୍ଲାଇବି ଦେଖିବୁ ?"

ଡାହାଣଆଡ଼କୁ ମୋଡ଼ି ସେ ଗୀର୍ଜାର ରାସ୍ତା ଧରି ଯିବାକୁ ଲାଗିଲା । ସେତେବେଳକୁ ସୂର୍ଯ୍ୟ ଗଛଳକାଣ୍ଡକୁ ଉଠିଗଲାଣି, ଟାଣଖରା ପାଏଁ ପାଏଁ ମାରୁଥାଏ । ଘରଗୃଳମାନଙ୍କରୁ କୁହୁଡ଼ି କଟିଯାଇ ଉପରକୁ ଉଠିଯାଉଛି ଆଉ ଥୋପା ଥୋପା ହୋଇ ତଳକୁ ପାଣି ପଡ଼ିବାରେ ଲାଗିଛି । କେତୁ ବାଡ଼ତଳେ ଓ ଗାଡ ଭିତରେ ହିମ ଏପର୍ଯ୍ୟନ୍ତ ଧଳାହୋଇ ବସିରହିଥାଏ । ପୋଖରୀ ଉପରୁ ସକାଳ-ପହରର କୁହୁଡ଼ିଧୂଆଁ କ୍ରମେ ପାତଳା ହୋଇ ଆସିଲାଣି, ପୋଖରୀର ପାଣି ସୂର୍ଯ୍ୟକିରଣ ପଡ଼ି ଚକ୍ ଚକ୍ କରୁଛି ।

ଗାଆଁ ଭିତରେ ନୂଆ ଦିନଟିର ଧନ୍ଦାମାନ ଆରମ୍ଭ ହେଉଥାଏ । ଆଜି ସକାଳେ ଖୁବ ବଢ଼ିଆ ଖରାପାଗ ହୋଇଛି, ମନଉଲ୍ଲସିଆ ଶୀତଳ ପବନ

ବହୁଚ । ତେଣୁ ସାଧାରଣ ଦିନଗୁଡ଼ିକ ଅପେକ୍ଷା ଆଜି ଗାଆଁର ଜୀବନ ଅଧିକ ସଚଳ ଓ ସଜୀବ ହୋଇ ଉଠିଥିଲାପରି ମନେହେଉଚି । ତେଣେ କେଉଁମାନେ ଦଳବାନ୍ଧି କୋଦାଳ ଆଉ କାଙ୍କ ନେଇ ଆଳୁ ଖୋଳିବାକୁ ବିଲକୁ ଯାଉଚନ୍ତି । ହାତରେ ଖାଳେଇ ଭିତରେ ଦିନମାନର ଖାଇବା ବନ୍ଧାହୋଇ ଯାଉଚି । ଆଉକିଏ ଫସଲ କଟାସରିଥିବା ଖେତରେ ପଦ୍ମଲଗାଇ ମାରିବେ ବୋଲି ଯାଉଚନ୍ତି । କିଏ ଗାଡ଼ୀ ଚଢ଼ି, ଅଝାରେ ବହନ ଧରି ବାହାରିଚି । ଅନ୍ୟମାନେ କାଠ ସଂଗ୍ରହ କରି ଆଣିବାକୁ ଜଙ୍ଗଲଆଡ଼େ ଯାଉଚନ୍ତି, ସେମାନଙ୍କର କାନ୍ଧଉପରେ ବାହୁଙ୍ଗି ପଡ଼ିଚି । ପୋଖରୀର ଦୁଇପାଖଯାକ କ୍ରମେ ଅଧିକ କୋଲାହଳମୟ ହୋଇ ଉଠୁଚି । ହଠାତ୍‌ ଘାସକୁ ଯାଉଥିବା ଗାଈପଲ ଆସି ରାସ୍ତାରେ ଭିଡ଼ କରି ପକାଇଲେ । ସେମାନଙ୍କୁ ଦେଖି କୁକୁରଗୁଡ଼ାକ ଭୁକି ଉଠିଲେ, ଲୋକମାନେ ପାଟି କରି ଉଠିଲେ । ରାତିର କାକରମଢ଼ା ଖାଇ ମାଟିଉପରେ ଆଂଶିକ ଭାବରେ ବସିଯାଇଥିବା ଧୂଳି ପୁଣି ଖୋଜମଡ଼ା ପାଇ ଉପରକୁ ଉଠିବାକୁ ଆରମ୍ଭ କଲା ।

ଗୋରୁପଲଙ୍କ ଭିତରେ ବୋରନା ଗାଡ଼ୀ ଚଲାଇ ନେଉଥାଏ । ଘୋଡ଼ୀ ଆଗରେ କଦବା କେତେବେଳେ ମେଣ୍ଢାଛୁଆ ଟାଏ କି ବାଛୁରୀଟାଏ ହାବୁଡ଼ିଗଲେ, ସେ ଚାବୁକ ମାରି ସେମାନଙ୍କୁ ଘଉଡ଼ାଇ ଦେଉଥାଏ । ଶେଷକୁ ଅତି କଷ୍ଟରେ ଗାଡ଼ୀ ଗୋରୁପଲରୁ ପାର୍‌ହୋଇ ଆଗକୁ ବାହାରିଗଲା ଓ ଗୀର୍ଜାଘର ପାଖରେ ଆସି ପହଞ୍ଚିଲା । ଧାଡ଼ୀଏ ଉଚ୍ଚ ଉଚ୍ଚ ଗଛ ଏକାଠି ଠିଆହୋଇ ଗୀର୍ଜାକୁ ରାସ୍ତାଉପରୁ ଉଢ଼ୁଆଳ କରି ରଖିଚନ୍ତି । ଗଛର ପତର ହଳଦିଆ ହୋଇ ଆସିଲାଣି । ସେଠୁ ବାହାରି ସେ ବଡ଼ରାସ୍ତାରେ ଆସି ପହଞ୍ଚିଲା । ରାସ୍ତାର ଦୁଇ ପାଖରେ ଦୁଇଧାଡ଼ୀ ପପ୍‌ଲାର୍‌ ଗଛ ।

ଗୀର୍ଜାରେ ଘଣ୍ଟା ବାଜିଉଠିଲା ଓ ବର୍ତ୍ତମାନ ଉପାସନା ଆରମ୍ଭ ହେବାକୁ ଯାଉଚି ବୋଲି ସୂଚନା ଦେଲା । ଗୀର୍ଜାଘର ଭିତରୁ ବାଦ୍ୟଯନ୍ତ୍ରର ଧ୍ୱନି ଶୁଣାଗଲା । ବୋରନା ମୁଣ୍ଡଉପରୁ ଟୋପି କାଢ଼ିନେଇ ଅତ୍ୟନ୍ତ ଭକ୍ତିଭରେ ପ୍ରାର୍ଥନାମନ୍ତ୍ର ବୋଲିବାକୁ ଲାଗିଲା ।

ରାସ୍ତାରେ ଲୋକବାକ କେହି ଯା’ଆସ କରୁ ନଥାନ୍ତି । ଗଛରୁ ପାଚିଲା ପତର ଝରି ରାସ୍ତାଉପରେ ବିଛେଇ ହୋଇ ରହିଥାଏ, ରାସ୍ତାରେ ଥିବା ସମସ୍ତପ୍ରକାର ଖମା ଓ ଖାଲକୁ ଭରାଇଦେଇ ମଉଳନ ପଡ଼ିଆସିଥିବା ସୁନାରଙ୍ଗର ଶାଳଗଛ ପରି ବିଛେଇ ହୋଇ ରହିଥାଏ । ମାଟିଉପରେ ମାଡ଼ିଥିବା ଗଛର ସିଅସବୁଡ଼ାକ ମଧ୍ୟ ଏହି ପତରରେ ବୁଡ଼ିଥାଏ । ରାସ୍ତା ସେପାଖରେ ଉଦୟ ହୋଇଥିବା ସୂର୍ଯ୍ୟଙ୍କର ଖରା ପଡ଼ି ଗଛଗୁଡ଼ିକର ଛାଇ ରାସ୍ତାଉପରେ ପଡେଥିବା ଲମ୍ବ ଲମ୍ବ ଗାରମାନ କାଟିଦେଇଥାଏ ।

“ଗୃଲରେ ଛଡ଼ା, ବେଗି ଗୃଲ !”— ଉଠାଣି ବାଟ ପଡ଼ିକାରୁ ସେ ଘୋଡ଼ୀପିଠିରେ ପାହାରେ ମାରିଦେଇ କହିବାକୁ ଲାଗିଲା । ଆଗରେ ଥିବା ଜଙ୍ଗଲ ଦୂରରୁ କଳା ହୋଇ ଦେଖାଯାଉଥାଏ ।

ଗୃରିଆଡ଼ ଭାରି ଶୁନ୍‌ଶାନ୍ । ବୋଉନାକୁ ଭାରି ନିଦ ମାଡ଼ୁଥାଏ । ଗଛଗୁଡ଼ିକର ଫାଙ୍କରେ ଆଖି ବଢ଼ାଇ ସେ ସକାଳର ଗୋଲପୀ କିରଣରେ ପ୍ଲାବିତ ହୋଇ ରହିଥିବା ଶସ୍ୟଖେତଗୁଡ଼ିକ ଆଡ଼କୁ ଅନାଇଲା ଓ ଇଶ୍ୱରଙ୍କ ଅଭିଯୋଗ ଏବଂ କାଲି ମରିଥିବା ଶାଈର କଥା ଭାବିବାକୁ ଲାଗିଲା । ତଥାପି ତା’ର ଆଖିରୁ ନିଦ ଛାଡ଼ିଲାନାହିଁ, ବରଂ ଅଧିକରୁ ଅଧିକ ମାଡ଼ିଆସିଲା ପରି ମନେହେଲା । ବଣବୁଦାର ଉହାଡ଼ରେ କେତେପ୍ରକାରର ଚଢ଼େଇ କେଁ କେଁ କରି ହେଉଥାନ୍ତି, ଗଛଅଗରେ ପବନ ମର୍ମରଶବ୍ଦ କରି ବହିଯାଉଥାଏ । କୋଉଠି କୋଉ ଝଙ୍କରେ ଗଛର କୋଉ ନିଭୃତରୁ ଗୋଟିଏ ଗୋଟିଏ ପାଚିଲା ପତର ଖସିପଡ଼ି, ଠିକ୍ ଗୋଟିଏ ସୁନେଲି ପ୍ରଜାପତିପରି ଆସି ଥରେ ଦୁଇଥର ଉଡ଼ିଯାଇ କାହିଁ ଆସି ରାସ୍ତାଉପରେ ପଡ଼ିଯାଉଥାଏ । ବା କୌଣସି କଣ୍ଟା ବୁଦା ଭିତରେ ଆସି ଲାଖି ରହୁଥାଏ । କଣ୍ଟାଗଛଗୁଡ଼ାକ ପଡେଥିବା ଜଳନ୍ତା ଆଖିମାନ ତରିଛି ଭାରି ଦର୍ପରେ ଝରିଆଡ଼କୁ ଅନାଇ ରହିଥାନ୍ତି । ପପ୍‌ଲାର୍ ଗଛଗୁଡ଼ିକ ଆପଣା ଆପଣା ଭିତରେ କଥାବାର୍ତ୍ତା ଆରମ୍ଭ କରି ଦେଇଥାନ୍ତି ଏବଂ ଇସନ୍ତ୍ ଆନ୍ଦୋଳିତ ଡାଳ ଭିତରୁ କାହାକୁ କ’ଣ କେତେପଦ ଫୁସ୍‌ଫାସ୍ କଥା କହିଦେଇ ତା’ପରେ ନିସ୍ତବ୍ଧ ହୋଇ ଯାଉଥାନ୍ତି ।

ଶେଷକୁ ଯେତେବେଳେ ଗାଡ଼ୀ ଆସି ଜଙ୍ଗଲ ପାଖରେ ପହଞ୍ଚିଲା ଓ ଯେତେବେଳେ ଘୋଡ଼ୀ ଆଉ ଆଗକୁ ନ ଯାଇ ଅଟକି ଠିଆହୋଇ ରହିଲା, ସେତେବେଳେ ଯାଇ ବୋଉନାର ନିଦ ସମ୍ପୂର୍ଣ୍ଣ ରୂପେ ଭାଙ୍ଗିଗଲା ।

"ଏଇ ଚକଟାରେ ମାଣ୍ଡିଆଫସଲ ଭାରି ଭଲ ହୋଇଛି ।"—ଝାଡ଼ିପଡ଼ିଥିବା ଧୂସର ଖେତବୁଡ଼ାକୁ ଅନାଇ ସେ ମନେମନେ ଭାବିଲା । ସେତେବେଳକୁ ମାଣ୍ଡିଆ ଗଛରୁ ମାଟିଆ ଶିଶାମାନ ବାହାରି ଆସିଲାଣି ।

"ମୋର ଜମିପାଖକୁ ଲାଗିକରି ଏଠାରେ ବେଶ୍ ଟିକେ ଜମି ରହିଛି । ସତେଅବା ବରାଦ କରି ଭଗବାନ ଏ ଖଣ୍ଡଟାକୁ ଏଠାରେ ଆଣି ରଖିଦେଇଛନ୍ତି । ଖୁବ୍‌ସମ୍ଭବ ଏଠି ଟିକିଏ ବଳିମ୍ବରେ ମାଣ୍ଡିଆ ବୁଣା ହୋଇଛି ।"—ଏବେ ଓର ମଡ଼ାହୋଇଥିବା ଜମିଆଡ଼କୁ ଲୋଲୁପ ଦୃଷ୍ଟିପାତ କରି ସେ ଦୀର୍ଘଶ୍ୱାସ ପକାଇଲା ଓ ଜଙ୍ଗଲଭିତରେ ପ୍ରବେଶ କଲା ।

ଜଙ୍ଗଲ ଭିତରର ହେମାଳ ପବନ ତା'ର ମୁହଁଉପରେ ସିରସିର ହୋଇ ପିଟିବାକୁ ଲାଗିଲା ଓ ତଦ୍ଦ୍ୱାରା ବୋଉନାର ନିଦ ଏକାବେଳେକେ ଭାଙ୍ଗିଗଲା ।

କୋଉକାଳର ଏଇ ଜଙ୍ଗଲ, ଯୋଜନ ଯୋଜନ ଲମ୍ବିକରି ରହିଛି । ବୟସରେ ଯେତିକି ପୁରାତନ, ଘନତାରେ ମଧ୍ୟ ସେତିକି ଭୟଙ୍କର ଓ ଶାଳୀନ । ପ୍ରାୟ ସବୁ ଗଛ ହେଉଛି ପାଇନ୍ ଗଛ, ତଥାପି ଏଠିସେଠି ଗୋଟାଏ ଦୁଇଟା ଓକ୍ ଗଛ ମଧ୍ୟ ଦେଖିବାକୁ ମିଳୁଛି । କୋଉଠି କଦାବା ଭୂର୍ଜଗଛର ଧୋବଲା କାଣ୍ଡମାନ ଠିଆହୋଇ ରହିଛି ଓ ପବନର ପ୍ରସାରଭିତରେ ଆପଣାର ପୀତାଭ ପତ୍ର ଗୁଚ୍ଛମାନଙ୍କୁ ପ୍ରସାରିତ କରି ରଖିଛି । ବଡ଼ ବଡ଼ ଗଣ୍ଠିତଳେ କେତେଭଳି କଣ୍ଟା, ବୁଦା ଓ କୋଳିଗଛମାନ, ପାଇନ୍ ଗଛର ଅଡାକାଣ୍ଡ ମୂଳସବୁଡ଼କୁ ପରିବେଷ୍ଟନ କରି ରହିଛି । ଡାଳପତ୍ରରେ ଛନ୍ଦିହୋଇ ରହିଥିବା ଏହି ଘନଜାଲ ଭେଦ କରି ସୂର୍ଯ୍ୟର କିରଣ ଭଲକରି ଭିତରକୁ ଭେଦକରି ଆସିପାରୁନାହିଁ । ଏଠିସେଠି ଯେଉଁଠି କିରଣର ରେଖାମାନ ପଡ଼ୁଛି, ସେଠାରେ ସେସବୁଡ଼ିକ ଚକ୍‌ଚକ୍ ରଙ୍ଗର କୌଣସି ପୋକପରି ନାନାପ୍ରକାର ଶିଉଳି ଓ ମଉଳା ନାଲିଆ ପାଣି ଘାସଉପରେ ଘୁଷୁରି ଘୁମୁରି ବୁଲୁଥିବାପରି ମନେହେଉଛି ।

"ଏଇ ଜଙ୍ଗଲ ଅସ୍ୱାକଯାକ ମୋର,— ଏଇ ଗୃହମାଣଯାକ ।"—ଜଙ୍ଗଲର ଏହି ପ୍ରସାରକୁ ଆପଣାର ଦୃଷ୍ଟିଦ୍ୱାରା ପାନକରି ନେଉନେଉ ସେ ଭାବିବାକୁ ଲାଗିଲା । ଜଙ୍ଗଲରେ ଯେଉଁଠି ସବୁ ପାକଳ ଗଛମାନ ଥିଲ, ସେହିସବୁର କଳ୍ପନାରେ ସେ ଭାରି ଗୌରବ ଅନୁଭବ କଲା ।

"ନା—ଭଗବାନ ଆମର କାହିଁକି କ'ଣ ଲୋକସାନ କରିବେ ? ଅନ୍ୟ ଲୋକମାନେ ମଧ୍ୟ ଆମର କୌଣସି ଲୋକସାନ କରିବାକୁ ଆମେ ଦେବୁବା କାହିଁକି ? ଜଙ୍ଗଲର ଲୋକମାନେ ହୁଏତ ଭାବୁଚନ୍ତି ଯେ ଆମ ଭାଗରେ ଗୁଡ଼ାଏ ଜଙ୍ଗଲ ପଡ଼ିଯାଇଛି । ଆମେ ଭାବୁଚୁ, ଆମ ହାତରେ ଯାହା ଅଛି, ତାହା ଅତି ଅଳ୍ପ, ଆମର କାମକୁ ପାଇବନାହିଁ, ତେଣୁ ଆହୁରି ଅଧିକ ଥିଲେ ଭଲ ହୋଇଥାନ୍ତା । ଆଚ୍ଛା, ବର୍ତ୍ତମାନ ହିସାବ କରି ଦେଖାଯାଉ,—ମୋ'ର ଗୃହମାଣ ଆଉ ସ୍ୱଗନାର ଭାଗ ଏକମାଣ— ଗୃହମାଣ ଆଉ ଏକମାଣ ମିଶାଇଲେ......ହେ ଘୋଡ଼ୀ, ଯେମିତି ପେଙ୍ଗୋଉଚୁ କାହିଁକି, ଭଲକରି ଚାଲ ! କ'ଣ ଡର ମାଡ଼ୁଚି ?"—ହାତରେ ଧରିଥିବା ପାଞ୍ଚଣରେ ସେ ଘୋଡ଼ୀ ପିଠିରେ ପାଏଁକରି ଗୋଟାଏ ପାହାର ବଜାଇଦେଲା । କାରଣ କ୍ରୁଶବଦ୍ଧ ଯୀଶୁଙ୍କର କାଠର ମୂର୍ତ୍ତି ଝୁଲୁଥିବା ସମ୍ମୁଖର ସେହି ଶୁଖିଲା ଗଛଟାରେ ନୀଳକଣ୍ଠ ଚଢ଼େଇଗୁଡ଼ାକ ଏପରି ଚେଁ ଚେଁ ହେଉଥିଲେ ଯେ ସେହିଶବ୍ଦ ଶୁଣିପାରି ଘୋଡ଼ୀର ଦୁଇଟାଯାକ କାନ ଖାଡ଼ାଠିଆ ହୋଇଯାଇ-ଥିଲା ଏବଂ ତା'ର ଗୋଡ଼ ରହିଯିବା ପରି ମନେ ହେଉଥିଲା ।

"ନୀଳକଣ୍ଠ ଚଢ଼େଇ କଳିଆ କରି ଗଉରାଉ ଶବ୍ଦ କଲେ ନିଶ୍ଚୟ ପାଣି ବରଷିବ ।"— ବୋଲିନା ଆପଣା ମନଭିତରେ ଧୀରେଧୀରେ କହିବାକୁ ଲାଗିଲା ଏବଂ ଆହୁରି କେତେ ଗୁଟି ପାହାର ବସାଇ ଘୋଡ଼ୀର ଥିରଚାଲିକୁ ମନ୍ଥର ଟାପୁଶବ୍ଦରେ ପରିଣତ କରିଦେଲା ।

ପ୍ରାୟ ଆଠଟା ବାଜସାରିବଣି, କାରଣ ଖେତରେ କାମ କରୁଥିବା ଗୃହସ୍ଥୀମାନେ ଖେତକାମ ସାରି ସକାଳର ଖାଇବା ଖାଇବସିଚନ୍ତି । ଏହି-ସମୟରେ ସେ ଆସି ଟାଇମଘରେ ପହଞ୍ଚିଲା । ଅତି ଛୋଟିଆ ସହରଟିଏ, ଛୋଟଛୋଟ କଚ୍ଚିଆ ରାସ୍ତାର ଦୁଇପାଖରେ ସତେଅବା ଦୋକାନ ମେଳ

ବସିଥିବା ବୁଢାଙ୍କପରି ଭଙ୍ଗା ପୁରୁଣା ଘରମାନ ଠିଆହୋଇ ରହିଛି । ଦୁଇ-ପାଖର ନର୍ଦ୍ଦମାରେ ଦୁନିଆଯାକର ଆବର୍ଜନା ଭର୍ତ୍ତି ହୋଇ ରହିଛି—ମଇଳା ଇହୁଦୀ ଛୁଆଗୁଡ଼ାକ ରାସ୍ତା ଉପରେ ଲଙ୍ଗର ପଙ୍ଗର ହେଉଛନ୍ତି,—ଏଠିସେଠି ଘୁଷୁରିଗୁଡ଼ାକ ମଧ୍ୟ ପଲପଲ ବୁଲୁଛନ୍ତି ।

ସହର ଭିତରେ ପ୍ରବେଶ କରୁକରୁ ଇହୁଦୀ ପୁରୁଷ ଓ ସ୍ତ୍ରୀଲୋକମାନେ ତା'ର ଗାଡ଼ିପାଖରେ ଘେରି ରୁଣ୍ଡ ହୋଇଗଲେ, ଭାରି କୁତୂହଳୀ ହୋଇ ତା'ର ଗାଡ଼ୀଭିତରକୁ ଚାହିଁ ଦେଖିଲେ, ଗାଡ଼ୀ ଭିତରେ ବନ୍ଦହୋଇଥିବା ପାଲଙ୍କୁଟା ଭିତରକୁ ହାତ ଅଣ୍ଡାଳି ଦେଖିଲେ, ବସିବା ଥାନଟାକୁ ମଧ୍ୟ ଉପରକୁ ଟେକି ଦେଖିବାକୁ ଲାଗିଲେ, କାଳେ ସେ ବିକବାଲାଗି ସଙ୍ଗରେ କୌଣସି ଜିନିଷ ଆଣିଥିବ !

"ପଳା, କ'ଣ ସବୁ ଅଣ୍ଡାଳି ପଶିଲ ? ମେଲେଚ୍ଛ ମାଗିଖିଆ ଗୁଡ଼ାକ !" ପାଟିକରି ଧମକ ଦେଖାଇଲା ପରି ବୋରନା ଗର୍ଜନ କରି କହିଲା ଓ ତା'ପରେ ବଜାରଆଡ଼କୁ ଆଖି ପକାଇ ଦେଖିବାକୁ ଲାଗିଲା । ସେଠି କେତେଟା ଦରମରା ପାଙ୍ଗର୍ ଗଛର ଗୁଳିରେ ଚଉରାସ୍ତା ଉପରେ କେତେଟା ଗାଡ଼ୀ ଠିଆହୋଇ ରହିଥାଏ । ଗାଡ଼ୀର ଘୋଡ଼ାଗୁଡ଼ିକ ଗାଡ଼ୀରୁ ଫିଟି ଏଣେତେଣେ ଚରି ବୁଲୁଥାନ୍ତି ।

ଆପଣାର ଗାଡ଼ୀଟିକୁ ଅଡ଼ାଇନେଇ ସେ ସେହିଠାରେ ରଖିଲା ଓ ଆପଣାର କୋଟ୍‌ରେ ଲାଗିଥିବା ଧୂଳିକୁ ଝାଡ଼ିଝୁଡ଼ି ଦେଇ ଖିଅର ହେବା-ପାଇଁ ସିଧା ଭଣ୍ଡାରି ଦୋକାନକୁ ଗଲା । କିଛି ସମୟପରେ ସେଠୁ ସେ ଚିକଣମୁହଁ ହୋଇ ବାହାରକୁ ଆସିଲା । ଅବଶ୍ୟ ଥୋଡ଼ି ଉପରେ କେବଳ ଗୋଟାଏ ଜାଗାରେ ଖୁର ବାଜି ଟିକିଏ କାଟିହୋଇ ଯାଇଥାଏ, ସେହି କଟାଥାନ ଉପରେ କାଗଜର ଗୋଟାଏ ପଟି ପଡ଼ିଥାଏ, ପଟିତଳୁ ରକ୍ତବିନ୍ଦୁମାନ ବାହାରି ବାହାରକୁ ଦେଖାଯାଉଥାଏ ।

ଏପର୍ଯ୍ୟନ୍ତ କଚେରୀ ଖୋଲିନାହିଁ । କିନ୍ତୁ ବଜାରଟିକର ଡାହାଣ-ପାଖକୁ ଅବସ୍ଥିତ କୋଠାଘରେ ବେଶ୍ କେତେଲୋକ ରୁଣ୍ଡ ହୋଇଥାନ୍ତି । କିଏସବୁ କଚେରୀଘରର ପୁରୁଣା ପାହାଚ ଉପରେ ବସିଥାନ୍ତି ତ ଆଉ

କେଉଁମାନେ ଝରକା ବାହାରେ ଝରକାକୁ ଆଉଜାଇକରି ବସିଥାନ୍ତି । ଧଳା ପାଚେରିର କଡ଼େ କଡ଼େ ସ୍ତ୍ରୀ ଲୋକମାନଙ୍କର ମେଳା ବସିଥାଏ । ସେମାନଙ୍କ ଭିତରେ କେତେଆଡ଼ର କେତେ ଗପ ପଡ଼ିଥାଏ । ଏଠାରେ ଆସି ପହଞ୍ଚିଲା ବେଳେ ସେମାନଙ୍କ ମୁଣ୍ଡ ଉପରେ ଯେଉଁ ନାଲି ଝାଡ଼ଣ ବନ୍ଧା ହୋଇଥିଲା, କଥା ବାଉଳାରେ ବର୍ତ୍ତମାନ ସେଗୁଡ଼ିକ କାନ୍ଧ ଉପରକୁ ଖସିପଡ଼ିଲାଣି ।

ବୋରନା ଲକ୍ଷ୍ୟ କରି ଦେଖିଲା ଯେ ଏହିପରି ଗୋଟିଏ ଜାଗାରେ ହାତରେ ପିଲାଟିକୁ ଧରି ଇଭା ମଧ୍ୟ ବସିଛି, ତା'ପକ୍ଷର ସାକ୍ଷୀମାନେ ତାକୁ ଘେରିକରି ବସିଛନ୍ତି । ଦେଖିଲା ମାତ୍ରକେ ତା'ର ହାଡ଼ଭିତର ରାଗରେ ଜଳି ଉଠିଲା । ବିରକ୍ତିର ଆତିଶଯ୍ୟରେ ସେ ବାରବାର ଥୁ' ଥୁ' କରି ଛେପ ପକାଇବାକୁ ଲାଗିଲା ଏବଂ ଅଫିସରମାନଙ୍କର ନିବାସଗୃହ ମଝିରେ ପଡ଼ିଥିବା ବାରଣ୍ଡାର ଅନେକ ଦୂରକୁ ଚାଲିଯାଇ ପ୍ରାୟ ସେ ମୁଣ୍ଡରେ ଯାଇ ପହଞ୍ଚିଲା । ବାଆଁ ପାଖରେ କଚେରି ଘର । ଡାହାଣ ପାଖରେ କଚେରିର ସମ୍ପାଦକଙ୍କର ଅଫିସ୍ ।

ଠିକ୍ ସେହି ସମୟରେ ଚାକର ସ୍ଥାସେକ୍ ହାତରେ ଗୋଟିଏ ଉଠାଚୂଲୀ ହଲାଇ ହଲାଇ ଚାଲିଯାଉଥାଏ । ଚୂଲୀ ଭିତରୁ ବାହାରୁଥିବା ଧୂଆଁ ଠିକ୍ କୌଣସି ଚେମଣିର ଧୂଆଁ ପରି ବାହାରିବାରେ ଲାଗିଥାଏ । ସେହି ଧୂଆଁରେ ଅସ୍ପଷ୍ଟ ହୋଇ ଦେଖାଯାଉଥିବା ସେପାଖ କଣରୁ କାହାର ରୋଷାନ୍ୱିତ କଣ୍ଠସ୍ୱର ଶୁଣା ଯାଉଥାଏ :

"ସ୍ଥାସେକ୍, ବୋଧହୁଏ ସାଆନ୍ତାଣୀଙ୍କର ଜୋତା !"

"ଦଉଚି, ଦଉଚି !"

"ସ୍ଥାସେକ୍, ବାବୁ ମୁହଁ ଧୋଇବେ, ପାଣି ଆଣ !"

"ହଁ, ହଁ, ଏଇ ଆଣିଲିବୋଲି ଜାଣ !"

ତା'ର ଦେହରୁ ଗୋଟାସୁଦ୍ଧା ଝାଳ ବୋହିଯାଉଥାଏ । ସମସ୍ତଙ୍କର ବୋଲ ଅନୁସାରେ କାମ କରିବାକୁ ତାକୁ ବାରଣ୍ଡାଯାକ ନସରପସର ହୋଇ ଦଉଡ଼ିବାକୁ ହେଉଥାଏ ।

ଏହିପରି କିଛିସମୟ ପର୍ଯ୍ୟନ୍ତ ଏହିସବୁ ଅଭିନୟ ଗୃହବାହାରେ ଶେଷକଲୁ କଚେରୀର କବାଟ ଫିଟିଲା ଏବଂ ଏବେ ଚୂନ ଧଉଳା ହୋଇଥିବା ସେହି କକ୍ଷଟିକୁ ପୂର୍ଣ୍ଣ କରି ଗୃହଆଡ଼ୁ ଅନେକ ମଣିଷ ଆସି ସେଠାରେ ଜମାହେବାକୁ ଲାଗିଲେ ।

ଏଠି ମଧ୍ୟ ସ୍ମାସେକ୍‌ ଆସି ହାଜର । କିନ୍ତୁ ଗୃହକର ହିସାବରେ ନୁହେଁ, ଅର୍ଦ୍ଦଳି ହିସାବରେ । ତା'ର ଗୋଡ଼ରେ ଯୋତା ନାହିଁ । ଟାଢ଼ ବାଇଗଣି ରଙ୍ଗର ପେଣ୍ଟ୍‌ ଆଉ କୁରୁତା ପିନ୍ଧିଛି, ପିତଳର ବଡ଼ବଡ଼ ବୋତାମ ଲଗାଇଛି । ତା'ର ରଙ୍ଗାମୁହଁରୁ ଗମଗମ ଝାଳ ବୋହିବାରେ ଲଗିଛି, କେତେବେଳେ ଗୋଟାଏ କନ୍ଧ ଭିତରକୁ ପଶିଯାଇ ସେ ତର୍‌ତର ହୋଇ ଆପଣା କମିଜରେ ମୁହଁର ଝାଳକୁ ପୋଛିଦେଇ ପୁଣି ତତ୍‌କ୍ଷଣାତ୍‌ ବାହାରକୁ ବାହାରି ଆସୁଛି । ମାଛି କାମୁଡ଼ି ପକାଉଥିଲା, କୌଣସି ଏକ ଘୋଡ଼ା ପରି ( କାରଣ ତାହାର କହିବା ବାଳଗୁଡ଼ାକ ମୁହଁ ଉପରକୁ ପଡ଼ି ଆଖିଭିତରକୁ ପଶିପଶି ଯାଉଛି ) ମୁଣ୍ଡକୁ ହଲାଇ ହଠାତ୍‌ ସେ ଦଣ୍ଡେ ଫୁରସତ ନେବ ବୋଲି ଉହ୍ନେଇ ପାଖରେ ଯାଇ ଥିରହୋଇ ବସିପଡ଼ିଲା ଓ ଉର୍ଦ୍ଧ୍ୱମାର ଆରଘର ଭିତରକୁ ଅନାଇଲା ।

ସେତେବେଳକୁ ସେହି ଘରଭିତରେ ମଣିଷ ଭିଡ଼ରେ ଅଣନିଶ୍ୱାସୀ ହୋଇଗଲାପରି ଲଗିଲାଣି । ଲୋକମାନେ ଗୃହଆଡ଼ୁ କ୍ରମେ ଖୁନ୍ଦାଖୁନ୍ଦି ହୋଇ ଆସୁଚନ୍ତି । ସେମାନଙ୍କର ପାଟି ତୁଣ୍ଡରେ ସମସ୍ତ କକ୍ଷଟି ପ୍ରତିଧ୍ୱନିତ ହୋଇ କମ୍ପିବାରେ ଲଗିଛି ।

ବାହାରେ ଝରକାତଳେ ଇହୁଦୀମାନଙ୍କର ଚବରଚବର ଶବ୍ଦ ଶୁଣା-ଯାଉଛି । ଘରଭିତରେ ସ୍ତ୍ରୀଲୋକମାନେ କେତେପ୍ରକାର ଅଭିନୟ ଓ ପ୍ରଦର୍ଶନ କରି ସେମାନଙ୍କ ଉପରେ ହୋଇଥିବା ଅନ୍ୟାୟଗୁଡ଼ିକର ବର୍ଣ୍ଣନା କରୁଚନ୍ତି, ଏବଂ କିଛି କିଛି ଆହୁରି ଅଧିକ ବଡ଼ ପାଟିରେ ବାହୁନିବାରେ ଲଗିଚନ୍ତି । କିନ୍ତୁ ପ୍ରକୃତରେ ସେମାନଙ୍କ ଉପରେ କ'ଣସବୁ ଅନ୍ୟାୟ କରାହୋଇଛି, ସେକଥା ଠିକ୍‌କରି ଜାଣିବାକୁ କାହାରି ଜୁ ନାହିଁ । ସମସ୍ତେ ଘେଁସାଘେଁସି ହୋଇ ଠିଆହୋଇ ରହିଚନ୍ତି, ଅନାଇଦେଲାବେଳକୁ ଘନହୋଇ ବଢ଼ିଥିବା

ଗୋଟାଏ ମାଣ୍ଡିଆ କାଆଁସ ପରି ମନେହେଉଛି । ଶୂନ୍ୟରେ କେତେକେତେ ହାତ କେତେ ଢଙ୍ଗରେ ଦୋହଲିବାରେ ଲାଗିଛି, କେତେ ତୁଣ୍ଡରୁ କେତେ ପ୍ରକାଶ୍ୟ ଓ ଅର୍ଦ୍ଧପ୍ରକାଶ୍ୟ ଶବ୍ଦ ବାହାରି ଘର ଧ୍ୱନିତହୋଇ ଉଠୁଛି ।

ଏତିକବେଳେ ବୋଉନା ଉପରେ ଇଶ୍ୱର ନଜର ପଡ଼ିଗଲା । ଆଉ ତାକୁ ଅଟକାଇ ରଖୁଛନ୍ତିକିଏ, ତା'ର ମୁହଁରୁ ଗାଳି ଉପରେ ଗାଳି ବରଷିବାରେ ଲାଗିଲା । ଏଥିରେ ବୋଉନା ବା ଆଉ କେତେ ସମସ୍ତ ସମ୍ଭାଳି ହୋଇ ରହନ୍ତା ? ସେ ମଧ୍ୟ ଗରମାଗରମ ଜବାବ ଦେବାକୁ ଲାଗିଲା ।

"ଚୁପ୍ ହ' କହୁଛି କୁତ୍ତି । ଆଉ ବେଶୀ ବକବକ ହେଲେ ତୋ' ମୁହଁକୁ ଏମିତି ବଙ୍କା କରିଦେବି ଯେ ତୋ'ର ମାଆ ମଧ୍ୟ ତୋତେ ଚିହ୍ନି ପାରିବନାହିଁ ।"

ଏକଥା ଶୁଣି ବଡ଼ ଉତ୍ତେଜିତ ଓ ଅଧୀର ହୋଇ ଇଶ୍ୱ ଆହୁରି ଆଗକୁ ମାଡ଼ିଆସିଲା ଏବଂ ବୋଉନାର ପାଖକୁ ଚମକି ଆସିବାକୁ ଚେଷ୍ଟାକଲା । କିନ୍ତୁ ଏହି ସମୟରେ ତା'ର ମୁଣ୍ଡର ଝାଡ଼ଣଟା ଖସି ତଳେ ପଡ଼ିଗଲା ଓ ଚିଲାଟା ମଧ୍ୟ ପଡ଼ିଯାଇ ଡକା ପାରିବାକୁ ଲାଗିଲା । ଠିକ୍ ସେତିକବେଳେ କାଖରୁ ଭିତର କବାଟଟା ଫିଟାଇଦେଇ ସ୍ପାସେକ୍ ପାଟିକରି କହିଲା ।

"ପାଟି ବନ୍ଦ କର, ବର୍ତ୍ତିମାନ ହାକିମ ଅସୁଚନ୍ତି !"

ହଁ, ପ୍ରକୃତରେ ହାକିମ କଚେରୀଘରେ ପ୍ରବେଶ କଲେ । ତାଙ୍କ ପଛରେ ଦୁଇଜଣ ସହକାରୀ ଓ ପେଶକାର । ପାଖରେ ପଡ଼ିଥିବା ଗୋଟାଏ ଟେବୁଲ ପାଖରେ ପେଶ୍କାର ଆସନ ଗ୍ରହଣ କଲେ ଓ କ'ଣସବୁ କାଗଜପତ୍ର ସଜାଡ଼ିକରି ରଖିଲେ । ହାକିମ ତିନିଜଣ ଆଗ ଆପଣାର ପୁନାଚେନ୍ଲୁଡ଼ିକୁ ବେକରେ ନେଇ ପକାଇଲେ, ନାଲିଆ କନା ପଡ଼ିଥିବା ଗୋଟିଏ ସବୁଜ ଢଙ୍ଗର ଟେବୁଲ୍ ସେପାଖରେ ଯାଇ ଉପବେଶନ କଲେ ।

ଘରଭିତରେ ସମସ୍ତେ ଚୁପ୍‌ଚାପ୍,— ଏହି ନୀରବତା ଭିତରୁ ଝରକା ବାହାରେ କଥାବାର୍ତ୍ତା ହେଉଥିବା ଲୋକମାନଙ୍କର ପାଟିତୁଣ୍ଡ ପରିଷ୍କାର ଭାବରେ ଶୁଣାଯାଉଥାଏ । କଚେରୀ ଆରମ୍ଭ ହେଲା ।

ପ୍ରଥମ ମକଦ୍ଦମାଟି ଜଣେ ପୋଲିସ୍‌ କନ୍‌ଷ୍ଟେବଲ୍‌ ଜଣେ ଖୁଚୁରା ବେପାରୀ ବିରୁଦ୍ଧରେ ଦାଏର୍‌ କରିଥିଲା । ବେପାରୀଟି କୁଆଡ଼େ ତା'ର ଘର ଦୁଆରେ କ'ଣସବୁ ଭ୍ରଷ୍ଟାଗ୍ରହ କରିଥିଲ । ଆସାମୀର ଅନୁପସ୍ଥିତିରେ ତା'ର ଦୋଷ ସାବ୍ୟସ୍ତ ହେଲା ।

କୌଣସି ଏକ ଗାଈଆଳ ଟୋକା କାହାର ବାଡ଼ୀରେ ନେଇ ଘୋଡ଼ା ଭର୍ତ୍ତି କରି ଦେଇଥିଲା ବୋଲି ବାଡ଼ୀର ମାଲିକ ତାକୁ ପ୍ରହାର କରିଥିଲା । ତାହାର ଅଭିଯୋଗର ଶୁଣାଣି ହୋଇ ଦ୍ୱିତୀୟ ମକଦ୍ଦମାଟି ପଡ଼ିଲା । ହାକିମ ଦୁଇପକ୍ଷ ଭିତରେ ମିଳାମିଶା କରିଦେଲେ । ପିଲାଟିର ମାଆ ପାଞ୍ଚ ରୁବଲ୍‌ କ୍ଷତିପୂରଣ ପାଇଲା, ପିଲାଟିକୁ ମଧ୍ୟ ନୂଆ ପ୍ୟାଣ୍ଟ୍‌ ଓ ଜାମା ମିଳିଲା ।

ତା'ପରେ କାହାର ଜମିରେ କିଏ ଜବରଦସ୍ତି ହଳ କରିଥିବାର ଅଭିଯୋଗ ଆସିଲା । ପ୍ରମାଣ ନମିଳିବାରୁ ତାହା ଖାରଜ କରାଗଲା ।

ତା'ପରେ ଜଙ୍ଗଲରୁ କାଠ ଚୋରି କରିଥିବା ମକଦ୍ଦମା ପଡ଼ିଲା । ଜଙ୍ଗଲ ହେଉଛି ଖୋଦ୍‌ ଜଜ୍‌ସାହେବଙ୍କର ସମ୍ପତ୍ତି । ମୁଦେଇ ସରକାର, ମୁଦାଲା ହେଉଛନ୍ତି ଗୋଟିଏ ଗାଆଁର ସମସ୍ତ ଗ୍ରାମବାସୀ । ଗ୍ରାମବାସୀମାନଙ୍କ ଉପରେ ଜୋରିମାନା ଦଣ୍ଡ ଘୋଷଣା କରାଗଲା । ଜୋରିମାନା ନଦେଲେ ପନ୍ଦରଦିନ ଜେଲ୍‌ । ଲୋକମାନେ ଉପରକୋର୍ଟରେ ଅପିଲ୍‌ କରିବାର ନୋଟିସ୍‌ ଦେଲେ । ହାକିମଙ୍କର ଏହି ରାୟଦେବା ବଡ଼ ଅନ୍ୟାୟ ହୋଇଛି ବୋଲି ଓ ଜଙ୍ଗଲରୁ ଜାଳେଣିକାଠ ସଂଗ୍ରହ କରିବା ବିଷୟରେ ପ୍ରଜାମାନେ ଚିରଦିନ ଉପଭୋଗ କରିଆସୁଥିବା ଅଧିକାରର ଖିଲାପ କରାଯାଉଛି ବୋଲି ସେମାନେ ଏପରି ପାଟି କରିବାକୁ ଆରମ୍ଭ କଲେ ଯେ ଶାନ୍ତିରକ୍ଷା କରାଇବାପାଇଁ ସବାବଡ଼ ହାକିମ ୟ୍ୟାସେକ୍‌କୁ ଇସାରା ଦେଲେ । ୟ୍ୟାସେକ୍‌ ଗର୍ଜନ କରି କହିଲା !

"ଚୁପ୍‌ ! ଚୁପ୍‌ ! ଇଏ କ'ଣ କଚେରୀ ନା ଦୋକାନଘର ?"

ସିଆରି ପରେ ସିଆରି ମଡ଼ାହେଲା ପରି ମକଦ୍ଦମା ପରେ ମକଦ୍ଦମାର ବିଚାର ହେଉଥାଏ । ହାକିମଙ୍କର ନିଷ୍ପତ୍ତିଗୁଡ଼ାକ ସାଧାରଣତଃ ନ୍ୟାୟ ଅନୁସାରେ ହିଁ ହେଉଥାଏ । ସାଧାରଣତଃ ଲୋକମାନେ ଶାନ୍ତିରକ୍ଷା କରି

ନଷ୍ଟଭି ଶୁଣୁଥାନ୍ତି । ଅବଶ୍ୟ ମଝିରେ ମଝିରେ କଏ ଅଧୀର ହୋଇ ଭାଗ୍ୟକୁ ନିନ୍ଦା କରୁଥାଏ ତ କଏ ଭେଁ ଭେଁ କରି କାନ୍ଦିବାରେ ଲାଗିଥାଏ । କଏ ବେଳେବେଳେ ଆପଣା ମନକୁ ସମ୍ଭାଳି ନପାରି ହୋଇଉଠୁଥାଏ । କିନ୍ତୁ ସ୍ୱାସେକ୍ ସଙ୍ଗେ ସଙ୍ଗେ ଏହି ସବୁ ଅବାଧ୍ୟତାକୁ ବନ୍ଦ କରି ଦେଉଥାଏ ।

କ୍ରମେ କଚେରୀଘରୁ କେତେକ ଲୋକ ବାହାରକୁ ଚାଲିଗଲେଣି, ସେମାନଙ୍କ ପରିବର୍ତ୍ତେ ପୁଣି ଅନେକ ନୂଆଲୋକ ମଧ୍ୟ ଆସି ପହଞ୍ଚିଗଲେଣି । ସମସ୍ତେ ଠିକ୍ ଗୋଟାଏ ଧାନ କ୍ଷେତର ଧାନ କେଣ୍ଡାପରି ଠିଆହୋଇ ରହିଥାନ୍ତି । ଏପାଖ ସେପାଖ ହେବାକୁ ଆଉ କାହାରି ଜାଗା ନଥାଏ । କ୍ରମେ କଚେରୀଘର ଭିତରଟାର ପବନ ରୁଦ୍ଧ ହୋଇ ଭାରି ଗରମ ବୋଧ ହେଉଥାଏ । ଶେଷକୁ ହାକିମ ଝରକାଗୁଡ଼ାକୁ ମେଲିକରି ଦେବାପାଇଁ ହୁକୁମ ଦେଲେ ।

ବର୍ତ୍ତମାନ ଲପ୍‌ଜା ଗାଆଁର ବାର୍ତ୍ତେକ୍ କୋଜର୍ଓଲର ମକଦ୍ଦମା ଘଡ଼ିଲା । ଆହ୍ଲୋନର ଝିଅ ମାର୍‌ସିଆନା ପାଚେସ୍‌ର ଘରୁ ମାଈ କୁକୁଡ଼ାଟାଏ ଚୋରି କରି ନେଇଯାଇ ଥିବାର ଅଭିଯୋଗରେ ତାହାକୁ ଅଭିଯୁକ୍ତ କରାଯାଇଥିଲା । ସାକ୍ଷୀମାନେ ହେଉଚନ୍ତି,— ମୁଦେଇ ମାର୍‌ସିଆନା, ତା'ର ପୁଅ ସାଇମନ୍, ବାବାର୍ ନପେସେକ୍ ଇତ୍ୟାଦି ।

"ସାକ୍ଷୀମାନେ ହାଜର ଅଛନ୍ତି ?"— ସାନ ହାକିମ ପଚାରିଲେ ।

ଏତେବେଳଯାଏ ବୋରନା ଅଲଗା ହୋଇ ଗୋଟିଏ ଥାନରେ ଠିଆ ହୋଇଥିଲା । କିନ୍ତୁ ସେ ବର୍ତ୍ତମାନ ପାଚେସ୍‌କୁ ନମସ୍କାର କରିବ ବୋଲି ଆଗଭର ହୋଇ ଆସିଲା । କାରଣ ଏହି ମାରସିଆନା ପାଚେକ୍ ହେଉଛି ଡୋମିନିକ୍‌ର ବିଧବା ପତ୍ନୀ, ଯୁରଗ୍‌ନାର ମାଆ !

"ମୁଦାଲା ଅଡ଼ୀ ଭିତରକୁ ଆସୁ ।"

ବାଙ୍ଗରା ହୋଇ ଦେଖାଯାଉଥିବା ଜଣେ କୃଷକ ଆଗକୁ ବାହାରି ଆସିଲା ।

"ତୋ'ର ନାଆଁ ବାର୍‌ତେକ୍ କୋଜର୍ଓଲ୍ ?"

ଲୋକଟି ବୋଧହୁଏ ଭାରି ଭୀତ ହୋଇ ପଡ଼ିଥିଲା । ଏହି ପ୍ରଶ୍ନଟି ଶୁଣି ସେ ମୁଣ୍ଡର ବାଳଗୁଡ଼ାକୁ ନଖ ଅଗରେ କୁଣ୍ଡାଇବାକୁ ଲାଗିଲା, ତା'ର ଚକଣ

ହୋଇ ଖିଅର ହୋଇଥିବା ମୁହଁକୁ ଦେଖାଇ ସେ ବୋକାଙ୍କ ପରି ଦାନ୍ତ ନକୁଟିବାରେ ଲଗିଲା ଏବଂ ତା'ର ନାଲିଆ ନାଲିଆ ଆଖିଦୁଇଟା ଠିକ୍‌ ଘୁଣ୍ଡ୍ରୁ ଚମ୍‌ଚ୍ଛା ଡେଇଁବାପରି ଏ ହାକିମ ପାଖରୁ ସେ ହାକିମ ହୋଇ ଡେଇଁବାକୁ ଆରମ୍ଭକଲା ।

ତା'ଠାରୁ କୌଣସି ଜବାବ ନ ପାଇ ହାକିମ ପୁଣିଥରେ ପଚାରିଲେ ।

ଆଉ ଜଣେ ସ୍ତ୍ରୀ ଲୋକ ଟାଉଟାଉ ହୋଇ ଅଡ଼ାଭିତରକୁ ପଶିଯାଇ ଉତ୍ତର ଦେଲା,— "ଆଜ୍ଞା ହଁ, ସେ ହେଉଛି ବାର୍‌ତେକ୍‌ କୋକଓଲ୍‌ !"

"କିନ୍ତୁ ତୁ କିଏ ?"

"ମୁଁ ହେଉଛି ଏହି ବଗୁରର ଘରଯା !"—କହି ସେ ଆପଣାର ହାତ ଦୁଇଟାକୁ ବଢ଼ାଇ ଦେଇ ମୁଣ୍ଡ ନୁଆଁଇ ହାକିମଙ୍କୁ ଓଳଗି ହେଲା । ତା'ର ମୁଣ୍ଡର ଟୋପିଟା ହାକିମଙ୍କର ଟେବୁଲକୁ ପ୍ରାୟ ସ୍ପର୍ଶ କରି ଯକାଉଥିଲା ବୋଲି କହିବାକୁ ହେବ ।

" ତୁ କ'ଣ ସାକ୍ଷୀ ହୋଇ ଆସିଚୁ ?"

"କ'ଣ କହିଲ ହାକିମ ? ସାକ୍ଷୀହୋଇ ? ନା,— କିନ୍ତୁ···"

"ଅର୍‌ଦଲି, ଏହାକୁ ଅଡ଼ାଭିତରୁ ବାହାରକୁ ବାହାର କରି ଦେ !"

"ହେ ମାଇକିନିଆ, ସେଠୁ ବାହାରିଯାଆ, ସେଠି ତୁ ଠିଆ ହୋଇ ପାରିବୁ ନାହିଁ ।"

ସ୍ତ୍ରୀ ଲୋକଟିର ଡେଣାଧରି ସ୍ନାପେକ୍‌ ତାକୁ ଜବରଦସ୍ତି ଠେଲିପେଲି ଅଡ଼ାଭିତରୁ ବାହାର କରିଦେଲା ।

ଯାଉଯାଉ ସ୍ତ୍ରୀ ଲୋକଟି ଭୋ' ଭୋ' ତକାଘାରିବାକୁ ଲଗିଲା ଓ କହିଲା,- "ହାକିମଙ୍କର କ'ଣ ମୋ'ପ୍ରତି ଏତିକି ଦୟା ହେଲାନାହିଁ ! ମୋ' ଗେରସ୍ତ ଟିକିଏ ବଡ଼ ବୋଲା, କାନରେ ଭଲକରି ଶୁଣିପାରେନାହିଁ ।"

"ବାହାରିଯାଆ କହୁଚି ! ଭଲରେ ଭଲରେ ବାହାରିଯାଆ, ନହେଲେ ମୁଁ କିଛି ମାନିବିନାହିଁ, ଜାଣିଚୁ ?"

—ସ୍ନାପେକ୍‌ ଗର୍ଜନ କରି କହିଲା ଓ ତା'ର ଡେଣାଧରି ଘୋଷାରିବାକୁ ଲଗିଲା । ସ୍ତ୍ରୀଲୋକଟି ବ୍ୟାକୁଳହୋଇ ଚିତ୍କାର କରିବାରେ ଲଗିଥାଏ ।

"ଚୁପ୍ ହୋଇ ସେଠାରୁ ଚାଲିଯାଅ । ଆମେ ସମସ୍ତେ ବଡ଼ପାଟି କରି କଥା କହିବୁ, ଯେପରିକି କୋକଓଲ୍‌କୁ ଶୁଣିବାରେ କୌଣସି ଅସୁବିଧା ହେବନାହିଁ ।"

ସେଇଠୁ ଜେର୍‌ ଆରମ୍ଭ ହେଲା ।

"ତୋ' ନାଆଁ କଅଣ ?"

"ମୋ' ନାଆଁ ? ତୁମମାନଙ୍କୁ ତ ମୋ'ର ନାଆଁ ନିଶ୍ଚୟ ମାଲୁମ ଥିବ, କାରଣ ମୋ, ନାଆଁରେ ତୁମେମାନେ ସମନ ପଠାଇଛ କି ନାହିଁ ? କ'ଣ ମୋ'ର ଡାକନାଆଁଟା ଆପଣମାନଙ୍କର ଲୋଡ଼ା କି ?"

"ହେ ଗଧ, ତୋ'ର ନାଆଁ କ'ଣ କହିଦେ ।"— ହାକିମ ବଡ଼ପାଟି କରି କହିଲେ ।

"ଆଜ୍ଞା, ବାର୍‌ତେକ୍ କୋକଓଲ୍ !"— ତା'ପକ୍ଷରୁ ତା'ର ସ୍ତ୍ରୀ ଉତ୍ତର ଦେଲା ।

"ବୟସ ?"

"ସେ କଥା କ'ଣ ମୋର ମନେଅଛି ? ହେ ଛୁଆର ମାଆ, ମୋତେ କେତେ ବର୍ଷ ହେଲାଣି କି ?"

"ମୋର ଅନୁମାନ ହେଉଛି ବାଉନ ବର୍ଷ, ଦି'କୋଡ଼ି ବାଆର ।"

"କ'ଣ କୃଷିବାସ କରୁ ?"

"ଆଜ୍ଞା ହଁ । ଛନମାଣ ବାଲିଆ ଜମି ଆଉ ହଳେ ବଳଦ । ମୁଁ କୃଷିକାମ କରେ ।"

"ଆଗରୁ କେବେ କୋର୍ଟରେ ସଜା ପାଇଚୁ ?"

"ସଜା ?"

"ଆରେ, ଆଗରୁ କେବେ ଜହଲ ଯାଇଚୁ ?"

"ଜହଲ ? ଛୁଆର ମାଆ, ମୁଁ ଆଗରୁ କେବେ ଜହଲ ଯାଇଚି ?"

"ହଁ, ବାର୍‌ତେକ୍, ଯାଇଚୁ । ସେଇ ବଦମାସ ଜଙ୍ଗଲ୍‌ଭର୍ ଲୋକ-ଗୁଡ଼ାକ ତୁମର ଘୋଡାଏ ମଲା ମେଣ୍ଢା ପାଇଁ ତୋତେ ନେଇ ଜହଲରେ ପୂରାଇଥିଲେ ।

"ହଁ, ହଁ, ମନେପଡ଼ିଲା । ପଡ଼ିଆରେ ଗୋଟାଏ ମେଣ୍ଢା ମରିକରି ପଡ଼ିଥିଲା । ସେଇଠି ପଡ଼ିରହିଥିଲେ କେବଳ କୁକୁର ମୁହଁରେ ଯାଇଥାନ୍ତା । ତେଣୁ ମୁଁ ମେଣ୍ଢାଟିକୁ ଘରକୁ ଉଠାଇନେଲି । ସେମାନେ ମୋ' ନାଆଁରେ କଚେରିରେ ମକଦ୍ଦମା କଲେ । କହିଲେ, ମୁଁ କୁଆଡ଼େ ମେଣ୍ଢାଟାକୁ ଚୋରି କରି ନେଇଯାଇଚି । କଚେରିର ହାକିମ ମୋତେ ଦଣ୍ଡ ଦେଲେ । ସେମାନେ ମୋତେ ଜହଲକୁ ପଠାଇଦେଲେ । କିନ୍ତୁ ଏହା ଏକବାରେ ଅନ୍ୟାୟ ବିଚାର ଥିଲା"— ଆପଣାର ସ୍ତ୍ରୀ'ଆଡ଼କୁ ଟେରେଇ ଟେରେଇ ଅନାଇ ଅନାଇ ସେ ଧୀରେ ଧୀରେ ଯାନପାଟିକରି କହିବାକୁ ଲାଗିଲା ।

"ବର୍ତ୍ତମାନ ତୁ ଗୋଟାଏ ମାଇଘୁଷୁରି ଚୋରିକରି ନେଇଚୁ ବୋଲି ମୁଦେଇ ମାର୍‌ଗ୍ରିଆନା ପାଚେସ୍‌ ତୋ' ନାମରେ ମକଦ୍ଦମା ଦାଏର୍‌ କରିଚି । ତା'ର କହିବା ଅନୁସାରେ କୁଆଡ଼େ ତା' ଘୁଷୁରିଟି ପଡ଼ିଆରେ ଚରୁଥିଲା, ତୁ ତାକୁ ପଡ଼ିଆରୁ ଅଡ଼ାଇ ଆପଣା ଘରକୁ ନେଇଗଲୁ ଏବଂ ତା'କୁ ମାରି ଘରେ ସାଗୁଆଡ଼ି କରି ଖାଇଲୁ । ଏ ବିଷୟରେ ତୋ'ର କିଛି କହିବାର ଅଛି ?"

"ମୁଁ ? ମୁଁ କେବେ ସେ ଘୁଷୁରିକୁ ଖାଇନାହିଁ । ଯଦି ଖାଇଥିବି, ତେବେ ମଲା ସମୟକୁ ଠାକୁରେ ମୋତେ ବଳେ ଦଣ୍ଡିବେନାହିଁ ? ମୁଁ ଖାଇବି ସେ ଘୁଷୁରିକୁ ?"

"ତୋ' କଥାର ପ୍ରମାଣ କ'ଣ ଅଛି ?"

"ପ୍ରମାଣ ? ପ୍ରମାଣ ଅଛି ତୁଆର ମାଆ ? ହଁ, ହଁ, ମନେ ପଡ଼ିଲା । ହଁ, ମୁଁ କୌଣସି ଅପରାଧ କରିନାହିଁ, କାରଣ ମୁଁ ଘୁଷୁରିଟାକୁ କଦାପି ଖାଇନାହିଁ । ସେଇ ଡୋମିନିକର ବିଧବା ମାଇପ ମିଛରେ କୁକୁରପରି ମୋ' ନାଆଁରେ ଭୁକିବାକୁ ଆସିଚି !"

"ସଂସାରରେ ପୁଣି ଏମିତି ମିଛୁଆ ସାହସିଆ ମଣିଷ ଥାଆନ୍ତି ?"— ଦୀର୍ଘନିଃଶ୍ୱାସ ମାରି ଡୋମିନିକ୍‌ର ବିଧବାପତ୍ନୀ କହିଉଠିଲା ।

"ପାଚେସର ଘୁଷୁରି କେମିତି ତୋ'ଘରକୁ ଆସିଲା, ତୁ ସେକଥା ଆମକୁ ବୁଝାଇ ଦେ !"

"ମୋ'ଘରକୁ ? ପାଦ୍ରେସ ଘରର ଘୁଷୁରି ? ହେ କୁଆଁରୀ ମାଆ, ହାକିମ କ'ଣ ପଚାରିଲେ କହୁଛନ୍ତି ?"

"ସେ ପଚାରିଲେ ଘୁଷୁରିଟା ତୋ' ପଛେପଛେ ଆମ ଘରକୁ ଆସିଲା କିପରି ?"

"ହଁ, ହଁ, ବୁଝିଲି । ହାକିମ ମୋ'ର ଦୋଷ କ୍ଷମା କରିବେ ଯେ ମୁଁ ତାଙ୍କର ପ୍ରଶ୍ନ ଭଲକରି ବୁଝି ପାରିନଥିଲି । ଶୁଣିବା ହୁଅନ୍ତୁ ମଣିମା, ମୁଁ ଆଗରୁ ଯାହା କହୁଥିଲି, ବର୍ତ୍ତମାନ ସେଇ କଥାକୁ ଆଉଥରେ କହିବାକୁ ଯାଉଚି । ଏହି ଡୁକୁରଟା ମାଈ ନୁହଁ, ଅଣ୍ଡିରା । ଦେହର ବର୍ଣ୍ଣ ବିଲକୁଲ ଧୋବଲା, ଲାଙ୍ଗୁଡ଼ ଉପରକୁ ଅଳ୍ପଏ କଳାଦାଗ ଅଛି ।......ଠିକ୍ ଲାଙ୍ଗୁଡ଼ ଉପରେ ନୁହେଁ, ଆଉଟିକିଏ ତଳକୁ ।"

"କିନ୍ତୁ ସେହି ଘୁଷୁରିଟା ତୋ'ଘରେ ଆସି ପଶିଲା କିପରି ?

"ମୋ'ଘରେ ? ମୁଁ ସବୁକଥା ବୁଝାଇ ଦେଉଚି, ଶୁଣ ହାକିମ ! ମୁଁ କହୁଚି ଯେ ମୋର କୌଣସି ଅପରାଧ ନାହିଁ । ଡୋମିନିକ୍‌ର ବିଧବା କଣ୍ଢା ମିଛକଥା କହୁଚି— ସେ ମାଇକିନିଆଟା ଭାରି ବଦମାସ୍, ଭାରି ଚାଲାକି । ଏଠାରେ ଥିବା ଭଲଲୋକମାନେ ଏହି କଥାର ବିଚାର କରନ୍ତୁ ।"

"ହାକିମ, ସେ ପୁଣି ମିଛକଥା କହୁଚି । ଯଦି ପ୍ରକୃତରେ ଠାକୁରାଣୀ ଏକଥା ଶୁଣୁଥିବେ, ତେବେ ସାଙ୍ଗେ ସାଙ୍ଗେ ତୋ' ଉପରେ ବଜ୍ର ପଡ଼ିବରେ !"— ଦୀର୍ଘ ନିଃଶ୍ୱାସ ପକାଇ କଚେରିଘରର କୋଣଟାଏ କାନ୍ଥକୁ ଟଙ୍ଗା ହୋଇଥିବା ଯୀଶୁମାତା କୁମାରୀ ମେରିଙ୍କର ଗୋଟିଏ ମୂର୍ତ୍ତି ଆଡ଼କୁ ଅନାଇଁ ସ୍ତ୍ରୀ ଲୋକଟି ଉତ୍ତର ଦେଲା । ତା'ପରେ ଆପଣାର ହାଡ଼ୁଆ ଆଙ୍ଗୁଠି-ଗୁଡ଼ାକୁ ମୁଠା ବାନ୍ଧି ବାର୍‌ତେକ୍ ଆଡ଼କୁ ଉଞ୍ଚାଇ ସାପପରି ଗର୍ଜନ କରି କହିଲା ।

"ସାପଖିଆ, ପାଜି, କେଉଁ କାଇଦାରେ ମୋ' ଘୁଷୁରିଟାକୁ ତୁ ଉଠାଇ ନେଇଗଲୁ ? ଆଉ ଏଠି ଆସି ଛିନ୍ଦକ ବାହାର କରୁଚୁ ?"— କହି ସେ ଆପଣାର ଆଙ୍ଗୁଠିଗୁଡ଼ାକୁ ଦେଖାଇବାକୁ ଲାଗିଲା, ଯେତେଅବା ନଖରେ ବାର୍‌ତେକ୍‌କୁ ରାମ୍ପୁଡ଼ି ବିଦାରି ପକାଇବ ।

ବାର୍‌ଡେକ୍‌ର ସ୍ତ୍ରୀ ମଝିରେ ପଞ୍ଚ ଚତ୍କାର କରି କହିଲା ।

"ଆଲେ, ତୁ କ'ଣ ତାକୁ ସତରେ ମାରିବୁ ବୋଲି ବାହାରିଚୁ ? ଡାଆଣୀ, ପୁଅ ମୁଣ୍ଡଖାଇ ?"

"ଚୁପ୍ କର"— ହାକିମ ଆଦେଶ ଦେଲେ ।

"ହାକିମ କଥା କହୁଥିଲାବେଳେ ଆଉ କେହି କଥା କହି ପାରିବେ ନାହିଁ । ନହେଲେ ମୁଁ ଦୁହିଙ୍କୁ କଚେରି ବାହାରକୁ ବାହାର କରିଦେଇ ଆସିବି । ଦୁଇହାତରେ ଆପଣାର ପ୍ୟାଣ୍ଟଟାକୁ ଧରି ସ୍କାସେକ୍ ଧମକ ଦେଇ କହିଲା । ସେତେବେଳକୁ ତା' ପ୍ୟାଣ୍ଟର୍ କଡ଼ବୋତାମ ଦୁଇଟା ଫିଟିଯାଇଥାଏ ।

କଚେରିଘର ପୁଣି ଶାନ୍ତହୋଇ ଆସିଲା । ପରସ୍ପର ଆଡ଼କୁ ଆକ୍ରମଣ କରି ମାଡ଼ିଆସୁଥିବା ସ୍ତ୍ରୀଲୋକ ଦୁଇଜଣ ପୁଣି ଶାନ୍ତହୋଇ ଠିଆହେଲେ । କିନ୍ତୁ ସେମାନଙ୍କର ଆଖିଭିତରୁ ନିଆଁ ବରଷିବାରେ ଲାଗିଥାଏ, ସେମାନଙ୍କର ନିଃଶ୍ୱାସ ପବନରେ ପରସ୍ପର ପ୍ରତି ଘୃଣାଭାବ ପୂରିରହିଥାଏ ।

"ବାର୍‌ଡେକ୍, ତୁ ବର୍ତ୍ତମାନ ସତ କରି ସବୁକଥା କହିଦେ !"

"ହଁ, ହଁ, ବିଲ୍‌କୁଲ୍ ସତକଥା କହୁଚି । ଗୀର୍ଜାରେ ପାଦ୍ରୀପାଖରେ ବସି ସତକଥା କହିଲାପରି ମୁଁ କହୁଚି । କଥାଟି ହେଉଚି......"

"ଭଲକରି ଭାବିଚିନ୍ତି ସବୁକଥା କହିବୁ । ଯେମିତି କୌଣସି କଥା ଭୁଲିନଯାଉ !"— ତା'ର ସ୍ତ୍ରୀ ମାର୍‌ଗ୍ରା ତାକୁ ଚେତାଇଦେଇ କହିଲା ।

"ମୁଁ ଭାବିଚିନ୍ତି କହିବି, ମାର୍‌ଗ୍ରା ! ଘଟଣାଟି ହେଉଚି ଏହିପରି । ମୁଁ ବାଟେବାଟେ ଚାଲିଯାଉଥିଲି । (ବସନ୍ତ ସମୟ । ମୁଁ ବୋରିନାର ଜମିପାଖରେ ହୋଇଥାଏ ।) ସେତେବେଳକୁ ରାତି ହୋଇ ଆସୁଥାଏ, ତେଣୁ ମୁଁ ମନେମନେ ମୋର ସନ୍ଧ୍ୟା-ଉପାସନାର ମନ୍ତ୍ର କହିକହି ଯାଉଥାଏ । ଯାଉ ଯାଉ ଶୁଣିବାକୁ ପାଇଲି...... କାହାର ଶବ୍ଦ ପରି ମୋତେ ଶୁଣାଗଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଭାବିଲି, କିଏ ଆଉ କୋଉଠି ଗଅଁ ଗଅଁ ହେଉଚି କି ? ପଛକୁ ବୁଲି ଦେଖିଲି କିଛିନାହିଁ । ସବୁଆଡ଼ ଶୁନ୍‌ଶାନ୍ । ଆଉ କ'ଣ ଭୂତ ଆସି ମୋ' ସାଙ୍ଗରେ ଖେଳିବାକୁ ବସିଚି କି ? ଏକଥା ଭାବି ମୋର

ଭିତରଟା ଖାଲି ଥରିବାକୁ ଲଗିଲା । ମୁଁ ମେଷ୍ଟ ଠାକୁରାଣୀଙ୍କର ନାମ ଜପ କରିବାକୁ ଲଗିଲି । ପୁଣି ସେହିପରି ଗଅଁ ଗଅଁ ଶବ୍ଦ । ଶବ୍ଦ ବାରି ମୁଁ ମନେ ମନେ କହିଲି, ଏଇଟା ହେଉଛି ଗୋଟାଏ ଘୁଷୁରିର ଶବ୍ଦ,— ମାଇ କି ଅଣ୍ଡିରା ଭଗବାନ ଜାଣନ୍ତି । ବଲେବଲେ ଆଉ କେତେ ପାହୁଣ୍ଡ ଆଗକୁ ଚାଲିଯିବା ପରେ ମୋତେ ଲଗିଲା ଯେପରି କ'ଣ ଗୋଟାଏ ଜୀବ ମୋ'ପଛେ-ପଛେ ଆସିବାରେ ଲଗିଛି । ମୁଁ ଠିଆ ହୋଇଗଲି, ସେ ଜୀବଟା ମଧ୍ୟ ଅଟକି ଠିଆହେଲା । ଦୂରରୁ ସେଇଟା ବେଶ୍ ଧୋବଲ ଲମ୍ବାହୋଇ ଦେଖାଯାଉ-ଥାଏ, ଗୋଡ଼ଗୁଡ଼ିକ ଗ୍ଲେଟଗ୍ଲେଟ । ତା'ର ଆଖି ଦୁଇଟା ଠିକ୍ ବଣଭୂଆ ବା ଭୂତର ଆଖିପରି ଜଳ ଜଳ ହୋଇ ଜଳୁଥାଏ । ମୁଁ ଶୂନ୍ୟରେ ହାତ ବୁଲାଇ କ୍ରସ୍‌ଚିହ୍ନ ଆଙ୍କିବାକୁ ଲଗିଲି ଏବଂ ଭୟରେ ଜଡ଼ପରି ହୋଇ ପୁଣି ଆଗକୁ ଖୋଜ ପକାଇବାକୁ ଆରମ୍ଭ କଲି । ରାତି ହେଲାଣି, ଏଇଟା ଯେ କ'ଣ ମୋ' ପଛରେ ନସରପସର ହୋଇ ଧାଇଁଛି, ସେକଥା ମୁଁ ଜାଣିବି କିପରି ? ସେହି ଜାଗାଟା ମଧ୍ୟ ଭାରି ଭୟର ଜାଗା, ସେକଥା ତ ଗାଆଁଟାଯାକ ସମସ୍ତଙ୍କୁ ଜଣା !"

"ହଁ, ହଁ, ସେ ବବାକ ସତକଥା କହୁଛି,"— ତା'ର ସ୍ତ୍ରୀ କହି-ବସିଲା "ଗୋଦସ୍ତା ସନ ଦିନେ ସିକୋର୍ ଯେଇ ବାଟଦେଇ ଯାଉଥିଲା । ରାତି ହୋଇ ଯାଇଥାଏ । ପଛରୁ କିଏ ଗୋଟାଏ ଆସି ତା'ର ତଣ୍ଟିକୁ ଚପିଧରିଲା, ତାକୁ ଅକଲ କରି ତଳେ ପକାଇଦେଲା ଆଉ ଏପରି ନର୍ଘାତିଆ ମାଡ଼ ମାରିଲା ଯେ ସିକୋର୍ ପରା ପନ୍ଦରଦିନଯାଏ ବିଛଣାରେ ପଡ଼ିରହିଲା !"

"ତୁ ତୁନି ହ', ମାଗ୍‌ଡ଼ା ! ମୁଁ ସବୁକଥା କହୁଛି । ସେଇଠୁ ମୁଁ ଆଗକୁ ଚାଲିଲି, ପଛରୁ ସେହି ଜନ୍ତୁଟା ମଧ୍ୟ ମୋର ପଛେ ପଛେ ଗୋଡ଼ାଇବାକୁ ଲଗିଲା,— ଠିକ୍ ଆଗପରି ଗଅଁ ଗଅଁ ହୋଇ ସେ ଗୋଡ଼ାଉଥାଏ । ଠିକ୍ ସେତିକିବେଳେ ଜହ୍ନ ଉଠିଆସିଲା, ଚାରିଆଡ଼ ଆଲୁଅ ହୋଇଗଲା । ମୁଁ ପଛକୁ ଅନାଇ ଦେଖିଲି, ଭୂତ ନୁହଁ କି ସଇତାନ ନୁହଁ, ଗୋଟାଏ ଘୁଷୁରି । ରାଗରେ ମୋର ବ୍ରହ୍ମ ଜଳିଉଠିଲା । ଶଳା ଗ୍ରୁର ଘୁଷୁରିଟା ମୋତେ ଏତେବେଳଯାଏ ଏପରି ଭୟ ଦେଖାଉଥିଲା ? ତା'ଉପରକୁ ଗୋଟାଏ ଚୋପଡ଼ ମାରିଦେଇ ମୁ

ମାଇକେଲର ବାଟ୍ ଆଉ ବୋରନାର ଗହମକ୍ଷେତ ମଝିରେ ଥିବା ହୁଡ଼ ଧରି ଗୁଳିବାକୁ ଲାଗିଲି । ତା'ପରେ ଟମାସ୍‌ର ମାଣ୍ଡିଆ ବିଲ ଆଉ ସ୍ଲାସେକ୍‌ର ଯଅ ବିଲ ମଝିରେ ଥିବା ହୁଡ଼ ଉପରେ ଆସି ପହଞ୍ଚିଲି । [ଗତବର୍ଷ ସେମାନେ ଆସି ସ୍ଲାସେକ୍‌ର ସ୍ତ୍ରୀକୁ ଧରିନେଇଗଲେ । ତା'ର ସ୍ୱରଯାର କାଳି ଗୋଟାଏ ଛୁଆ ହୋଇଛି । ]......କିନ୍ତୁ ତେବେକେ ଗୁଞ୍ଚୁରିଟା ମୋର ପିଛା ଛାଡ଼ିଲାନାହିଁ, ଠିକ୍ ଗୋଟାଏ କୁକୁରପରି ମୋତେ ଅନୁସରଣ କରିବାକୁ ଲାଗିଲା । ଏବଂ ତା'ପରେ ଏକପାଖିଆ ହୋଇ ଡ୍ରୋମିନିକ୍‌ର ଆଳୁବିଲ ଭିତରକୁ ପଶିଯାଇ ଆହୁରି ଜୋରରେ ଗଅଁ ଗଅଁ ଶବ୍ଦ କଲା । ମୁଁ ବୁଲିପଡ଼ି ବିଲ ମଝିରେ ବାଟ କାଟି ଚିଦାକୁ ଲାଗିଲି, ଗୁଞ୍ଚୁରିଟା ବି ମୋ' ପଛେ ପଛେ ଦଉଡ଼ିବାକୁ ଲାଗିଲା, ଆଉ ମୁଁ ଥିରହୋଇ ରହିପାରିଲି ନାହିଁ । ଈଶ୍ୱର ଜାଣିଥିବେ ! ଏ ମାଇ ଗୁଞ୍ଚୁରିଟା ତ ଗୋଟାଏ ଅଦ୍ଭୁତ ଜୀବ ! ବୋଧହୁଏ ମାଇ ନୁହେଁ, ଅଣ୍ଡିରି, ତା'ପରେ ମୁଁ ବିଲମଝିରେ ଥିବା କୁସ୍‌ପାଖକୁ ଗଲି, ଗୁଞ୍ଚୁରିଟା ମଧ୍ୟ ମୋ' ପଛେ ପଛେ ଗଲା । ମୁଁ ଗୋଟାଏ ଖନ୍ଦ ଡେଇଁ ସେପାଖକୁ ଗଲି, ଗୁଞ୍ଚୁରି ମଧ୍ୟ ମୋ' ପଛେପଛେ ଖନ୍ଦ ଡେଇଁ ଆସିଲା ମୁଁ ସୁଆଡ଼େ ଗଲି ସେ ମୋ' ପଛେ ପଛେ ଗଲା । ପିଅର୍‌ଗଛର ଦାଣ୍ଡି ଦେଇ ମୁଁ ଦଉଡ଼ ଯାଉଯାଉ ସେ ମୋର ଦୁଇଗୋଡ଼ ଭିତରେ ଆସି ହାବୁଡ଼ିଗଲା ଓ ମୋତେ ଛାନ୍ଦିପକାଇଲା । ତଳେ ପଡ଼ିଯାଇ ମୁଁ ଭାବିଲି, ଏଇଟାକୁ କ'ଣ ଭୂତ ଲାଗିଚି ନା କ'ଣ ? ମୁଁ ଭୂଇଁରୁ ଉଠି ପୁଣି ଚିଦାକୁ ଆରମ୍ଭ ନକରୁଣୁ ସେଇଟା ଲାଙ୍ଗୁଡ଼ଟାକୁ ହଲାଇ ହଲାଇ ମୋ'ର ଆଗେ ଆଗେ ଦଉଡ଼ିଲା । "ଶଳା ଗୁଞ୍ଚୁରି ଯାଉଚି ନା ପୁଣି ଦେଖିବୁ ?"— ମୁଁ ରାଗରେ ଗର୍ଜନ କରି ଉଠିଲି । ତଥାପି ସେ ଦୁଘୁଣେଇ ହୋଇ ଦଉଡ଼ିବାକୁ ଲାଗିଲା । ଶେଷକୁ ମୁଁ ଘରେ ପହଞ୍ଚିଲି, ସେ ମଧ୍ୟ ସିଧା ଆସି ମୋ' ଘରଭିତରେ ପଶିଗଲା । ହାକିମ, ମୁଁ ସତ କହୁଚି, ସେ ବାଡ଼ ପାରହୋଇ ଦୁଆର ଭିତରକୁ ଆସିଲା । ତା'ପରେ ପିଣ୍ଡାକୁ ଓ ତା'ପରେ ମେଲାହୋଇଥିବା କବାଟ ଦେଇ ଏକାବେଳକେ ଘର ଭିତରକୁ । ମୁଁ କିଛି ବୁଝିନପାରି ଖାଲି ଠାକୁରଙ୍କୁ ଡାକୁଥାଏ !"

"ସେଇଠୁ ତୁ ତାକୁ ମାରି ସାଗୁଆଡି କରି ଖାଇଲୁ, ନୁହଁ ?"— ମୁରୁବି ହସି ହାକିମ ପ୍ରଶ୍ନ କଲେ ।

"ମାରି ସାଗୁଆଡି କଲି ? ହଁ,— ମୁଁ ଆଉ କ'ଣ କରିଥାନ୍ତି କହିଲ ? ଗୋଟିଏ ଦିନ ଗଲା, ତଥାପି କୁକ୍କୁର ଘରୁ ଗଲାନାହିଁ । ଦିନଦିନ ହୋଇ ସାତଦିନ ଗଲା, ସେ ତଥାପି ଯିବାର ନାଆଁ ଧରିଲାନାହିଁ । ମୁଁ ଯେତେଥର ବାହାର କରିଦେଇ ଆସିଲି, ସେ ସେତେଥର ଆସି ପୁଣି ଘରଭିତରେ ପଶିଲା । ମୋର ସ୍ତ୍ରୀଲୋକ ତାକୁ ଖାଇବାକୁ ଦେଉଥାଏ । ଘରେ ଗୋଟାଏ ଜନ୍ତୁକୁ ଆମେ ଉପାସ ରଖିଥାନ୍ତୁ କିପରି କହିଲ ? କୁକ୍କୁର ତ ପୁଣି ସେଇ ଭଗବାନଙ୍କର ଜୀବ ? ମଣିଷ ନହେଲେ କ'ଣ ହେଲା ? ···କିନ୍ତୁ ବର୍ତ୍ତମାନ ହାକିମ ଏହାର ବିଚାର କରନ୍ତୁ । ମୁଁ ଗରିବ ଲୋକ ଏହି କୁକ୍କୁରଟାକୁ ଘରେ ରଖି କ'ଣ କରିଥାନ୍ତି ? କେହି ଏହି କୁକ୍କୁରଟାକୁ ଭଲ ଖୋଜିବାକୁ ବା ନେବାକୁ ଆସିଥାନ୍ତେ ! ଆମେ ତ ଗରିବ ମଣିଷ, ଅଭାବ ଲାଗିରହିଛି,— ଏହି ଜନ୍ତୁଟାକୁ ଦାନା ଯୋଗାଇବାକୁ ଆମର ବଳ କାହିଁ ? ଏଇଟା ପୁଣି ଠିକ୍ ଦୁଇଟା ମଣିଷଙ୍କର ଦାନା ଖାଉଥାଏ । ତେବେ ଆମେ ଆଉ କ'ଣ କରିଥାନ୍ତୁ ? ଗୋଟାଏ ମାସ ଏହି କୁକ୍କୁର ଆମଘରେ ରହିଥିଲେ ଘରଦୁଆର ଖାଇ ଶେଷକୁ ଆମକୁ ମଧ୍ୟ ଖାଇଥାନ୍ତା । ତେବେ ବର୍ତ୍ତମାନ ଉପାୟ କ'ଣ ଅଛି ? ହୁଏତ ତାକୁ ଖାଅ, ନଚେତ୍ ସିଏ ତୁମକୁ ଖାଇବ,— ଅବସ୍ଥା ଆସି ଏହିପରି ହେବାକୁ ବସିଲା । ଶେଷକୁ ବାଧ୍ୟହୋଇ ଆମକୁ ତାକୁ ଖାଇବାକୁ ପଡ଼ିଲା । କିନ୍ତୁ ଆମେ ସବୁ ଖାଇନାହୁଁ । କାରଣ ସାଇପଡ଼ିଶାରେ ଏହି ଖବର ରାଷ୍ଟ୍ର ହୋଇଗଲା ଏବଂ ଡୋମିନିକ୍‌ର ସ୍ତ୍ରୀ ଭଉଣୀ ଧାଇଁ ଗାଆଁ ପଧାନ ଆଗରେ ଆପତ୍ତି କଲା । ପଧାନକୁ ସାଙ୍ଗରେ ନେଇ ଆମଘରକୁ ଆସିଲା ଓ ମାଉଁସତକ ନେଇଗଲା ।"

"ମାଉଁସତକ ନେଇଗଲା, ନାହିଁ ?"— ଡୋମିନିକ୍‌ର ବିଧବା ପତ୍ନୀ ରାଗରେ ତମତମ ହୋଇ କହିଲା । "ଫଡ଼ିଆତକ କାହା ପେଟରେ ପଡ଼ିଲା କହିଲୁ ?"

"ଯାଆ, ଯୋଉ କୁକୁରମାନେ ଖାଇଚନ୍ତି, ସେହିମାନଙ୍କୁ ପଚାରିବୁ ? ଆମେ ରାତରେ ତାକୁ ଖଳାଘରେ ରଖିଥିଲୁ । କୁକୁରଗୁଡ଼ାଙ୍କର ଆଖି ତା'ଉପରେ ପଡ଼ିଥିଲା । ଖଳାଘର ଦୁଆର ଭିତରେ ଗୋଟାଏ ଏଡ଼େବଡ଼ କଣା ଥିଲା । ସେଇବାଟେ ଦେଇ ଭିତରେ ପଶି ସେମାନେ ମାଉଁସତକ ଖାଇଗଲେ । ଆଉ ତୁ ମତେ ଚୋରିର ଅପବାଦ ଦେଇ ତଣ୍ଡିବାକୁ ବସିଚୁ ?"

"ତା'ହେଲେ ମାଇଁ ପ୍ରକୃତରେ ଅପଣା ମନକୁ ତୋ' ପଛେପଛେ ଗଲା, ନୁହେଁ ? ଯାଆ, ଆଉ କୋଉ ବେକାଆଗରେ ସେକଥା କହିବୁ, ଏ ଜଗତରେ କେହି ବୋକା ନାହାନ୍ତି ତୋ' କଥା ଶୁଣିବାକୁ, ତୁଇ ହେଉଚୁ ପ୍ରକୃତ ଚୋର, ବଦମାସ କାହିଁକା ? ଅଟାପେଶଣିଆ ଘରର ପେଣ୍ଡାକୁ କିଏ ଚୋରାଇଥିଲା କହିଲୁ ? ପାଦ୍ରୀଙ୍କର ବତକ ଚୋରିଇ ନେଇଥିଲା କିଏ ? କହ, କିଏ ଚୋରାଇଥିଲା ?"

"କିଏ ଚୋରାଇଥିଲା ତୁ ଦେଖିଚୁ ? ତୁ ଦେଖିଛୁ କିଏ ଚୋରାଇଥିଲା ?" —କୋଜଓଲ୍‌ର ଭରସା ଜବାବ ଦେଇ କହିଲା । କିନ୍ତୁ ଆପଣା ନଖର ସଦ୍‌ବ୍ୟବହାର କରିବାକୁ ସେ ଆଗକୁ ଚହଟି ଯାଉଥିଲା । ଏତକବେଳେ ଆରପକ୍ଷରୁ ଚଢା ଜବାବ ଆସିଲା ।

"ଗୀର୍ଜାର ବାଜାବଜାଳୀର ଆଳୁଖଣିରୁ ଆଳୁ ଚୋରି କରିଥିଲା କିଏ ? ଗାଆଁରେ ଯାହାସବୁ ଚୋରିହୋଇ ଯାଉଚ, ତାକୁ ସବୁ କିଏ ନେଉଚ, ଯେସବୁ କାହାଘରକୁ ଯାଉଚ ? ବତକ, କୁକୁଡ଼ା, କୋଡ଼ି, କୋଦାଳ, — ଏସବୁ କିଏ ନେଉଚ ?"

"ତୁ ମଣିଷ ନୋହୁ, ମଣିଷ ଝାମ୍ପି ନେବା ଛଞ୍ଚାଣ । ତୁ ଯାହା ମୋତେ ଭଲକରି ଜଣା ଅଛି ଲେ ! ତୋ' ଝିଅଟା କ ନାଆଁ ପକାଉଚ କହିଲୁ ? ଗାଆଁ ଟୋକା ଗୁଡ଼ାକଙ୍କ ସାଙ୍ଗରେ ତୋ'ର ଝିଅ ସ୍ୱଗନା କ ଲୀଳା ଲଗାଇଚ ? ଏଗୁଡ଼ାକ କହିଲେ କ'ଣ ତୋତେ କାଟିବ କି ? ତୁ'ପରା ନଂସାଘରର ପାରା !"

ଡୋମିନିକ୍‌ର ବିଧବା ପତ୍ନୀର ମଞ୍ଚ ଭିତରେ ଯାଇ ଏହି କଥାର ପ୍ରେଷ୍ଟ ବାଜିଲା । "ଆଲୋ, ତୋ' ଜିଭରେ ଏତେ ହାଡ଼ ହେଲାଣି ଯେ ମୋ ସ୍ତ୍ରୀନାର ନାଆଁ ଧରୁ ?"— ସେ ଭୟଙ୍କର ଗର୍ଜନ କରି କହିବାକୁ ଲାଗିଲା । "ଏତେ ସାହସ ? ଆଉଥରେ କହିଲେ ମୁଁ ତୋ'ର ଦାନ୍ତ ଝାଡ଼ିଦେବିନାହିଁ ?"

"ଚୁପ୍, ଚୁପ୍ ! ଏଇଟା କ'ଣ କଳିଆ କରିବାର ଜାଗା ? ପାଟି ବନ୍ଦ ନକଲେ ତୁମ ଦୁହିଁଙ୍କୁ କଚେରିଘରୁ ବାହାରକରି ଦିଆଯିବ ।"— ସେମାନଙ୍କୁ ଚୁପ୍ କରାଇଦେଇ ସ୍ୱାସେକ୍ କହିଉଠିଲା । ଗୋଟାଏ ହାତରେ ସେ ଠିକ୍ ଆଗପରି ଆପଣାର ପ୍ୟାଣ୍ଟ୍‌ଟାକୁ ଧରିଥାଏ ।

ତା'ପରେ ସାକ୍ଷୀମାନଙ୍କର ସାକ୍ଷ୍ୟ ନିଆଗଲା ।

ପ୍ରଥମେ ମୁଦେଇ ଅର୍ଥାତ୍ ଡୋମିନିକ୍‌ର ବିଧବାପତ୍ନୀ ସାକ୍ଷ୍ୟ ଦେଲା । ଖୁବ ଧୀର ଓ ନରମ କଣ୍ଠରେ ସେ କଥା କହୁଥାଏ, ପଦପଦକେ ଗାଆଁ-ଠାକୁରାଣୀଙ୍କର ଦୁହାଇ ଦେଉଥାଏ । ସେ କହିଲା ଯେ ମାଈ ଘୁଷୁରିଟି ହେଉଚି ପ୍ରକୃତରେ ତା'ର, ସେ ଚରୁଥିବାବେଳେ କୋଜିଓଲ୍ ତାକୁ ପଡ଼ିଆରୁ ଘେରିକରି ନେଇଚି । ହାକିମ ତାକୁ ସେହି ଅପରାଧ ପାଇଁ ଶାସ୍ତି ଦିଅନ୍ତୁ ବୋଲି ନକହି ଭଗବାନ ତାକୁ ଆହୁରି ଅନେକ ଯୁଗ ନର୍କଭିତରେ ପକାଇ ରଖନ୍ତୁ ବୋଲି ସେ କାମନା ପ୍ରକାଶ କରିଥିଲା । କିନ୍ତୁ— (ଏହି-ଠାରେ ସେ ଖୁବ ବଡ଼ପାଟି କରି କହିବାକୁ ଆରମ୍ଭ କଲା ।) ସ୍ତ୍ରୀନା ତା'ନାମରେ ବର୍ତ୍ତମାନ ସେ ଯେଉଁସବୁ କାନରେ ନଶୁଣିବା କଥାମାନ କହିଲା, ସେଥିଲାଗି ଧର୍ମାବତାର ଅବଶ୍ୟ ବିଚାର କରିବେ ବୋଲି ସେ ପ୍ରାର୍ଥନା କରିଥିଲା ।

ଡୋମିନିକ୍‌ର ପୁଅ ସାଇମନ୍ ଅଡାଲଭିତରକୁ ସାକ୍ଷ୍ୟ ଦେବାପାଇଁ ଗଲାବେଳେ ଆପଣା ଟୋପିତଳେ ଆପଣାର ଦୁଇହାତର ପଂଝାକୁ ଯାବୁଡ଼ିକରି ଧରିଥିଲା, ସତେଯେପରି ସେ ଗୀର୍ଜାଘରକୁ ପ୍ରାର୍ଥନା କରିବବୋଲି ଯାଉଚି । ଅପଲକ ଆଖିରେ ବିଚାରପତିଙ୍କ ଆଡ଼କୁ ଅନାଇରହି ସେ ବଡ଼ ମାଜା ସ୍ୱରରେ ଆପଣାର ସାକ୍ଷ୍ୟ ଦେଉଥାଏ । ସେ କହିଲା ଯେ ମାଈଘୁଷୁରିଟି

ହେଉଚ ପ୍ରକୃତରେ ତା'ର ମାଆର, ଦେଖିବାକୁ ଧୋବଲା । ଲଙ୍ଗୁଡ଼ ପାଖରେ ଗୋଟାଏ କଳାଚନ୍ଧ, ବୋଉନାର କୁକୁର ଲପା ଦାନ୍ତ ଲଗାଇ ତା'ର ଗୋଟିଏ କାନକୁ ଚିରଦେଇଚ । ସେ ହେଉଛୁ ଗତ ବସନ୍ତ ସମୟର ଘଟଣା ।

ତା'ପରେ ଅନ୍ୟ ସାକ୍ଷୀମାନେ ସାକ୍ଷ୍ୟ ଦେବାକୁ ଆସିଲେ । ସମସ୍ତେ ଯେହ୍ନ ଏକ କଥାର ସମର୍ଥନ କଲେ । ମାଗ୍‌ଡ଼ା ଅନ୍ତା ବାହାରେ ଠିଆହୋଇ ସାକ୍ଷୀମାନଙ୍କର କଥା ଶୁଣୁଥାଏ ଏବଂ ସବୁସ୍କୃତାକୁ ଭ୍ରୁକୁଞ୍ଚାଇ ସାକ୍ଷୀମାନଙ୍କୁ ଅପଶାଇପ ଦେବାରେ ଲଗିଥାଏ । ଡୋମିନ୍‌କ୍‌ର ବିଧବା ପତ୍ନୀ ବାରବାର ଠାକୁରାଣୀଙ୍କର ମୂର୍ତ୍ତି ଆଡ଼କୁ ଅନାଇ ରହୁଥାଏ ଓ ବେଳେବେଳେ କୋଜ-ଓଲ୍ ଆଡ଼କୁ ମଧ ଅନାଉଥାଏ । କୋଜଓଲ୍ କାନ ଡେର ସାକ୍ଷୀମାନଙ୍କର କଥା ଶୁଣୁଥାଏ, କେତେବେଳେ ସେମାନଙ୍କର ମୁହଁକୁ ଓ ଆଉ କେତେବେଳେ ଙ୍କୁରିସାର ମୁହଁଆଡ଼କୁ ବଲବଲ କରି ଅନାଉଥାଏ ।

ଶ୍ରୋତାମାନେ ଖୁବ ଆଗ୍ରହରେ ମକଦ୍ଦମାର ସୁଆଲଜବାବ ଶୁଣୁଥାନ୍ତି । କିଏ ଆଗ୍ରହାଧିକ୍ୟ ହେତୁ ହଠାତ୍ କ'ଣସବୁ ପ୍ରକାଶ୍ୟରେ କହି ଉଠୁଥାଏ, କିଏ ବ୍ୟଙ୍ଗ କରି କ'ଣ ଗୋଟାଏ ଟାପରା ମାରିଦେଉଥାଏ, ପୁଣି ଆଉକିଏ ହସ ସମ୍ଭାଳି ନପାରି ହୋ' ହୋ' ହସି ଉଠୁଥାଏ । ତତ୍‌କ୍ଷଣାତ୍ ସ୍ପାଟେକ୍ ଆଖି ଦେଖାଇ ଓ ଭୂଣ୍ଡି ଶୁଙ୍ଘାଇ ସମସ୍ତଙ୍କୁ ଶାନ୍ତ କରି ରଖୁଥାଏ ।

ଅନେକ ସମୟ ପର୍ଯ୍ୟନ୍ତ ମକଦ୍ଦମାର ଶୁଣାଣି ଚାଲିଲା । ମଝିରେ ଖାଇବା ଛୁଟୀରେ ଲୋକମାନେ କଚେରୀଘର ଖାଲି କରି ବାହାରକୁ ଚାଲି-ଗଲେ । କିଏ ଟିକିଏ ଖୋଲା ପବନରେ ବୁଲିଆସିବାକୁ ଗଲା, କିଏ ଜଳଖିଆ ଖାଇବାକୁ ଗଲା, କିଏ ସାକ୍ଷୀମାନଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କର ଭୁଲ୍ ଠିକ୍ ଦେଖାଇ ଦେବାକୁ ଗଲା । ଆଉ କେତେକ ବ୍ୟକ୍ତି ଅତ୍ୟନ୍ତ କର୍କଶ ବାକ୍ୟବାଣମାନ ପ୍ରୟୋଗ କରି ବିଚାରକଙ୍କର ଅନ୍ୟାୟମୂଳକତାକୁ ବଖାଣିବାକୁ ଲାଗିଲେ । ଏସବୁ ହେଉଚ କଚେରୀ ଜୀବନରେ ପ୍ରତିଦିନର ବ୍ୟାପାର ।

ଶୁଣିଥରେ କଚେରୀ ବସି ଫଇସଲା ଶୁଣାଇ ଦିଆଯିବାପରେ ବୋଉ-ନାର ମକଦ୍ଦମା ଆସି ପଡ଼ିଲା । ପିଲାଟାକୁ କାଖରେ ଧରି ଇଏ କଚେରି-ଭିତରେ ଠିଆହୋଇଥାଏ । କଥା କହିଲାବେଳକୁ ତା' ଆଖିରୁ ଲୁହର ଧାର ବହିଯାଉଥାଏ । ସେ କିପରି ପ୍ରଥମେ ବୋଉନାର ଘରକୁ କାମ କରିବାକୁ ଆସିଥିଲା, କିପରି ଗଧଖଟଣି ଖଟୁଥିଲା, ତଥାପି କିପରି ତାକୁ କେହି ପଦେହେଲେ ଭଲକଥା କହୁ ନଥିଲେ, ଶୋଇବାପାଇଁ ମଧ୍ୟ ତାକୁ କଣେ ଜାଗା ମିଳୁନଥିଲା, ଖାଇବାକୁ ନପାଇ ସେ କିପରି ସାଇ ପଡ଼ିଶାରୁ ମାଗିକରି ଖାଉଥିଲା, କିପରି ବୋଉନା ତାକୁ ତା'ର ଦରମା ନଦେଇ ଘରୁ ବାହାର କରି ଦେଇଛି, କୋଉଁର ଏହି ପିଲାଟା ସହିତ ସେ କିପରି ତାକୁ ଆଣି ଦାଣ୍ଡରେ ଠିଆ କରାଇଛି,— କହୁକହୁ ସେ ଆଉ ଧୈର୍ଯ୍ୟ ଧରି ରହି ପାରିଲାନାହିଁ, ଭେଁ ଭେଁ ବାହୁନିବାକୁ ଲାଗିଲା ଓ ଲମ୍ବହୋଇ ବଗୁର-ପଡ଼ଙ୍କର ଗୋଡ଼ତଳେ ପଡ଼ିଯାଇ କହିଲା :

"ଧର୍ମାବତାର, ମୋତେ ସେ ଏତେ ନରଖର କରିଛି । ଆଉ ଏଇ ପିଲାଟା ମଧ୍ୟ ତା'ର ଆଉର !"

ବଡ଼ ବିରକ୍ତ ଅସହିଷ୍ଣୁ ଭାବରେ ବୋଉନା କହି ଉଠିଲା, "ମୋ ଛିଣ୍ଡାଳ ମିଛକଥା କହୁଛି !"

"ମିଛ କହୁଛି ? ଗଲ୍, ଲପ୍କା ଗାଆଁ ଗୋଟାକୁ ପଚାରି ଆସିବୁ !"

"କ'ଣ ପଚାରିବାକୁ ଯିବ ? ତୁ ମାଗିଖାଇ ଛତରପଣୀ ବୋଲି ?

"ହେ ଧର୍ମାବତାର ! ତା'ଘରେ ଥିଲାବେଳେ ମୋତେ ସେ କେତେ କେତେ ଗେଲବସର କାଆଁ ଧରି ଡାକୁଥିଲା । ମୋ'ପାଇଁ ହାଟରୁ ମାଛ ଆଣି ଦେଉଥିଲା, ଖାଇବା ଜିନିଷ କିଣି ଆଣୁଥିଲା ଆଉ କହୁଥିଲା 'ନେ ମୋ' ମାଆ । ମୁଁ ତତେ କେତେ ସୁଆଗ ପାଏ କହି ଲୁ ! ଆଉ ଶେଷକୁ,— ହେ ଭଗବାନ୍ ! ହେ ଠାକୁରେ !"

ସେ ଭେ ଭେ ଡକାପାରି କାନ୍ଦିବାକୁ ଲାଗିଲା ।

"ତୁ ବଜାରବୁଲି ମାଗିଖାଇ ! କହୁନୁ, ମୁଁ ତୋ'ପାଇଁ ଦିନେ ଗୋଟାଏ ମଖମଲ ରେଜେଇ ଆଣି ଦେଲି ଆଉ କହିଲି : ଏଇ ରେଜେଇ ଘୋଡ଼ାଇ ହୋଇ ଶୋଇଥାଆ ଲୋ ମାଆ, ଶୋଇଥାଆ ଲୋ' ମାଆ !"

ଶୁଣିବା ଲୋକମାନେ କିରକିର ହୋଇ ହସିଉଠିଲେ ।

"କ'ଣ କହଲ୍ ? ତୁ କହନାହୁଁ ? ତୁ ମତେ କେତେ କ'ଣ ଲୋଭ ନଦେଖାଇଚୁ କହଲ୍ ?"

ବଡ଼ ଭୟଙ୍କର ସ୍ୱରରେ ବିଚଳିତ ହୋଇପଡ଼ି ବୋରନା ଉତ୍ତର ଦେଲା,— "ହେ ଭଗବାନ୍, ଏପରି ସାହସିଆ କଥା ତ ମୁଁ କେବେ ଶୁଣିନଥିଲି ! ତା'ଉପରେ ଏହିକ୍ଷଣି ଚଡ଼କ ନପଡ଼ିଲା କିପରି କେଜାଣି ?"

"ଧର୍ମାବତାର, ସାରା ସଂସାର ଏକଥା ଜାଣିଚି ! ମୁଁ ଯାହା କହୁଚି ସତ କହୁଚି ବୋଲି ଲପ୍‌କା ଗାଆଁ ଗୋଟାକ ଆସି ପ୍ରମାଣ ଦେବ । ଆପଣ ସାକ୍ଷୀମାନଙ୍କୁ ଡାକି ପରୀକ୍ଷା କରନ୍ତୁ ।" ଇଏ ଘନଘନ ଅଶ୍ରୁ ବର୍ଷଣ ଓ କାତରୋକ୍ତି ମଧ୍ୟରେ କହିବାକୁ ଲାଗିଲା ।

ସାକ୍ଷୀମାନଙ୍କର ସାକ୍ଷ୍ୟରୁ ଜଣାପଡ଼ିଲା ଯେ ସେମାନେ ନିଶ୍ଚିତ କରି କିଛୁ ଜାଣିନାହାନ୍ତି, କେବଳ ଏଠୁ ସେଠୁ ସ୍ତ୍ରୀ'ଠାରୁ ତା'ଠାରୁ କଥାଏ ଦି'କଥା ଶୁଣିଚନ୍ତି ମାତ୍ର । ତେଣୁ ଇଏକୁ ଆଉଥରେ ଅଡ଼ା ଭିତରେ ଠିଆହୋଇ ପ୍ରମାଣ ବାଢ଼ିବାକୁ ପଡ଼ିଲା । ଶେଷକୁ ସବୁ କହିସାରି କୋଡ଼ର ପିଲାଟାକୁ ତାହାରକର ସେ ସମସ୍ତଙ୍କୁ ଦେଖାଇବାକୁ ଲାଗିଲି ଓ ବିଚାରକଙ୍କ ପାଖରେ ଗୁହାରି କରିବାକୁ ଲାଗିଲା । ପିଲାଟା ସେତେବେଳକୁ ହାତଗୋଡ଼ ଛାଟି ଗର୍ଜନ କରିବାରେ ଲାଗିଥାଏ ।

ସେ ଜଣାଇଲା, "ଧର୍ମାବତାର, ଆପଣ ନିଜେ ଦେଖିକରି କହନ୍ତୁ ଏଇ ଛୁଆଟା ତାଆରିଆଡୁ ହୋଇଚି ନା ଆଉ କାହାଆଡୁ ହୋଇଚି ! ଏ ଚେପଟା ବିଲେଇଢ଼ ଆଣ୍ଟୁ ନାକ କାହାର, ଏଇ ଶଳା ମାଟିଆ ଆଖି ଦୁଇଟା କାହାର ! ବୋରନା ସାଙ୍ଗକୁ ଏ ପିଲା ଏକାବେଳକେ ମିଳି-ଯାଉଚି, ଠିକ୍ ଯେପରି ଦୁଇଟୋପା ପାଣି ପରସ୍ପର ମିଳିଯାଆନ୍ତି !"

କିନ୍ତୁ ବିଚାରାଳୟ ପରି ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସ୍ଥାନକୁ ଏପରି କଥାଗୁଡ଼ାକ ଆଦୌ ଶୋଭନୀୟ ବୋଧ ହେଲାନାହିଁ । ଶ୍ରୋତାମାନେ କଥାଗୁଡ଼ାକୁ ଉପଭୋଗ କରି ଉଚ୍ଚ ସ୍ୱରରେ ହସିବାରେ ଲାଗିଥାନ୍ତି । କେହି-କେହି ପ୍ରକାଶ୍ୟ କଥାରେ ବୋରନା ସହିତ ପିଲାଟିର ତୁଳନା କରିବାରେ

ବ୍ୟସ୍ତ ଥାନ୍ତି । କେତେ ତୁଣ୍ଡରୁ କେତେପ୍ରକାର ଟେଗ୍ଗୁମାଳ ଅଜାଡ଼ି ହୋଇ ପଡ଼ୁଥାଏ ।

"ଏଥର ବୋଉନା ତାକୁ ବାହାହୋଇ ପଡ଼ିବା ଉଚିତ । ପିଲାଟା ବଡ଼ହେଲେ ତା'ଘରେ ପୁଷ୍ପର ଚଢ଼ାଇବ ।"

"ବାହା ହେବ ? ବସନ୍ତ କାଳରେ ଗାଈଦେହରୁ ରୁମ ଉପୁଡ଼ିଗଲା ପରି ତ ସେ ସ୍ତ୍ରୀଲୋକଟାର ମୁଣ୍ଡ ନାଣ୍ଡି ହୋଇ ଗଲାଣି !"

"ନା— ରୂପଟା କିନ୍ତୁ ଭାରି ପସନ୍ଦର ! ଶସ୍ୟକ୍ଷେତରେ ଯାଇ ବସିଲେ ଚଢ଼େଇମାନେ ଡରିକରି କିଏକୁଆଡ଼େ ହୁଡ଼ି ପଳାଇବେ !"

"ତା' ମୁହଁ ଉପରେ କେତେ କିସମର କ'ଣସବୁ ବୋଳାହୋଇଚି ଦେଖ !"

"ଆରେ, ସେ ଭାରି ଭାବଚନ୍ତ ପଇସା ଖରଚ କରେ ! ଯାତ୍ରୁନରେ ବେଶୀ ପଇସା ଖରଚ ନକରିବାକୁ ସେ ବାରମାସରେ ଥରେ ଗାଧୁଆଏ !"

"ଆଦୌ ଅସମ୍ଭବ ନୁହେଁ ! ତାର କେତେ କାମ ! ଇହୁଦୀମାନଙ୍କର ଚୂଲି ଜାଳିବ * ପୁଣି କେତେବେଳେ ?"

କଥାର ନିଶାରେ ସେମାନଙ୍କର ତୁଣ୍ଡ କ୍ରମେ ଅଧିକରୁ ଅଧିକ ଖର ହେବାକୁ ଲାଗିଥାଏ, ଏବଂ ସମସ୍ତଙ୍କ ଅଜାଣ୍ତ ଅଜାଡ଼ି ଇଭା କୌଣସି ପ୍ରକାର କାବୁ ନଥିବା କୁକୁରପରି ଶୂନ୍ୟ ସମ୍ମୁଖଚାହାଣ ଦୃଷ୍ଟିରେ ଖୁଣ୍ଟଟାଏ ପରି ଠିଆହୋଇ ରହିଥାଏ । ତା'ର ମୁଣ୍ଡଭିତରେ ସ୍ପଷ୍ଟ ଅସ୍ପଷ୍ଟ କେତେ ପ୍ରକାର କଥା ଭାସିଦିବାରେ ଲାଗିଥାଏ । ଠିକ୍ ଏହି ସମୟରେ ଡୋମିନିକ୍‌ର ବିଧବାପତ୍ନୀ ବଡ଼ପାଟି କରି କହିଲା : "ସମସ୍ତେ ଚୁପ ହୁଅ । ଗୋଟାଏ ନଆଣିଆ ସ୍ତ୍ରୀଲୋକକୁ ଏପରି ଟାପରା କରି କହିଲେ ତୁମ୍ଭମାନଙ୍କର ଭାରି ପାପ

---

* ପୁରାତନ ଧର୍ମାଚାର ମାନୁଥିବା ଇହୁଦୀମାନେ ଶୀତଦିନେ ମଧ୍ୟ ଶନିବାରଦିନ ଘରେ ନିଆଁ ଜାଳନ୍ତି ନାହିଁ । ତେଣୁ ସେମାନେ କୌଣସି ଗରିବ ଘରର ସ୍ତ୍ରୀଲୋକକୁ ଆପଣାଘରେ ରଖିଥାନ୍ତି । ସେହି ସ୍ତ୍ରୀଲୋକଟି ସେଦିନ ଘରଘର ବୁଲି ସମସ୍ତଙ୍କର ଚୂଲି ଲଗାଇଦେଇ ଆସେ ।

ହେବ !" ଏହି କଥାରେ ସମସ୍ତେ ହଠାତ୍ ନୀରବ ହୋଇଗଲେ ଏବଂ ଏକାଧିକ ବ୍ୟକ୍ତି ଟିକିଏ ଲଜ୍ଜିତ ଅନୁଭବ କରୁଥିବାର ସୂଚନା ମଧ୍ୟ ଦେଲେ ।

କିନ୍ତୁ ଅଭିଯୋଗ ପରେ ଆଉ କୌଣସି ପ୍ରମାଣ ମିଳିଲା ନାହିଁ ।

ଏତେବେଳେ ଯାଇ ବୋରନାର ମନ ଅସ୍ଥିର ହେଲା । ସେ ପ୍ରକୃତ ଅପରାଧୀ ହୋଇ ନଥିଲେ ମଧ୍ୟ କାଳେ ତାକୁ ଏହି ଅଭିଯୋଗର ଅପବାଦ ମଧ୍ୟ ବହିବାକୁ ହେବ ଏବଂ ପିଲାଟାର ଖୋରାକପୋଷାକ ବହନ କରିବାଲାଗି କାଳେ ହାକିମ ତାକୁ ଆଦେଶ ଦେବେ । ସେ ଏହି ଆଶଙ୍କାରେ ବଡ଼ କାତର ହୋଇ ପଡ଼ିଥିଲା । ଆଇନର କ'ଣ ଆଖି ଅଛି ଯେ ତାହା ସତକଥା କ'ଣ ଦେଖିବାକୁ ଦିବ ? କେତେବେଳେ ଦୋଷୀକୁ ଛାଡ଼ି ନିର୍ଦ୍ଦୋଷ ଉପରେ ଯେ ତାହାର ପଡ଼ିବ, ସେକଥା କିଏ ଜାଣେ ? ଏପରି ଅନେକ ଦୃଷ୍ଟାନ୍ତ ବୋରନାର ଆଙ୍ଖି ଆଗରେ ରହିଥିଲା ।

ସେ ଏକମୁହାଁ ହୋଇ କଚେରୀରୁ ବାହାରକୁ ବାହାରିଗଲା ଓ ଡୋମିନିକ୍ ପରିବାର ପଛରୁ ଆସି ପହଞ୍ଚିବା ପର୍ଯ୍ୟନ୍ତ ବାଟରେ ଅପେକ୍ଷା କରୁଥିବାବେଳେ ପୁଣି ଥରେ ସମସ୍ତ ବ୍ୟାପାରଟିକୁ ବିଚାରକରି ଦେଖିଲା । ଏପରି ଗୋଟାଏ ମିଛ ଅଭିଯୋଗ ଆଣିବା ପଛରେ ଯେ ଈଶ୍ୱର କି ମତଲବ ଥାଇପାରେ, ସେ ଭାବିଭାବି କିଛି ଠିକ୍‌କରି ପାରିଲାନାହିଁ ।

"ନା—ଇଏ କଦାପି କେବଳ ତାହାର କାମ ନୁହେଁ । ତା'ର ଛୋଟ ମୁଣ୍ଡରେ ଏହି କଥା କଦାପି ସମ୍ଭବ ହେବନାହିଁ । ନିଶ୍ଚୟ ଆଉ କାହାର ଶିକ୍ଷାରେ ପଡ଼ି ସେ ଏକଥା କରିଚି । କିନ୍ତୁ ସେ ଜଣକ କିଏ ହୋଇଥିବ ?"

ଗୋଟାଏ ଜଳଖିଆ ଦୋକାନକୁ ସେ ଡୋମିନିକ୍‌ର ବିଧବାପତ୍ନୀ ଓ ପୁଅ ସାଇମନ୍ ସାଙ୍ଗରେ କିଛି ଜଳଖିଆ କରିବାକୁ ଗଲା । ଡୋମିନିକ୍‌ଙ୍କ ସ୍ତ୍ରୀ ସୂଚନା ଦେଇ କହିଲା ଯେ ଏସବୁ ହେଉଚି ତା'ର ଜୁଆଁଇ ସେହି କମାରର କାରସାଦ । କିନ୍ତୁ ବୋରନା ଏକଥା ବିଶ୍ୱାସ କରି ପାରିଲା ନାହିଁ ।

"ଏପରି କରି ତା'ର କି ଲାଭ ହେବ ?"

"ତୋତେ ହଇରାଣ କରି ଓ ଅପମାନ ଦେଇ ସେ ମନେମନେ ଖୁସୀ ହେବ । ସାଇପଡ଼ଶା ତୋତେ ଠାପରା କରୁଥିବେ । ସେ କମାରପୁଅ ସହିତ ଜଣେ ନୁହେଁ । କେବଳ ମଜା ଦେଖିବାପାଇଁ ସେ ଜାଅନ୍ତା ମଣିଷର ଦେହରୁ ଗୁଲ ଉତାରିବା ଲୋକ ।"

"କିନ୍ତୁ ଇଭା ଯେ କାହିଁକି ମୋ'ସହିତ ଏପରି ଖଳବୃତ୍ତି କରିବାକୁ ଯିବ, ମୁଁ ସେକଥା ଆଦୌ ବୁଝିପାରୁ ନାହିଁ । ମୁଁ ତ କେବେ ଅଜାଣତରେ ମଧ୍ୟ ତା'ର କୌଣସି କ୍ଷତି କରିନାହିଁ । ଓଲଟି ତା' ଛୁଆର ଦାଆଁଲାଗି ପାଇଁ ମୁଁ ପାଦ୍ରୀଙ୍କ ଘରକୁ ବୋତଲେ ଔଷଧ ଦେଇ ପଠାଇଥିଲି ।"

"ମଲା ? ବୁଝି ନପାରିବାର ଏଥିରେ ଆଉ କ'ଣ ଅଛି ? ଇଭା ସେକ୍ଷଣିଆ ଘରେ କାମ କରୁଛି । ପୁଣି ସେକ୍ଷଣିଆ ସହିତ କମାର ପୁଅର ପୀରତିର ସମ୍ବନ୍ଧ ! ଏତକ ବୁଝି ହେଉନାହିଁ ?"

"ବୁଝିଛି, କିନ୍ତୁ ତଥାପି ସେଥିରେ କୌଣସି କାରଣ ଦେଖିପାରୁନାହିଁ । ଆଉ କିଛି ପିଇବ ?"

"ହଁ, ହଁ, କିନ୍ତୁ ଆଗ ତୁମେ ପିଅ, ମାଥିଆସ୍ !"

ସେମାନେ ତିନିଗିଲାସ କରି ପିଇସାରିବା ପରେ ଅଧସେରେ ମାଉଁସ ଓ ଗୋଟାଏ ଅଧା ପାଉଁରୁଟି ଖତମ କଲେ । ଯୁଲିକା ପାଇଁ ଆଉକିଛି ଖାଇବା ପଦାର୍ଥ କିଣି କୋରିନା ସେଠାରୁ ଗୋଡ଼ କାଢ଼ିଲା ।

"ତୋମିନିକଭା, ସାଙ୍ଗହୋଇ ଯିବା ଆସ । ସାଙ୍ଗହୋଇ କଥାବାର୍ତ୍ତା କରିକରି ଯିବା । ଏକୁଟିଆଟା ଗଲେ ମୋତେ ଭଲ ଲାଗିବ ନାହିଁ ।"

"ଆଚ୍ଛା ହଉ । କିନ୍ତୁ ମୁଁ ଆଗ ଗୀର୍ଜାକୁ ଯିବି । ମୋ'ର ପ୍ରାର୍ଥନା କରିବା ବାକୀରହିଛି !"

ସେ ଗୀର୍ଜାରୁ ଫେରିଆସିବା ପରେ ସେମାନେ ଗାଆଁକୁ ଫେରିବାକୁ ଲାଗିଲେ ।

ଜଙ୍ଗଲ ପାଖରେ ଆସି ପହଞ୍ଚିବା ବେଳକୁ ଦିନ ନଇଁବାକୁ ଆରମ୍ଭ କଲାଣି ।

ବେଳେବେଳେ ଦୁହିଁଙ୍କ ଭିତରେ ପଦେପଦେ କଥାବାର୍ତ୍ତା ହେଉ-ଥାଏ । କିନ୍ତୁ ସେ ସବୁ କେବଳ ଭଦ୍ରତା ଖାତିରରେ । ଦୁହିଁଙ୍କ ଭିତରେ ଜମିପାରିବା ଭଳି କୌଣସି କଥା ମଧ୍ୟ ଜଡ଼େଇରେ ନ ଥିଲା । କେବଳ ନିନ୍ଦା ନମାଡ଼ିବା ଲାଗି ଯେତିକି କଥାବାର୍ତ୍ତା କରିବା ଆବଶ୍ୟକ, ସେମାନେ ସେତିକି କଥାବାର୍ତ୍ତା କରୁଥିଲେ । କଥାରେ ପରା କହନ୍ତି, କଥାବାର୍ତ୍ତା ନହେଲେ ଜିଭଟା ମଧ୍ୟ ଶୁଖିଶୁଖି ଯାଏ ।

ଘୋଡ଼ୀଟା ଖୁବ ଧୀରେଧୀରେ ଯାଉଥାଏ । ବୋଧହୁଏ ସେ ଖୁବ କ୍ଳାନ୍ତ ହୋଇ ପଡ଼ୁଥାଏ, କାରଣ ଖରା ଗରମ ମଧ୍ୟ ହେଉଥାଏ । ଘୋଡ଼ୀର ଗତି ବଢ଼ାଇବାଲାଗି ବୋରିନା ତା'ପିଠିରେ ପାଞ୍ଚଣ ପିଟିବାରେ ଲାଗିଥାଏ । କେତେବେଳେ ମୁହଁରେ ସିସିଁର ବଜାଉଥାଏ, ପୁଣି କେତେବେଳେ ବିଲକୁଲ ଚୁପ୍ ହୋଇ ଯାଉଥାଏ ଓ ମୁହଁ ଭିତରେ କେତେକଣ ବିକ୍ଷିପ୍ତ ସ୍ୱର ରୋମନ୍ଥନ ଓ ଚର୍ବନ କରିବାରେ ଲାଗିଥାଏ । ମଝିରେ ମଝିରେ ବଙ୍କେଇ-କରି ବୃଦ୍ଧ ବୁଢ଼ୀଆଡ଼କୁ ଥରେ ଅନାଉଥାଏ । ବୁଢ଼ୀ ଗମ୍ଭୀର ମୁହଁ କରି ବସିରହିଥାଏ, ତା'ର ମୁଖଉପରେ ବୟସର ରେଖାମାନ ଉକୁଟି ଉଠିଥାଏ । ତା'ର ପାକୁଆ ପାଟିଟା ବେଳେବେଳେ ଯେଉଁଏ କରି ଚକିବୁଲି ଆସୁଥାଏ, ମନେ ହେଉଥାଏ ଯେପରି ସେ ମନେ ମନେ ପ୍ରାର୍ଥନା କରିବାରେ ଲାଗିଛି । ବେକରେ ବନ୍ଧା ହୋଇଥିବା ନାଲି ଝାଡ଼ଣଟିକୁ ସେ ଭଲକରି ଟାଣିଦେଉ-ଥାଏ ଓ ତାହାଦ୍ୱାରା ଆପଣାର ଆଖିକୁ ଆଢୁଆଳ କରି ରଖୁଥାଏ । କାରଣ ଖରାଧାରଟା ଠିକ୍ ତା'ର ଆଖିଉପରେ ଆସି ପଡ଼ୁଛି । କେବଳ ଆଖିଦୁଇଟା ମିଟିମିଟି କରିବାଟିକୁ ଛାଡ଼ିଦେଲେ ତା'ର ଦେହର ଅଂଶ ହଲ କି ଚଳ କିଛି ହେଉନଥାଏ ।

"ତମର ଆଳୁଖୋଳା ସରିଲେଣି ?"— ଶେଷକୁ ବୋରିନା ପଚାରିଲା ।

"ହଁ, ସରିଲାଣି । ଏବର୍ଷ ଭଲ ଫସଲ ମିଳିଲା ।"

"ତେବେ ତୁମେ ସହଜରେ ଗୋଟାଏ ଘୁଷୁରି ରଖିପାରିବ ।"

"ଗୋଟାଏ ତ ପାଳିଛି । ଖରାଦିନ ସଦବେଳକୁ ସେଇଟା ବିକିବାଭଳି ହୋଇଯିବ ।"

"ହଁ, ହଁ, ନିଶ୍ଚୟ । ମୁଁ ଶୁଣୁଥିଲି, ରଫାଲ୍‌ର ପୁଅ ଷାଲେକ୍ କୁଆଡ଼େ ତୁମ ଘରକୁ ଭେଣ୍ଟ୍‌କା ସହିତ ଭଲଲୋକ ପଠାଇଥିଲା !"

"ହଁ, ଆଉ ଅନ୍ୟମାନେ ମଧ୍ୟ ପଠାଇଥିଲେ । କିନ୍ତୁ ସେମାନେ ସମସ୍ତେ ଖାଲି ଲୋକଧାନରେ ପଡ଼ିଲେ । ମୋ'ର ସ୍ୱର୍ଗ୍‌ନାପାଇଁ ସେମାନେ କେହି ଉପଯୁକ୍ତ ହେବେନାହିଁ ।"

ମୁକ୍ତ ଚେଙ୍କ ଡୋମିନିକଭ୍ରୀ ଠିକ୍ ଚଳ୍‌ପର ବୋରନାର ଆଖିକୁ ସିଧା ଅନାଇ ରହିଲା । କିନ୍ତୁ ବୋରନା ତ ପୁରୁଖା ମଣିଷ, ସେ ଏଥିରେ କୌଣସି ପ୍ରକାର ଇତସ୍ତତଃ ନହୋଇ ସେହିପରି ବସିରହିଲା । ଟୋକାଟାକଳିଆ ମଣିଷ ହୋଇଥିଲେ ପ୍ରକୃତରେ ଇତସ୍ତତଃ ହୋଇ ପଡ଼ିଥାନ୍ତା । ଅତ୍ୟନ୍ତ ଶାନ୍ତ ଓ ଅବିଚଳିତ ଭାବରେ ସେ ବୁଢ଼ୀର ଆଖିର ସମ୍ମୁଖୀନ ହେଲା । କେତେକ୍ଷଣ କିଛିସମୟ ପର୍ଯ୍ୟନ୍ତ କାହାର ମୁହଁରୁ କୌଣସି କଥା ବାହାରିଲନାହିଁ । ସତେଅବା ଦୁହିଁଙ୍କ ଭିତରେ ନୀରବ ରହିବାର ଏକ ପ୍ରତିଯୋଗିତା ଆରମ୍ଭ ହୋଇ ଯାଇଥାଏ ।

ବୋରନା ତରଫରୁ କଥାଟା ଆରମ୍ଭ ହେଲେ ଆଦୌ ସୁନ୍ଦର ହୁଅନ୍ତାନାହିଁ । ତା'ର ଆସି ଅଧାବୟସ ପାର ହୋଇଗଲାଣି । ଲପ୍‌ନାର ବସ୍ତସ୍ତମାନଙ୍କର ତାଲିକାରେ ତା'ର ନାଆଁ ରହିଚ, ସେ କିପରି ବେହିଆଙ୍କ ପରି ଆଗ ବାହାରିପଡ଼ି କହିବ ଯେ ବୁଢ଼ୀର ଝିଅ ସ୍ୱର୍ଗ୍‌ନା ଉପରେ ତା'ର ନଜର ପଡ଼ିଚ ? କିନ୍ତୁ ସ୍ୱଭାବତଃ ଟିକିଏ ଗରମ ମିଜାଜର ଲୋକ ହୋଇ-ଥିବାରୁ, ସେ ଆପଣା ଭିତରେ ପିତ୍ତ ଚହଟି ଉଠିଲାପରି ଅନୁଭବ କଲା ଏବଂ ବାଆଁରେଇ ହୋଇ ନାନାକଥା ଭିତରେ ଅସଲ କଥାକୁ ଅଣିବାକୁ ତତ୍ପର ହେବାକୁ ଲାଗିଲା ।

ଡୋମିନିକଭ୍ରୀ ମଧ୍ୟ ବୋରନା ବିରକ୍ତ ହେଲାଣି ବୋଲି ବେଶ୍ ଜାଣିଇ ପାରିଲା । ରାଗିବାର କାରଣଟା ମଧ୍ୟ ତାକୁ ଆଚ୍ଛାକରି ଜଣା । ତଥାପି ତା'ର ମୁହଁରୁ ପଦେହେଲେ କଥା ବାହାରିଲନାହିଁ । ସେ କେବଳ ନୀରବ ହୋଇ ବସି ତା'ଆଡ଼କୁ ଦୃଷ୍ଟିପାତ କରିବାକୁ ଲାଗିଲା । ଶେଷକୁ କିଛି ଗୋଟାଏ କଥା ପକାଇବା ଆବଶ୍ୟକ ହେବାରୁ ସେ କହିଲା :

"ତୁମକୁ ଦେଖି ଖୁବ ବିରକ୍ତ ଓ ଗରମ ମନେହେଉଚି । ସତେ ଯେପରି ଫସଲ କାଟି ଘରକୁ ଫେରୁଚ !"

"ହଁ, ପ୍ରକୃତରେ ହଁ ମୋତେ ଖୁବ ଗରମ ଲାଗୁଚି ।"

ପ୍ରକୃତରେ ମଧ୍ୟ ଆଜି ଖୁବ ଗରମ ହେଉଥାଏ । ଚାରିପାଖରେ ଜଙ୍ଗଲ ଘେରିହୋଇ ରହିଚି, ଏହାର ପାଚେରୀ ଭେଦକରି ପବନ ଆଦୌ ଭିତରେ ପ୍ରବେଶ କରି ପାରୁନଥିଲା । ମୁଣ୍ଡ ଉପରେ ସୂର୍ଯ୍ୟର ଉତ୍ତାପ ନିଆଁ ହୋଇ ଜଳିବାରେ ଲାଗିଥାଏ । ସେହି ଉତ୍ତାପରେ ସିଝିଗଲା ପରି ହୋଇ ଗଛର ଡାଳଗୁଡ଼ାକ ରାସ୍ତାଉପରକୁ ଲହିକି ପଡ଼ୁଥାନ୍ତି । ଏଠିସେଠି ଜମିରହିଥିବା ପଚ୍ଚପାଣି ଓ ପାଚିଲା ପତ୍ରଗୁଡ଼ାକରୁ ଗୋଟାଏ ପ୍ରକାର ଚହଟିଆ ଝିମ୍‌ଝିମିଆ ଗନ୍ଧ ଆସି ନାକକୁ ବୁନ୍ଦି ଦେଲାପରି ଲାଗୁଥାଏ ।

ବୁଢ଼ୀ ପଚାରିଲା, "ଗୋଟାଏ କଥା ତୁମେ କେବେହେଲେ କଳ୍ପନା କରିଚ ? ପାଇପଡ଼ିଶାରେ ଆମେ ଅନେକବାର ଶୁଣିଚୁ ଯେ କୃଷି ହିସାବରେ ତୁମର ଏତେ ନାମଡାକ ରହିଚି । ହାତରେ ଧନ ରହିଚି, ଅନ୍ୟାନ୍ୟ ଅନେକ ଲୋକଙ୍କଠାରୁ ତୁମର ପାରୁଆପଣ ଅଧିକ ରହିଚି, ତଥାପି କାହିଁକି ତୁମେ କୌଣସି ସରକାରୀ ବା ସାଧାରଣ ପଦଲାଗି ପ୍ରାର୍ଥୀ ହେବାକୁ କୌଣସି ପ୍ରକାରେ ମନ ବଳାଉ ନାହିଁ ?"

"ହଁ, ସତକଥା । ସେସବୁ ଆଡ଼କୁ ମୋ'ର ପ୍ରକୃତରେ କୌଣସି ମନ ନାହିଁ । ଏସବୁ ପଦରେ ରହିଲେ ମୋ'ର କ'ଣଗୁଡ଼ାଏ ଲାଭ ହୋଇଯିବ କହିଲ ? ହଁ, ଥରେ ଚାରିବର୍ଷ ପାଇଁ ମୁଁ ଗାଆଁର ପ୍ରଧାନ ହୋଇଥିଲି । ସେଥିରେ ମୋ'ର ଲାଭ ନହୋଇ ବରଂ ଲୋକସାନ ହେଲା, ହାତରୁ ଏତେ ପଇସା ସରିଲା ଯେ ସେଥିପାଇଁ ମୋ'ର ସ୍ତ୍ରୀ ମଧ୍ୟ ଅନେକ ସମୟରେ ମୋ'ଉପରେ ଖୁବ ବିରକ୍ତ ହେଉଥିଲା ।"

"ହଁ, ତା'ର ବିରକ୍ତ ହେବାର କାରଣ ମଧ୍ୟ ଥିଲା । କାରଣ କୌଣସି ବଡ଼ପଦରେ ରହିଲେ ସମ୍ମାନ ଆଉ ପଇସା ଉଭୟରେ ଲାଭ ହେବା ଦରକାର ।"

"ଧନ୍ୟବାଦ ! ସମ୍ମାନ କଥା ଛାଡ଼ିଦିଅ ! ପୋଲିସ୍‌ବାଲାଙ୍କ ପାଖରେ ଯାଇ ଗୋଡ଼ତଳେ ପଡ଼ିବାକୁ ହେବ, କଚେରୀ ମହକୁମାରେ କିରାଣି ଚପରାଶି ସମସ୍ତଙ୍କୁ ଖୋସାମଦ କରିବାକୁ ପଡ଼ିବ ।...ଆଉ ଯଦି ଠିକ୍ ସମୟରେ ଖଜଣା ଦାଖଲହୋଇ ନପାରିଲା, ବା କୋଉଠି ଗୋଟାଏ ପୋଲ୍ ଯଦି ମରାମତି ହୋଇ ନପାରିଲା, ବା ପଡ଼ାରେ ଯଦି ଗୋଟାଏ କୁକୁର ପାଗଳ ହୋଇଗଲା, ତେବେ ସମସ୍ତେ ଭର୍ତ୍ସିବାକୁ ଆସିବେ ସେଇ ପଧାନକୁ ! ଆଉ ବେଗାର କଥା କହୁଚ ? କିରାଣି ଆଉ କଲ୍ଲାଅଫିସର ଅମଲାମାନଙ୍କୁ ମୁଁ କେତେକେତେ କୁକୁଡ଼ା, ବତକ ଆଉ ଅଣ୍ଡା ଯୋଗାଇ ନଦେଇଥିବି, କହିଲ ?"

"ହଁ, ତୁମେ ଠିକ୍ କଥା କହୁଚ । କିନ୍ତୁ ବର୍ତ୍ତମାନ ପିଟର୍ ପଧାନ ହୋଇଚ । ସେଥିପାଇଁ ତ ତା'ର ମନରେ କୌଣସି କଳପନା ନାହିଁ । 'ସେ ପଧାନ ହୋଇ ଜମି କିଣିଚ । ଅମାରଘର ତୋଳିଚ ।"

"ହଁ, କିନ୍ତୁ ଯୋଉଦିନ ପଧାନପଦ ଚାଲିଯିବ, ସେଦିନ ସେ କ'ଣ କରିବ ?"

"ତୁମେ କ'ଣ ଭାବୁଚ..... ?"

"ଆରେ, ମୁଁ ତ ଆଉ ଆଖି ବୁଜି ବସିନାହିଁ ! କିଛି ନହେଲେ ଗୋଟାଏ ଦୁଇଟା କଥା ତ ଅବଶ୍ୟ ମୋ'ଆଖିରେ ପଡ଼ୁଚି !"

"ତା'ର ଗବ ଭାରି, ମନମୋଟକୁ ଲଗାଇ ଦଉଡ଼ି ପାଇବ ନାହିଁ । ପାଦ୍ରୀଙ୍କ ସାଙ୍ଗରେ ମଧ ଜାଳିଆ ।"

"ତଥାପି ଯେ ସେ ଚଳିଯାଉଚ, ସେଥିଲାଗି ତା'ର ଭାରିଯାକୁ ବାହାବୁଦ୍ଧି ଦେବାକୁ ପଡ଼ିବ । ଭାରିଯା ହେଉଚ ଅସଲ ପଧାନ, ସେଇ ବୋଲି ସବୁ ସମ୍ଭାଳି ନେଉଚି ।"

ତା'ପରେ କିଛି ସମୟ ପର୍ଯ୍ୟନ୍ତ ଦୁହେଁ ନୀରବ ରହିଲେ ।

ଘଡ଼ିକ ପରେ ବୁଢ଼ୀ ପୁଣି ନଠେଇ ପଚାରିଲା, "ସତ କହ ମାଷ୍ଟ୍ରଆପ୍, ତୁମେ ମଧ କ'ଣ ଭକ୍ତ୍ ଭାବ ସହିତ କାହାଘରକୁ ଭଲ ଲୋକ ପଠ'ଇବାର ବିଚାର କରୁଚ ନା ନାହିଁ ?"

"ନା— ଆଉ ବାହାସାହା ହୋଇ ଦୁଃଖସୁଖ କରିବାକୁ ମୋର ମନ ନାହିଁ । ଆସି ବୁଢ଼ା ହେଲିଣି !"

"ସେ ସବୁ ଭୂରୁଡ ମୋ' ଆଗରେ କାହିଁକି କରୁଚ ମ ? ଯେତେବେଳେ ଗୋଡ ହାତ ରହିଯାଏ, ଘରୁ ବାହାର କୁଆଡ଼କୁ ଯାଇ ହୁଏ ନାହିଁ, ଆପଣା ହାତରେ ଖାଇବାପିଇବା ବନ୍ଦ ହୋଇଯାଏ, ରୁଣ୍ଡମୁଣ୍ଡ ଛଡ଼ା ଅଉ କୋଉଠି ବସିବାକୁ ମଧ୍ୟ ଶକ୍ତି ନ ଥାଏ, ସେତେବେଳେ ସିନା ମଣିଷ ବୁଢ଼ା ହେଲ ବୋଲି କହନ୍ତି ! କାହିଁକି ?—ସେ ଦିନ ତ ମୁଁ ତୁମକୁ ବଡ଼ାଏ ଘଅ ନେଇ ଯାଉଥିବାର ଦେଖିଛ ।"

"ହେଲ ବା ଏବେ ମୋ'ର ଏବେ ଘୁଢ଼ା ବୟସ ଅଛି । କିନ୍ତୁ ମୋତେ ଝିଅ ଦେବାକୁ କିଏ ଖାତର କରିବ କହିଲ ?"

"ଚେଷ୍ଟା ନ କଲ ଯାଏ ସେକଥା ତୁମେ ଜାଣିବ କିପରି ?"

"ତା'ଛଡ଼ା ପିଲାଦିନୁ ଡ଼ାକ ମଧ୍ୟ ଏଡ଼େ ଏଡ଼େ ହୋଇ ଗଲେଣି । ତେଣୁ ପହିଲ ଝିଅକୁ ମୁଁ ବାହାହେବାଟା କ'ଣ ସୁନ୍ଦର ଦିଶିବ ?"

"କିଛି ସମ୍ପତ୍ତି ଦେବାର ଲୋଭ ଦେଖାଇଲେ ଦେଖିବ, କେତେ କେତେ ସୁନ୍ଦର ଝିଅମାନେ ଆସି ତୁମ ପାଖରେ ଗଡ଼ଗଡ଼େଇବେ !"

"ସମ୍ପତ୍ତି ? ମାଣେ ଜମିର ଲୋଭ ଦେଖାଇଲେ କି କୌଣସି ଝିଅ ଗୀର୍ଜା ପାହାଚ ଉପରେ ବସି ଭିକ ମାଗୁଥିବା ଭିକାରୀଟାର ହାତ ଧରିବାକୁ ଆସିବ ?"

"ଆଚ୍ଛା, ମରଦମାନେ କ'ଣ କରିବେ କହିଲ ? ସେମାନେ କ'ଣ କେବେହେଲେ ଯୌତୁକ ସହିତ ଝିଅ ନେବାକୁ ଇଚ୍ଛା କରିବେ ?"

ବୋଉରନା କୌଣସି ଜବାବ ଦେଲନାହିଁ, କିନ୍ତୁ ଘୋଡ଼ୀଟା ଉପରେ ଭାରି ଜୋରରେ ପାଞ୍ଚଣଟାକୁ ପିଟି ଦେଲ । ମାଡ଼ର କୋପରେ ଘୋଡ଼ୀ ଗୋଟା ସୁଦ୍ଧା ଦଉଡ଼ିବାକୁ ଆରମ୍ଭ କଲା ।

ତା'ପରେ ପୁଣି ଘଡ଼ିକ ଲାଗି ଦୁହେଁ ଚୁପ୍‌ଚାପ୍ । ଜଙ୍ଗଲ ଭିତରୁ ବାହାରି ସେମାନେ ପପ୍‌ଲରଗଛ ଧାଡ଼ୀବାନ୍ଧି ଠିଆ ହୋଇଥିବା ରାସ୍ତା ଉପରକୁ ଆସିଲେ । ଠିକ୍ ସେତିକବେଳେ ବୋଉରନା ହଠାତ୍ କହି ଉଠିଲ !

"ସଂସାରଟା ଉଚ୍ଛନ୍ନ ହୋଇଯିବା ବ୍ୟତୀତ ଆଉ ଅନ୍ୟ ଗତି ନାହିଁ । ଯାହା କରିବାକୁ ଯାଅ ପଛକେ, ଆଗ ପଇସା ଦିଅ ! ଭଲ କଥା ପଦେ ମଧ୍ୟ ପଇସା ନ ଦେଲେ ଶୁଣିବାକୁ ମିଳିବ ନାହିଁ । ଏହାଠାରୁ ଆଉ ଅଧିକ ଖରାପ ଅବସ୍ଥା କ'ଣ ହୋଇପାରେ ? କାଳ ତ ଏମିତି ହେଲାଣି ଯେ ପୁଅଝିଅମାନେ ବାପା ବିରୁଦ୍ଧରେ ହାତ ଉଠାଇଲେଣି, କେହି ଆଉ କାହାରିକୁ ମାନିବାକୁ ରାଜି ନୁହନ୍ତି, ସମସ୍ତେ ଟଙ୍କା ବହିଚନ୍ତି ଖାଲି ଟିକିଏ ଓର ପାଇଲେ ଗୋଟା ସୁଦ୍ଧା ଗିଳି ପକାଇବେ ! ମଣିଷଗୁଡ଼ାକ କୁକୁରଠାରୁ ବି ବଳିଲେଣି ।"

"ସେମାନେ ଖାଲି ଭ୍ରମଭିତରେ ଘାଣ୍ଟି ହେଉଚନ୍ତି । ସେମାନେ ଭୁଲିଗଲେଣି ଯେ ଦିନେ ସମସ୍ତଙ୍କୁ ସେହି ମାଟି ଆଦରି ଏ ସଂସାରରୁ ଯିବାକୁ ପଡ଼ିବ !"

"ଆରେ ବାବୁ, କାଲିକାର ପିଲାଗୁଡ଼ାକ ଆଜି ମଣିଷ ହେଉ ନ ହେଉଣୁ ବାପଠାରୁ ଭିନେ ହେବାକୁ ବସୁଚ, ସମ୍ପତ୍ତିରୁ ଭାଗ ଦାବୀ କରୁଚ । ବଡ଼ ବୋଲି ଭଲା ଟିକିଏ ଡର ଥାଆନ୍ତା, ଭୟ କି ସଙ୍କୋଚ ହେଲେ ଥାଆନ୍ତା ? ଆଜିକାର ଏଇ ବଦମାସ ଟୋକାଗୁଡ଼ାକୁ ଆଉ ଆପଣା ଗାଆଁ ମଧ୍ୟ ଗନ୍ଧେଇଲାଣି, ସେମାନେ ପୁରୁଷପରମ୍ପରାରୁ ଚାଲିଆସୁଥିବା ସବୁ ନୀତି, ସବୁ ନିୟମକୁ ନାକ ଟେକିବାକୁ ଆରମ୍ଭ କଲେଣି ; ସେମାନଙ୍କ ଭିତରୁ ପୁଣି ଏପରି କେତେଜଣ ଅଛନ୍ତି ଯୋଉମାନଙ୍କୁ କି କୃଷୀର ପୋଷାକ ପିନ୍ଧିବାକୁ ମଧ୍ୟ ଲାଜ ମାଡ଼ୁଚ !"

"ଠାକୁରଙ୍କ ଉପରେ ଆଉ ସେମାନଙ୍କର ବିଶ୍ୱାସ ନାହିଁ ବୋଲି ଏସବୁ ହେଉଚ !

"ସେଥିପାଇଁ ହେଉ ବା ଆଉ ଯେଉଁଥିପାଇଁ ହେଉ, ଦୁନିଆଟା ଭାରି ଅବାଗିଆ ହୋଇ ଗଲାଣି ।"

"ଆଉ କେବେ ହେଲେ ବାଗକୁ ଆସିବା ପରି ଦିଶୁନାହିଁ ।"

"ଅଲବତ ବାଗକୁ ଆସିବ ! କିନ୍ତୁ ଭଲବାଟରେ ଆସିବାପାଇଁ କିଏ ସେମାନଙ୍କ ଉପରେ ଜବରଦସ୍ତି କରିବ କହିଲ ?"

"ଭଗବାନ କରିବେ । ମୋ'କଥା ମନେରଖିଥା', ଦିନେନା ଦିନେ ତାଙ୍କର ବିଗ୍ଭର କରିବାର ଦିନ ଆସି ପହଞ୍ଚିବ ଓ ଭଗବାନ ସେଦିନ ସମସ୍ତଙ୍କୁ ଉଚିତ ଶାସ୍ତି ନିଶ୍ଚୟ ଦେବେ ।"

"ହଁ, କିନ୍ତୁ ସେହି ଦିନ ଆସି ପହଞ୍ଚିବା ପୂର୍ବରୁ କେତେଲୋକଙ୍କର ସର୍ବନାଶ ହେବ କହିଲ ?"

"ସମୟ ଯେମିତି ଖରାପ ପଡ଼ିଲଣି, ଦେଶଯାକ ମହାମାରୀ ଘୋଟିଗଲେ ହୁଏ ତ ଏହାଠାରୁ ଅଧିକ ଭଲ ହୋଇଥାନ୍ତା !"

"ଖାଲି ସମୟକୁ ଖରାପ କହିଲେ କ'ଣ ହେବ, ମଣିଷଗୁଡ଼ାକ ମଧ ସେମିତି ହେଲେଣି । ଆଚ୍ଛା ସେ କମାରଟା କଥା ବିଗ୍ଭର କରି ଦେଖିଲ ? ପଧାନ ମଧ କୋଉ ଭଲଲୋକ ? ସେମାନେ ପାଦ୍ରୀଙ୍କ ସହିତ ମଧ କଳିଆ କରିବାକୁ ବାହାରିଲେଣି, ମଣିଷଗୁଡ଼ାଙ୍କୁ ନାନା ଶିଖାରେ ମତାଇ ଲୁଚାଇ ଦେବାର ଷଡ଼ଯନ୍ତ୍ର କରୁଚନ୍ତି । ନାନା କଥାରେ ସେମାନଙ୍କୁ ଭଣ୍ଡାଇବାକୁ ବସିଚନ୍ତି । ଲୋକଗୁଡ଼ାକ ମଧ ସେମାନଙ୍କ କଥାରେ ବିଶ୍ୱାସ କରୁଚନ୍ତି । ମୋ'ର ଜୁଆଁଇଁ ହେଲେ କ'ଣ ହେଲା, ସେ କମାରଟା ମୋ' ଭିତ କଂସାରେ ଥିବା ଜହରଠାରୁ ବଳିଲଣି ।"

ସଂସାରର ଶଠତା ବିଷୟରେ ସେମାନେ ବେଶ୍ ଅନେକ ସମୟ ପର୍ଯ୍ୟନ୍ତ ପରସ୍ପରରେ ଅଭିଯୋଗ କରିବାକୁ ଲଗିଲେ ଏବଂ ପପ୍‌ଲର ଗଛର ଫାଙ୍କଦେଇ ଆଖି ଆଗରେ ଦେଖାଯାଉଥିବା ଆପଣାର ଗାଆଁ ଉପରେ ଦୃଷ୍ଟିପାତ କଲେ ।

ଗୀର୍ଜା ଦୁଆରେ ଥିବା କବର ଭୂଇଁରେ ଧାଡ଼ିଏ ସ୍ତ୍ରୀଲୋକ ମୁଣ୍ଡ ନୁଆଁଇ କ'ଣସବୁ କରୁଚନ୍ତି, ଏତେଦୂରରୁ ମଧ ତାହା ତଥାପି ଅସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହେଉଚି । ଗାଆଁର ଗୋଚରଭୂଇଁରୁ ବହିଆସୁଥିବା ଧୀର ସମୀରଣ ସହିତ ନିତିଦିନର ଅତି ପରିଚିତ ଢୋଟ ପିଟା ହେଉଥିବାର ଶବ୍ଦ ମଧ ଭସି ଆସି କାନକୁ ବିରକ୍ତ କରିପକାଉଚି ।

"ନକଲି ପିଟାହେବାର ସମୟ ମଧ ଆଜି ହୋଇଚି । ମୁଁ ସେଇଟି ଓଲ୍ଟାଇ ସେମାନଙ୍କ ପାଖକୁ ଯିବି, କାରଣ ସୁଗନ୍ନା ମଧ ସେଇଠାରେ ଥିବ ।"

"ମୁଁ ସେଠାକୁ ଗାଡ଼ୀ ଅଡ଼ାଇ ନେବି । ସେଥିରେ ମୋ'ର କିଛୁ ଘଣ୍ଟ ହେବ ନାହିଁ ।"

"ଆଜି ତୁମର ମନରେ ଭାରି ଦୟା, ମାଥିଆସ୍",—ଧୂର୍ତ୍ତ ହସ ହସି ବୁଢ଼ୀ କହିଲା ।

ବଡ଼ ରାସ୍ତା ଛାଡ଼ି ସେମାନେ ଶସ୍ୟଖେତ ମଧ୍ୟଦେଇ ଗୀର୍ଜାକୁ ପଡ଼ିଥିବା ରାସ୍ତାକୁ ଆସିଲେ । ଧୂସର ପଥରର ଗୋଟିଏ ଛୋଟିଆ ପାଚେରୀ ଗୀର୍ଜାର ଗୃହପାଖରେ ବୁଲିଛି । ପାଚେରୀ ଉପରେ ଭୂର୍ଜ ଓ ଆଉ କେତେ ପ୍ରକାର ଗଛର ଗ୍ରାଇମାନ ପଡ଼ିଛି । ପାଚେରୀ ଉପରକୁ ଡେରାହୋଇ କେତୋଟି ଫନ୍ଦ ଖୁଣ୍ଟ ମଧ୍ୟ ଥୁଆହୋଇଛି । ସେଇଠି ପ୍ରାୟ କୋଡ଼ିଏ ଜଣ ଚାଷିଙ୍କ ସ୍ତ୍ରୀଲୋକ ନଳତା ବାଡ଼େଇବାରେ ବ୍ୟସ୍ତ ଅଛନ୍ତି । ସେମାନଙ୍କର ମୁଣ୍ଡଉପରେ ଟିକିଟିକି ହୋଇ ପବନରେ ଉଡ଼ୁଥିବା ଝୋଟର ମେଘ ଆବୋରି ରହିଛି, ପୁଳାଏ ପୁଳାଏ ଉପରକୁ ଉଠିଯାଇ ଭୂର୍ଜପତ୍ରରେ ଲାଗି ରହିଛି, ଫନ୍ଦ ଖୁଣ୍ଟ ଗୁଡ଼ିକର ଦୁଇ କଡ଼ରୁ ମଧ୍ୟ ପୁଳାଏ ପୁଳାଏ ଓହଳି ରହିଛି । ଟିକିଏ ତଳ ଆଡ଼କୁ ଗାଡମାନଙ୍କ ଭିତରେ ନିଆଁ ଜଳୁଛି, ତାହାର ଉପରେ ଖୁଣ୍ଟରେ ଦଉଡ଼ି ବନ୍ଧାହୋଇ ଝୋଟ କେରିଗୁଡ଼ିକୁ ଶୁଖାଇ ଦିଆଯାଇଛି ।

ନଳତା ପିଟି ଝୋଟ ବାହାର କରିବାର କାମ ଭାରି ଶକ୍ତ କାମ । ଠିକ୍ ବୈଠକ କଲାପରି ସ୍ତ୍ରୀଲୋକମାନେ ଏକାବେଳେକେ ଅଣ୍ଟା ଭାଙ୍ଗି ତଳକୁ ନଇଁ ପଡ଼ୁଛନ୍ତି, ପୁଣି ଏକାବେଳେକେ ଉପରକୁ ଉଠିଯାଉଛନ୍ତି । ମଝିରେ ମଝିରେ ସେମାନଙ୍କ ଭିତରୁ ଜଣେ ଅଧେ ଦଣ୍ଡେ ଠିଆହୋଇ ପିଟଣାରେ ଲାଗିଥିବା ଝୋଟକୁ ନିକକରି ବାହାର କରି ଦେଉଛନ୍ତି ଏବଂ ଆଗରେ ପଡ଼ିକରି ରହିଥିବା ଗୋଟାଏ ଲୁଗା ଉପରକୁ ଫିଙ୍ଗିଦେଉଛନ୍ତି ।

ସୂର୍ଯ୍ୟ ସେତେବେଳକୁ ଜଙ୍ଗଲର ଉପରେ ଆସି ହେଲେଣି । ତାଙ୍କର ଟାଣ କିରଣ ସିଧା ଆସି ଏହି ସ୍ତ୍ରୀଲୋକମାନଙ୍କର ମୁହଁରେ ଟାଏଁ ଟାଏଁ ବାଜୁଛି । କିନ୍ତୁ ସେକଥା ଭାବିବାକୁ କାହାକୁ ତର ଅଛି ? କାମ, କାମ ସଙ୍ଗରେ ହସ ଆଉ ଖୁସିଗପ,— ଆଉ କୌଣସିଲାଗି ମୁହୂର୍ତ୍ତେ ସୁଦ୍ଧା ଫୁରସତ ନାହିଁ ।

"ଭଗବାନ ତୋ' କାମର ଫଳ ତୋତେ ଦିଅନ୍ତୁ ।" ଆଶୀର୍ବାଦ କଲା ବୋଉନା ସ୍ୱଗ୍‌ନାକୁ କହିଲା । ସ୍ୱଗ୍‌ନା ଆପଣାର ସମସ୍ତ ଶକ୍ତି ପ୍ରୟୋଗ କରି ନଳିଡ଼ା ପିଟିବାରେ ଲାଗିଥାଏ । ତା'ଦେହରେ କେବଳ ଖଣ୍ଡେ ଧଳା କୁରୁତା ଛଡ଼ା ଆଉ କିଛି ନଥାଏ— ତଳେ ଗ୍ରୀବାଉପରେ ଗୋଟିଏ ନାଲି ବ୍ଲାଉଜ ଓ ଧୂଳିରୁ ରକ୍ଷା ପାଇବା ଲାଗି ମୁଣ୍ଡଉପରେ ବନ୍ଧା ହୋଇଥିବା ଖଣ୍ଡେ ଝାଡ଼ଣ ।

"ଧନ୍ୟବାଦ !"— ଜବାବ ଦେଇ ସ୍ୱଗ୍‌ନା କହିଲା ଓ ଆପଣାର ଘନନୀଳ ଆଖି ଦିଓଟି ଉଠାଇ ସେ ବୋଉନା ଆଡ଼କୁ ଅନାଇଲା । ଖର-ତେଜରେ ପାଚକରି ରହିଥିବା ତା'ର ସୁନ୍ଦର ମୂର୍ତ୍ତି ଉପରେ ଗୋଟିଏ ଦରସିତର ରେଖା ଝଲସି ଉଠିଲା ।

ପିଟା ହୋଇଥିବା ଝୋଟଉପରେ ହାତମାରି ମାଆ ପଚାରିଲା,- "ଏଗୁଡ଼ାକ ଶୁଖିଲା ନା ଓଦା, ଝିଅ ?"

"ଶୁଖିଲା, ହାତମାରିଲେ ସତେଅବା ଖଡ଼ଖଡ଼ ହୋଇ ଭାଙ୍ଗିଯିବ !"

ପୁଣି ସେ ବୁଢ଼ା ବୋଉନା ଆଡକୁ ଅନାଇ ଈଷତ୍ ହସିଦେଲା । ବୋଉନା ସତେଅବା ଲାଜରେ ଗୋଟାପୁଡ଼ା ଲେସଡ଼ ପଡୁଥାଏ । ଘୋଡ଼ୀକୁ ଅନାଇ ସେ ବାଆଁରେଇ ହୋଇ ସେଠାରୁ ଚାଲିଗଲା । ଗଲାବେଳେ ବାରବାର ମୁହଁ ବୁଲାଇ ସେ ସ୍ୱଗ୍‌ନା ଆଡ଼କୁ ଅନାଇବାରେ ଲାଗିଥାଏ । ଦୂରକୁ ଚାଲିଯିବା ପରେ ଆଉ ସ୍ୱଗ୍‌ନା ଦୃଷ୍ଟିଗୋଚର ହେଲାନାହିଁ ; କିନ୍ତୁ ତା'ର ମାନସଚକ୍ଷୁରେ ସେ ତଥାପି ତାକୁ ଦେଖିବାରେ ଲାଗିଥାଏ ।

"ଭାରି ସୁନ୍ଦର ଝିଅଟି, ଠିକ୍ ଗୋଟିଏ ହରିଣୀ ପରି !"— ସେ ମନେମନେ କହିଲା ।

# ଗ୍ରହ

ଆଜି ରବିବାର । ଶରତ୍‌କାଳର ଏହି ରବିବାରଦିନଟିରେ ଉଜ୍ଜ୍ୱଳ ସୂର୍ଯ୍ୟ-କିରଣରେ ଦଶଦିଶ ତୋରା ଦେଖାଯାଉଛି, ଆକାଶଟା ଯାକ ଖରାଆଲୁଅରେ ଫାଟିପଡୁଛି ।

ଖଳାଘର ବାହାରେ ବୋଉନାର ଗାଈଗୋରୁ ଚରିବାରେ ଲାଗିଛନ୍ତି । ଗୋଟାଏ ଉଚ୍ଚ ପାଳଗଦାର ଗୁଳିରେ ବସି କୁବା ଗୋରୁ ଜଗିଛି ଓ ଏଣେ ଭଉଣୀକୁ ଉପାସନା ମନ୍ତ୍ର ଶିଖାଇବାରେ ଲାଗିଛି ।

"ଏଣେ ଶୁଣ, ମୁଁ ତୋତେ କ'ଣ କହୁଛି",— ସେ ଗମ୍ଭୀର ସ୍ୱରରେ କହିଲା । "ଏସବୁ ହେଉଛି ଅତ୍ୟନ୍ତ ପବିତ୍ର ଶବ୍ଦ, ମନ ଚଗଲା କଲେ ଅଶୁଭ ହେବ ।"

"ହଁ, ମୁଁ ଶୁଣୁଛି । ତୁ କହୁନୁ !"

"ତେବେ ତୁ ସେ ତୋଟା ଆଡ଼କୁ ଅନାଉଚୁ କାହିଁକି ?"

"ଦେଖୁଥିଲି, କ୍ଲେମ୍ବାଙ୍କ ଘରର ସେଓଗଛରେ ଏପର୍ଯ୍ୟନ୍ତ ବି କେତେଟା ସେଓଫଳ ରହିଛି ।"

"କ'ଣ, ଖାଇବାକୁ ମନ ହେଉଛି ନା କ'ଣ ? ସେ ଗଛ କ'ଣ ତୁ ଲଗାଇଚୁ ? ଥାଉ, ତେଣେ ଚଗଲା ନହୋଇ ଏଣେ ଧର୍ମକଥାରେ ମନ ଦେ ।"

"ଚଢେଇ ବୁଢ଼ାଙ୍କର ସେବା କଲି କିଏ, କିନ୍ତୁ ଡମ୍ବରୁ ଫୁଟି ଛୁଆ ବାହାରିଲା ବେଳକୁ ସବୁ ନେଲୁ ତୁ !"

"ଅରେ ବୋକା ପିଲା, ସେଓବୁଢ଼ାକ ହେଉଛି କ୍ଲେମ୍ବାଙ୍କର, କିନ୍ତୁ ଚଢେଇ ହେଉଛନ୍ତି ଭଗବାନଙ୍କର ଏତିକି ବୁଝିପାରୁନୁ ?"

"କିନ୍ତୁ ଯୋଉ ଜାଗାରୁ ତୁ ଚଢେଇ ନେଲୁ, ସେ ବିଲ ତ ହେଉଛି ଖାମିନ୍ଦର !"

"ନା — ବିଲ ମଧ୍ୟ ଭଗବାନଙ୍କର । ତୁ ଆଜିକାଲି ଖୁବ ଚଲାକ ହେଲୁଣି । ଖଣ୍ଡି ଉତ୍ତର ଦେଇ ଶିଖିଲୁଣି । ଆଚ୍ଛା, ଏଥର ଏଣେ ମନ ଦେ' ।"

ଭଟେକ୍ ଏଣେ ମନଦେଲ, କିନ୍ତୁ ସେ ଭାରି ଭରବର ହେଉଥାଏ । କାରଣ ଏତେ ସମୟ ପର୍ଯ୍ୟନ୍ତ ଆଣ୍ଠୁ ଉପରେ ବସିଥିବାରୁ ତାକୁ ଭାରି କଷ୍ଟ ହେଉଥାଏ ।

"ଆରେ ଆରେ, ସେଠି ସେ ଘୋଡ଼ାଛଡ଼ାଟା ମାଇକେଲ ଘରର ବାଲଭିତରେ ପଶିବାକୁ ଯାଉଚି !"— ହଠାତ୍ ଅସ୍ଥିର ହେଲାପରି କହଉଠି ଭଟେକ୍ ସେଠାକୁ ଦଉଡ଼ି ଯିବାକୁ ବସିଲା ।

"ତା'ବିଷୟରେ ଚିନ୍ତା କରିବା ଦରକାର ନାହିଁ, ତୁ ମନ୍ତ୍ର ପାଠ କରିବୁଟି !"

ଶେଷକୁ ଭଟେକ୍ ମନ୍ତ୍ରଆଡ଼େ ମନ ଦେଲା, କିନ୍ତୁ ଆଣ୍ଠୁ ଉପରେ ନବସି ଏଥର ସେ ଚେକାମାଡ଼ି ବସିଲା । ପ୍ରତି ମୁହୂର୍ତ୍ତରେ ତା'ର ଶରୀରଟାଯାକ କାଥା କହିବାରେ ଲାଗିଥାଏ, ସେ ବାରବାର ଏପାଖ ସେପାଖ ମୋଡ଼ି-ହେବାରେ ଲାଗିଥାଏ । ପାଖରେ ଥିବା ଗୋଟାଏ ଗଛ ଉପରେ ଯେତେ ଘରଚଟିଆ ଚଢ଼େଇ ଆସି ବସିବା ମାତ୍ରକେ ସେ ତତ୍‌କ୍ଷଣାତ୍ ଗୋଟାଏ ଢେଲା ଗୋଟାଇ ଆଣି ସେମାନଙ୍କ ଉପରକୁ ପକାଇଲା ଏବଂ କହିଲା :

"ଓଃ, ଶେଷ ମନ୍ତ୍ରରେ କ'ଣସବୁ କୁହାଯାଇଚି କି ?"

ମନ୍ତ୍ର ପାଠ ଶେଷ କରି ସେ ସେଠାରୁ ଉଠିଯାଇ ଲାପାକୁ ଉଠାଇବାକୁ ଗଲା । ଲାପା ଜଦରୁ ଉଠିଲେ ତା'ସହିତ ଖେଳିବ ।

"ଚଢ଼େଇଗୁଡ଼ାଙ୍କୁ ତୁ ପାଦ୍ରୀଙ୍କ ପାଖକୁ ନେଇକରି ଯିବୁ ନା ନାହିଁ ?"

"ହଁ, ଯିବ ।"

"କିନ୍ତୁ ଏଇଠି ସେଗୁଡ଼ାକୁ ଖତମ କରି ଦେଇଥିଲେ ଭାରି ବଢ଼ିଆ ହୋଇଥାନ୍ତା ।"

"ତୁ ଖାଇବାକୁ ତ ଆଣୁ ରହିଚ । ଚଢ଼େଇପାଇଁ କାହିଁକି ମନ ହେଉଚି ?"

"ଦେଖ୍, ଦେଖ୍ ସେମାନେ ଗୀର୍ଜାକୁ ଆସିବାକୁ ଆରମ୍ଭ କଲେଣି"— ଭଟେକ୍ ପାଟିକରି କୁବାକୁ କହିଲା । ବାଡ଼ ଆଉ ତୋଟାର ସେପାଖରୁ ଗଛଗୁଡ଼ିକର ଫାଙ୍କ ଭିତର ଦେଇ ରାସ୍ତାରେ ଚାଲିଯାଉଥିବା ଲୋକମାନଙ୍କର ନାଲିଆ ପୋଷାକମାନ ଚହଟି ଦେଖାଯାଉଥାଏ ।

ଆଜି ବେଶ୍ ଗରମ ଲାଗୁଚ । ଗୃଷୀମାନଙ୍କର ଘରେ କବାଟ ଓ ଝରକାମାନ ବିଲକୁଲ ଠିଆମେଲା ହୋଇ ରହିଚ । ଘର ସମ୍ମୁଖରେ ଦୁଆରେ ବସି କେହି କେହି ଏପର୍ଯ୍ୟନ୍ତ ମଧ୍ୟ ମୁହଁ ଧୋଇବାରେ ବ୍ୟସ୍ତ ଅଛନ୍ତି, କିଏ ମୁଣ୍ଡ କୁଣ୍ଡାଇ ସୁନ୍ଥା ପକାଉଚ, କିଏ ଆଜି ରବିବାର ବୋଲି ସାତଦିନର ମଇଳା ଲୁଗାପଟା କାଚିବା ଆରମ୍ଭ କରିଦେଇଚ । କିନ୍ତୁ ଅନ୍ୟମାନେ ଭଲଭଲ ପୋଷାକ ପିନ୍ଧି ସଜ ହେବାରେ ଲାଗିଗଲେଣି । କାହାର ପୋଷାକ ସିନ୍ଦୁର ବରନ ପପିଫୁଲ ପରି ତୋରା ଦିଶୁଚ, ଆଉ କାହାର କମଳାରଙ୍ଗର ଡାହଲିଆଫୁଲ ପରି ଦେଖାଯାଉଚ ପୁଣି ଆଉ କିଏ ନାଷ୍ଟୁରସିଅମ୍ ଫୁଲପରି ଉଜ୍ଜ୍ୱଳ ଚକ୍‌ଚକ୍ ଦେଖାଯାଉଚ । ମାଆ, ବୋହୂ, ଝିଅ,— ଆଜି ସମସ୍ତେ ସଜବାଜ ଚକଚକ ହୋଇ ବାହାରିଚନ୍ତି । ଗ୍ରେଟ ଗ୍ରେଟ ପିଲା, ଗମ୍ଭୀରମୁଖ ଗୃଷୀ ସମସ୍ତେ ଆପଣା ଆପଣାର ପୋଷାକ ପିନ୍ଧି ପୋଖରୀ ଗୃରିପାଖରେ ବାଙ୍କ ବୁଲି ଯାଇଥିବା ରାସ୍ତା ଦେଇ ଗୀର୍ଜା ଅଭିମୁଖରେ ଗ୍ଲିଚନ୍ତି । ଦିନଟିର ସୁନାକିରଣ ପୋଖରୀର ପାଣି ଉପରେ ପଡ଼ି ଗ୍ରରିଆଡ଼େ ସୁନା ଛୁଆଁଇ ଦେଇଚ ।

ଗୀର୍ଜାର ଘଣ୍ଟା ଢଂ ଢଂ ହୋଇ ବାଜିଉଠିଲା । ଆଜି ରବିବାର, ଆଜି ବିଶ୍ରାମର ଦିନ, ଆଜି ଭଗବାନଙ୍କୁ ପ୍ରାର୍ଥନା କରି ଆସିବାର ଦିନ, ଘଣ୍ଟାର ଆନନ୍ଦଧ୍ୱନି ଏହି ସନ୍ଦେଶ ପ୍ରଗ୍ୱର କରିବାରେ ଲଗିଲା ।

କୁବା ଭାବିଥିଲା ଘଣ୍ଟା ବାଜିବା ବନ୍ଦ ହେଲେ ଯାଇ ସେ ଘରୁ ବାହାରିବ । କିନ୍ତୁ ତା'ର ଆଉ ଧୈର୍ଯ୍ୟ ରହିଲା ନାହିଁ । ଶେଷକୁ ଆପଣାର କୁରୁଗାଡଲେ ଚଟେଇଗୁଡ଼ାକୁ ଧରି ସେ ମଧ୍ୟ ବାହାରିପଡ଼ିଲା । ଭିଟେକ୍‌କୁ ଡାକି କହିଲା :

"ଭିଟେକ୍, ଘଣ୍ଟା ବାଜିବା ବନ୍ଦ ହୋଇଗଲେ ତୁ ଆଗ ଗୋରୁଙ୍କୁ ଅଡ଼ାଭିତରକୁ ବାହାର କରିଦେବୁ, ତା'ପରେ ଗୀର୍ଜାକୁ ଆସିବୁ ।"

ତା'ପରେ ସେ ଭାରି ତରତର ହୋଇ ବାହାରିପଡ଼ିଲା । ଗୋଡ଼ଟା ଗ୍ରେଟା, ତେଣୁ ଗ୍ରେଟେଇ ଗ୍ରେଟେଇ ଚିିବାକୁ ପଡୁଥାଏ । ରାସ୍ତାର ଦୁଇ-ପାଖରେ ଫଳଗଛର ତୋଟାମାନ,— କେତେଆଡ଼ୁ କେତେ ପାଚିଲା

ହଳଦିଆ ପତର ଉଡ଼ିଆସି ରାସ୍ତାଉପରେ ପଡ଼ୁଚ । ଚାଲିଗଲାବେଳେ କୁବା ଭାବୁଥିଲା, ସତେଯେପରି ନାନାରଙ୍ଗରେ ଛାପଛାପିକିଆ ଦେଖାଯାଉଥିବା ଗୋଟିଏ ଗାଲିଚା ଉପରେ ସେ ଚାଲିଚାଲି ଯାଉଚି ।

ଗୀର୍ଜା କାନ୍ଥକୁ ପାଦ୍ରୀଙ୍କର ନିବାସ,— ଘରପାଖରେ ଗୋଟିଏ ବଡ଼ ବଗିଚା । ବଗିଚାର ଗଛଗୁଡ଼ିକରେ ଏପର୍ଯ୍ୟନ୍ତ ସବୁଜ ରଙ୍ଗର ପିଅର୍ ଫଳ ଓ ଲାଲରଙ୍ଗର ସେଉ ଲାଗି ରହିଚି, ସବୁ ପାଚିହୋଇନାହିଁ । ଘରଆଗରେ ଅଙ୍ଗୁରଲତା ମାଡ଼ି ଠିକ୍ ଗୋଟିଏ କୁଞ୍ଜପରି ହୋଇ ରହିଚି, ଅଙ୍ଗୁରଲତାର ପତର ପାଚି ନାଲି ଚକଚକ ଦେଖାଯାଉଚି । କୁବା ସେଠାରେ ଯାଇ ହଠାତ୍ କ'ଣ କରିବ ସ୍ଥିର କରି ନପାରିଲାପରି ଠିଆହୋଇ ରହିଲା, କନକନ ହୋଇ ଝରକାଆଡ଼କୁ ଓ ଖଞ୍ଜାଭିତରକୁ ପଡ଼ିଥିବା ବାଟଟି ଆଡ଼କୁ ଅନାଇ-ବାକୁ ଲାଗିଲା । ଭିତରକୁ ଯିବାଲାଗି ତା'ର ମୋଟେ ସାହସ ହେଉନଥାଏ । ସେ ଗୋଟିଏ ଓପାରିଆ ଫୁଲପଟାଳି ପାଖରେ ଠିଆହୋଇ ରହି ଥାଏ । ପଟାଳି ଭିତରୁ ଗୋଲାପ ଓ ଅଷ୍ଟର୍ ଫୁଲର ସୁଗନ୍ଧ ଆସି ତା'ର ନାକରେ ବାଜୁଥାଏ । ଘରର ଛାତ ଶିଉଳି ପଡ଼ି କେଳିଆ ଦେଖାଯାଉଥାଏ, ପଲେ କପୋତପକ୍ଷୀ କୁଆଡ଼ୁ ଉଡ଼ିଆସି ସେହି ଛାତଉପରେ ବସିଲେ ।

ପାଦ୍ରୀ ବଗିଚା ଭିତରେ ପଦଚାରଣା କରୁଥାନ୍ତି, ଆପଣାର ଆହ୍ନିକ ମନ୍ତ୍ରମାନ ପାଠ କରୁଥାନ୍ତି ଏବଂ ବେଳେବେଳେ ଆପଣା ହାତ ବଢ଼ାଇ ଫଳଗଛ ମାନଙ୍କୁ ହଲାଇ ଦେବାରେ ଲାଗିଥାନ୍ତି । ହଲାଇବା ମାତ୍ରକେ ଗଛଡାଳରୁ ଫଳମାନ ତଳକୁ ଅଜାଡ଼ି ହୋଇ ପଡ଼ୁଥାଏ ଏବଂ ପାଦ୍ରୀସାହେବ ଆପଣାର ଅଣ୍ଟିରେ ସେଗୁଡ଼ିକୁ ସାଉଁଟିବାରେ ଲାଗିଥାନ୍ତି ।"

କୁବା ସାହସ କରି ତାଙ୍କ ପାଖକୁ ଆସିଲା ଓ ତଳକୁ ନଇଁପଡ଼ି ଭକ୍ତିଭରେ ତାଙ୍କର ଆଣ୍ଠୁ ଦୁଇଟାକୁ ଆବୋରି ଧରିଲା ।

"ଆରେ କଥା କ'ଣ କୁବା ? ତୁ ବୋଉନାଘର ଚାକର ନା ?

"ହଁ ଆଜ୍ଞା, ମୁଁ ପ୍ରଭୁଙ୍କ ଲାଗି ଚଢ଼େଇ କେତୋଟି ଆଣିଥିଲି ।"

"ଧନ୍ୟବାଦ, ଅନେକ ଧନ୍ୟବାଦ ! ଅଚ୍ଛା, ଏବାଟେ ଆ !"

କୁବା ପାଦ୍ରୀଙ୍କର ଅନୁସରଣ କଲା, କିନ୍ତୁ ଯାଇ ଦୁଆର ପାଖରେ ଅଟକି ଠିଆହେଲା । ଦୁଆର ବନ୍ଧ ଡେଇଁ ଯିବାକୁ ତା'ର ଆଦୌ ସାହସ ହେଲନାହିଁ, ସେ କେବଳ ଭିତରକୁ ଉହୁଙ୍କି ମାରି ଘର ଭିତରେ କାନ୍ଥରେ ଟଙ୍ଗା ହୋଇଥିବା ନାନାପ୍ରକାର ଚିତ୍ରପଟ ଆଡ଼କୁ ଆଖି ପକାଇବାକୁ ଲଗିଲା । ଭକ୍ତି ଓ ବିନମ୍ରଭାବରେ ଗଦ୍‌ଗଦ୍ ହୋଇ ସେ ଭଗବାନଙ୍କ ଉଦ୍ଦେଶ୍ୟରେ ଶୂନ୍ୟରେ ନମସ୍କାର ଅର୍ପିତ କରିବାକୁ ଲଗିଲା, ଏକ ନୀରବ ଦୀର୍ଘଶ୍ୱାସ ପକାଇ ସେହିସବୁ ସୁନ୍ଦର ସୁସଜ୍ଜିତ ଚିତ୍ରପଟ ଆଡ଼କୁ ଚାହିଁ ଦେଖୁଦେଖୁ ତାର ଡୋଳାଭିତରେ ଲୁହ ଭରିଆସିଲା ଏବଂ ସେ ପ୍ରାର୍ଥନାମନ୍ତ୍ର ପାଠ କରିବାଭଳି ଅନୁଭବ କଲା । କିନ୍ତୁ ଏଡ଼େ ଚିକଣ ଚଟାଣ ଉପରେ ଆଣ୍ଠୁ ମାଡ଼ି ବସି ଚଟାଣଟାକୁ ମଇଳା କରିଦେବାକୁ ତା'ର ମନ ବଳିଲନାହିଁ, ସେ ଭାରି ସଙ୍କୋଚ ଅନୁଭବ କରିବାକୁ ଲଗିଲା ।

ପାଦ୍ରୀ ଘରଭିତରୁ ବାହାରିଆସିଲେ ଓ ତା'ର ହାତକୁ ସୁଜିକାଏ ପଇସା ବଢାଇଦେଇ କହିଲେ ! ଭଗବାନ ତୋର ମଙ୍ଗଳ କରିବେ, କୁବା ତୁ ଭାରି ଭଲ ସ୍ୱଭାବର ମଣିଷ, ଭଗବାନଙ୍କ ଠାରେ ତୋ'ର ଭାରି ଭକ୍ତି ଅଛି । ମୁଁ ଭଲକରି ଜାଣେ, ତୁ ରବିବାରକୁ ରବିବାର ଉପାସନାରେ ଯୋଗ ଦେବାକୁ ବଡ଼ ନିୟମିତ ଭାବରେ ଗୀର୍ଜାକୁ ଆସୁ ।"

କୁବା ପୁଣି ନଇଁପଡ଼ି ଭକ୍ତିଭରେ ପାଦ୍ରୀଙ୍କର ଆଣ୍ଠୁ ଦୁଇଟାକୁ ଆବୋରି ଧରିଲା । ପାଦ୍ରୀଙ୍କର ଆଶୀର୍ବଚନରେ ସେ ଏପରି ଭାବଗଦ୍‌ଗଦ୍ ହୋଇ ପଡ଼ିଥିଲା ଯେ ସେଠୁ ସେ ଯେ କିପରି ଗୋଡ଼ କାଢ଼ି ପୁଣି ରାସ୍ତାଉପରକୁ ଆସିଲା, ସେହିକଥା ସେ ଆଦୌ ଜାଣି ପାରିଲନାହିଁ ।

"ଖାଲି କେଉଁଟା ଚଢେଇପାଇଁ ଏତେଗୁଡ଼ାଏ ପଇସା ? ପାଦ୍ରୀ ପ୍ରକୃତରେ କେଡ଼େ ଭଲ ଦୟାବାନ୍ ମଣିଷ ? ତାଙ୍କଠାରେ ମୋ'ର କେତେ ଭକ୍ତି ?"— ପଇସାଗୁଡ଼ାକୁ ଅନାଇ ଦେଖୁଦେଖୁ ସେ ମନକୁମନ କହିବାକୁ ଲାଗିଲା । ଆଜି ତ ନୂଆ ନୁହେଁ, ଆଗରୁ କେତେଥର ସେ ପାଦ୍ରୀଙ୍କ ଲଗି ଚଢେଇ, ଠେକୁଆ ବା ଛତୁ ନେଇ ଆସିଚି, କିନ୍ତୁ ପାଦ୍ରୀ ଆଗରୁ ତାକୁ ଏତେଗୁଡ଼ାଏ ପଇସା କେବେହେଲେ ଦେଇନଥିଲେ । କେତେବେଳେ

ଅଣାଏ ଦୁଇଅଣା, ବା ଆଉ କେତେବେଳେ ଉପଦେଶ ଦେଇ କେବଳ ପଦେ ଦ'ପଦ କଥା ! କିନ୍ତୁ ଆଜି ! ହେ ଭଗବାନ୍ ! ଆଜି ଏକାବେଳେକେ ସୁଉନ୍ନା ଏ ପଇସା । କେବଳ ସେତିକି ନୁହେଁ,—ଆଜି ସେ କେତେ ଆଦର ଦେଖାଇ ତାକୁ ଘରଭିତରକୁ ଡାକି ନେଇଗଲେ, ପୁଣି କେତେ ଆଦରରେ ତାକୁ କେତେ କଥା କହିଲେ ! ସବୁ ଭଗବାନଙ୍କର ଦୟା !

"ଖାଲି ଏଇ ପାଦ୍ରୀଙ୍କୁ ଛାଡ଼ିଦେଲେ ଆଉ ଜଣେ କାହାରିହେଲେ ଗରିବଙ୍କ ପ୍ରତି ଏତେଟିକିଏ ହେଲେ ଦୟା ନାହିଁ । ଭଗବାନ ଆଉ ମାଆ ଠାକୁରାଣୀ ତାଙ୍କୁ ସର୍ବକୁଶଳରେ ରଖିଥାଆନ୍ତୁ, ତାଙ୍କୁ ଅନେକଦିନ ବଞ୍ଚାଇ ରଖିଥାନ୍ତୁ ! ସତେ ସେ କେଡ଼େ ଭଲ ମଣିଷ, କେଡ଼େ ଦୟାଳୁ ମଣିଷ ! ମୋ'ଠାରେ ତାଙ୍କର କେତେ ଦୟା ! ମୁଁ ଆଠାରୁ ସାଅନ୍ତ ଯାଏ ଏଗାଆଁରେ ସମସ୍ତେ ମୋତେ ଏଣୁ ତେଣୁ ନାଆଁ ଦେଇ ଥଟ୍ଟାପରିହାସ କରିବାରେ ଲାଗିଥାନ୍ତି । କିଏ କହେ ଷ୍ଟ୍ରେଞ୍ଜା, କିଏ କହେ ଅପାଳି ପାଉଁଶ, ପୁଣି ଟାହିଲି କରି ଆଉ କିଏ କହେ ଫାଲ୍‌ତୁ, ଉପରଖିଆ ! କାହାରି କେତେବେଳେ ହେଲେ ମୋ'ପ୍ରତି କୌଣସି ଦୟା ନଥାଏ, ମୋ' ଦୁଃଖ କେହି ବୁଝେନାହିଁ । ଘୋଡ଼ା ଆଉ କୁକୁରଗୁଡ଼ାକୁ ଛାଡ଼ିଦେଲେ କେହି ମୋ' କଥା ଏତେଟିକିଏ ହେଲେ ଭାବେନାହିଁ । କିନ୍ତୁ ତଥାପି ମୁଁ ଗୋଟିଏ ଭଲ ଘରେ ଜନ୍ମ ହୋଇଚି,— ମୁଁ ତ ଛତରରୁ ଆସିନାହିଁ, ମୁଁ ଚାଷୀ ଘରେ ଜନ୍ମ ହୋଇଚି ! ମୁଁ ଚାଷୀର ପୁଅ !"

ଏହି କଥା ଭାବି ସେ ବେଶ ସିଧା ହୋଇ ଠିଆ ହେଲା ଏବଂ ଏକ ଅବଜ୍ଞାସୂଚକ ଦର୍ପରେ ଗୀର୍ଜା ଉପାସନାକୁ ଯାଉଥିବା ଲୋକମାନଙ୍କ ଆଡ଼କୁ ନିରୀକ୍ଷଣ କରିବାକୁ ଲାଗିଲା । ଗୀର୍ଜା ବାହାରେ ରଖା ହୋଇଥିବା ଗାଡ଼ିଗୁଡ଼ିକରେ ଯୋଚା ହୋଇଥିବା ଘୋଡ଼ାଗୁଡ଼ାକୁ ମଧ୍ୟ ସେ ଏକ ପ୍ରକାର ବେଖାତିରି ଭାବରେ ଅନାଇଲା । ମୁଣ୍ଡର ଅଲରା ବାଳଗୁଡ଼ାକୁ ସଜାଡ଼ି ଦେଇ ସେ ଆପଣାର ଟୋପିଟି ପିନ୍ଧିଲା ଏବଂ ଭାରି ଆତ୍ମସମ୍ମାନିତ ମନୋମୁଦ୍ରାରେ ଗୀର୍ଜା ଆଡ଼କୁ ଚାହିଁବାକୁ ଲାଗିଲା । ଠିକ୍ ଗୋଟାଏ ଚାଷୀପୁଅ ପରି ସେ ହାତ ଦୁଇଟାକୁ ପ୍ୟାଣ୍ଟ ପକେଟ ଭିତରେ ଗଳାଇ ଦେଇ ଚାହିଁବାରେ

ଲାଗିଥାଏ, ଅବଶ୍ୟ ଗ୍ରେଟା ଗୋଡ଼ଟା ପ୍ରସ୍ତର ଗଲାବେଳକୁ ରାସ୍ତାରୁ ଧୂଳି ଉଠି ଉପରକୁ ଉଡ଼ୁଥାଏ ।

ନା, ସବୁଦିନ ପରି ସେ ଆଜି କଦାପି ଗୀର୍ଜା ଦୁଆର ପାଖରେ ଅଟକି ଯିବ ନାହିଁ । ଖୁବ୍ ସାହସର ସହିତ ସେ ଭିଡ଼କୁ ଠେଲି ଆଗକୁ ଆଗକୁ ଯାଇ ଏକାବେଳକେ ଉପାସନାର ବେଦୀ ପାଖରେ ଯାଇ ପହଞ୍ଚିଲା । ସେଠାରେ କେବଳ ଜମିର ମାଲିକ ଅର୍ଥାତ୍ ବଡ଼ ଚାଷୀମାନଙ୍କର ଠିଆ ହେବାର ସ୍ଥାନ । ଅନାଇ ଦେଖିଲା, ସେଠାରେ ତାର ଖାମିନ୍ଦ ଠିଆ ହୋଇଛନ୍ତି, ଗାଁର ପଧାନ ମଧ୍ୟ ଠିଆ ହୋଇଚନ୍ତି । ପାଦ୍ରୀ ଗଲାବେଳେ ତାଙ୍କ ଉପରେ ଛତ୍ର ଆ ଧରି ଯିବା ଲୋକମାନେ ଠିଆ ହୋଇଚନ୍ତି, ଉପାସନା ବେଳେ ବତି ହାତରେ ଧରି ଠିଆ ହେବା ଲୋକମାନେ ମଧ୍ୟ ଠିଆ ହୋଇଚନ୍ତି ।

ସମସ୍ତେ ଏକ ତାଚ୍ଛିଲ୍ୟ ମିଶ୍ରିତ ବିସ୍ମୟର ସହିତ ତା ଆଡ଼କୁ ଦୃଷ୍ଟିପାତ କରିବାକୁ ଲାଗିଲେ । କିଏ ପଦେ ଦୁଇପଦ ଟାହି କରି ମଧ୍ୟ କ'ଣ କହିଲେ ; କୁକୁର ଘର ଭିତରକୁ ପଶି ଆସିଲେ ସମସ୍ତେ ଯେମିତି ହଠାତ୍ ଚିତ୍କାର କରି ଉଠନ୍ତି, ସେହିପରି ଏକ ମନୋଭାବ ମଧ୍ୟ କେହି କେହି ପ୍ରକାଶ କରୁଥାନ୍ତି । ସେମାନଙ୍କର ପଦେ ପଦେ କଥା ଆସି କୁବାର କାନରେ ବାଜୁଥାଏ । କିନ୍ତୁ ଆଜି ସେ କୌଣସି କଥା ଶୁଣିଲା ନାହିଁ । ପାଦ୍ରୀ ଦେଇଥିବା ସେଇ ସୁଜିକାଏ ପଇସା ଏ ପର୍ଯ୍ୟନ୍ତ ତାହାର ହାତମୁଠା ଭିତରେ ରହିଥାଏ । ନାନାପ୍ରକାର ମଧୁର ଓ ଶାନ୍ତ ଅନୁଭୂତିରେ ତା'ର ମନ ପରିପୂର୍ଣ୍ଣ ହୋଇ ରହିଥାଏ । ସେ ଯେପରି ସତେ ଏଇଲାଗେ ଆପଣାର ସବୁ ପାପକୁ ଷାଳନ କରି ଆସିଚି, ତାକୁ ଠିକ୍ ସେହିପରି ବୋଧ ହେଉଥାଏ, ନା— ତା'ଠାରୁ ଆହୁରି ଅଧିକ ସୁଖକର ବୋଧ ହେଉଥାଏ ।

ଉପାସନା ଆରମ୍ଭ ହେଲା । ସେ ଉପାସନା ବେଦୀର ପାଖକୁ ବସିଥାଏ ଓ ଅନ୍ୟମାନଙ୍କ ସହିତ ସ୍ତବମାନ ଗାନ କରୁଥାଏ । ତା'ର ଆଖିର ତୋଳା ଦୁଇଟି ଯାଇ ବେଦୀ ଉପରେ ଦୃଢ଼ନିବଦ୍ଧ ହୋଇ ରହିଥାଏ । ବେଦୀ ଉପରେ ପରମପିତା ଭଗବାନଙ୍କର ପ୍ରତିମା ପ୍ରତିଷ୍ଠିତ ହୋଇ ରହିଚି । ମଝିରେ ସୁନାଜରିର ପୋଷାକ ପିନ୍ଧି ଠାକୁରାଣୀଙ୍କର ମୂର୍ତ୍ତିଟି ମଧ୍ୟ ଶୋଭା ପାଉଚି ।

ଗୃହ ପାଟରୁ କେତେ ପ୍ରକାର ସୁନାଜରିର କାମ ଝଲସି ଉଠୁଚି, ବତୀଗୁଡ଼ିକ ଦପ୍ ଦପ୍ ହୋଇ ଜଳୁଚି, ଉପରେ ନାଲି ଫୁଲର ଫାନୁସମାନ ଝୁଲୁଚି । କାନ୍ଥ ଉପରୁ, ରଙ୍ଗିନ କାଚଦ୍ୱାରା ପରିଶୋଭିତ ଝରକାମାନଙ୍କ ଉପରୁ କେତେ କେତେ ସାଧୁ ଓ ସନ୍ଥମାନଙ୍କର ଶୁଭ ଓ ଆଶୀର୍ବାଦସୂଚକ ଦୃଷ୍ଟି ଆସି ତା' ଉପରେ ଅଜାଡ଼ି ହୋଇ ପଡୁଚି । ସୁନା, ବାଇଗଣି ଓ ଲାଲରଙ୍ଗର ଉଜ୍ଜ୍ୱଳ ପ୍ରତିଫଳନମାନ ତାର ମୁହଁ ଓ ଦେହ ଉପରେ ଇନ୍ଦ୍ରଧନୁ ରଙ୍ଗର ସୁନ୍ଦର ଛିଟାମାନ ବିସ୍ତାର କରି ରହିଚି । ସେ ଅନୁଭବ କଲା ସତେ ଯେପରି ସୂର୍ଯ୍ୟାସ୍ତ-ଆକାଶର ରଙ୍ଗରେ ଗୋଳା ହୋଇ ରହିଥିବା ଗାଆଁର ସେହି ପୋଖରୀ ଭିତରେ ପଶି ସେ ସେଥିରୁ ରଙ୍ଗବୋଳା ହୋଇ ବର୍ତ୍ତମାନ ବାହାରି ଆସିଚି । ଏହିସବୁ ସୁନ୍ଦର କଳ୍ପନା ଭିତରେ ନିମଗ୍ନ ଓ ଅଭିଭୂତ ହୋଇ ସେ ଆତ୍ମହରା ହୋଇ ପଡ଼ିଲା । ତାହାର ଶରୀରର ସମସ୍ତ ଚଞ୍ଚଳତା ଅପସରିଗଲା ଓ ଠାକୁରାଣୀଙ୍କର ସେହି କନକମାଳୀ ମୁଖମଣ୍ଡଳକୁ ଅବଲୋକନ କରୁ କରୁ ସେ ସ୍ତବ୍ଧ ଭାବରେ ଆଣ୍ଠୁ ମାଡ଼ି ବସି ରହିଲା । ଶୁଷ୍କ ଓଷ୍ଠ ଦୁଇଟିକୁ ସଞ୍ଚାଳିତ କରି ସେ ଗୋଟିକ ପରେ ଗୋଟିଏ କରି କେତେ ଯେ ସ୍ତବର ଆବୃତ୍ତି କରିଗଲା, ଆପଣା ମୁଗ୍ଧ ହୃଦୟର ଗଭୀରତମ ଉତ୍ସରୁ ଉତ୍ସରିତ ହେଉଥିବା ଅମିତ ଶକ୍ତି ଓ ଆଗ୍ରହର ସହିତ ସେ ଯେ କେତେ ସ୍ତୋତ୍ର ଗାଇଲା, ସେ ତାହାର କୌଣସି ଖବର ରଖି ପାରିଲା ନାହିଁ । କିନ୍ତୁ ତାହାର ଘାଗଡ଼ା କଣ୍ଠର ଅତାଳୁଆ ଶବ୍ଦଗୁଡ଼ାକ ଅନ୍ୟମାନଙ୍କର ସଙ୍ଗୀତ ଶବ୍ଦ ଉପରେ ବଡ଼ ସ୍ପଷ୍ଟ ଭାବରେ ବାରି ହୋଇ ପଡ଼ୁଥିଲା ।

"ହେ କୁବା, ଇହୁଦୀଘରର ବକରି ପରି ସେମିତି ମେଁ ମେଁ ହେଉଚୁ କାହିଁକି ?"— ତା'ର କହୁଣୀ ପାଖରୁ ତାକୁ କିଏ ଜଣେ ସତର୍କ କରିଦେଇ କହିଲା ।

"ଭଗବାନ ଯୀଶୁ ଓ ତାଙ୍କର ମାଆଙ୍କର ଜୟ ହେଉ",— କୁବା ଉତ୍ତର ଦେଲା ।

ଏତକ୍ଷଣବେଳେ ପାଦ୍ରୀ ଧର୍ମୋପଦେଶ ଦେବାକୁ ମଞ୍ଚ ଉପରକୁ ଗଲେ । ସମସ୍ତେ ମୁଣ୍ଡ ଟେକି ତାଙ୍କର ଶୁଭ୍ରବସନ ପରିଶୋଭିତ ଶରୀର ଆଡ଼କୁ ଅନାଇ ରହିଲେ । ଉପାସକମଣ୍ଡଳୀ ଉଦ୍ଦେଶ୍ୟରେ ଆପଣାର ସମ୍ମାନ ଜ୍ଞାପନ କରି ସମ୍ମୁଖ ଦିଗରେ ଆପଣା ମସ୍ତକ ନୁଆଁଇ ପାଦ୍ରୀ ଧର୍ମୋପଦେଶ ଆରମ୍ଭ କଲେ । ଉପଦେଶ ଅନେକ ସମୟ ଧରି ଚାଲିଲା, କିନ୍ତୁ ସେହି ଉପଦେଶ ଭିତରେ ଏତେ ଶକ୍ତି ନିହିତ ହୋଇ ରହିଥିଲା ଯେ ତାହାକୁ ଶୁଣୁଶୁଣୁ ଅନେକଙ୍କର ଆଖି ଲୋତକ ଛଳଛଳ ହୋଇ ଆସିଲା ଏବଂ ଆପଣାର ପାପ ଓ ମନ୍ଦକୃତ୍ୟଜନିତ ଅନୁତାପରେ ଅନେକଙ୍କର ମସ୍ତକ ନତ ହୋଇ ଆସିଲା । ଲୁବା ଏକା ଦିଗରେ ପାଦ୍ରୀଙ୍କ ଆଡ଼କୁ ଅନାଇ ରହିଥାଏ, ସତେ ଅବା ସେ କୌଣସି ଦେବତାଙ୍କର ମୂର୍ତ୍ତି ଆଡ଼କୁ ଅନାଇ ରହିଛି । ଏହି ପାଦ୍ରୀ ମହାଶୟ ଘଡ଼ିକ ପୂର୍ବେ ତା' ସହିତ କଥା କହୁଥିଲେ । ହାତ ବଢ଼ାଇ ତାକୁ ସୁଉକାଏ ପଇସା ଦେଇଥିଲେ, ଏକଥା ଭାବି ସେ ମନେ ମନେ ବଡ଼ ବିସ୍ମିତ ହେଉଥାଏ । କାରଣ ବର୍ତ୍ତମାନ ଏହି ପାଦ୍ରୀଙ୍କୁ ତ ଜଣେ ସାମାନ୍ୟ ମନୁଷ୍ୟ ଲୁହାଯିବ ନାହିଁ, ତାଙ୍କୁ ଚୁହିଁ ଦେଲା ବେଳକୁ ସେ ଯେପରି ସତେ ଅବା ଏକ ଅଗ୍ନିମୟ ଆଲୋକରଥ ଉପରେ ଆସୀନ ରଥୀ ସଦୃଶ ଦେଖାଯାଉଚନ୍ତି । ଲୋକମାନଙ୍କୁ ଜଡ଼ିତ କରି ରହିଥିବା ପାପର ନିନ୍ଦା କରିବା ବେଳକୁ ତାଙ୍କର ମୁଖମଣ୍ଡଳ କ୍ରମେ ବିବର୍ଣ୍ଣ ହୋଇ ଆସିଲା, ତାଙ୍କର ଆଖି ଦୁଇଟା ସତେ ଯେପରି ଧକଧକ ହୋଇ ଜଳିବାକୁ ଲଗିଲା । ଲୋକଙ୍କର ଲୋଭ ଓ ମଦ୍ୟାସକ୍ତି, କାମନା ଓ ଘୃଣା, ବୃଦ୍ଧ ବୁଭୁକ୍ଷଜନମାନଙ୍କ ପ୍ରତି ଅଶ୍ରଦ୍ଧା ଏବଂ ଅବଜ୍ଞା ଓ ଅଧମ ପତିତ ଓ ଭ୍ରଷ୍ଟ ଜୀବନାଗ୍ରହ,— ପାଦ୍ରୀ ଗୋଟି ଗୋଟି କରି ଉଲ୍ଲେଖ କରିବାରେ ଲଗିଥାନ୍ତି । ତାଙ୍କର ବଜ୍ରଗମ୍ଭୀର ବାଣୀ ଗୀର୍ଜା ଘର ଭିତରେ ପ୍ରତିଧ୍ୱନି ହୋଇ ଉଠୁଥାଏ । ଉପସ୍ଥିତ ଉପାସକମଣ୍ଡଳୀକୁ ଆହ୍ୱାନ ଜଣାଇ ଦେଇ ଯାଉଥାଏ, ସେମାନଙ୍କୁ ଆପଣା ଆପଣାର ଦୁଷ୍କୃତ ନିକାଶେ ଅନୁତାପ କରିବାଲାଗି ଉଦ୍‌ବୋଧନ ଦେବାରେ ଲଗିଥାଏ । ଏହିସବୁ ପାପର ବର୍ଣ୍ଣନାମାନ ଶୁଣୁଶୁଣୁ ଲୁବାର ହୃଦୟ କାରୁଣ୍ୟ ଓ ଦୁଃଖରେ ଉଚ୍ଛ୍ୱସିତ ହୋଇ ଉଠିଲା, ସେ ଆଉ ଥୟ ଧରି ନ ପାରି ବଡ଼ ଅଧୀର ହୋଇ ବେଦନ

କରିବାକୁ ଲଗିଲା । ଏବଂ ତା’ ସହିତ ସମସ୍ତ ଉପାସକମଣ୍ଡଳୀ ମଧ୍ୟ କାନ୍ଦିବାକୁ ଆରମ୍ଭ କଲେ । କେବଳ ସ୍ତ୍ରୀଲୋକମାନେ ଯେ କାନ୍ଦୁଥିଲେ, ତା ନୁହେଁ ; ବଡ଼ ବଡ଼ ଗୃହୀମାନେ ମଧ୍ୟ ଭେଁ ଭେଁ ହୋଇ କାନ୍ଦିବାରେ ଲଗିଥାନ୍ତି । ସମସ୍ତ ଗୀର୍ଜା ଘର ଏହି ରୋଦନ ଶବ୍ଦରେ ଧ୍ୱନିତ ହେବାକୁ ଲଗିଲା । ଶେଷରେ ଆପଣା ଭାଷଣର ଇତିଶ୍ରୀକରି ପାଦ୍ରୀ ମହୋଦୟ ଉପାସନା ମଣ୍ଡପକୁ ଗଲେ ଏବଂ ସେଠାରେ ନତଜାନୁ ହୋଇ ବସିଲେ । ସଙ୍ଗେ ସଙ୍ଗେ ଶ୍ରୋତାମଣ୍ଡଳୀଙ୍କ ମୁଖରୁ ଏକ ବିକଳ ଅନୁତାପମିଶ୍ରିତ ଚିତ୍କାର ଉତ୍‌ଥିତ ହେଲା, ସମସ୍ତେ ଆସନ ଛାଡ଼ି ଗୀର୍ଜାର ଚଟାଣ ଉପରେ ସାଷ୍ଟାଙ୍ଗ ହୋଇ ପଡ଼ିଗଲେ,— ସତେ ଅବା କୋଉଠୁ ଗୋଟାଏ ଘୂର୍ଣ୍ଣିବାୟୁ ଆସି କୌଣସି ଅରଣ୍ୟର ସମସ୍ତ ଗଛକୁ ଭୂତଳଶାୟୀ କରି ଦେଇଗଲା । ତଳେ ଲୋଟୁଥିବା ଏହି ଭକ୍ତମଣ୍ଡଳଙ୍କର ଅଙ୍ଗ ବାଜି ଚଟାଣ ଉପରୁ ଏକ ଧୂଳିପଟଳ ଉପରକୁ ଉଠିବାକୁ ଆରମ୍ଭ କଲା । ଅଶ୍ରୁପୂର୍ଣ୍ଣ ଲୋଚନରେ ଆପଣାର କୃତ ଦୁଷ୍କର୍ମଗୁଡ଼ିକ ଲଗି ଅନୁତାପ ପ୍ରକାଶ କରୁ କରୁ ବିବର୍ଣ୍ଣ ହୃଦୟ ଏହି ବ୍ୟକ୍ତିମାନେ ଭଗବାନଙ୍କର କରୁଣା ଭିକ୍ଷା କରୁଥିଲେ ।

ତା’ପରେ ପୁଣି ସବୁ ନୀରବ ହୋଇଆସିଲା,—ପ୍ରାର୍ଥନା ଓ ହୃଦୟ ତଳେ ଭଗବତ୍ ସାକ୍ଷାତର ନୀରବତା ସମସ୍ତ ଗୀର୍ଜା ଘର ପୂର୍ଣ୍ଣକରି ବିରାଜମାନ କରିବାକୁ ଲଗିଲା । ବର୍ତ୍ତମାନ ପୁଣି ଉପାସନା ଆରମ୍ଭ ହେବ । ପଛରେ ଥିବା ବାଦ୍ୟଯନ୍ତ୍ରରୁ ବିସ୍ମୟ ଓ ଶ୍ରଦ୍ଧାର ବ୍ୟଞ୍ଜନା ସୃଷ୍ଟି କରି ଶବ୍ଦତାନ ଧ୍ୱନିତ ହେବାକୁ ଆରମ୍ଭ କଲା, ଏକ ଅନିର୍ବଚନୀୟ ପ୍ରେମ ଓ କଲ୍ୟାଣମୟତାର ଉଚ୍ଛ୍ୱସିତ ଅନୁଭୂତି ଭିତରେ କୁବାର ଅନ୍ତର ଭିତର ପରିପୂର୍ଣ୍ଣ ହୋଇ ଫାଟିଯିବା ପରି ମନେହେଲା ।

ଏତିକବେଳେ ଉପାସନାର ବେଦୀ ଉପରୁ ପୁଣି ପାଦ୍ରୀଙ୍କର କଣ୍ଠସ୍ୱର ଶୁଭାଗଲା, ସେହି କଣ୍ଠସ୍ୱର ଶ୍ରୋତୃମଣ୍ଡଳୀର ଅବନତ ମସ୍ତକଗୁଡ଼ିକ ଉପରେ ଭାସିଭାସି ଯାଉଥିବା ପରି ବୋଧ ହେଲା ! ଗମ୍ଭୀର ବଜ୍ରନିର୍ଘୋଷ ପରି ସେହି କଣ୍ଠର ଶବ୍ଦ ପବିତ୍ରତାରେ ପୂତ ହୋଇ ରହିଥିଲା । ହଠାତ୍ ଏହି ସମୟରେ ଢଂ ଢଂ ହୋଇ ଗୀର୍ଜା ଚୂଡ଼ାରୁ ଘଣ୍ଟା ବାଜି ଉଠିଲା, ସୁଗନ୍ଧ ଧୂମ ପ୍ରମ୍ବମାନ

ସୃଷ୍ଟି କରି ବେଦୀ ଉପରୁ ପବିତ୍ର ଧୂପ ଉତ୍ଥିତ ହେବାକୁ ଲାଗିଲା, ସମସ୍ତ ଉପାସକ—ମଣ୍ଡଳୀକୁ ଏକ ସୁଗନ୍ଧ ଉଲ୍ଲସିତ ଆଚ୍ଛାଦନ ଭିତରେ ଆଚ୍ଛାଦିତ କରି ରଖିଲା । ଆନନ୍ଦବିହ୍ୱଳର ପ୍ରଶାନ୍ତ ମନରେ ସେତେବେଳେ କୁବାର ହୃଦୟରେ ସବୁ ଝରକାର ଦ୍ୱାର ବନ୍ଦ ହୋଇ ଯାଇଥାଏ, ସେ କେବଳ ଦୀର୍ଘଶ୍ୱାସ ପକାଇବାରେ ଲାଗିଥାଏ, ଆପଣାର ହାତ ଦୁଇଟା ଆଗକୁ ବଢ଼ାଇ ଦେଇ ପୁଣି ଛାତି ଉପରେ କରାଘାତ କରିବାକୁ ଲାଗିଥାଏ, ଆପଣା ଅକଞ୍ଚନତାର ଆନନ୍ଦରେ ସେ ସତେ ଅବା ଚେତନା ହରାଇ ପକାଇବାକୁ ବସିଥାଏ ।

"ହେ ଭଗବାନ ଯୀଶୁ, ହେ ମୋ'ର ପ୍ରେମାସ୍ପଦ ଯୀଶୁ !"—ସତେଅବା ଆପଣା ଭିତରେ ଆପଣାର ସମସ୍ତ ଅସ୍ତିତ୍ୱ ହରାଇ ବସି ସେ ବିସ୍ମିତ ହୋଇ କହିବାକୁ ଲାଗିଲା । କିନ୍ତୁ ସେତେବେଳେ ମଧ୍ୟ ତା'ର ହାତମୁଠା ଭିତରେ ପଇସାତକ ଠିକ ସେହିପରି ଭାବରେ ରହିଥାଏ । କାରଣ ବର୍ତ୍ତମାନ ଉପାସନା ସରି ଆସିଲାଣି, ଆମ୍ବ୍ରୋଜ ନୈବେଦ୍ୟଥାଳୀ ହାତରେ ଧରି ଉପାସକମାନଙ୍କ ଆଡ଼କୁ ଆସୁଛି, ଗୀର୍ଜାରେ ବତି ଜଳାଇବା ଖରଚ ପାଇଁ ଅର୍ଥ ସଂଗ୍ରହ କରିବା ଲାଗି ସେ ଥାଳୀ ଉପରେ ପଇସାଗୁଡ଼ାକୁ ଝଣ ଝଣ କରୁଛି । ଆମ୍ବ୍ରୋଜ ପାଖକୁ ଆସିବାକ୍ଷଣି କୁବା ବସିବା ଜାଗାରୁ ଉଠି ଠିଆହେଲା । ଆପଣା ହାତରେ ଧରିଥିବା ମୁଠିକଟିକୁ ଥାଳ ଭିତରକୁ ପକାଇଦେଲା ଓ ଥାଳୀ ଉପରୁ କେତୋଟି ରେଜା ପଇସା ଫେରାଇ ଆଣିଲା । ଆଗରୁ ଅନେକ ଗୃହୀଙ୍କୁ ସେ ଠିକ୍ ଏହିପରି କରିଥିବାର ଦେଖି ଆସିଥିଲା । "ଭଗବାନ ତୋ'ର ମନସ୍କାମନା ପୂର୍ଣ୍ଣ କରନ୍ତୁ"—ଆମ୍ବ୍ରୋଜଠାରୁ ଏହି ଆଶୀର୍ବଚନ ପଦକ ଶୁଣି ତା'ର ମନ ଆନନ୍ଦରେ କୁଣ୍ଢେମୋଟ ହୋଇଗଲା ।

ଏଥର ଧର୍ମପୁସ୍ତକକୁ ଶୋଭାଯାତ୍ରାରେ ବାହାର କରି ଗୀର୍ଜାର ବେଢ଼ା ପରିକ୍ରମା କରିବା କଥା । ଶ୍ରୋତୃମଣ୍ଡଳୀ ଆସନରୁ ଉଠି ଆପଣା ଆପଣା ଲାଗି ଗୋଟିଏ କରି ବତି ଆଣିବାକୁ ଗଲେ । ଗୋଟାଏ ବଡ଼ ମହମବତି ଦେଖି ଆଣିବାକୁ ମନସ୍ଥ କରି କୁବା ହାତ ବଢ଼ାଇଲା, କିନ୍ତୁ ଏତିକବେଳେ

ତା’ର ଦୃଷ୍ଟି ଡୋମିନିକଙ୍କର ଦୃଷ୍ଟି ଉପରେ ଯାଇ ପଡ଼ିଗଲା । ସେ ସତେଅବା ଲୁବାର ଏହି ଅଭିଳାଷକୁ ମୋଟେ ପସନ୍ଦ କରୁ ନ ଥିଲା । ଡୋମିନିକଙ୍କର ପାଖକୁ ଲାଗିକରି ତା’ର ଝିଅ ସ୍ନେଗ୍‌ନା ଠିଆ ହୋଇଥାଏ । ଟିକିଏ ଭରସିପଡ଼ି ସେ ଲୋଭ ସମ୍ବରଣ କଲା ଓ ଗ୍ରେଟ ମହମବତୀଟିଏ ଉଠାଇ ହାତରେ ଧରିଲା । ପାଦ୍ରୀ ଶୋଭାଯାତ୍ରା ଲାଗି ସଜହୋଇ ଆସି ଠିଆ ହେଲେଣି । ଲୁବା ଡର ଡର ହୋଇ ବତୀଟି ଜଳାଇଲା । ସମସ୍ତେ ଉପାସନା ସ୍ତବମାନ ଗାଇଗାଇ ଉପାସନା ବେଦୀର ପାହାଚରେ ତଳକୁ ଓହ୍ଲାଇ ଆସିଲେ । ହାତରେ ଦପ୍‌ଦପ୍‌ ଆଲୁଅ ଧରିଥିବା ବହୁ ରଙ୍ଗର ବସନ ପିନ୍ଧିଥିବା ଏହି ଉପାସକଦଳ ସ୍ତୁତି ଗାନକରି ଚାଲିବାକୁ ଲାଗିଲେ । ସେତେବେଳକୁ ଗୀର୍ଜାର ବାଦ୍ୟଯନ୍ତ୍ର ଝମ୍‌ଝମ୍‌ ବାଜି ଉଠୁଥାଏ, ଗୀର୍ଜା ଉପରୁ ଘଣ୍ଟି ବାଜି ଉଠି ଏହି ଶୋଭାଯାତ୍ରା ସହିତ ତାଳ ଦେଉଥାଏ, ଭଗବଦ୍‌ ବିଶ୍ୱାସଜନିତ ସମ୍ବଳିତ ମୂର୍ଚ୍ଛନାରେ ଉପାସକମଣ୍ଡଳୀର କଣ୍ଠସଙ୍ଗୀତ ନିନାଦିତ ହୋଇ ଉଠୁଥାଏ । ଶୋଭାଯାତ୍ରାରେ ଚାଲିଯାଉଥିବା ଏହି ଶ୍ରଦ୍ଧାମଗ୍ନ ଜନତା ଓ ପ୍ରଜ୍ୱଳିତ ପ୍ରଦୀପଗୁଡ଼ିକର ସମ୍ମୁଖ ଭାଗରେ ସବା ଆଗରେ ଗୋଟିଏ ରଜତ ନିର୍ମିତ କ୍ରୁସ୍‌ ଝଲମଲ ହେଉଥାଏ । ତା’ ପଛକୁ ଦେବଦେବୀମାନଙ୍କର ମୂର୍ତ୍ତିସବୁ ସଜ ହୋଇ ଚାଲିଥାଆନ୍ତି,—ସେମାନଙ୍କର ସମସ୍ତ ଶରୀର ଅଳଙ୍କାର ଓ ପୁଷ୍ପମାଳାରେ ବିମଣ୍ଡିତ ହୋଇ ରହିଥାଏ । କ୍ରମେ ମଣ୍ଡଳୀ ଆସି ଗୀର୍ଜାର ଦ୍ୱାରଦେଶରେ ପହଞ୍ଚିଲା । ସେତେବେଳକୁ ଦିନର ଶୁଭ୍ର ଉଜ୍ଜ୍ୱଳ କିରଣ ଧୂପଧୂଆଁର ମେଘ ଭିତରକୁ ଭେଦ କରି ଚକଚକ କରିବାରେ ଲାଗିଥାଏ । ପତାକାମାନ ଘରଭିତର ଅତିକ୍ରମ କରି ବାହାରକୁ ବାହାରିବା ମାତ୍ରକେ ପବନର ହିଲ୍ଲୋଳରେ ସେଗୁଡ଼ିକ ଫରଫର ହୋଇ ଉଡ଼ିବାକୁ ଆରମ୍ଭ କଲା, ମନେହେଲା ସତେ ଯେପରି ସବୁଜ ଓ ଲାଲରଙ୍ଗର ବଡ଼ ବଡ଼ ଚଢ଼େଇମାନ ଡେଣା ଫଡ଼ ଫଡ଼ କରି ଆକାଶରେ ଉଡ଼ିବାରେ ଲାଗିଚନ୍ତି !

ଶୋଭାଯାତ୍ରା ଗୀର୍ଜାର ବେଢ଼ା ପରିକ୍ରମା କରିବାକୁ ବାହାରିଲା । ଲୁବା ଗୋଟିଏ ହାତରେ ବତୀଟିକୁ ଧରିଥାଏ ଏବଂ ପାଦ୍ରୀଙ୍କର ପାଖେ ପାଖେ ଆପଣାର ଗ୍ରେଟା ଗୋଡ଼ଟିକୁ ଘୋଷାରି ଘୋଷାରି ଆଗକୁ ଚାଲିବାରେ

ଲାଗିଥାଏ । ପାଦ୍ରୀଙ୍କର ମୁଣ୍ଡ ଉପରେ ବୋଉନା, କମାରପୁଅ, ଗାଆଁର ପଧାନ ଓ ଟମାସ୍ କ୍ଲେମ୍ବ୍ରା ପ୍ରଭୃତି ଜଣଯାକ ମିଶି ଗୋଟିଏ ନାଲି ଚନ୍ଦ୍ରଆ ଟାଣିକରି ଧରିଥାନ୍ତି । ଚନ୍ଦ୍ରଆ ତଳେ ସୁନାର ମଣ୍ଡଳ ଚୁଲିଥିବା ମୂର୍ତ୍ତିଟିରୁ ଉଜ୍ଜ୍ୱଳ କିରଣଜାଲ ବିକୀର୍ଣ୍ଣ ହୋଇ ପଡୁଥାଏ, ସୂର୍ଯ୍ୟର କିରଣ ପ୍ରତିଫଳିତ ହୋଇ ଏହା ଠିକ ନିଆଁ ପରି ଦପଦପ ହୋଇ ଜଳିବାରେ ଲାଗିଥାଏ ।

କୁବା ଏପରି ଆତ୍ମହରା ହୋଇ ପଡ଼ିଥିଲି ଯେ ବାଟ ଚାଲୁଚାଲୁ ସେ ବେଳେବେଳେ ଝୁଣ୍ଟି ପଡୁଥିଲି ବା କାହାର ଗୋଡ଼ ଉପରେ— ତାହାର ଗୋଡ଼ ମାଡ଼ି ହୋଇ ଯାଉଥିଲି ।

"ହେ କଣା, କ'ଣ ଦେଖାଯାଉନାହିଁ ନା କ'ଣ ?"

"ହେ ଗ୍ରେଟା, ହାଉଲେ ଚାଲ, ଏମିତି ଅସମ୍ଭାଳ କାହିଁକି ?"

କିନ୍ତୁ ଏସବୁ ଗାଳି ଭର୍ତ୍ସନା ଶୁଣିପାରିବା ଲାଗି କୁବାର ବେଳ ନ ଥିଲା । ମନ୍ତ୍ରସବୁ କେଉଁ ମହିମାରେ ପ୍ରତିଧ୍ୱନିତ ହେବାରେ ଲାଗିଥାଏ, ଏହି ଧ୍ୱନିର ଝଙ୍କାର ଯେପରି ଏକାଠି ଗୋଟିଏ ତରଙ୍ଗୋଚ୍ଛ୍ୱାସ ପରି ଯାଇ ଦେବମୂର୍ତ୍ତିର ମଣ୍ଡଳ ଉପରେ ବାଡ଼େଇ ହୋଇ ଆସୁଥାଏ । ନାନା ବାଦ୍ୟର ସଙ୍ଗୀତ ଧ୍ୱନି ଏକାଠି ହୋଇ ଶୂନ୍ୟରେ ବାହୁପ୍ରସାରି ରହିଥିବା ବୃକ୍ଷରାଜିର ଶାଖାପ୍ରଶାଖାକୁ ଦୋହଲାଇ ଦେଉଥାଏ । ବେଳେବେଳେ କେଉଁ ଗଛ ଅଗରୁ ଠିକ୍ ଗୋଟିଏ ଭୟାକୁଳ ପକ୍ଷୀପରି ପାଚିଲା ପତ୍ରଟିଏ ତଳକୁ ଝରିପଡୁଥାଏ । ଆହୁରି ଉପରେ ଉଚ୍ଚ ଉଚ୍ଚ ଗଛ ଓ ଗୀର୍ଜାର ଚୂଡ଼ା ଉପରେ ଗୋଟିଏ ଝରକା କପୋତଦଳ ମୁଣ୍ଡଳାକାର ହୋଇ ଉଡ଼ିବାରେ ଲାଗିଥାନ୍ତି ।

× × × ×

ଉପାସନା ସମାପ୍ତ ହେବା ପରେ ସମସ୍ତେ ଗୀର୍ଜାର ଚାରିପାଖରେ ଥିବା ସମାଧି ପ୍ରାଙ୍ଗଣ ଆଡ଼କୁ ଗଲେ । କୁବା ମଧ୍ୟ ଅନ୍ୟମାନଙ୍କ ସାଙ୍ଗରେ ଯାଇ ସେଠାରେ ଉପସ୍ଥିତ ହେଲା ।

ଆଜି ଖାମିନ୍ଦ ଘରେ ଭୋଜିଭାତ ହେବାର ଅଛି, ଏହି କଥା ଜାଣିଥିଲେ ମଧ୍ୟ ସେ ଆଦୌ ତରତର ହେଉ ନ ଥିଲା । ଚିହ୍ନାପରିଚିତ ଥିବା

ଲୋକମାନଙ୍କ ସହିତ ସେ କେତେକ'ଣ କଥାବାର୍ତ୍ତା ହେଲା ଏବଂ ତା'ପରେ ସାଥୀମାନଙ୍କ ପାଖକୁ ଆସିଲା । ସାଧାରଣତଃ ରବିବାର ଦିନ ସମବେତ ଉପାସନାପରେ ଯେପରି ହୋଇଥାଏ, ସେତେବେଳେ ଆନ୍ତ୍ରେକ୍ ଓ ତା'ର ସ୍ତ୍ରୀ ଠିଆହୋଇ ଅନ୍ୟମାନଙ୍କ ସହିତ କ'ଣସବୁ କଥାବାର୍ତ୍ତା ହେଉଥିଲେ ।

ୟୁଗ୍‌ନା ମାଆ ପାଖରେ ଠିଆହୋଇ ଲୋକମାନଙ୍କର କଥାବାର୍ତ୍ତା ଶୁଣିବାରେ ଲାଗିଥାଏ । ଏହି ସମୟରେ ହଠାତ୍ ତା'ର ଆଖିଯାଇ ଆନ୍ତ୍ରେକ୍‌ର ଆଖି ସହିତ ମିଳିଗଲା । ଆନ୍ତ୍ରେକ୍ ବେଶ୍ କେତେ ସମୟ ପୂର୍ବରୁ ୟୁଗ୍‌ନା ଆଡ଼କୁ ଚାହିଁ ରହିଥିଲା । ୟୁଗ୍‌ନାର ମୁହଁ ଲାଜରେ ଏକାବେଳକେ ରଙ୍ଗା ପଡ଼ିଗଲା ଓ ମାଆର କାନ ଧରି ସେ ତତ୍‌କ୍ଷଣାତ୍ ଘରକୁ ଯିବ ବୋଲି ଉଦ୍ୟତ ହେଲା ।

"ୟୁଗ୍‌ନା, ଟିକିଏ ରହିଯା !"— ବୋଉନାକୁ ନମସ୍କାର କରୁ କରୁ ମାଆ କହିଲା ।

ୟୁଗ୍‌ନାର ଆଉ ପଳାଇ ଯିବା ପାଇଁ କୌଣସି ବାଟ ନ ଥିଲା । ଚର୍ଷୀମାନଙ୍କ ଘରେ କାମ କରୁଥିବା କୋଠିଆମାନେ ତା'ର କଡକୁ ମାଡ଼ି ଆସି ତାକୁ ଛୁଇଁଲେଇ ହୋଇ ଓଲଗି ହେବାରେ ଲାଗିଥାନ୍ତି । କେହି କେହି କୁବାକୁ ମଧ୍ୟ ଉଦ୍ଦେଶ୍ୟ କରି ଟାହି କରୁଥାନ୍ତି । ସତେ ଅବା କୌଣସି ସୁନ୍ଦର ଚନ୍ଦ୍ରପଟ ଆଡ଼କୁ ଏକ ଆଖିରେ ଚାହିଁ ରହିଲା ପରି କୁବା ୟୁଗ୍‌ନା ଆଡ଼କୁ ଚାହିଁ ରହି ତା'ର ଅନୁସରଣ କରୁଥାଏ । ଟୋକାମାନଙ୍କର ଟାପରାରେ ଭାରି ବିରକ୍ତ ହୋଇ ସେ ବୁଲିପଡ଼ି ଲମ୍ବେଟାଗୋଡରେ ଘରଆଡ଼କୁ ଯିବାକୁ ଆରମ୍ଭ କଲା । ସାଥୀମାନେ ମଧ୍ୟ ବର୍ତ୍ତମାନ ସେଇଆଡ଼କୁ ଯିବାକୁ ଆରମ୍ଭ କଲେଣି । ଘରକୁଯାଇ ତାକୁ ଘୋଡାମାନଙ୍କର ଖବର ବୁଝିବାକୁ ହେବ ।

"ସତରେ ଏକା ସେ ଗୋଟିଏ ଚନ୍ଦ୍ରପ୍ରତିମା ପରି ସୁନ୍ଦର !"— ଘର ଦୁଆର ମୁହଁରେ ବସି ପଡ଼ୁ ପଡ଼ୁ ସେ କହିବାକୁ ଲାଗିଲା ।

ସେତେବେଳକୁ ମୁଜ୍‌କା ତା' ଲାଗି ଖାଇବା ନେଇ ଆସୁଥାଏ । କଥା ଶୁଣି ସେ ପଚାରିଲା :

"କିଏ ମ ସେଇ ଚନ୍ଦ୍ରପ୍ରତିମା ?"

ତାʼର ମନର କଥାଟାକୁ ସେ ପଦାରେ ପକାଇ ଦେଲା ବୋଲି ଜାଣି କୁବା ହଠାତ୍ ବଡ଼ ସଚେତ ଓ ଅପ୍ରତିଭ ହୋଇପଡ଼ିଲା । କିନ୍ତୁ ମନବୋଧ କରି ଖାଇବାରେ ବ୍ୟସ୍ତ ରହି ସେ ସେହି ଭୋଜିରେ ସେସବୁ ବିଷୟରେ ସବୁକଥା କୁଆଡ଼େ ଭୁଲିଗଲା ।

ଆଜି ସମସ୍ତେ ବସି ବସି ଖାଉଥାଆନ୍ତି, କାହାରିଠାରେ କୌଣସି ତରତର ବା ଜୁଦ୍ଧି କିଛି ନଥାଏ । କାହାର ତୁଣ୍ଡରୁ କୌଣସିପ୍ରକାର କଥା ଶୁଣାଯାଉ ନଥାଏ । ଶେଷରେ ପେଟରୁ କଣେ ଭୋକ ମରିଆସିବା ପରେ ଜଣଜଣ କରି କଥାବାର୍ତ୍ତା କରିବାକୁ ଆରମ୍ଭ କଲେ ଓ ନାନାପ୍ରକାର ଖୁସିଗପ ପକାଇ ଭୋଜନର ଆନନ୍ଦ ଉପଭୋଗ କରିବାକୁ ଲାଗିଲେ ।

ସେଦିନ ରନ୍ଧାବଢ଼ା କାମ ହେଉଚି ସୂଜକାର । ସେ ସମସ୍ତଙ୍କୁ ମନବୋଧ କରି ଖାଇବା ପରଶିବାରେ ଲାଗିଥାଏ । କାହାର ଥାଳୀରୁ କିଛି ଖାଦ୍ୟପଦାର୍ଥ ସରୁ ନସରୁଣୁ ସେ ସେହିକ୍ଷଣି ଯାଇ ଅଧିକ ଖାଇବା ଆଣି ଅଜାଡ଼ିଦେଇ ଯାଉଥାଏ । ଯେପରି ଖାଇବା ସରିଯାଇ କାହାର ଥାଳୀ ବାହାରକୁ ଦେଖା ନଯାଏ, ସେଥିପ୍ରତି ସେ ବଡ଼ ତତ୍ପର ଥାଏ ।

ଏପରି ଏକ ବଢ଼ିଆ ପାଗରେ ଏହି ବାରଣ୍ଡାଠାରୁ ବଳି ଖାଇବା-ପାଇଁ ଆଉ ଅଧିକ ଭଲ ଜାଗା ସେମାନଙ୍କୁ କଦାପି ମିଳିନଥାନ୍ତା । ଲିପା କୁକୁରଟା ଏଣେତେଣେ ନଡ଼ବଡ଼ ହେବାରେ ଲାଗିଥାଏ, ଖାଇବାର ଲାଳସା ପ୍ରକାଶ କରି କ୍ଷୀଣ ଚିତ୍କାର କରୁଥାଏ, ଏପରିକି ବେଳେବେଳେ ଆଗକୁ ଉହୁଙ୍କି ପଡ଼ି ଖାଇବା ଥାଳୀ ଭିତରକୁ ଅନାଇ ଦେଉଥାଏ । କେହି କିଏବା ତାʼଆଡ଼କୁ ଖଣ୍ଡେ ହାଡ଼ ଫୋପାଡ଼ିଦେଲେ ସେ ତାହାର ସହିତ ଘଡ଼ିଏ ଯୁଦ୍ଧ କରିବାରେ ଲାଗିଯାଉଥାଏ । ହାଡ଼ଖଣ୍ଡକୁ ମୁହଁରେ କାମୁଡ଼ି ଧରି ସେ ବିଜୁଳୀପରି କୁଆଡ଼େ କୁʼ କରି ପଳାଉଥାଏ, ସାଆନ୍ତମାନେ ନାଆଁ ଧରି ଡାକିଲବେଳକୁ ଆହ୍ଲାଦରେ ଭୋʼ ଭୋʼ ଭୁକୁଥାଏ, ଘରଚଟିଆ ଚଢେଇଗୁଡ଼ାଙ୍କ ଆଡ଼କୁ ଦଉଡ଼ିଯାଇ ସେମାନଙ୍କୁ ହୁରୁଡ଼ାଇ ଦେଉଥାଏ, ପୁଣି ଅଇଁଠା ପତରର ଆଶାରେ ଯାଇ ବାଡ଼ପାଖରେ ଅପେକ୍ଷା କରି ବସୁଥାଏ ।

ଦାଣ୍ଡରେ ଚାଲିଯାଉଥିବା ଲୋକମାନେ ସେମାନଙ୍କର ଶୁଭ ସମ୍ଭୋଷଣ ଦେଇ ଯାଉଥାନ୍ତି, ତାହାର ପ୍ରତ୍ୟୁତ୍ତରରେ ବଉଁଶଯାକ ସମସ୍ବରରେ ଧନ୍ୟବାଦର ବାଣୀ ବରଷିବାରେ ଲଗିଥାନ୍ତି ।

"ମୁଁ ଶୁଣିଲି, ତୁ କୁଆଡ଼େ କେତେଟା ଚଢ଼େଇ ନେଇ ପାଦ୍ରୀଙ୍କ ଘରକୁ ଯାଇଥିଲୁ"— ବୋଉନା ପଚାରିଲା ।

"ହଁ, ଯାଇଥିଲି ।"— ଚାମଚଟାକୁ ହାତରୁ ନେଇ ଥାଳୀଉପରେ ରଖି କୁବା ପାଦ୍ରୀ ତାକୁ କପର ଆପଣା ଘରଭିତରକୁ ଡାକିନେଲେ ଏବଂ ସେଠାରେ ସେ କେଡ଼େକେଡ଼େ ବଡ଼ ବହିମାନ ଦେଖିବାକୁ ପାଇଲା, ସେହିକଥା ବର୍ଣ୍ଣନା କରିବାକୁ ଲଗିଲା ।

"ଏସବୁ ବହି ପଢ଼ିବାଲଗି ପ୍ରାଦ୍ରୀଙ୍କୁ କେତେବେଳେ ସମୟ ମିଳୁଥିବ ?"— ମୁକ୍‌କା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"କେତେବେଳେ ? କାହିଁକି, ସଞ୍ଜବେଳେ ! ରାତିରେ ସେ ଆପଣା କୋଠରୀ ଭିତରେ ବୁଲାଚଲା କରୁଥାନ୍ତି, ଚାହା ପିଉଥାନ୍ତି ଆଉ ହାତରେ ବହିଧରି ପଢ଼ିବାରେ ଲଗିଥାନ୍ତି !"

"ସେସବୁ ପୁସ୍ତକ ହେଉଛି ଧର୍ମପୁସ୍ତକ !"— କୁବା କହିଲା ।

"ଧର୍ମପୁସ୍ତକ ନହୋଇ ଆଉ କ'ଣ ହେବ ? ଆଉକ'ଣ ବଜାନ୍‌ପୁସ୍ତକ ହେବ ନା ବ୍ୟାକରଣ ପୁସ୍ତକ ?"

"ପାଦ୍ରୀ ସବୁଦିନ ଖବର କାଗଜ ବି ପଢନ୍ତି !"— ହାଙ୍କା କହିଲା । ତା'ପରେ ତା'ର ସ୍ୱାମୀ ମଧ୍ୟ କହିବାକୁ ଆରମ୍ଭ କଲା !

"ହଁ, ଖବର କାଗଜ ପଢ଼ିଲେ ସିନା ଦୁନିଆ ଗୋଟାକର ଖବର ଜାଣିପାରିବ !"

"କମାର ପୁଅ ମଧ୍ୟ ଖବରକାଗଜ ମଗାଏ, ସେଷଣିଆଘର ବି ମଗାନ୍ତି ।"

"କମାର ପୁଅର ବି ଖବର କାଗଜ ନ ପଢ଼ିଲେ ଚଳୁନାହିଁ !— ତାହା ସେହିଭଳି ଖବରକାଗଜ ହୋଇଥିବ !"--- ଉପହାସ କରି ବୋଉନା କହିଲା ।

"ଖୋଦ୍ ପାଦ୍ରୀ ମଧ୍ୟ ସେହି ଖବର୍‌କାଗଜ ମଗାଇ ପଢନ୍ତି"— ଠେଁସିଦେଇ ଆନ୍ଦ୍ରେକ୍ ଜବାବ ଦେଲା ।

"ତୁ ସବୁ ଜାଣିଚୁ, ନା ? ନଜେ କେବେ ଯାଇ ତୁ ସେ ଖବର କାଗଜ ପଢ଼ିଚୁ ?"

"ହଁ, ହଁ, ପଢ଼ିଚ । ଥରେ ର କାହିଁକି, କେତେଥର ପଢ଼ିଚ !"

"ତା'ବୋଲରେ ପଢ଼ିଲେ ତୋ'ର ଯାହା ଦଶା ହେବ, ସେ କଥା ମୋତେ ଭଲକର ଜଣାଅଛୁ ।"

"ଆଉ ତୁମେ କାହାକୁ ଭଲଲୋକ ବୋଲି କହୁଚ, କହିଲ ? କ'ଣ ଯଉରମାଣ ଜମି ବା ଆଠଟା ଗାଈଥିଲେ ମଣିଷକୁ ଭଲଲୋକ ବୋଲି କୁହାଯିବ ?"

"ତୁ ଚୁପ୍‌କର । ମୋର ରାଗ ଉଠିଲେ ପୁଣି କଛୁ ବାକି ରହିବନାହିଁ ଟି ! ସବୁବେଳେ ଏଇଟା ଆସିବ ମୋ'ସହିତ ଝଗଡ଼ା ଲଗାଇବାକୁ ! ଖାଇକର ଦେହରେ ଲଗିଲଣି, ନାହିଁ ? ମୋର ଖାଇକଣ ଏତେ ବହପ ବାହାରୁଚ ?"

"ଦେହରେ ଲଗିନାହିଁ ଯେ ମୋ' ତଣ୍ଡିରେ ଲଗିଚ । ଠିକ୍ ଗୋଟାଏ ମାଛକଣ୍ଟା ପର !"

"ଯଦ ଏଠି ତୋତେ ଖାଇବା ଗନ୍ଧଉଚ, ତେବେ ଯାଉନୁ ଆଉ କୋଉଠି ପଶିବୁ, ସେଠି ତୋତେ ଭଲ ଖାଇବାକୁ ମିଳବ ! ହାଙ୍କା ଭାଗରେ ପଡ଼ିଥିବା ଛନମାଣ ଜମିକୁ ଭୋଗକର ହେଣ୍ଟି ମାରବୁ ଯାଆ !"

"ତୁମେ ଏକଥା କହୁଚ ? ମୁଁ ବଳଦପର ଖଟିବି, ଆଉ ଶୁଣିଲା-ବେଳକୁ ଏହିକଥା ଶୁଣିବ ?"

"ଯଦ ମନ ହେଉଚ ତେବେ ଯାଉନୁ ଆଉ କୋଉଠିକ ! ଅଳସ ମାର ବସିବୁ, ମାଗଣା ଖାଇବାକୁ ପାଇବୁ !"

"ଆଉକଛୁ ନହେଉ ପଛକେ, ଏଠା ଅପେକ୍ଷା ଅଧିକ ଶାନ୍ତ ନଷ୍ଟସ୍ତ ମିଳବ !"

"ତେବେ ଚେଷ୍ଟାକର ଦେଖିବୁ ଯାଆ !"

"ହାତରେ କଛୁ ନନେଇ ମୁଁ ଯିବି କପର ?"

"ତେବେ କୁକୁର ହୁରୁଡ଼ାଇବାକୁ ମୁଁ ତୋତେ ଖଣ୍ଡେ ବାଡ଼ି ହାତରେ ଦେଉଚ, ଯାଆ !"

"ବାପା !"— ଆନ୍ତେକ୍‌ ବଡ଼ପାଟିରେ ଚିତ୍କାର କରି ଉଠିଲା । ତା'ର ମୁଣ୍ଡରୁ ଗୋଡ଼ଯାଏ ଗୋଟାସୁଦ୍ଧା ଥରବାରେ ଲାଗିଥାଏ । କିନ୍ତୁ ସଙ୍ଗେସଙ୍ଗେ ସେ ଆପଣାକୁ ସଂଯତ କରିନେଲା, କାରଣ ହାଙ୍କା ପଛରୁ ଆସି ତା'ର ଅଣ୍ଟାଟାକୁ ଧରିପକାଇଲା । ବୁଢ଼ା କଟକଟ ଭୟଙ୍କର ଆଖିକରି ତା' ଆଡ଼କୁ ଅନାଇ ରହିଥାଏ । ତା'ପରେ ଖାଇବା ଶେଷ ହୋଇଥିବାର ଅଭିନୟ କରି ସେ ଶୂନ୍ୟରେ କ୍ରୁଶଚିହ୍ନ ଅଙ୍କନ କଲା ଏବଂ ସିଧା ସେଠାରୁ ଉଠି ଆପଣାର ଶୋଇବା ଘରକୁ ଗ୍ଭଲିଗଲା । ଯାଉଯାଉ ବଡ଼ ରୁକ୍ଷ ଓ କର୍କଶ ଭାବରେ କହିଲା :

"ତୁ ଭାବଚୁ, ମୋତେ ଏହିପରି ତୁ ଜହର ଦେଇ ଖତମ କରିଦେବୁ ନାହିଁ ? କଦାପି ନୁହେଁ !"

ସଙ୍ଗେ ସଙ୍ଗେ ଅନ୍ୟମାନେ ମଧ୍ୟ ସେଠାରୁ ଉଠି ଗ୍ଭଲିଗଲେ । କେବଳ ଆନ୍ତେକ୍‌ ସେଠାରେ ଏକୁଟିଆ ବସିରହି କ'ଣସବୁ ଚିନ୍ତା କରିବାକୁ ଲାଗିଲା । ଖଳାଘର ସେପାଖରେ ଥିବା ଘାସବଳକୁ କୁବା ଘୋଡ଼ାପଲକୁ ଫିଟାଇ ନେଇଗଲା ଓ ତା'ପରେ ଘଡ଼ିଏ ବିଶ୍ରାମ ନେବବୋଲି ଆସି ପାଳଗଦା ଉପରେ ଗଡ଼ପଡ଼ ହେବାକୁ ଲାଗିଲା । କିନ୍ତୁ ଆଖିକୁ ଆଜି ନିଦ ଆସିବାକୁ ନାହିଁ, ଆଜି ଠିକ୍‌ ତଣ୍ଟି ପର୍ଯ୍ୟନ୍ତ ଖାଇ ଗ୍ରୁନ୍ଦଭିତରଟା ଗୋଟାଏ ମାଦଳ ପରି ମନେହେଉଚି । ତା'ଛଡ଼ା ସେ ବର୍ତ୍ତମାନ ଆଉଗୋଟାଏ କଥା ମଧ୍ୟ ଭାବିବାରେ ବ୍ୟସ୍ତ ଥିଲା । ସେ ଭାବୁଥିଲା, ହାତରେ ଯଦି ଖଣ୍ଡେ ବନ୍ଧୁକ ଥାଆନ୍ତା, ତେବେ ସେ କେତେକେତେ ଚଢ଼େଇ ମାରି ରବିବାରକୁ ରବିବାର ନେଇ ପାଦ୍ରୀଙ୍କ ଘରେ ପହଞ୍ଚାଇ ଦେଇ ଆସନ୍ତା । ଗୋଟାଏ ଦୁଇଟା ଠେକୁଆ ମିଳିଲେ ମଧ୍ୟ ଭେଟିଟା ଆହୁରି ଚମତ୍କାର ହୁଅନ୍ତା ।

କମାର ପୁଅକୁ କହିଲେ ସେ ନିଶ୍ଚୟ ତା'ପାଇଁ ଗୋଟାଏ ବନ୍ଧୁକନଳୀ ତିଆରି କରି ଦିଅନ୍ତା ! ଜଙ୍ଗଲ ଜଗୁଆଳି ପାଇଁ ତ ସେ ବନ୍ଧୁକଟାଏ ତିଆରିକରି ଦେଇଚି । ଜଗୁଆଳୀ ଜଙ୍ଗଲଭିତରେ ବନ୍ଧୁକ ମାରିଲେ ଗାଆଁକୁ ମଧ୍ୟ ଠୋ'ଠୋ' ହୋଇ ଶୁଭୁଚି !

"ଗୋଟାଏ ବଢ଼ିଆ କାରିଗର ଏକା !— କିନ୍ତୁ ଗୋଟାଏ ବନ୍ଧୁକ ଛଆର କରିଦେବାକୁ ବର୍ତ୍ତମାନ ସେ ପାଞ୍ଚ ରୁବଲ୍ ମାଗିବ !"— ଗମ୍ଭୀର ହୋଇ ସେ ଏହି କଥା ଚିନ୍ତା କରିବାକୁ ଲାଗିଲା ।

"ତେବେ ଏଥିପାଇଁ ଆଉ କି ବ୍ୟବସ୍ଥା କଲେ ହେବ ? ଶୀତଦିନ ବି ଆସୁଛି, ମେଣ୍ଢାଛାଲରେ ତିଆରି ଗୋଟାଏ କୋଟ୍ ମଧ୍ୟ କିଣିବାକୁ ପଡ଼ିବ । ଜୋତା ଦୁଇଟା ଏକାବେଳେକେ ଘୋରହୋଇ ଗଲଣି, ବଡଦିନ ସରିକି ଯିବବୋଲି ମଧ୍ୟ ମନେହେଉନାହିଁ । ହଁ, ଖାମିନ୍ଦଘରୁ ତ ମୁଁ ଦଶ ରୁବଲ ପାଇବି, ପ୍ୟାଣ୍ଟ ଆଉ କୁରୁତାହୋଇ ଦୁଇଟା ପୋଷାକ ପାଇବି । ମେଣ୍ଢା ଛାଲର କୋଟ୍ କିଣିଲେ ପାଞ୍ଚ ରୁବଲ୍ ପଡ଼ିବ । ହଁ ବୁଟ୍‌ଜୋତା ପାଇଁ ଆଉ ତିନି ରୁବଲ୍ ଖରଚ କରିବାକୁ ହେବ । ଟୋପିଟାଏ ମଧ୍ୟ ନ କିଣିଲେ ଚଳିବ କିପରି ? ପିତୃପୁରୁଷମାନଙ୍କ ପାଇଁ ଗୀର୍ଜାରେ ପ୍ରାର୍ଥନା କରାଇବାଲାଗି ପାଦ୍ରୀଙ୍କୁ ମଧ୍ୟ ଗୋଟାଏ ରୁବଲ୍ ଦେବାକୁ ପଡ଼ିବ । ବାସ୍, ଏମିତି ଏଇଟା-ସେଇଟା ଖରଚ କରୁକରୁ ଆଉ ହାତରେ କାଣି କଉଡ଼ିଟାଏ ମଧ୍ୟ ରହିବନାହିଁ ।"— ମନେମନେ ଖୁବ ଦୁଃଖିତ ହୋଇ ସେ ଆପଣା କୁରୁତାର ପକେଟ୍ ଦରାଣ୍ଡିବାକୁ ଲାଗିଲା, କାଳେ କୋଉଠି ଚମୁଟାଏ ଦୋକ୍ତା କୋଉଠି ମିଳିଯିବ । ଦୋକ୍ତା ଖୋଜୁଖୋଜୁ ତା'ର ହାତରେ ନଗଦ ପଇସା ଆସି ବାଜିଲା । ପକେଟ୍ ଭିତରେ ନଗଦ ପଇସା ଅଛି ବୋଲି ସେ ଏବାକେ ପାଶୋରି ଯାଇଥିଲା ।

"ଆରେ ବାହାରେ, ତେବେ ହାତରେ କିଛି ନା, କିଛି ଅବଶ୍ୟ ଅଛି !"— ତା'ର ମନ ମୁହୂର୍ତ୍ତକ ଭିତରେ କୁଆଡ଼େ ଉଡ଼ିପଳାଇଲା । ଦୂର ସରାଇଘରୁ ସଙ୍ଗୀତଧ୍ୱନି ଭାସି ଆସୁଥାଏ, ଆମୋଦରତ ବ୍ୟକ୍ତିମାନଙ୍କର କୋଳାହଳ ମଧ୍ୟ ଦୂରତାର ଗର୍ଭ ଭେଦକରି ଅସ୍ପଷ୍ଟ ହୋଇ ଶୁଣାଯାଉଥାଏ ।

କ୍ଷୁନ୍ନଭାବରେ ସେ ଭାବିବାକୁ ଲାଗିଲା : "ସେଠି କେତେଲୋକ ନାଚୁଥିବେ, ଭଡ୍‌କା ପିଉଥିବେ ଓ ପିକାରୁ ଧୂଆଁ ଉଡ଼ାଇ କେତେ ମଜା କରୁଥିବେ !" ପେଟମାଡ଼ି ଶୋଇ ସେ ମୁହଁଟେକି ଘୋଡ଼ାପଲ ଆଡ଼କୁ ଅନାଇବାକୁ ଲାଗିଲା । ଘୋଡ଼ାଗୁଡ଼ାକ ଗୋଟାଏ ଜାଗାରେ ଜମା ହୋଇ

ପରସ୍ପରର ବେକକୁ ଝୁଙ୍କିବାରେ ଲାଗିଥାନ୍ତି । ନା— ଆଜି ସଞ୍ଜକୁ ସେ ମଧ୍ଯ ସରାଇଘରକୁ ଯିବ, ତମାଖୁ କିଣିବ, ନାଚୁଥିବା ଲୋକମାନଙ୍କ ଉପରେ ଘଡ଼ିଏ ଆଖିବୁଲାଇ ଆସିବ ।

ଥରଥର କରି ସେ ଆପଣା ହାତରେ ଥିବା ପଇସାକୁ ଅନାଉଥାଏ, ତା'ପରେ ପୁଣି ସୂର୍ଯ୍ୟ ଆଡକୁ ଗୁହିଁ ଦେଖୁଥାଏ । ଆଜି କେଜାଣି କାହିଁକି ସୂର୍ଯ୍ୟଦେବ ଭାରି କାଉଁଦା ହୋଇ ପଡ଼ିଥିଲାପରି ମନେହେଉଚି । ଭାରି ଥିରଥିର ହୋଇ ସେ ଆକାଶ ଉପରୁ ତଳକୁ ଖସିବାକୁ ଆରମ୍ଭ କଲେଣି । ଆଜି ରବିବାର, ସତେଅବା ତାଙ୍କର ମଧ୍ଯ ଆଜି ରବିବାରର ଛୁଟୀ ଦରକାର ହୋଇ ପଡ଼ିଥିବାପରି ଲାଗୁଚି । ସରାଇଖାନାର ଲୋଭ କ୍ରମେ ବଢ଼ି ପ୍ରବଳ ହେବାକୁ ଲାଗିଲା । ଆଉ ସମ୍ଭାଳି ରହିବା ସମ୍ଭବ ନୁହେଁ । କିନ୍ତୁ ତଥାପି ସେହି ମୁହୂର୍ତ୍ତରେ ସେଠାକୁ ଯିବାରୁ ସେ ଆପଣାକୁ ନିବୃତ୍ତ କରି ରଖିଲା ଓ କିଛି ଲେଉଟାଇ ଆପଣା ମନକୁମନ ଗଅଁ ଗଅଁ ହୋଇ କ'ଣସବୁ କହିବାକୁ ଲାଗିଲା । ପଛରୁ ଖଳାଘରୁ ଆନ୍ଦ୍ରେକ୍ ଆଉ ହାଙ୍କା ବାହାରକୁ ଆସିଲେ ଏବଂ ବିଲ ଭିତରେ ପଡ଼ିଥିବା ହିଡ଼େ ହିଡ଼େ ଯିବାକୁ ଲାଗିଲେ ।

ଆନ୍ଦ୍ରେକ୍ ଆଗେ ଆଗେ ଯାଉଥାଏ, ହାତରେ ଛୁଆ ପୁଅଟିର ହାତ ଧରି ହାଙ୍କା ପଛେ ପଛେ ଗୃଲୁଥାଏ । ବେଳେବେଳେ ସେମାନଙ୍କର ଗତି ଧୀର ହୋଇ ଯାଉଥାଏ, ସେମାନେ ପରସ୍ପରକୁ କ'ଣ ପଦେ ଦି'ପଦ କଥା କହୁଥାନ୍ତି, ତା'ପରେ ପୁଣି ଗୋଡ଼ କାଢ଼ି ଗୃଲୁଥାନ୍ତି । ତା'ପରେ ଆନ୍ଦ୍ରେକ୍ ନଇଁପଡ଼ି ନୂଆ କଅଁଳ ଆସୁଥିବା ଗଜା ଗଛଗୁଡ଼ାକୁ ହାତ ଲଗାଇ ସାଉଁଳେଇ ପକାଉଥାଏ ।

"ଠିକ୍ କଣ୍ଟାବୁଦା ପରି ଏଗୁଡ଼ାକ ବହଳ ହୋଇ ବଢ଼ି ଆସିଲାଣି !" — କହି ସେ ଖେତ ଉପରେ ଯେଗ୍ଏ ଆଖି ବୁଲାଇ ନେଉଥାଏ । ଏହିସବୁ ଜମି ତା' ନିଜର, ଏସବୁ ଜମିରେ ସେ ନିଜ ହାତରେ ବିହନ ପକାଇଚି । ବାପାର ଜମିରେ ମଜୁରି ଖଟିବା ବାବତକୁ ଏତକ ଜମି ତାକୁ ହାତଗୃଷ ପାଇଁ ମିଳିଚି ।

"ହଁ, ବଦଳି ହୋଇଚି ସତ, କିନ୍ତୁ ବାପାଙ୍କର ଜମି ଆହୁରି ବଦଳି ଦେଖାଯାଉଚି । ସତେ ଯେମିତି ଜଙ୍ଗଲ ବଢିବାରେ ଲଗିଚି ।" — ଆଖପାଖର କ୍ଷେତଗୁଡ଼ାକୁ ଅନାଇ ହାଙ୍କା ଉତ୍ତର ଦେଲି ।

"ସେହି ଜମିରେ ବେଶୀ ଖତ ପଡ଼ିଥିବ । ଆମର ଯଦି ଦୁଇଟା ଗାଈ ଥାଆନ୍ତେ —"

"ତା' ସାଙ୍ଗକୁ ଗୋଟାଏ ଯୋଡ଼ା ବି ।"

"ହଁ, ତା'ହେଲେ ଆମେ କିଛି କୁକୁଡ଼ା ମଧ୍ୟ ପାଳିଥାଆନ୍ତେ ଓ ହାଟରେ ବିକିବା ଲାଗି ଏଇଟା ସେଇଟା ପଠାଇ ପାରୁଥାଆନ୍ତେ । କିନ୍ତୁ ଆମର ସେତେ ଭଲ ଭାଗ୍ୟ କୁଆଡୁ ହେବ ? ବାପା ତ ଏମିତି ଚକଟା ଯେ ଗହମ ଗୋଟିଗଣିତା କରି ତେବେ ଯାଇ ଛାଡ଼ିବ, କୋଉଠି ଗୋଟାଏ ଆଳୁରୁ ଚୋପା ଛାଡ଼ିଗଲେ ବି ତା'ର ହାଲୁକ ଶୁଖିଯିବ !"

"ଆଉ ଆମକୁ କୋଉଠି କ'ଣ ଦେଲି, ସେହି ବିଷୟରେ ଉଲ୍‌ଗୁଣା ଦେବାରେ ଲଗିଥିବ !"

ଆଉ କାହାରି ତୁଣ୍ଡରୁ କୌଣସି କଥା ବାହାରିଲି ନାହିଁ । ଦୁହିଁଙ୍କର ହୃଦୟ ସେତେବେଳକୁ ଖାଲି ହିଂସା ଆଉ ଘୃଣାରେ ଜଳିଯିବାରେ ଲଗିଥାଏ, ବିଦ୍ରୋହ କରିବାର ପ୍ରବଳ ଆକାଙ୍କ୍ଷାର ଅଙ୍କୁଶ ସେମାନଙ୍କୁ ଗୁରିଆଡୁ ବିନ୍ଧି ଦେବାରେ ଲଗିଥାଏ ।

ପୁଣି କିଛି ସମୟ ପରେ ! "ଆମ ଭାଗରେ ଆଠ କି ନଅମାଣ ଜମି ପଡ଼ନ୍ତା, ଯଦି......" ଅନ୍ୟ ମନସ୍କ ଭାବରେ ଅନ୍ନେକ୍ ମତ ପ୍ରକାଶ କଲି ।

"ଆଉ, ଏତେଗୁଡ଼ାଏ ଖଜା ଖାଅନାହିଁ । ତେଣେ ସୂଜକା ଅଛି, କମାରପୁଅର ଘରଯା ଅଛି । ଗ୍ରିଗୋରି ମଧ୍ୟ ଅଛି, ତା'ପଛକୁ ଯାଇ ସିନା ଆମର ପାଳି ।"— ହାଙ୍କା ହିସାବ କରି କହିଲି ।

"ଯଦି ଆମେ କମାର ପୁଅକୁ କିଛି ଟଙ୍କା ଦେଇ ପାରନ୍ତେ, ତେବେ ଘର ଆଉ ଷୋଳମାଣ ଜମି କ'ଣ ଆମ ହାତରେ ରହନ୍ତା ନାହିଁ ?"

"କିନ୍ତୁ ହାତରେ ପଇସା ଅଛି ନା ଖାଲି କଳପନାରେ ଭାସିଯାଇ କହୁଚ ?"– ଏକ ପ୍ରକାର ସମ୍ବଳହୀନତାର ଭାବରେ ବଡ଼ କ୍ଷୁନ୍ନହୋଇ ହାଙ୍କା ପାଟିକରି କହିଲି ଓ ଶଶୁରଙ୍କ କ୍ଷେତ ଆଡ଼କୁ ଅନାଇ ଦେଉ ଦେଉ ତା'ର

ଆଖିରୁ ଟୋପା ଟୋପା ହୋଇ ଲୁହ ଗଡ଼ିପଡ଼ିଲା । ସିଏ ତ ମାଟି ନୁହେଁ, ସାକ୍ଷାତରେ ସୁନାମୁଣ୍ଡା । ଗହମ, ଯଅ ଆଉ କନ୍ଦମୂଳ ଫସଲରେ ଖେତ ଭରି ହୋଇ ରହିଛି । କୋଉଠି ଗୋଟାଏ ଆଙ୍ଗୁଳ ମଧ୍ୟ ଫାଙ୍କ ନାହିଁ ।

"ତୁ ସେମିତି ବାଳୁଙ୍କ ପରି କାନ୍ଦୁଛୁ କାହିଁକି ? ଆଉକିଛି ନ ହେଲା ପଛକେ, ଧନେ ନା ଧନେ ତ ପୁଣି ଆମ ହାତକୁ ଆଠମାଣ ଜମି ନିଶ୍ଚୟ ଆସିବ !"

"ହଁ— ଆଠମାଣ କଥା ପଡ଼ିଚି କାହିଁକି ? ଯଦି ଆମ ହାତକୁ ଗୁରିଟା ମାଣ ହେଲେ ଆସନ୍ତା, ତା'ସହିତ ଦରଭିଡ଼ିହ ଆଉ ସେଇ ବାଗଅଗିକ !"— ବନ୍ଧାକୋବି ଲଗା ହୋଇଥିବା ବାରି ଆଡ଼କୁ ହାତ ଦେଖାଇ ସେ କହିଲା । ତା'ପରେ ସେମାନେ ସେଇଆଡ଼େ ବାଟ ଭାଙ୍ଗିଲେ ଓ କିଛିଦୂର ଯାଇ ଗୋଟିଏ ବୁଦାମୂଳ ଦେଖି ବସିଲେ । ହାଙ୍କା ଛୁଆକୁ ଦୁଧ ଦେଲା । ଛୁଆଟା ହେତେବେଳକୁ ଭୋକରେ କାନ୍ଦିବାକୁ ଆରମ୍ଭ କରିଥାଏ । ଆନ୍ତ୍ରେକ୍‌ ଧୂଆଁ ପତ୍ର ବାହାର କରି ପିକାଟିଏ ବଳାଇ ଓ ସେଇଟିକୁ ଲଗାଇ ଫାସୁଫାସୁ କରି ଟାଣିବାକୁ ଲଗିଲା ।

ଆପଣା ମନର ଦୁଃଖ ତାକୁ ସେହି ମନଭିତରେ ସତେ ଅବା ବଦାର ପକାଉଥାଏ, ନିଆଁ ଭିତରେ ଅଙ୍ଗାରମୁଣ୍ଡା ଜଳଲାପରି ହୃଦୟ ଭିତରେ ଜଳି ହୃଦୟଟାକୁ ଦହିଦେଇ ଯାଉଥାଏ । କିନ୍ତୁ ଖବରଯାକୁ ସେ ଖୋଲିକରି ପଦେ ହେଲେ କଥା କହିଲା ନାହିଁ । ସେଗୁଡ଼ାକ ତା'ଆଗରେ ସେ କିପରି ବା କହନ୍ତା ? କହିଲେ କ'ଣ ସେ ତେବେହେଲେ ବୁଝି ପାରିବ ? ମାଇପିଜାତି, ତାର କେତେ ବା ବୁଦ୍ଧି, କେତେ ବା ଜ୍ଞାନ ? କାସ୍ଥା ପଛେ ପଛେ ଗ୍ରାଇଟା ଗୋଡ଼ାଇଥିଲା ପରି ପୁରୁଷ ପଛେ ପଛେ ଯିବା ବ୍ୟତୀତ ସ୍ତ୍ରୀର ଆଉ କ'ଣ ବା ବାଟ ରହିଚି !

"କିନ୍ତୁ ବାପାଙ୍କ ପାଖରେ କିଛି ନଗଦ ପଇସା ବି ରହିଚି,ନୁହେଁ ?" — ହାଙ୍କା ପଚାରି ବସିଲା ।

ନିଶ୍ଚୟ ଅଛି ।"

"ମଲ, ସେଦିନ ପରା ସେ ଝୁଲକା ପାଇଁ ପୋହଳା ଲଗା ହାର ଆଣିଥିଲେ ! ଗୋଟାଏ ଗାଈର ଦାମ୍ ଯେତକ, ସେଇ ହାରର ଦାମ୍ ମଧ୍ୟ ସେତକ ହେବ । ପୁଣି ପଧାନ ହାତରେ ସେ ମାସକୁମାସ ଗ୍ରିଗୋର ପାଖକୁ ବି ଟଙ୍କା ପଠାଉଚନ୍ତି !"

ଆନ୍ଦ୍ରେଇ ମୁଣ୍ଡ ହଲାଇ ହଁ ଭରିଲା, କିନ୍ତୁ ସେତେବେଳକୁ ତା'ର ମୁଣ୍ଡ ଭିତରେ ସେ ଆହୁରି କେତେ କ'ଣ ଚିନ୍ତା କରିବାରେ ଲାଗିଥାଏ ।

"ଏ କେଡ଼େ ଅନ୍ୟାୟ କଥା, କହିଲ ! ପୁଣି ତୁମ ବୋଉଙ୍କର ଯୋଉସବୁ ଲୁଗାପଟା ଥିଲା, ସେସବୁକୁ ଯେ ପେଟରା ଭିତରେ କୋଳପ ପକାଇ ରଖିଚନ୍ତି, କିଏ ଟିକିଏ ଆଖି ପକାଇ ଦେଖିବ ବୋଲି ମଧ୍ୟ ଜୁ' ନାହିଁ । କେତେ ଖଣ୍ଡ ଆ, କେତେ ବେଢଣି, କେତେ ଟୋପି ଆଉ କେତେ ମାଳ !" — ସେ ଗୋଟିଗୋଟି କରି ସବୁଟିର ହିସାବ ଦେଇ କହିଯାଉଥାଏ । ସେମାନଙ୍କୁ ଯେତେ ପ୍ରକାରେ ହିନମାନ କରାଯାଉଚି, ମନ ଭିତରେ ଯେତେ ଆଉର ଯେତେ ଓଶମାନା ଓ ଅଭିଳାଷ ରହିଚି, ସବୁ ଗୋଟିଗୋଟି କରି ସେ ବଖାଣି ଚାଲିଥାଏ । ଏବଂ ସବୁ ଶୁଣି ତଥାପି ଆନ୍ଦ୍ରେଇ ମୁହଁ ବନ୍ଦ କରି ପଥର ହୋଇ ବସିଥାଏ । ଶେଷକୁ ଧୈର୍ଯ୍ୟ ରହି ନ ପାରିବାରୁ ହାଙ୍କା ଆନ୍ଦ୍ରେଇର କାନ୍ଧକୁ ହାତରେ ହଲାଇ ଦେଇ ପଚାରିଲା,—"କ'ଣ ଶୋଇଲଣି କି ?"

"ନାଇଁ, ନାଇଁ,— ମୁଁ ଶୁଣୁଚି । ତୁ ସବୁ କହିଯାଆ । ସବୁ ଖାଲାସ ହୋଇଗଲେ ତୋର ମନଟା ବି ଉଶ୍ୱାସ ହୋଇଯିବ । ଯେତେବେଳେ କଥାତକ ସରିବ, ସେତେବେଳେ ଯାଇ ମୋତେ କହିବୁ ।"

ଏ କଥା ଶୁଣି ହାଙ୍କା କାନ୍ଦ କାନ୍ଦ ହୋଇ ଆସିଲା ତା'ର ଦୁଃଖ ଶୁଣିବାକୁ ସତେ କ'ଣ ଏହି ସଂସାରରେ ଜଣେ କେହି ହେଲେ ନାହିଁ । ଆଉ ସମ୍ଭାଳି ନ ପାରି ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । କଥା ଆରମ୍ଭ କଲା ସେଇ, ପୁଣି କଥା ଶୁଣି କାନ୍ଦି ମାରିଲା ବୋଲି ତା'ଠାରୁ ଗାଳି ଖାଇବାକୁ ପଡ଼ିବ ? ଠିକ୍ ଗ୍ରେଟ ଝିଅଙ୍କୁ ଯେମିତି ଗାଳି ଦିଅନ୍ତି, ଠିକ୍ ସେହିପରି । ଏ ମିଶିପଟାର ସତେ ତା'ପ୍ରତି ବା ଜୁଆଟା ପ୍ରତି ଏତେ ଟିକିଏ ହେଲେ ଲୋଭ ନାହିଁ କି ଯୋଗ ନାହିଁ ।

ଏଥିଉତ୍ତାରୁ ଆନ୍ଦ୍ରେକ୍ ବସିବା ଥାନରୁ ଉଠି ଠିଆହେଲା ଓ ଭର୍ତ୍ସନା କରି କହିଲା !

"ହଁ, ଆହୁରି ବଡ଼ପାଟି କରି କାନ୍ଦ୍ ! ଆହୁରି ବଡ଼ପାଟି କର !"— ମୁଣ୍ଡଉପରେ ଉଡ଼ିଯାଉଥିବା ପଲେ କାଉଙ୍କୁ ଲକ୍ଷ୍ୟ କରି ସେ କହିବାକୁ ଲାଗିଲା,—"ଏଇ କାଉଗୁଡ଼ାକ ବି ତୋ' କାନ୍ଦ ଶୁଣିବେ ଓ ତୋ'ପ୍ରତି କରୁଣା କରିବେ ।" କହି ମୁଣ୍ଡରେ ଟୋପି ଲଗାଇ ସେ ଖରି ପାଦ ପକାଇ ଗାଆଁ ଆଡ଼କୁ ଫିରିବାକୁ ଆରମ୍ଭ କଲା ।

"ଆନ୍ଦ୍ରେକ୍, ଆନ୍ଦ୍ରେକ୍ !"— ହାଙ୍କା ପଛରୁ ଡାକୁଥାଏ । କିନ୍ତୁ ରହିବାକଥା ତ ଦୂରେଥାଉ, ସେ ମୁହଁ ବୁଲାଇ ଥରେସୁଦ୍ଧା ଅନାଇଲା ବି ନାହିଁ ।

ଏଥିକୁ ଆଉ ହାଙ୍କାର କ'ଣ ବଳ ଅଛି ? ଭାରି ଦୁଃଖିତ ହୃଦୟରେ ଏଡ଼େ ବଡ଼ ମୁହଁ କରି ସେ ଛୁଆଟିକୁ କନା ଭିତରେ ଘୋଡ଼ାଇକରି ହାତରେ ଧରିଲା ଓ ଘରଆଡ଼େ ଫିରିବାକୁ ଆରମ୍ଭ କଲା । ତେବେ ଗେରସ୍ତ ତାକୁ କଥାପଦେ ମଧ୍ୟ କହିବାକୁ ଦେଲାନାହିଁ, କୌଣସି କଥାଟା ମନକୁ ଆସିଲାନାହିଁ ବୋଲି ମଧ୍ୟ କହିବାକୁ ଦେଲାନାହିଁ ! ଏ ମିଣିପଟାର ମନରେ ସତେ ଟିକିଏ-ହେଲେ ଉପରୋଧ ନାହିଁ । ସବୁବେଳେ ଖାଲି କାମ ଆଉ କାମ ! ଖାଲି ଏଇଟା କର, ସେଇଟା କର, ଏଇଟା ଦେଖ୍, ସେଇଟା ଦେଖ୍ । ଖାଲି ଘରେ ଥାଆ,— ବାସ୍ ଆଉ କିଛି ନାହିଁ । କୌଣସି କଥାକୁ ବିଚାର ନାହିଁ, ଉପରୋଧ ନାହିଁ କି ସୁଆଗ ନାହିଁ । ଯାହାର ଆଉଆଉ ମାଇପିମାନେ ସରାଇଘରକୁ ଆସି କେତେ ଅଧ୍ୟ କରୁଚନ୍ତି, କେତେ ବାହାଘାହା ଦେଖିବାକୁ ଯାଉଚନ୍ତି । କିନ୍ତୁ ଆନ୍ଦ୍ରେକ୍ ! ଏମିତି ଗୋଟାଏ ଗେରସ୍ତକୁ ନେଇ ସେ ଆଉ କ'ଣ କରିବ କହିଲ ? ବେଳେ ବେଳେ ସେଇ ମଣିଷଟା କେଡ଼େ ଭଲ, କେଡ଼େ ଥିର;— ଆଉ ବେଳେବେଳେ କ'ଣ ହେବ କେଜାଣି ସାତ ସାତ ଦିନଯାଏ ପଦେହେଲେ କଥା ବି କହିବନାହିଁ, ଆଡ଼ଆଖିରେ ଅନାଇବ ବି ନାହିଁ ! ଖାଲି ମାଦଳଙ୍କ ପରି ବସି ଭାବୁଥିବ ଆଉ ଭାବୁଥିବ ! ହଁ,— ତା'ର ଚଳାର ବୟସ ସତେ କହିଲେ ନସରେ !. ତା' ବାପ କାହିଁକି ତାକୁ ତା'ଭାଗର ଜମିତକ ବର୍ତ୍ତମାନ ଦେଇନଦେବ କହିଲ ? ଅଳ୍ପ ବୁଢା ହେଲାଣି,

ଡାଲରୁ ଝିଙ୍ଗିବାକୁ ବସିଲଣି, ପୁଅବୋହୂଙ୍କ ହାତରେ ସମ୍ପତ୍ତିଗୁଡ଼ାକ ଜମାଦେଇ ଦିଅନ୍ତା ନାହିଁ ? ଯଦି ସିଏ ସେତକ କରନ୍ତା, ତେବେ ଠିକ୍ ଆପଣା ବାପପରି ଯେ ଶଶୁରର ସେବା କରନ୍ତା, ତା'ର ସବୁ ଖବର ବୁଝନ୍ତା ।.........

କୁବାକୁ କ'ଣଗୋଟାଏ କଥା କହିବବୋଲି ତା'ର ଭାରି ମନ ହେଉଥିଲା । କିନ୍ତୁ ସେ କୁଟା ଗଦାଟା ଉପରକୁ ଆଉଜି ଶୋଇଚି ବୋଲି ପେଖନା ଦେଖାଉଥିଲା,— ଏଣେ ଦିନର ଟାଣଖରା ଆସି ତା'ର ଆଖିରେ ସିଧା ଟାଇଁଟାଇଁ ବାଜୁଥିଲା । ଖଳାଘର ଭିତରେ ହାଙ୍କା ଅଦୃଶ୍ୟ ହୋଇ ନଯାଉଣୁ କୁବା ଉଠିବସିଲା, ଲୁଗାପଟାରେ ଲଗିଥିବା କୁଟାଗୁଡ଼ାକୁ ଝାଡ଼ି-ଝୁଡ଼ିଦେଲା ଏବଂ ବାଉଁଭିତର ଦେଇ ଭାରି ତରକରେ ସରାଇଘର ଆଡ଼କୁ ଚାଲିଗଲା ।

ଗାଆଁ ସେମୁଣ୍ଡରେ ସରାଇଘର-- ପାଦ୍ରୀଙ୍କ ପର୍ବ ପାରହୋଇ ଗଲେ ଯୋଉଠି ରାସ୍ତାର ଦୁଇକଡ଼ରେ ପପ୍‌ଲାର ଗଛ ଅଛି, ସେଇଠି ।

ଏପର୍ଯ୍ୟନ୍ତ ସରାଇଘରେ ଭିଡ଼ ଲାଗିନାହିଁ । ମଝିରେ ମଝିରେ ସଙ୍ଗୀତ ବାଜଣା ହେଉଚି, କିନ୍ତୁ କେହି ନାଚିବା ଆରମ୍ଭ କରିନାହାନ୍ତି । ଟୋକା-ଟୋକାଳିମାନେ ଏପର୍ଯ୍ୟନ୍ତ ତୋଟା ଭିତରେ ଖେଳରେ ମସ୍ତ ଅଛନ୍ତି । କେହିକେହି ନାଚଘର ପାଖରେ କାନ୍ଥକୁ ଆଉଜି ଠିଆ ହୋଇଚନ୍ତି ଓ ସଦ୍ୟ ଜଙ୍ଗଲରୁ କଟାହୋଇ ଆସିଥିବା କାଠଗଦା ଉପରେ ରୁଣ୍ଡି ହୋଇ ବସିଥିବା ସ୍ତ୍ରୀଲୋକ ଓ ଝିଅମାନଙ୍କ ଉପରେ ଆଖି ପକାଇବାରେ ଲାଗିଚନ୍ତି । ନାଚଘରର ଓର୍କାଗୁଡ଼ାକ ଧୂଆଁର ଅଳନ୍ଧୁ ଲାଗି କଳା ଦେଖାଯାଉଚି । ଏପର୍ଯ୍ୟନ୍ତ କେହି ଘରଭିତରକୁ ଆସିନାହାନ୍ତି । ଝରକାର କାଚଗୁଡ଼ାକ ଉପରେ ଧୂଳି ବସିଯାଇ ଧୂସର ଦିଶୁଚି । ଆସନ୍ନ ସୂର୍ଯ୍ୟାସ୍ତର କିରଣଚ୍ଛଟା-ଗୁଡ଼ାକ ସେଇ କାଚଦେଇ ଭଲକରି ଭେଦି ଘରଭିତରର ପୁରୁଣା ଓ ଖାବଖାବଡ଼ିଆ ଚଟାଣ ଉପରେ ପଡ଼ିପାରୁନାହିଁ । ଘରର କଣଗୁଡ଼ାକ ଭାରି ଅନ୍ଧାରୁଆ ଦିଶୁଚି ।

ଗାଆଁ ଗୀର୍ଜାର ଆଉକେତେ ଉପାସକ-ସଭ୍ୟ ସହିତ କେବଳ ଆନ୍ଦ୍ରୋଜ୍ ଘରଭିତରେ ଠିଆ ହୋଇଥାଏ । ଝରକାପାଖରେ ଠିଆହୋଇ ଦୁହେଁ କ'ଣ ସବୁ କଥାବାର୍ତ୍ତା ହେବାରେ ଲଗିଥାନ୍ତି । ସେମାନଙ୍କର ହାତରେ ଥିବା ବୋତଲରୁ ସେମାନେ ମୁହୁର୍ମୁହୁ ମଦ୍ୟପାନ କରୁଥାନ୍ତି ଓ ପରସ୍ପରର ଆରୋଗ୍ୟ ମନାସୁଥାନ୍ତି ।

ହଁ, ସ୍ୱସ୍କ୍ରିଙ୍କା ମଧ୍ୟ ସେତେବେଳକୁ ସରାଇଘରେ ପହଞ୍ଚି ଆପଣାର ତୁଣ୍ଡ ବଜାଇବା ଆରମ୍ଭ କରି ଦେଇଥାଏ । ସାରା ସଂସାରରେ କେହିହେଲେ କେବେ ତା'ର ମନକୁ ଆସନ୍ତିନାହିଁ, ତେଣୁ ସେ ସମସ୍ତଙ୍କ ଉପରେ ବାକ୍ୟବାଣ ବର୍ଷଣ କରିବାରେ ଲଗିଥାଏ । ଏଇ ସଂସାରର ମଣିଷଗୁଡ଼ାକ ଏଡ଼େ ଖରାପ ଯେ ସମସ୍ତେ ମିଶି ତାକୁ କେବଳ ଉତ୍ପୀଡ଼ନ କରିବାରେ ଲଗିଚନ୍ତି, ଏହି ବୁଢ଼ୀ ବୟସରେ ମଧ୍ୟ ତାକୁ ଦୁଆର ଦୁଆର ବୁଲି ସେମାନଙ୍କ ଘରେ ଯାଇ ମଜୁରି ଖଟିବାକୁ ପଡୁଚି । ଅବଶ୍ୟ କେହି ତା'ର ଭର୍ତ୍ସନାବାକ୍ୟ ଗୁଡ଼ାକର ଜବାବ ଦେଉନଥାନ୍ତି । ଶେଷକୁ ନିରସ୍ତ ହୋଇ ସେ ଆନ୍ଦ୍ରେଜ୍ ଓ ଆଉ କେତେଜଣ ଯୁବକଙ୍କ ସହିତ କମାରପୁଅ ବସିଥିବା ସାନ ଅନ୍ଧାରୁଆ କୋଠରି ଭିତରକୁ ଚାଲିଗଲା ।

ଅନ୍ଧାରୁଆ ଓଭରୁ ଗୋଟିଏ ଦୀପ ଟଙ୍ଗା ହୋଇ ମିଞ୍ଜିମିଞ୍ଜି ଜଳୁଚି, ଅଲରା କହରା ବାଳ ଉପରେ ସେହି ଦୀପର ହଳଦିଆ ଆଲୁଅ ବର୍ଷିହୋଇ ପଡୁଚି । ଟେବୁଲ ଉପରେ କହୁଣୀ ଭରା ଦେଇ ଲୋକମାନେ ଗୋଲହୋଇ ବସିଚନ୍ତି । ସମସ୍ତଙ୍କର ଆଖି କମାର ପୁଅ ଉପରେ ଯାଇ ନିବଦ୍ଧ ରହିଚି । ବଡ଼ ଗମ୍ଭୀର ଓ ସତର୍କ କଣ୍ଠରେ କମାରପୁଅ କ'ଣ ସବୁ କଥା କହିବାରେ ଲଗିଚି । କେତେବେଳେ ସେ ଆଗକୁ ଉହୁଙ୍କି ପଡ଼ି ହାତକୁ ଲମ୍ବାଇ ଦେଉଚି ତ ପୁଣି ଆଉ କେତେବେଳେ ହାତମୁଠାକୁ ଭାରି ଜୋରରେ ଟେବୁଲ ଉପରେ ଆଣି ବାଡ଼େଇ ଦେଉଚି ।

ଜୁବା ଆସି ସିଧା ଯେଉଁଠି ମଦ୍ୟ ବିକ୍ରୟ ଓ ମଦ୍ୟପାନ ଚାଲିଥିଲା, ସେଠାରେ ଆସି ପହଞ୍ଚିଲା । ସରାଇଖାନାର ଇହୁଦୀ ମାଲିକ ଯ୍ୟାଙ୍କେଲ୍ ସେଠି ହାତ ଉପରୁ କମିଜ ଉପରକୁ ଉଠାଇ ଖୋସିଦେଇ ବସିଥାଏ । କାରଣ

ଆଜି ସତରେ ଭାରି ଗରମ ହେଉଚ । ଏପାଖ ସେପାଖ ଦୋହଲି ଦୋହଲି ଆପଣା ହାତରେ ଧରିଥିବା ଗୋଟାଏ ବହିରୁ ସେ ଏକମନ ହୋଇ କ'ଣସବୁ ପଢ଼ିବାରେ ଲଗିଥାଏ ।

ଖୋଜ ପକାଇ ଲୁବା ଆଗକୁ ଆସିଲା, ଆପଣାର ପଇସାତକ ଆଉ ଥରେ ଗଣିନେଲା ଓ ନଖ ଅଗରେ ମୁଣ୍ଡଟାକୁ ଟିକିଏ କୁଣ୍ଡାଇ ଦେଇ ଯାଇ ଥିରହୋଇ ଛିଡ଼ାହେଲା । ଶେଷକୁ ତା'ଉପରେ ଦୃଷ୍ଟି ପଡ଼ିଦିବା ମାତ୍ରକେ ଯ୍ୟାଙ୍କେଲ୍ ଆଗରେ ରଖା ହୋଇଥିବା ଗିଲାସଗୁଡ଼ାକ ଥରେ ଦୁଇଥର ଟିଣ୍ ଟିଣ୍ କରି ବଜାଇ ଦେଲା, ମାତ୍ର ଏପରି କରିବା ଦ୍ୱାରା ତା'ର ପ୍ରାର୍ଥନା ଓ ମୁଣ୍ଡ ହଲାରେ କୌଣସି ପ୍ରକାରେ କୌଣସି ବ୍ୟାଘାତ ହେଲାନାହିଁ ।

"ମୋତେ ସେଥିରୁ ଅଧପାଏ ଦିଅ, କିନ୍ତୁ ପାଣି ମିଶାଇବା ଦରକାର ନାହିଁ ।"— ଲୁବା ଶେଷକୁ ବରାଦ ଦେଲା । ଯ୍ୟାଙ୍କେଲ୍ କିଛି ନ କହି ବାଆଁ ହାତ ବଢ଼ାଇ ଦେଇ ପଇସା ମାଗିଲା ଓ କଳଙ୍କି ଲଗିଯାଇଥିବା ପଇସାତକ ଗୋଟାଏ ହାତ ବାକ୍ସ ଭିତରକୁ ପକାଇ ଦେଇ କହିଲା :

"ଗିଲାସରେ ଦେବ ?"

"ଗିଲାସରେ ଦେବନାହିଁ ତ ଆଉ କୋଉଥିରେ ଦେବ ?"— ଲୁବା ଜବାବ ଦେଲା ଓ ତା'ପରେ ପାନାଗାରର ଗୋଟିଏ କଣକୁ ଯାଇ ସେଇଠି ବସି ପଡ଼ିଲା ଗିଲାସଟିକୁ ନିଃଶେଷ କରି ପିଇ ଶେଷ କରିଦେଲା । ତା'ପରେ ଥୁ' ଥୁ' କେଇ ନଣ୍ଡା ଛେପ ପକାଇ ଦେଇ ସେ ଘରିଆଡ଼କୁ ଆଖି ପକାଇଲା । ଦ୍ୱିତୀୟ ଗିଲାସଟି ଶେଷ ହେବା ଉତ୍ତାରୁ ସେ ବୋତଲଟାକୁ ଆଲୁଅକୁ ଟେକି ଦେଇ ଅନାଇଲା । ବୋତଲରେ ଆଉ ଟୋପାଏ ହେଲେ ମଦ ବାକି ନାହିଁ, ଖାଲି ବୋତଲଟା ଧରି ସେ ପୁଣି ଯ୍ୟାଙ୍କେଲ ପାଖରେ ଆସି ପହଞ୍ଚିଲା ।

"ଆଉ ବୋତଲ ଦିଅ,— ବଡ଼ାଏ ଧୂଆଁ ପଙ୍କ ବ ।"— ସଦ୍ୟ ପାନ କରିଥିବା ଭଡ୍‌କାର ଉଷ୍ଣତାରେ ବେଶ୍ ସତେଜ ଅନୁଭବ କରୁଥିବା ପରି ବେଶ୍ ଗରମ ଗଳାରେ ସେ ପୁଣି ବରାଦ ଦେଲା । ତା'ର କଥାରୁ ମନେ ହେଉଥାଏ, ଯେପରି ସଂସାରରେ କାହାରି ପ୍ରତି ତା'ର ଏତେ ଟିକିଏ ହେଲେ ଭୟ ନାହିଁ ।

"କ'ଣ ଆଜି ମଜୁରି ମିଳୁନାହିଁକି କୁବା ?"

"ଆଜି କିପରି ମିଳିବ ? ଆଜି କ'ଣ ନୂଆ ବର୍ଷ କି ?"

"ଟିକିଏ ଏଥିରୁ ହେଉ !"

"ନା— ସେଇଟା ମୋତେ ଭଲ ଲାଗେ ନାହିଁ ।"— କହି ସେ ଆପଣାର ପଇସା ଗଣୁଗଣୁ ମଦ୍ୟଭାଣ୍ଡ ଉପରେ ଖେଦକ୍ଲିଷ୍ଟ ଦୃଷ୍ଟି ନିକ୍ଷେପ କରିବାକୁ ଲାଗିଲା ।

"ଆରେ ପଇସା ନ ଥିଲେ କ'ଣ ହେଲା ? କୁବା କ'ଣ ଆଉ କୋଉ ଗାଆଁର ହୋଇଛି ?"

"ନା — ଥାଉ ! ଥରେ ଉଧାର ଆରମ୍ଭ ହେଲେ ସର୍ବନାଶ ବ୍ୟତୀତ ଆଉ ଅନ୍ୟ ଗତି ନାହିଁ ।" ସେ ଭାରି ଶୁଷ୍କ ଭାବରେ ଉତ୍ତର ଦେଲା ।

ତଥାପି,— ମଦ ବୋତଲଟା ଠିକ୍ ତା'ର କହୁଣିପାଖକୁ କରି ଥୁଆ ହୋଇଥାଏ । ନା— ଆଜି ଆଉ ଏଥିରେ କୌଣସି ଲୋଡ଼ାନାହିଁ ଭାବି ସେ ବାହାରକୁ ଯିବାକୁ ବସିଥିଲା । କିନ୍ତୁ ମଦ ବୋତଲରୁ ଆସୁଥିବା ମହମହ ଗନ୍ଧଟା ଶେଷକୁ ତାକୁ ଫାନ୍ଦ ଭିତରେ ପକାଇ ଦେଲା ଏବଂ ସେହି ମୁହୂର୍ତ୍ତିଟିର ଉତ୍ତେଜନାରେ ପଡ଼ିଯାଇ ସେ ଆଉ ଗୋଟାଏ ବଡ଼ ବୋତଲ କିଣି ଆଣିଲା ।

"କିରେ, କ'ଣ ଜଙ୍ଗଲରେ କାମ କରି ଏଇ ପଇସା ପାଇଥିଲୁ କି ?" ଫୁର୍ତ୍ତି ଘୋରଡ଼େଇ ହୋଇ ଫ୍ରାଙ୍କେଲ୍ ପଚାରିଲା ।

"ନାଇଁ,—ଜାଲ ବସାଇ ଚଢ଼େଇ ଧରିଥିଲି । ପାଦ୍ରୀଙ୍କ ଘରେ ନେଇ ଛଅଟା ଚଢ଼େଇ ଦେଇ ଆସିଲି ଯେ ସେ ମୋତେ ସୁଉକାଏ ପଇସା ଦେଇଥିଲେ ।"

"ଛଅଟା ଚଢ଼େଇକୁ ମୋଟେ ସୁଉକାଏ ପଇସା ? କାହିଁକି, ମୁଁ ତ ଅନେକ ବେଶୀ ଦେଇଥାନ୍ତି !"

"କିନ୍ତୁ ଚଢ଼େଇ ମାଉଁସ କ'ଣ ପୂଜାଭୋଜିରେ ଲାଗେ କି ?"— କୁବା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ନ ଲାଗିଲେ ଏବେ ସେଥିରେ କ'ଣ ଅଛି ? ତୁ ଆଉ ଯେତେବେଳେ ଚଢ଼େଇ ଧରିବୁ, ମୋ ପାଖକୁ ନେଇ ଆସିବୁ । ଦେଖିବୁ ମୁଁ ତୋତେ

କେତେ ପଇସା ଦେବ ! ଆଉ ଯୋଉ ଶେଷ ବୋତଲଟା ତୁ ପିଇଲୁ, ସେଇଟା ବାକି ରହିଲ, ବୁଝିଲୁ ?"

"ଫ୍ରାଙ୍କେଲ୍, ତୁ ସତ କହୁଚୁ ମୋତେ ବେଶୀ ପଇସା ଦେବୁ !"

"ମୋ କଥାରେ କେବେ ଏପାଖ ସେପାଖ ହୁଏ ନା ଆଜି ହେବ ? ସେଇ ଛଅଟିଯାକ ଚଢେଇ ଆଣି ମୋତେ ଦେଇଥିଲେ ତୋତେ ଅଧପାଆ ବୋତଲରେ ଦୁଇବୋତଲ ନୁହେଁ, ଠିକ୍ ଗୃର ବୋତଲ ପିଇବାକୁ ମିଳିଥାନ୍ତା । ତା'ସହିତ ପାଉଁରୁଟି ଓ ମାଛ ଖାଇବାକୁ ମିଳିଥାନ୍ତା । ତମ୍ବାଖୁ ମଧ୍ୟ ମିଳିଥାନ୍ତା ବୁଝିଲୁ ?"

ହଁ, ଅଧପାଆ ବୋତଲରେ ଗୃର ବୋତଲ, ରୁଟୀ, ମାଛ,— ମୁଁ କ'ଣ ନିର୍ବୁଦ୍ଧିଆ ହୋଇଚି ଯେ ଏତକ ହିସାବ କରିପାରିବି ନାହିଁ ?" — ଭଡ୍କାର ନିଶା ତାକୁ ସେତେବେଳକୁ ଜାବୁଡ଼ି ଧରି ଆସିଲାଣି ।

"ତେବେ ତୁ ଚଢେଇ ଧରିଲେ ଆଉ ମୋ'ପାଖକୁ ଆଣିବୁ ?"

"ହଁ, ହଁ, ଆଣିବି । କିନ୍ତୁ ମୋ' ହାତରେ ଗୋଟାଏ ବନ୍ଧୁକ ଥିଲେ ଆଉ କୌଣସି ଚିନ୍ତା ନ ଥିଲା ।" ତା'ର ମୁଣ୍ଡ ଭିତରେ ମଦର ନିଶାଟା ଟିକିଏ ଗୁଡ଼ୁ ଗୁଡ଼ୁ ଯାଉଥିଲା ପରି ମନେ ହେଉଥାଏ । ସେ ପୁଣି ହିସାବ କରି କହିଲା— "ମେଣ୍ଢାଗୁଳର କୋଟ୍‌ଟା ପଡ଼ିବ ପାଞ୍ଚ ରୁବଲ, ବୁଟ୍ ଜୋତା ହଳକ ତିନି ରୁବଲ୍ । ଏଣେ କମାର ପୁଅ କହୁଚି ପାଞ୍ଚ ରୁବଲ୍ ଦେଲେ ଯାଇ ସେ ବନ୍ଧୁକ ଗଢିଦେବ ।"— ବଡ଼ ପାଟିରେ କଥା କହି ସେ ଗାଇବାରେ ଲାଗିଥାଏ ।

ଚକ୍‌ଖଡ଼ିରେ କ'ଣସବୁ ହିସାବ କରି ସାରିବା ପରେ ଫ୍ରାଙ୍କେଲ୍ ତା'ର କାନ ପାଖରେ କହିଲା : "ତୁ ହରିଣ ମାରିପାରିବୁ ?"

"କ'ଣ ବାଧାରେ ମାରିବି ? ବନ୍ଧୁକ ସିନା ଥିଲେ ମାରନ୍ତି !"

"ତୋତେ ଭଲ କରି ବନ୍ଧୁକ ମାରି ଆସେ ତ ?"

"ତୁ ଇହୁଦୀ କିଛି ଜାଣିନାହୁଁ । ଗାଆଁଟାଯାକ ଲୋକ ସମସ୍ତେ ଜାଣିଚନ୍ତି । ଗତବର୍ଷ ମୁଁ ସାଆନ୍ତମାନଙ୍କ ସହିତ ଶିକାରକୁ ଯାଇଥିଲି, ମୋ' ଗୋଡ଼ରେ ମଧ୍ୟ ଗୋଟାଏ ଗୁଳିଖଣ୍ଡେ ଆସି ବାଜିଥିଲା । ହଁ, ହଁ, ମୋତେ ଭଲକରି ବନ୍ଧୁକ ମାରି ଆସେ ।"

"ଆଚ୍ଛା, ମୁଁ ତୋତେ ବନ୍ଧୁକ ଦେବି, ବାରୁଦ ଦେବି, ତୋର ଯେତେ ଯାହା ଦରକାର ହେବ, ମୁଁ ସବୁ ଦେବି । କିନ୍ତୁ ଏଥିକି ଗୋଟିଏ ସର୍ତ୍ତ ରହିବ ଯେ ତୁ ଯାହା ଶିକାର କରିବୁ, ସବୁ ଆଣି ମୋ' ପାଖରେ ପହଞ୍ଚାଇବୁ । ହରିଣ ମାରି ଆଣି ଦେଲେ ତୋତେ ଗୋଟାଏ ରବଲ୍ ମିଳିବ । ବୁଝିଲୁ ? ବାରୁଦ ପାଇଁ ଅବଶ୍ୟ ମୋତେ କିଛି ଅଧିକ ପଇସା ଦେବାକୁ ପଡ଼ିବ । ମୁଁ ତାକୁ ଅଳପ ଅଳପ କରି ଶିକାର ବାବଦରୁ କାଟି ନେଉଥିବି । ହଁ, ବନ୍ଧୁକଟାକୁ ମରାମତି କରିଦେବା ପାଇଁ ତୋତେ ଆହୁରି ଅଧଡଜନିଏ ଯଅ ଦେବାକୁ ହେବ ।"

"ଗୋଟାଏ ହରିଣ ପାଇଁ ଗୋଟାଏ ରବଲ୍ ?— ତୁ କ'ଣ ବାଇଆ ହେଲୁ ନା କ'ଣ ?"

ସ୍ୱାଙ୍କେଲ୍ ଗୋଟି ଗୋଟି କରି ତାକୁ ସବୁ ବୁଝାଇ ଦେଲା । କୁବା କେବଳ ଗୋଟିଏ ବିଷୟ ଛଡ଼ା ଆଉ କିଛି ବୁଝି ପାରିଲା ନାହିଁ ।

"ଘୋଡ଼ା ଦାନାରୁ କାଟି ମୁଁ ତୋତେ ଯଅ ଆଣି ଦେବି ? ନାଇଁ, ନାଇଁ,— ସେ କଥା ମୋ ଦ୍ୱାରା ହୋଇ ପାରିବ ନାହିଁ ।"

"ନା— ସେ କଥା କାହିଁକି କରିବୁ ? କୋଠିରେ ଦରେ କ'ଣ ଖାଲି ଘୋଡ଼ା କୁଣ୍ଡରେ ଯଅ ଅଛି, ଆଉ କୋଉଠି ନାହିଁ ?"

"କିନ୍ତୁ ତାହା........" ଆଶ୍ଚର୍ଯ୍ୟ ହୋଇ କୁବା ସ୍ୱାଙ୍କେଲ୍‌ର ମୁହଁକୁ କଟମଟ କରି ଅନାଇଲା ଓ ତା' କଥାର ମତଲବ ବୁଝିବାକୁ ଚେଷ୍ଟା କଲା ।

"ଆରେ, ସବୁ ଗୃହକର ସେଇ କଥା କରୁଛନ୍ତି ନା ମୁଁ କ'ଣ କିଛି ନୂଆ କଥା କହୁଛି ? କୋଠିଆମାନେ ଆପଣା ହାତ ଖରଚ ପାଇଁ ଏତେ ପଇସା କପରି ପାଆନ୍ତି, ସେକଥା କ'ଣ ତୁ କେବେହେଲେ ଜାଣିବାକୁ ଚେଷ୍ଟା କରି ନାହୁଁ ? ଧୂଆଁ ଖାଇବା ଖରଚ, ଭଦ୍‌କା ପିଇବା ଖରଚ, ରବିବାରକୁ ରବିବାର ନାଚ ଘରେ ନାଚିବାର ଖରଚ ସେମାନେ କୁଆଡୁ ଯୋଗାଡ଼ କରନ୍ତି ?"

"କ'ଣ ହେଲା ? ତୁ ଶ୍ରେଷ୍ଠ ଲୋକ କ'ଣ କହିଲୁ ? ମୋତେ ଚୋର ବୋଲି ପାଇଛୁ, ନା ?"— ଟେବୁଲ୍ ଉପରେ ହାତ ବାଡ଼େଇ କୁବା ଗର୍ଜନ

ଯାଉ କହିଲା । ତା' ହାତମାଡ଼ର ଆଘାତରେ ଗିଲାସଗୁଡ଼ାକ କମ୍ପି ଉଠିବା ପରି ମନେହେଲା ।

“ଲୁବା, ମୋ' ସହିତ କଜିଆ କରିବାର ମନ ନାହିଁ କି କରୁଛ, କହିଲୁ ? ତେବେ ଭଲରେ ଭଲରେ ମୋ' ପଇସାତକ ଗଣିଦେଇ ଆପଣା ବାଟେବାଟେ ଚାଲିଯାଅ !”

କିନ୍ତୁ ଲୁବା ପଇସା ଦେଲାନାହିଁ କି ସେଠାରୁ ଗଲାନାହିଁ । ତା' ପାଖରେ ତ ଫଟା ପାହୁଲାଟାଏ ବି ନାହିଁ;— ଆଗରୁ ମଧ୍ୟ ଇହୁଦୀର କେତେଗୁଡ଼ାଏ ପଇସା ବାକୀ ରହିଛି । ତେଣୁ ହିଁ କି ଚୁଁ ନକରି ସେ ଘଡ଼ିକପାଏ ଟେବୁଲଉପରେ ହାତଭରା ଦେଇ ତଳକୁ ମୁହଁ ପୋତି ଠିଆ-ହୋଇ ରହିଲା । ତା'ର ଅବସ୍ଥା ଦେଖି ୟାଙ୍କେଲ୍ ସମ୍ଭବତଃ ଦୟା ପରବଶ ହୋଇ ତା'ର ଗିଲାସରେ ଆହୁରିକିଛି ମଦ ଢାଳିଦେଲା । ପାଣିମିଶା ନୁହେଁ, ଏକାବେଳେକେ ଖାଣ୍ଟି ମଦ । ଏବଂ ତାକୁ ପଦେହେଲେ କିଛି କହିଲାନାହିଁ ।

ଇତ ମଧ୍ୟରେ ସରାଇଖାନାରେ ଆହୁରି ଅନେକ ଲୋକ ଆସି ଉପସ୍ଥିତ ହୋଇ ସାରିଥିଲେ । ମୁହଁସଞ୍ଜ ହୋଇ ଆସିଲାଣି । ଘରଭିତରେ ବତୀ ଲଗି-ସାରିଲାଣି । ସଂଗୀତର ଝଙ୍କାର କ୍ରମେ ସବେଗ ହେବାକୁ ଆରମ୍ଭ କରୁଛି, ଲୋକମାନଙ୍କର କୋଳାହଳ ମଧ୍ୟ କ୍ରମେ ବଢିବାରେ ଲାଗିଛି । ଲୋକମାନେ ମେଳାମେଳା ହୋଇ ମଦ୍ୟ ବିପଣି ପାଖରେ, କାନ୍ଥ କଡରେ ବା ଘର-ମଝିରେ ବୁଲିବାରେ ଲାଗିଛନ୍ତି । ସେମାନେ କେତେଜଣ କଥାବାର୍ତ୍ତା ପକାଇଛନ୍ତି, କେତେପ୍ରକାର ମୁଖମୁଦ୍ରା କରି କଥା କହି ଚାଲିଛନ୍ତି, ପୁଣି କେଉଁମାନେ ଏକାଠି ମଦ ପିଇବାରେ ବ୍ୟସ୍ତ ଅଛନ୍ତି । କିନ୍ତୁ କେବଳ ମଝିରେ ମଝିରେ ମଦପିଆ ହେଉଛି । ସବୁବେଳେ ମଦ ପିଇବାକୁ ସମ୍ବଳ ବା ନାହିଁ ? ସେମାନେ ତ ଏଠାକୁ ମଦ ପିଇ ପଇସା ଉଡ଼ାଇଦେବାକୁ ଆସି-ନାହାନ୍ତି । ସାଇ ପଡ଼ଶାର ଲୋକମାନଙ୍କ ସହିତ ଏକାଠି ମିଶି ଦି'ପଦ ଖୁସିଗପ ହେବେ, ଗାଆଁର ଦି'ଖବର ଜାଣିବେ,— ଏଠାକୁ ଆସିବାରେ ସର୍ବପ୍ରଧାନ ଉଦ୍ଦେଶ୍ୟ ହେଲା ତାହାହିଁ । ଆଜି ରବିବାର,— ବିଶ୍ରାମଦିନ,— ଆଜି କାନ ମେଲାକରି ଦି' ମୁହଁରୁ ରସିକଥା ଶୁଣିବାରେ ବା ବନ୍ଧୁ ବାନ୍ଧବ

ମେଳରେ ଦୁଇଚାରି ଗିଲାସ ମଦ ପିଇବାରେ କୌଣସି ପାପ ନାହିଁ ।
ଅବଶ୍ୟ ସୀମା ଭିତରେ ରହି ଭଗବାନଙ୍କର କୌଣସି ପ୍ରକାରେ କୌଣସି
ଅସମ୍ମାନ ନକରି ଏସବୁ କଲେ ହେଲା ! ଖୋଦ୍ ପାଦ୍ରୀ ମଧ୍ୟ ଏସବୁଥିରେ
କେବେହେଲେ କୌଣସି ଆପତ୍ତି କରନାହାନ୍ତି । ମଣିଷ କଥା କାହିଁକି
ପଡ଼ିବ, ଘରର ପଶୁ ମଧ୍ୟ ସ୍ୱଭାବତଃ ଦିନମାନର କାମ ପରେ କେତେ ଖୁସି
ହୁଏ, କେତେ ଉଶ୍ୱାସ ହୋଇ ବିଶ୍ରାମ ନେବାକୁ ଯାଏ ! କିଛି ସମୟ ପରେ
ବୟସ୍କ କେତେଜଣ ଆସି ଟେବୁଲ ଚୁରି ପାଖରେ ବସିଲେ, ସେମାନଙ୍କ
ସହିତ କେତେଜଣ ସ୍ତ୍ରୀ ଲୋକ ମଧ୍ୟ ଆସି ସେହିଠାରେ ବସିଲେ । ସ୍ତ୍ରୀଲୋକ-
ମାନେ ଆସି ନାଲିଆ କୁରୁତା ଉପରେ ନାଲିଆ ଝାଲ୍ଟଣମାନ ବାନ୍ଧି
ଆସିଚନ୍ତି, ଅନାଇଦେଲେ ଦେଳକୁ ଠିକ୍ ଗୋଟିଏ ଗୋଟିଏ ହଲିହକ୍
ଫୁଲପରି ଦେଖାଯାଉଚନ୍ତି । ସମସ୍ତେ ଏକାବେଳେକେ ତୁଣ୍ଡ ଖୋଲିଦେଇ
କେତେରକମର କଥାବାର୍ତ୍ତା ହେବାକୁ ଲଗିଲେ । ସେମାନଙ୍କର ତୁଣ୍ଡଶବ୍ଦରେ
ଘରଟାଯାକ ପୂର୍ଣ୍ଣ ହୋଇ ଜଙ୍ଗଲ ଭିତରୁ ପରି ସୁଁ ସୁଁ ଶୁଭିଲା । ଲୋକ-
ମାନେ ଡଗଡ଼ଗ ହୋଇ ପାହୁଲ ପକାଇ ଏପାଖ ସେପାଖ ହେଉଥିବାବେଳେ
ଗହମ ବାଡ଼ିଆର ପାହାର ପଡୁଥିବାପରି ମନେହେଲା । ଏଣେ ଏତିକବେଳେ
ରିପରାଗର ଉପକ୍ରମ କରି ସଂଗୀତଧ୍ୱନି ଶୁଣାଗଲା ।

ସେଇଠୁ ନାଚ ଆରମ୍ଭ ହେଲା । ଅଜ ନାଚବାବାଲଙ୍କର ସଂଖ୍ୟା
ଆଦୌ ଖୁବ୍‌ବେଶୀ ନଥିଲା । କିନ୍ତୁ ସେମାନେ ଏପରି ସାଗ୍ରହ ଅହ୍ଲାଦରେ
ଭୂଇଁ ଉପରେ ଆପଣାଆପଣାର ପାଦ ପକାଇବାକୁ ଲଗିଲେ ଯେ ଘରକୋଠା
ଦୁଲଦୁଲ ହୋଇ ଥୁଙ୍କାଗଲା, ଟେବୁଲ କମ୍ପିଲା, ବୋତଲବୁଡ଼ାକ ପରସ୍ପର
ସହିତ ଲଚିହୋଇ ଝଣଝଣ ବାଜିବାକୁ ଲଗିଲେ,— କୋଉଠି କାଚଗିଲାସ
ଉପରୁ ତଳେ ପଡ଼ି ଚୂନା ହୋଇଗଲା ।

ତଥାପି ଆଜକାର ନୃତ୍ୟୋତ୍ସବ ଆଦୌ ଜମିଲପରି ମନେହେଲାନାହିଁ ।
ହଁ, ଯଦି କୌଣସି ବିଶେଷ ଦିନ ହୋଇଥାନ୍ତା, ଗୀର୍ଜାରେ ଯଦି କୌଣସି
ବିବାହ ବା ନବଜ ଅନୁଷ୍ଠିତ ହେଉଥାନ୍ତା ! ଆଜି ସେସବୁ କିଛି ନାହିଁ,
କେବଳ ଟିକିଏ ଆନନ୍ଦ ପାଇବାକୁ ଓ ଆସୁଥିବା ସପ୍ତାହର କାମ ଆରମ୍ଭ-

ହେବା ପୂର୍ବରୁ ଟିକିଏ ଗୋଡ଼ହାତ ଖେଳାଇ ନେବାକୁ ଆଜି ଏମାନେ ଏଠାରେ ଆସି ରୁଣ୍ଡ ହୋଇଛନ୍ତି । ହଁ, ଆଜିର ସମୂହ ଭିତରେ କେତୋଟି ଅଳ୍ପବୟସ୍କ ଟୋକା ମଧ୍ୟ ଅଛନ୍ତି, ଶରତକାଳ ସରିଗଲେ ଏମାନେ ସୈନ୍ୟ ବାହିନୀରେ ଭର୍ତ୍ତି ହେବାକୁ ଯିବେ । ଯୁଦ୍ଧକୁ ଯିବାର ଦୁଃଖଶଙ୍କାକୁ ଭୁଲିଯିବାକୁ ସେମାନେ ଆଜି ମନବୋଧ କରି ମଦ ପିଇଛନ୍ତି । ଏପରି ହେବା ଅତି ସ୍ୱାଭାବିକ, କାରଣ ଆଉ ମାସ କେଇଟାଦିନ ଗଲେ ସେମାନେ ଘରଛାଡ଼ି ବିଦେଶ ଯିବେ, ବିଦେଶୀଙ୍କ ସହିତ ରହିବେ ।

ପଧାନଙ୍କର ସାନଭାଇ ସେଇ ଟୋକାଟାର ପାଟି ଆଜି ସବୁଠାରୁ ବେଶୀ ଅଜାଡ଼ିହୋଇ ପଡ଼ୁଛି । ତା'ପଛକୁ ମାର୍ଟିନ୍ ବସ୍ଥାଲେକ୍, ଥୋମାସ୍ ସିକୋରା ଆଉ ପାଭ୍‌ଲ୍ ବୋରନା ଇଏ ଆନ୍ଦ୍ରେକ୍‌ର ଲେଖାଯୋଖା ଭାଇ ହିସାବ ହେବ । ଆଜି ସେ ମଧ୍ୟ ସରାଇଘରକୁ ଆସିଛି, କିନ୍ତୁ ସେ ନାଚରେ ଯୋଗ ଦେଇନାହିଁ, ସେପାଖର ଶ୍ରେଷ୍ଠ କୋଣ୍ଟିରେ କମାରପୁଅ ଓ ତା'ର ସାଥୀମାନଙ୍କ ସାଙ୍ଗରେ ଯାଇ ବସିଛି, ଓ ସବାଶେଷକୁ ଫ୍ରାନେକ୍, ପେଡର୍ଶିଆ ଘରର ସେଇ ଟୋକାଟି ଦେଖିବାକୁ ଟିକିଏ ବାଙ୍ଗରା । ସେଇ ସବୁଠାରୁ ଅଧିକ ଚବରଚବର ହେଉଛି, ଥଟ୍ଟାତାମସାରେ ସେ କୌଣସି ବାଡ଼ବତା ମାନୁନାହିଁ । ପାଗଳଙ୍କପରି ସେ ଏପରି ଭାବରେ ଟୋକ୍‌ଙ୍କ ପଛରେ ଲାଗିଥାଏ ଯେ ତା'ର ମୁହଁଁଉପରଟା କେତେବେଳେ ହେଲେ ଖଣ୍ଡିଆ ଖାବରା ହେବାରୁ ବା ଅଞ୍ଜୁଡ଼ି ହୋଇଯିବାରୁ ନିସ୍ତାର ପାଇ ପାରେନାହିଁ । ଆଜି ଆରମ୍ଭରୁ ହିଁ ସେ ନିଶାରେ ଖାଲି ଟଳଟଳ ହେଉଛି, ବର୍ତ୍ତମାନ ଯାଇ ସେ ମୋଟୀ ମାଗ୍‌ଡ଼ା ପାଖରେ ମଦବପଣିରେ ଠିଆହୋଇଛି, ମାଗ୍‌ଡ଼ାର ପେଟରେ ଛଅ ମାସର ଗୋଟାଏ ପିଲା ।

ଥରେ ପାଦ୍ରୀ ସମସ୍ତଙ୍କ ଆଗରେ ଗୀର୍ଜାଘରେ ତାକୁ ଏ ବିଷୟରେ ଆକଟ କରି କହିଥିଲେ ଓ ମାଗ୍‌ଡ଼ାକୁ ବାହାହେବା ଲାଗି ତାକୁ ବାରବାର କହିଥିଲେ । କିନ୍ତୁ ଫ୍ରାନେକ୍ ତାଙ୍କର ଆଦେଶ ମାନିଲାନାହିଁ । କାରଣ ଆଉ କେତେଟାଦିନ ଗଲେ ତ ସେ ସୈନ୍ୟ ବାହିନୀରେ ଯୋଗ ଦେବ, ଗୋଟାଏ ଭାରିଯା ବେକରେ ବାନ୍ଧି ସେ ସେଠାରେ କ'ଣ କରିବ ?

ମାଗ୍ରେଟ୍ ତାକୁ ଗୋଟାଏ କଣକୁ ଡାକନେଇ ଛଳଛଳ କଣ୍ଠରେ କ'ଣ ସବୁ କହିବାରେ ଲଗିଥାଏ । କିନ୍ତୁ ଫ୍ରାନେକ୍ ସବୁଦିନ ପରି ଆଜିମଧ୍ୟ ବିହ୍ୱଳ ମୁହଁରେ ଉତ୍ତର ଦେଉଥାଏ ।

"ତୁ ଗୋଟାଏ ଭାରି ବୋକା ମଣିଷ । ସତରେ କହିଲ୍ , ମୁଁ କ'ଣ ତୋତେ ଲୋଭ ଦେଖାଇଥିଲି ? ଝୁଅାକୁ ବାଇଁଲଗି କାଲିବେଳକୁ ପଚ୍ଛେ ଯାହା ଖରଚ ହେବ ମୁଁ ଦେବି, ମୋର ସାଖ୍ୟ ଅନୁସାରେ ପଚ୍ଛେ ତୋ'-ହାତରେ ଗୋଟାଏ କି ଦୁଇଟା ରବଲ୍ ମଧ୍ୟ ଦେବି ।"— ନିଶାର ପ୍ରକୋପରେ ସେ ଆଉ ପ୍ରକୃତିସ୍ଥ ଅବସ୍ଥାରେ ନଥାଏ । ସେଇ ଖିଆଲରେ ସେ ମାଗ୍ରେଟ୍‌କୁ ଏପରି ବଳାତ୍କାର କରି ଠେଲିଦେଲାଯେ ବିଚାରୀ ଯାଇ କୁବା ପାଖରେ ମାଟିଉପରେ ଛଞ୍ଚାଡ଼ିହୋଇ ପଡ଼ିଲା । ସେତେବେଳକୁ ପାଉଁଶ ଉପରେ ମୁଣ୍ଡଦେଇ କୁବା ଉନ୍ଦେଇ ପାଖରେ ଶୋଇଥାଏ । ଏହି କାଣ୍ଡଟା ପରେ ଫ୍ରାନେକ୍ ଆମ୍ବ୍ରୋଜ୍ ଓ ଅନ୍ୟ ଗୃହୀଙ୍କ ସହିତ ପୁଣି ମଦ ପିଇବାକୁ ଚାଲିଗଲା । ମଦ ପିଆଇବାର ସର୍ତ୍ତ ହେଉଛି ଯେ ସେମାନେ ତାକୁ ମଦ ପିଆଇବେ ଆଉ ସେ ଯାଇ ଶୀଘ୍ର ସେମାନଙ୍କର ଗହମ ପେଷିଦେଇ ଆସିବ ।

"ଫ୍ରାନେକ୍, ତୁ ଯେତେ ପିଇବାର ପି'ପାରୁଛେ, ମନେକରି ଯେପରି ମୋର ଗହମତକ ଧଅସି ପେଷିଦେଇ ଆସିବୁ । ଘରେ ତା'ର ମାଆ ମୋତେ ଆଉ ବସେଇକରିଠେଇ ଦେଉନାହିଁ । ସେ କହୁଛି ଯେ ଘରେ ଓଷଦ କରିବାକୁ ମଧ୍ୟ ଆଉ ଅଟା ନାହିଁ ।"

ଆମଘରେ ମଧ୍ୟ ଠିକ୍ ସେଇ ଅବସ୍ଥା । ମୋ' ଭାରିଯା ବି ମୋ'ସହିତ ଭାରି ଲଗାଇଛି ।"

ଫ୍ରାନେକ୍ ମଦ ପିଇଲା, ସମସ୍ତଙ୍କୁ ସବୁ ଜବାବ ଦେଲା ଏବଂ ଆପଣାର ପରାକ୍ରମ ବିଷୟରେ ନାନାପ୍ରକାରେ ବାହାଦୁରି କରି କହିବାକୁ ଲଗିଲା । ତା'ର କଥା ଅନୁସାରେ ପେଷଣିଆର ସବୁ ଅଟା ପେଷା ହେଉଛି ବୋଲି ସେ ପାଟିକରି କହିଲା । ତା'କଥା ନମାନି ଆଉ ପେଷଣିଆର ବାଟ କାହିଁ ? ଥରେ ଏପାଖସେପାଖ ହେଲେ ସେ ଏମିତି ସୁନ୍ଦର କରିଦେବ ଯେ ଅଟାଭିତରେ ପୋକ ପଡ଼ିଯିବେ, ତଳେ ଝରଣାରୁ ପାଣି ଶୁଖିଯିବ,

ପୋଖରୀର ମାଛଗୁଡ଼ିକ ମରିଯାଇ ପୋଖରୀ ଭଣଭଣ ଗନ୍ଧ ଛାଡ଼ିବ, ସଂସାରରେ ସବୁ କାମ ଅଚଳ ରହିଯିବ !......

"ଯଦି ମୋ'ଉପରେ ତୁ କୌଣସିଦିନ ଏ ଦାଉ ସାଧିବୁ, ତେବେ ତୋ'ର ସେଇ ମେଣ୍ଢାମୁଣ୍ଡରୁ ମୁଁ ସବୁ କାଳିଡ଼କ ଦୁହିଁ ବାହାର କରିଦେବି, ଜାଣିଥା !— ଦୂରରେ ଥାଇ ସ୍ମିଗୁଣ୍ଟିଙ୍କା ପାଟିକରି କହିଲା । ଯୋଉଠି ଘ ଚିଡ଼ୁଣ୍ଡ ଫିଟାଇବାର ମଉକା ଥାଏ, ସେ ସେଠି ଯାଇ ହାଜର ହୋଇଯାଏ । ତା'ର ଖରଚୁଣ୍ଡକୁ ପ୍ରାଣେ ଭୟକରି କେହିକେହି ଚଳେ ପୋଷେ ଭଡ଼କା ପିଆଇ ତାକୁ ସନ୍ତୁଷ୍ଟ କରିବାକୁ ମଧ୍ୟ ଚେଷ୍ଟା କରନ୍ତି । ଫାନେକ୍ ନିଶା ଖାଇ ଟଳଟଳ ହେଉଥିଲା, ତଥାପି ତା'କଥାରେ ପ୍ରମାଦ ଗଣି ଆଉ ସମ କି ବସ୍ତି ପଦେହେଲେ କିଛି କହିଲା ନାହିଁ । ତା'ର ଯାବତ ଖୋଇ ଓ ସ୍ମିଗୁଣ୍ଟିଙ୍କାଙ୍କୁ ଜଣା ଅଛି । ଚକଣାଳରେ ତାର କାଚ୍ଛପଣ ଗୁଡ଼ାକ ମଧ୍ୟ ତାକୁ ଅଦୌ ଅଛପା ନାହିଁ । ଗତ ଜିତଥିବା ପରି ଖୁସୀଟାଏ ହୋଇ ନିଶାଖୋଳରେ ସ୍ମିଗୁଣ୍ଟିଙ୍କା ଅଣ୍ଟାରେ ଦୁଇହାତ ଲଗାଇ ଜିହ୍ବୁଣି ଦୁଇଟାକୁ ବାହାରକୁ ବାହାର କରିଦେଇ ବାଜୁଥିବା ସଂଗୀତର ତାଳରେ ଗୋଡ଼ ପକାଇ ଓ ହୋ' ହୋ' ଶବ୍ଦକରି ନାଚିବାକୁ ଆରମ୍ଭ କଲା ।

"ମୁଁ ବିଲକୁଲ ସତକଥା କହୁଛି"— ଆରପଟରୁ କମାରପୁଅର ତୁଣ୍ଡ ଶୁଣାଗଲା । "ଠିକ୍ ଏହିକଥା ମଧ୍ୟ କାଗଜରେ ଲେଖାହୋଇ ରହିଛି,— ଏତେଏତେ ଅକ୍ଷରରେ ଲେଖାହୋଇ ରହିଛି । ସଂସାରରେ କୌଣସି ଜାତି ଆମପରି ଏତେ ହୀନମାନ ଜୀବନ ଯାପନ କରୁନାହିଁ । କୌଣସି ଗୋଟିଏ ଜାତି ମଧ୍ୟ ନୁହେଁ । ଆମ ଉପରେ ଆମ୍ଭନ ମାଡ଼ିବସି ଜମିଦାର ଅତ୍ୟାଚାର କରୁଛି, ଏଣେ ପାଦ୍ରୀ ମଧ୍ୟ ଆମ ଉପରେ ହାକିମୀ ଚଳାଉଛି, ସରକାରୀ ଅମଲାମାନେ ମଧ୍ୟ ହାକିମୀ ଚଳାଇଚନ୍ତି । ଆଉ ଆମ ଗଧଗୁଡ଼ାଙ୍କର ଭାଗ୍ୟରେ ଖାଲି କାମ ଖଟିବା, ଉପାସ ରହିବା ଓ ଯାଉଣୁ ଆସୁଣୁ ସ୍ତାକୁତାକୁ ମୁଣ୍ଡ ନୁଆଁଇବା ବ୍ୟତୀତ ଅଉ କିଛି ଲେଖା ହୋଇନାହିଁ ! ମୁଣ୍ଡ ନ ନୁଆଁଇ ଆଉ ଗତି ଅଛି ନା ? ନହେଲେ କେତେବେଳେ ଯେ ଚଟକଣାମାଡ଼ ବସି- ଯିବ, ସେକଥା କିଏ କହିପାରିବ ? ଆମପାଖରେ ନିଜର ବୋଲି କହିବାକୁ

ତେନାଏ ଜମି ମଧ୍ୟ ନାହିଁ; ଏଣେ ଦୁଇଟା ଗାଆଁ ଏକାଠି ମିଶାଇଲେ ଯେତକ ଜମି ହେବ, ଜମିଦାର ପାଖରେ ସେତିକ ଜମି ରହିଛ ! କାଲି କଚେରୀରେ ଲୋକମାନେ କଥାବାର୍ତ୍ତା ହେଉଥିଲେ ଯେ କୁଆଡ଼େ ଆମ୍ଭ-ଦେଶରେ ଯମିବାଡ଼ିର ସାନ ବଣ୍ଟାକୁଣ୍ଟା ହେବାକୁ ଯାଉଚ ।"

"କାହା ଜମି ?"

"ଜମିଦାରମାନଙ୍କର ଜମି, ଆଉ କାହାର ?"

ସ୍ମୁଲ୍ଭିଙ୍କା ମଧ୍ୟ ସ୍ଲାଇଡରେ ସେଠାରେ ଆସି ପହଞ୍ଚିଯାଇଥିଲା । ଟେବୁଲ ଉପରେ ହାତଭରା ଦେଇ ସେ ଦାନ୍ତ ନକୁଟିବାରେ ଲଗିଲା ।

"ଯତେଯେମିତ ଇଏ ଜମିଗୁଡ଼ାକ କାହାକୁ ଦେଇ ପକାଇଥିଲେ ଯେ ବର୍ତ୍ତମାନ ପୁଣି ଛଡ଼ାଇ ନେଇସିବେ ! ଅନ୍ୟମାନଙ୍କର ଜମି ଛଡ଼ାଇ ନେବାରେ ତୁମେ ବାବୁ ବଡ଼ ଓସ୍ତାଦ୍ !

ବୁଢ଼ୀର କଥାକୁ ବେଖାତର କଲପରି କମାର ପୁଅ କହି ଗ୍ଭଲିଥାଏ — "ସେ ଦେଶରେ ଲୋକେ ନିଜ ଦେଶକୁ ନିଜେ ଶାସନ କରୁଚନ୍ତି । ସେ ଦେଶରେ ସମସ୍ତେ ଇସ୍କୁଲକୁ ପାଠପଢ଼ି ଯାଉଚନ୍ତି, ସମସ୍ତେ ସାଆନ୍ତ ମାନଙ୍କ ପରି ନିଜଘରେ ରହୁଚନ୍ତି । ସେ ଦେଶରେ ସମସ୍ତେ ସାଆନ୍ତ ।"

"କୋଉଠି ମ ? କୋଉଠି ଏସବୁ ହେଉଚ ମୁଁ ଶୁଣେ !"—ଟେବୁଲର ସେପାଖକୁ ବସିଥିବା ଆନ୍ତ୍ରେକ୍‌କୁ ସ୍ମୁଲ୍ଭିଙ୍କା ପଚ୍ଛରିଲା ।

"ତେଣେ ଦକ୍ଷିଣରେ, ଆଉଆଉ ଦେଶରେ ।"

ରାଗ ତମତମ ହୋଇ ସ୍ମୁଲ୍ଭିଙ୍କା ଏଡ଼େ ପାଟି କରି କହିଉଠିଲା, ତେବେ କମାର ପୁଅ ଏ ଦେଶ ଛାଡ଼ି ସେଠିକି ଗ୍ଭଲିଯାଉନାହିଁ କାହିଁକି ? ଏଡ଼େ ସାହସିଆ ଚଲାଖି ମଣିଷ, ଦନ ଦ୍ୱିପହରେ ମିଛକଥା କହି ସେ ସମସ୍ତଙ୍କ ଆଖିରେ ଧୂଳି ଦେବାକୁ ବସିଚ ! ଆଉ ତୁମେସବୁ ଏଡ଼କ ବୋକା, ଯେ ତା' କଥାକୁ ସତ ବୋଲି ବିଶ୍ୱାସ କରୁଚ !

"ସ୍ମୁଲ୍ଭିଙ୍କା, ମୁଁ ଭଲରେ ଭଲରେ କହୁଚ ତୁ ଏଠୁ ଗ୍ଭଲିଯାଆ !"

"କାହିଁକି ମ ? ଖାଲି ତୋ'ର କଥାରେ ଗ୍ଭଲିବି ? ଏ ସରାଇଘର କ'ଣ ଏକା ତୋ'ର କି ? ଏଠି ବସିବା ଲଗି ତୋ'ର ଯେତିକି ହକ୍ ଅଛି,

ଆମ ଗଉବଙ୍କର ମଧ୍ୟ ଠିକ୍ ସେତକ ହକ୍ ରହୁଚ । ଏଠି ବସି ତୁ ସମସ୍ତଙ୍କୁ କଥା ଶିଖାଉଚୁ, ନାଇଁ ? ତୋ' କଥା ମୁଁ ଜାଣିନାହିଁ ! ତୁ ପରା ସମସ୍ତଙ୍କ ପଛରେ ନଙ୍ଗନଙ୍ଗ ହେଉଥିବୁ, ସମସ୍ତଙ୍କର ସେବା ଖଟୁଥିବୁ ! ସରକାରୀ ଅମଲଙ୍କର ପାଦ ଗୃହୁଥିବୁ, ଜମିଦାରକୁ ଦେଖିଲେ କୋଣକ ବାଟରୁ ମୁଣ୍ଡରୁ ଟୋପି କାଢି ହାତ ମଳୁଥିବୁ ! ଆଉ ଏଠି ବସି ଡମ ଦେଖାଉଚୁ କାହାକୁ ? ତୋର କଥାଗୁଡ଼ାକ ମତେ ସବୁ ଜଣାଅଛୁ !" ସେ ଆଉ ଅଧିକ କଛୁ କହି ପାରିଲା ନାହିଁ ! କମାରପୁଅ ବସିବା ଆକରୁ ଚହଟି ଆସି ତା'ର ବେଣୀ ପାଖରୁ ଧଇଲ, ଗୋଇଠାଟାଏ ମାଉ ଘରର କବାଟଟାକୁ ଠିଆମେଲା କଉ ଦେଲ ଓ ସେପାଖରେ ଥିବା ବଡ଼ ଘର ଭିତରକୁ ତାକୁ ଠେଲିଦେଲ । ବୁଢ଼ୀ ଯାଇ ସେଘରେ ମାଟି ଉପରେ ମୁହଁମାଡ଼ି ପଡ଼ିଲା ।

ଅଉ କୌଣସି ପ୍ରକାର ଗାଳିମନ୍ଦ ନଦେଇ ସେ ଝାଡ଼ିଝୁଡ଼ି ହୋଇ ତଳୁ ଉଠିଲ ଓ ପାଟିକରି କହିଲ : "ଏ ଗୋଟାଏ ମରଦର ସତେ କେତେ ବଳ ବା ? ଏମିତିଆ ବଳୁଆ ମରଦକୁ ମୁଁ କେବେହେଲେ ଗେରସ୍ତ କରି ନ ଥାନ୍ତି !"

ଶୁଣୁଥିବା ଲୋକମାନେ କଟକଟ ହୋଇ ହସି ଉଠିଲେ । ବୁଢ଼ୀ ଚୁପ୍ ହୋଇ ସେଠାରୁ ଉଠି ଆପଣାର ମନ ଭିତରେ କମାର ପୁଅକୁ ଗାଳିଦେବାକୁ ଗଲା ।

ସରାଇଘରୁ କ୍ରମେ ଲୋକବାକ ଚୁଲିଯିବାକୁ ଆରମ୍ଭ କଲେଣି । ଆଜ ରାତଟା ଅନ୍ଧାରି ଅଣ୍ଡା ଲାଗୁନାହିଁ, ଆକାଶରେ ଜହ୍ନର ଆଲୁଅ ପଡ଼ିଚ । ଶେଷକୁ ସୈନ୍ୟବାହିନୀରେ ଭର୍ତ୍ତି ହେବାକୁ ଯାଉଥିବା ଟୋକାମାନଙ୍କୁ ଛାଡ଼ି ଦେଲେ ସରାଇଘରେ ଆଉ କେହି ରହିଲେ ନାହିଁ । ସେମାନେ ମନ ଆନନ୍ଦରେ ନାନାପ୍ରକାର କୋଳାହଳ କରୁଥାନ୍ତି ଓ ମଦ ପିଇବାରେ ଲଗିଥାନ୍ତି । ନଶାରେ ଟଳଟଳ ହୋଇ ଅମ୍ବ୍ରୋଜ ଆସି ରାସ୍ତା ମଝିରେ ଏଡ଼େ ପାଟିରେ ଗୀତ ଗାଇବାରେ ଲଗିଥାଏ ଓ ରାସ୍ତାର ଏ ପାଖରୁ ସେପାଖକୁ ଦଉଡ଼ିବାରେ ଲଗିଥାଏ ।

କମାର ପୁଅକୁ ନେତା ବୋଲି ମାନୁଥିବା ଲୋକଙ୍କର ଦଳ ମଧ୍ୟ ସେତେବେଳକୁ ସରାଇଘରୁ ଯାଇସାରଲେଣି ।

ଶେଷକୁ ଫ୍ରାଙ୍କେଲ୍ ବଣ୍ଟା ବଜାଇ ଦେବାକୁ ଆରମ୍ଭକଲା । ପରସ୍ପରର ହାତ ଧରାଧରି ହୋଇ ଟୋକାଗୁଡ଼ାକ ଟଳଟଳ ହୋଇ ଘରଭିତରୁ ରାସ୍ତାକୁ ବାହାରିପଡ଼ିଲେ । ସେମାନଙ୍କ ଭିତରୁ କିଏ ଗୀତର ଲହଡ଼ା ଛାଡ଼ୁଥାଏ, କିଏ ବନ୍ଧୁଙ୍କ ପରି ବୋବାଳି ଛାଡ଼ୁଥାଏ,— ସେମାନଙ୍କର ହୋ' ହୋ' ଗୁଣ୍ଡରେ ଡରକି ଯାଇ ଗାଆଁର କୁକୁରଗୁଡ଼ାକ ମଧ୍ୟ ଭୌ' ଭୌ' ଭୁକିବାରେ ଲାଗିଥାନ୍ତି ।

ସେତେବେଳକୁ ମଧ୍ୟ କୁବାର ନିଦ ଭାଙ୍ଗି ନ ଥାଏ । ଶେଷକୁ ଫ୍ରାଙ୍କେଲ୍ ତାକୁ ହାତରେ ହଲାଇ ଉଠାଇବାକୁ ଗଲା । କିନ୍ତୁ ସେ କି ସହଜରେ ଉଠିବା ମଣିଷ ? ନିଦବାଉଳାରେ ହାତଗୋଡ଼ ଛାଟି ସେ ପବନକୁ ବିଧା ମାରିବାକୁ ଲାଗିଲା ।

"ମୋ' ଇଚ୍ଛା ଯେତେବେଳଯାଏ ହେବ, ମୁଁ ଯେତେବେଳଯାଏ ଶୋଇବି । ତୁ ଇହୁଦୀ ମୋତେ କହିବାକୁ କିଏ ? ମୁଁ ହେଉଛି ଖ୍ରୀଷ୍ଟ, ଖ୍ରୀଷ୍ଟ ହେଉଛି ମୋର ଫାନ୍ଦା ! ମୁଁ କଣ ତୋ'ପରି ଠକ ବେପାରୀ ହୋଇଛି ନା କ'ଣ ?"

ଦେହ ଉପରେ ମନ୍ଦାଏ ପାଣି ଆସି ପଡ଼ିଲାପରେ କୁବାର ନିଦ ଭାଙ୍ଗିଗଲା ଓ ସେ ତତ୍‌କ୍ଷଣାତ ଉଠି ବସିଲା । ଚେତା ହେବାପରେ ସେ ଶୁଣିବାକୁ ପାଇଲା ଯେ ଆଜି ସେ କାଳ କରି ଗୋଟାଏ ରବଲ୍‌ର ମଦ ପିଇଛି । ଯେକୌଣସି ପ୍ରକାରେ ତାକୁ ଏହି ପଇସାତକ ଶୁଝିବାକୁ ହିଁ ପଡ଼ିବ । ଭାବିକରି ସେ ବଡ଼ କ୍ଷୁନ୍ନ ହୋଇ ପଡ଼ିଲା ଓ ମନେମନେ ବିସ୍ମିତ ହେବାକୁ ଲାଗିଲା ।

"କଣ ହେଲା, ମୁଁ ଏମିତ କଣ ଖାଇଲି ବା ପିଇଲି ଯେ ଗୋଟାଏ ରବଲ୍ କାଳ ହୋଇଗଲା ?"— ଭାବି ଭାବି ମୁଣ୍ଡଭିତରେ ସେ ବଡ଼ ଧନ୍ଦହୋଇ ପଡ଼ିଲା ।

ଗୋଟିଗୋଟି କରି ହିସାବ ଦେଖାଇ ଫ୍ରାଙ୍କେଲ୍ ତାକୁ ସବୁକଥା ବୁଝାଇଦେଲାପରେ ଦୁହେଁ ବନ୍ଧୁକ ବିଷୟରେ ମଧ୍ୟ ଗୋଟାଏ ଶେଷ ନିଷ୍ପତ୍ତିରେ ଆସି ପହଞ୍ଚିଲେ । ଇହୁଦୀ ତାକୁ ଗୋଟାଏ ବନ୍ଧୁକ କିଣିଆଣି ଦେବାକୁ

ହୀନହେଲ, କିନ୍ତୁ ସେ ଦାବୀ କରୁଥିବା ଯେଉଁ ବିଷୟରେ କୁବା ଏପର୍ଯ୍ୟନ୍ତ ମଧ୍ୟ ଅସମ୍ମତି ପ୍ରକାଶକରୁଥାଏ ।

"ମୋ' ବାପା ଚୋର ନଥିଲେ କି ମୁଁ ମଧ୍ୟ କେବେ ଚୋରି କରିନାହିଁ ।"

"ବର୍ତ୍ତମାନ ତୁ ଯାଆ, କୁବା । ଆଜି ଅନେକ ବିଳମ୍ବ ହୋଇଗଲାଣି । ମୁଁ ଏପର୍ଯ୍ୟନ୍ତ ମୋର ପ୍ରାର୍ଥନା ଉପାସନା ମଧ୍ୟ ସାରିନାହିଁ ।"

"ଏଇ ଶଠ ଲମ୍ପଟକୁ ଦେଖିଲ ! ଏଣେ ଗୋଟାଏ ମଣିଷକୁ ଚୋରି କରିବାଲାଗି ପ୍ରବର୍ତ୍ତାଉଛି, ପୁଣି ସେଇ ମୁହଁରେ ଭଗବାନଙ୍କୁ ପ୍ରାର୍ଥନା ମଧ୍ୟ କରିବାକୁ ତାକୁ ଏତେଟିକିଏ ହେଲେ ଲାଜ ମାଡୁନାହିଁ ।"— ଘରକୁ ଗଲାବେଳେ ସେ କହିକହି ଯାଉଥିଲା ଓ ମନଭିତରେ ନାନା ଅସ୍ପଷ୍ଟ ବିଷୟକୁ ସ୍ପଷ୍ଟ କରି ବୁଝିବାକୁ ଚେଷ୍ଟା କରୁଥିଲା । ପ୍ରକୃତରେ ସେ ଏଇ କେତେ ଘଣ୍ଟା ଭିତରେ କପରି ଗୋଟାଏ ରବଲର ମଦ ପିଇ ଶେଷ କରିଦେଲା, ସେକଥା ସେ କୌଣସି ପ୍ରକାରେ ବୁଝିପାରୁ ନଥାଏ । କିନ୍ତୁ ଏପର୍ଯ୍ୟନ୍ତ ମଧ୍ୟ ତା'ଠାରୁ ଭଲକରି ନିଶା ଛାଡ଼ିନଥାଏ, ବାହାର କାକୁଆ ଥଣ୍ଡା ପବନରେ ତା'ର ମୁଣ୍ଡଭିତରଟା ସିରସିର ହୋଇଯାଉଥାଏ । ତେଣୁ ସେ ସେହିପରି ଟଳମଟଳ ହୋଇ ବାଟ ଚାଲିବାରେ ଲାଗିଥାଏ, କେତେବେଳେ ରାସ୍ତା କଡ଼ରେ ଥିବା ବାଡ଼ରେ ଆସି ଧକ୍କା ବାଜି ଯାଉଥାଏ, ବା କାହା ଘର ସାମନାରେ ରଖା-ଯାଇଥିବା କାଠଗଦା ଉପରେ ଆସି ପଡ଼ୁଥାଏ । ପଡ଼ିଯାଇ ସେ ସଂସାରଯାକ ସମସ୍ତଙ୍କୁ ଗାଳିଗୁଲଜ କରିବାରେ ଲାଗିଥାଏ ।

"ଶଳା ତୁମକୁ ସବୁ ଭୂତ ଖାଉ, ଶଳାଏ ଆସି ରାସ୍ତା ଉପରେ ଘରଯାକ ଜିନିଷ ଜମାକରି ରଖିଛନ୍ତି । ଶଳାଏ କଣ ନିଶା ଖାଇଥିଲ ଯେ ତୁମର ଅକଲ ହେଲନାହିଁ ? ଗୀର୍ଜାରେ ପାଦ୍ରୀ ତୁମ୍ଭମାନଙ୍କୁ ଯେଉଁକି ଏତେ ଭର୍ତ୍ସନା ଓ ବାରଣ କରି କହିଲେ, ତଥାପି ଶଳାଏ ନମାନି ନିଶା ଖାଇଲ ?"— ଏତିକବେଳେ ହଠାତ୍ ତା'ର ମନ ଆସି ଘର ଧରିଲା, ସେ ଆପଣାର ଅବସ୍ଥାକୁ ମଧ୍ୟ ଅଳ୍ପ ବହୁତ ସମଝିବାକୁ ଆରମ୍ଭ କଲା,— ଆପଣାକୃତ ପାପର ଗ୍ଲାନି ତାକୁ ଏକାବେଳେକେ ଅବଶ ଓ ଅଭିଭୂତ କରିପକାଇଲା ।

ହଠାତ୍ ଟଳଟଳ ହୋଇ ସ୍ତମ୍ଭଟିରେ ଅଟକିଯାଇ ସେ କାହାର ସାହାଯ୍ୟ ଧରି ଠିଆ ହେବାକୁ ଗୁରିଆଡ଼କୁ ହାତ ବଢ଼ାଇଲା । କିନ୍ତୁ ପୁଣି କିମେତକ ମଧ୍ୟରେ ସବୁ ଭୁଲି ଆପଣାର ଗୋଟାଏ ହାତରେ ଉଣ୍ଡିଟାକୁ ଯାବୁଡ଼ି ଧରି ଆରହାତରେ ଆପଣା ମୁହଁ ଉପରେ ବିଧା ମାରିବାକୁ ଲଗିଲା ।

"ହତଭାଗା ଘୁଷୁରି, ତୁ କି ଶେଷକୁ ଏଇ ବୁଦ୍ଧି କରି ମଦ ପିଇଲୁ । ରଇଥା, ତୋତେ ଉଣ୍ଡିଆ ମାରି ମୁଁ ପାଦ୍ରୀଙ୍କ ପାଖକୁ ନେଇଯିବି ଓ ସମସ୍ତଙ୍କ ଆଗରେ ଗୀର୍ଜା ଭିତରେ ସେ ତୋତେ ଆଚ୍ଛା କରି ପଟାଏ ଗାଳି ଦେଲେ ତେବେ ଯାଇ ତୋ'ର ଚେତା ପଶିବ । ଗୋଟାଏ ରାତିରେ ତୁ ଗୋଟାଏ ରବଲ୍‌ର ମଦ ପିଇଦେଲୁ ! ତୁ ଏଡ଼ିକି ପଶୁ,— ନା— ପଶୁଠାରୁ ଆହୁରି ହୀନ ?"— ହଠାତ୍ ଆପଣା ଉପରେ ତା'ର ଭାରି କରୁଣା ଜାତ ହେଲା ଓ ରାସ୍ତା ଉପରେ ବସିପଡ଼ି ସେ ଭେଁ ଭେଁ ହୋଇ କାନ୍ଦିବାକୁ ଲଗିଲା ।

ଆକାଶରୁ ପୂର୍ଣ୍ଣିମା ଜହ୍ନର ଚମତ୍କାର ଚନ୍ଦ୍ରକିରଣ ଝରି ପଡୁଥାଏ । କୃଷ୍ଣ-ବର୍ଣ୍ଣ ଶୂନ୍ୟର ଗର୍ଭଭେଦ କରି ଜହ୍ନ ଭାସି ଭାସି ଗ୍ଲଲିଯାଉଥାଏ । ଆକାଶରେ ଫୁଟିଥିବା ଅଳ୍ପ କେତୋଟା ତାରା ରୂପାର କଣ୍ଟାପରି ଝଲମଲ ହେଉଥାନ୍ତି । କୁହୁଡ଼ିର ଏକ ପାତଳା ଧୂଆଁ ପରସ୍ତ ଠିକ୍ ଏକ ଅଙ୍ଗାବରଣ ପରି ପୋଖରୀ ଉପରେ ଝୁଲିକରି ରହିଥାଏ ଏବଂ ଗାଆଁ ଉପରେ ଆପଣାର ବସ୍ତ୍ରାଞ୍ଚଳ ବିସ୍ତାର କରିବାରେ ଲଗିଥାଏ । ବର୍ତ୍ତମାନ ସମଗ୍ର ଜଗତ ଶାରଦୀ ରାତିର ସେହି ଅତଳ ଓ ଅଭେଦ୍ୟ ନିସ୍ତବ୍ଧତା ଭିତରେ ପ୍ରବେଶ କରି ସାରିଲଣି । କେବଳ ଘରକୁ ଫେରୁଥିବା ଓ ବାଟରେ ଗୀତଗାଇ ଯାଉଥିବା ବ୍ୟକ୍ତିମାନଙ୍କର କଣ୍ଠଶବ୍ଦ ଶୁଣାଯାଉଥାଏ, ମଝିରେ ମଝିରେ କେତେ ଦୂରରୁ କୁକୁରମାନଙ୍କର ଭୁକିବା ମଧ୍ୟ ଭାସି ଭାସି ଆସୁଥାଏ ।

## ପାଞ୍ଚ

ଶରତ୍‌କାଳର ଶାରଦ ସ୍ୱରୂପଟି କ୍ରମେ ଅଧିକରୁ ଅଧିକ ହୋଇ ପ୍ରକାଶ ପାଇବାକୁ ଆରମ୍ଭ କଲଣି । ନିର୍ଜୀବ ଶୂନ୍ୟ ଶସ୍ୟକ୍ଷେତଗୁଡ଼ିକ ଉପରଦେଇ

ଧନପରେ ଧନ ଅତକାନ୍ତ ହୋଇ ଚାଲିଯାଉଚ ଓ ଅରଣ୍ୟଗର୍ଭରେ ଯାଇ ଲୀନ ହୋଇଯାଉଚ । କମେ କମେ କବାପିତ ହୋଇ ଆସୁଥିବା ବର୍ଷାର କମକ୍ଷୀଣ ଆଲୁଅରେ ଦେବତାର ମୂର୍ତ୍ତି କମଶଃ କ୍ଷୀଣଜ୍ୟୋତି ହୋଇଆସିଲା ପରି ଧନଗୁଡ଼ିକ ମଧ୍ୟ ଧନକୁ ଧନ ଅଧିକ ନିଷ୍ପନ୍ଦ ଓ ଅଧିକ ଶୀର୍ଣ୍ଣ ହୋଇ ଆସୁଚ ।

ଧନକୁଧନ ପ୍ରଭାତର ଗତି ମଧ୍ୟ କମଶଃ ବିଲମ୍ବିତ, ମନ୍ଦ ଓ ବେଗହୀନ ହୋଇ ଆସିବାପରି ମନେହେଉଚ । ସମ୍ଭବତଃ ଶୀତକାଳୀନ ହିମର ଅନ୍ତ-ଶୀତଳତା, ଏହି ଦୁଃଖଦାୟକ ସ୍ପନ୍ଦନହୀନତା ଓ ଭୂପୃଷ୍ଠରୁ କାଉଁନଉଁ ଆସୁଥିବା ଜୀବନର ପ୍ରଭାବ ବାଜି ତାହାର ଜୀବନୀଶକ୍ତି କମେ କ୍ଷୀଣ ହେବାକୁ ବସିଚ ! ସୂର୍ଯ୍ୟ ଉଠିଆସିଲା ବେଳକୁ ମନେହେଉଚ ଯେପରି ତା'ର କିରଣ-ଜାଲକୁ କେହି ଅପହରଣ କରି କୁଆଡ଼େ ନେଇଯାଇଚ । ପୂର୍ବ ଦିଗର କେଉଁ ଦୂରଦେଶରୁ ଉଡ଼ିଆସିଥିବା କେତେଟା କାଉ ସୂର୍ଯ୍ୟଆଳୀର ଗୃହର ପାଖରେ ମୁଣ୍ଡିଲା କାଟି ଉଡ଼ିବାରେ ଲାଗିଚନ୍ତି, ତଳେତଳେ ଉଡ଼ି ସେମାନେ ଗହ୍ୱର ଭଲ ଅତକମକରି ଚାଲିଯାଉଚନ୍ତି ଓ ସତେ ଅବା କାହାପାଇଁ ଶୋକ ପ୍ରକାଶ କରୁଥିଲାପରି ବଡ଼ ଜୀବନହୀନ ଭାବରେ କାଆ କାଆ ଶବ୍ଦ କରୁଚନ୍ତି । ସେମାନଙ୍କ ପଛରେ ବହିଯାଉଥିବା କାଲୁଆ ପବନ ସେମାନଙ୍କର ଅନୁସରଣ କରି ଚାଲିଚ,— ତାହାର ଆଘାତ ଲାଗି ପାଣିର ସମତଳ କମ୍ପି-କମ୍ପି ଉଠୁଚି, ଏ ପର୍ଯ୍ୟନ୍ତ ଅବଶେଷ ହୋଇ ରହିଥିବା ହରିତ୍ ରଙ୍ଗକୁ ଏହାର ସ୍ପର୍ଶ କାଆଁ ଲଗାଇ ଧୂସର ପାଉଁଶରେ ପରିଣତ କରିଦେଇ ଯାଉଚ, ରାସ୍ତାର ଦୁଇପାଖରେ ଠିଆହୋଇ ରହିଥିବା ପତ୍ଲାଲ ଗଛଗୁଡ଼ିକରୁ ଝଡ଼ିପଡ଼ି ରାସ୍ତା ଉପରେ ଜମାହୋଇ ରହିଥିବା ପାଚିଲାପତ୍ରର ଭିତରେ ଗାର ଟାଣିଦେଇ ଚାଲିଯାଉଚ । ପବନର ଆଘାତରେ ଉଡ଼ି ଯାଉଥିବା ପତ୍ରଗୁଡ଼ିକ ପୁଣି ଅତ୍ୟନ୍ତ ଧୀର ଗତିରେ ଆସି ମାଟି ଉପରେ ବସିଯାଉଚ । ମନେ ହେଉଚ, ସତେ ଅବା କାହା ଆଖିର ଲୁହ ଯେପରି ଟୋପାଟୋପା ହୋଇ ଗଡ଼ି ମାଟି ଉପରେ ଆସି ପଡ଼ୁଚ ! ଏ ଲୁହ ଲୋତକ ନୁହେଁ, ଏହା ହେଉଚ

ନିତ୍ତ,— ସଦ୍ୟମୃତ ନବାଘର ଆଖିରୁ ଠୋପାଠୋପା ହୋଇ ବାହାର ଧରଣୀ ଉପରେ ପଡ଼ିବାରେ ଲଗିଚ ।

ଆଉ ଦିନକୁଦିନ ଗାଆଁର ଲୋକମାନେ ଯେପରି ଅଧିକରୁ ଅଧିକ ଡରିକରି ନିଦରୁ ଉଠୁଥିବାପରି ମନେହେଉଚି, ସକାଳେ ପଡ଼ିଆକୁ ଚରି-ଯାଉଥିବା ଗୋରୁଙ୍କର ଖୋଜର ଗତି ମଧ୍ୟ ଦିନକୁଦିନ ଅଧିକ ମଠ ହେବାରେ ଲଗିଚ, ଖଳାଘର କବାଟ ମେଲହୋଇ ଯିବାର ଶବ୍ଦ ମଧ୍ୟ ଦିନକୁଦିନ କ୍ଷୀଣତର ହୋଇଆସୁଚି । ମୃତ୍ୟୁ ରାଜତ୍ୱ କରି ରହିଥିବା ଖାଲି ଖେତରେ ଠିଆହୋଇ କେହି କୌଣସି କଥା କହିଲେ ସତେ ଯେପରି ତାହାର ଶବ୍ଦ କେଉଁଠି ରୁଦ୍ଧ ହୋଇ ଅଣନିଶ୍ୱାସୀ ହୋଇ ଗଲପରି ବୋଧ ହେଉଚି । ଲୋକମାନଙ୍କର ହୃତ୍‌ସ୍ପନ୍ଦନ ମଧ୍ୟ କ୍ରମେ ଅଧିକ ଧୀର ହୋଇ ଆସୁଚି । ବେଳେବେଳେ ସେମାନଙ୍କୁ ଆପଣାର ଦାଣ୍ଡଦୁଆରେ ବା ଗହିରବିଲରେ ଦେଖିବାକୁ ମିଳୁଚି । ସେମାନେ ହଠାତ୍ ଠିଆହୋଇ ପଡ଼ି ଅନେକ ସମୟ ପର୍ଯ୍ୟନ୍ତ ନୀଳକୃଷ୍ଣ ସୁଦୂରର ଗର୍ଭକୁ ଅନାଇ ରହୁଚନ୍ତି । ହଳଦିଆ ପଡ଼ିଯାଇଥିବା ଘାସର ଚରି ଭୂଇଁରେ ହଠାତ୍ କାହାର ଅତିକାୟ ପଶୁଙ୍କ ମସ୍ତକମାନ ଦୃଷ୍ଟିଗୋଚର ହୋଇଯାଉଚି ଏବଂ ଧୀର ଗତିରେ ମୁଖ ଗୃଳ ରୋମନ୍ଥନ କରୁକରୁ ସେମାନେ ମଧ୍ୟ ଦୃଷ୍ଟିକୁ ପ୍ରଲମ୍ବିତ କରି ସୁଦୂର ଆଡ଼କୁ ଅନାଇ ରହୁଚନ୍ତି,— ଅନେକ ଦୂରକୁ ଅନାଇ ରହୁଚନ୍ତି, ଓ ମଝିରେ ମଝିରେ ସେମାନଙ୍କର ଅତିକ୍ଷୀଣ ହମ୍ବା ଶବ୍ଦ ମାନ ଜନଶୂନ୍ୟ ଗହିର ପ୍ରାନ୍ତର ଭିତରୁ ପ୍ରତିଧ୍ୱନିତ ହୋଇ ଉଠୁଚି ।

ପୁଣି ଦିନକୁଦିନ ହେମାଳ ମଧ୍ୟ ବଢ଼ିବାରେ ଲଗିଥାଏ, ଅନ୍ଧାର ଦଢ଼ିବାରେ ଲଗିଥାଏ । ଚୋଟା ଉପରେ ଧୂଆଁର ମେଘ ଝୁଲିକରି ରହିଥାଏ ଏବଂ ଅମାରଘରମାନଙ୍କରେ ବ ାବାଛି ଆଶ୍ରୟ ନେବାପାଇଁ ଅଧିକରୁ ଅଧିକ ଚଢ଼େଇ ଆସିବାରେ ଲଗିଥାନ୍ତି । କାଉଗୁଡ଼ାକ କେତେବେଳେ ଘରର ଛାଳଉପରେ ଆସି ବସୁଥାନ୍ତି, ପୁଣି କେତେବେଳେ ଗଛର ଥୁଣ୍ଟା ଡାଳମାନଙ୍କ ଉପରେ ବସୁଥାଆନ୍ତି, ପୁଣି କେତେବେଳେ ରାଉରାଉ କର୍କଶ ରାବଦେଇ

ଭୂଇଁଉପରେ ଉଡ଼ିବାରେ ଲଗିଥାନ୍ତି । ସତେ ଯେପରି ସେମାନେ ଆସନ୍ନ ଶୀତକାଳର ନବାନନ୍ଦମୟ ଆଗମନ ସଙ୍ଗୀତ ଗାଇ ବୁଲୁଥାନ୍ତି !

ବିଲମାନଙ୍କରୁ ଧାନକାମ ସରିଆସିଲଣି,— ମୁହଁ ସଞ୍ଜବେଳକୁ ବିଲର ଶେଷ ହିଆରରେ ଗାର ମଡ଼ାଇଦେଇ ଘରକୁ ଫେରୁ ଫେରୁ କୃଷୀମାନେ ପଛକୁ ଅନାଇ ଆପଣା ବିଲ ଉପରେ ଆଖି ପକାଇ ଦେଖୁଚନ୍ତି, ଏବର୍ଷ ବସନ୍ତକାଳ ଅତିଶୀଘ୍ର ଆସୁବୋଲି ମନେମନେ ମନାସ କରୁଚନ୍ତି ।

ଅନେକ ସମୟରେ ସଞ୍ଜବୁଡ଼ିବା ବେଳକୁ ମନ୍ଦାଏ ମନ୍ଦାଏ ପାଣି ମଧ୍ୟ ବରଷି ଯାଉଚି,— ସଞ୍ଜବୁଡ଼ି ଅନ୍ଧାରହେବା ପର୍ଯ୍ୟନ୍ତ ଏହି ବରଷଣା ପାଣିର ଟପର ଟପର ଶବ୍ଦ ଶୁଣାଯାଉଚି । ଶରତ୍ କାଳର ସେହି ପ୍ରଲମ୍ବିତ ଗୋଧୂଳି ସମୟରେ କୃଷୀ ଘରମାନଙ୍କର ଝରକାଗୁଡ଼ିକ ସୁନାଝଳା ହୋଇଥିବା ଫୁଲ ପରି ନଆଁ ରଙ୍ଗରେ ଝଟକି ଉଠୁଚି, ଅମଡ଼ା ରାସ୍ତାକଡ଼ରେ ଥିବା ଟୁବିଗାଡ଼ିଆଗୁଡ଼ିକ ମଧ୍ୟ କାଚପରି ଚକଚକ କରିବାରେ ଲଗିଚି;— ରାତିର ଶୀତଳ ସିକ୍ତ ପବନ ଏହି ଝରକାଗୁଡ଼ିକ ଉପରେ ବରଷାର ବିନ୍ଦୁ ଗୁଡ଼ିକୁ ଆଣି ପିଟିଦେଇ ଯାଉଚି ଏବଂ ଲେଉଟିଯାଇ ତୋଟା ଭିତରେ ଆକୁଳ ସ୍ୱରରେ ମର୍ମରିତ ହୋଇ ଉଠୁଚି ।

ଡେଣା ଭାଙ୍ଗି ଯାଇଥିବା ଗୋଟାଏ କାଣ୍ଡିଆ ବଗ ଏପର୍ଯ୍ୟନ୍ତ ଉଡ଼ିଯାଇ ନ ପାରି ପଛରେ ରହି ଯାଉଥିଲା ଓ ପଡ଼ିଆରେ ଏପାଖ ସେପାଖ ହୋଇ ଡେଗା ଡେଗା ଗୋଡ ପକାଇ ବୁଲିବାରେ ଲଗିଥିଲା । ବଗଟି ହଠାତ୍ ଉଡ଼ିଆସି ବୋରିନାର ପାଳଗଦା ଉପରେ ବସିଲା, ଓ ଲୋଭ ଦେଖାଇ ଆନ୍ତ୍ରେକ୍ ତାକୁ ଆହାର ଦେଇ ଆ’ ଆ’ ବୋଲି ଡାକିବାକୁ ଲଗିଲା ।

ଏଣିକି ଗାଆଁ ମାନଙ୍କରେ ଭିକାରୀମାନଙ୍କୁ ଅଧିକରୁ ଅଧିକ ଦେଖିବାକୁ ମିଳିଲାଣି । ହାତରେ ଭିକ୍ଷାମୁଣି ଧରି ଭଜନ ଗୀତ ଗାଇ ଯେଉଁମାନେ ଦୁଆର ଦୁଆର ବୁଲି ଭିକମାଗି ବୁଲନ୍ତି, କେବଳ ସେମାନେ ନୁହନ୍ତି, ଯେଉଁମାନଙ୍କୁ ଦାଣ୍ଡରେ ଦେଖିଲେ କୁକୁରଗୁଡ଼ାକ ଭେ’ ଭେ’ ଭୁକିବାରେ ଲାଗନ୍ତି, କେବଳ ସେମାନେ ନୁହନ୍ତି, ଅନ୍ୟ ପ୍ରକାରର ଆଉ ଅନେକ ଭିକାରୀ ମଧ୍ୟ ଗାଆଁରେ ଦୃଶ୍ୟ ହେବାକୁ ଲଗିଲେଣି । ଏହି ଭିକାରୀ

ମାନେ ବରଷସାରା କେତେକେତେ ଦୂର ଥାନରେ ବୁଲୁଥାନ୍ତି, କେତେ ତୀର୍ଥ ହୋଇଆସନ୍ତି, ଏହି ଇଲାକା ମଧ୍ୟରେ ଯେତେ ଦେବାଦେବୀ ଯେଉଁଠି ଅଛନ୍ତି, ସେମାନେ ସବୁଠାରେ ପାଦ ପକାଇ ଆସିଚନ୍ତି । ଶୀତଦିନର ଦୀର୍ଘ ରାତ୍ରି ଗୁଡ଼ିକରେ ପ୍ରଥମ କେତେ ପହର ସେମାନେ ଗାଆଁରେ ବସି ଗ୍ରାମ-ବାସୀମାନଙ୍କୁ ନାନାଆଡ଼ର ନାନାକଥା ଶୁଣାଇ ସେମାନଙ୍କର ଚିତ୍ତବିନୋଦନ କରନ୍ତି । ସଂସାରର ସବୁ ହାଲଚାଲ ଏହିମାନଙ୍କଠାରୁ ଶୁଣିବାକୁ ମିଳେ, ଦୂର ବିଦେଶମାନଙ୍କରେ କ'ଣସବୁ ନୂଆନୂଆ ଘଟଣା ଘଟୁଚି, ତାହା ଏହିମାନଙ୍କର ମୁଖରୁ ହିଁ ଶୁଣାଯାଏ । କେହି କେହି ପବିତ୍ରଭୂମି ଜେରୁ-ଜେଲମ ବିଷୟରେ ମଧ୍ୟ କେତେକେତେ ବିବରଣୀ ଆଣିଦିଅନ୍ତି, ଅତିକ୍ରମ କରି ଆସିଥିବା କେତେକେତେ ବିସ୍ତୃତ ସମୁଦ୍ର, ଅଙ୍ଗେ ନିଭାଇଥିବା କେତେ-କେତେ ବିପଦ ଏବଂ ଦୁଃସାହସିକ ଘଟଣା,— ଏହିସବୁକୁ ସେମାନେ ଏପରି ଚମତ୍କାର ଭାବରେ ବର୍ଣ୍ଣନା କରି ଏପରି ବିସ୍ମୟ ସୃଷ୍ଟି କରନ୍ତି ଯେ ଗ୍ରାମବାସୀ-ମାନେ ବଡ଼ ଧର୍ମଭାବପୂର୍ଣ୍ଣ ଓ ଚକିତ ଭାବରେ ଏକ ଧ୍ୟାନରେ ସେ ସବୁକୁ ଶୁଣିବାରେ ଲାଗିଥାନ୍ତି । ଏପରି ଅଦ୍ଭୁତ ଘଟଣାମାନ ଏହି ସଂସାରରେ ପ୍ରକୃତରେ କେଉଁଠି ଘଟୁଥିବ ବୋଲି ସେମାନେ କଳ୍ପନା ମଧ୍ୟ କରି ପାରନ୍ତି ନାହିଁ ।

ଚାହୁଁ ଚାହୁଁ ଶରତ୍ ଆସି ଉପଗତ ହୋଇଗଲାଣି, ଶରତ୍‌ଋତୁର ଅଧାଅଧି ଅତିକ୍ରାନ୍ତ ହୋଇଗଲାଣି !

ବର୍ତ୍ତମାନ ସବୁ ସଙ୍ଗୀତ ଓ ଉଲ୍ଲାସ ଚଳାଚଳ ସ୍ତମ୍ଭିତ ହୋଇ ଯାଇଚି, ଚଢ଼େଇମାନେ ମଧ୍ୟ ଏକାବେଳେକେ ଚୁପ୍ ହୋଇ ଯାଇଚନ୍ତି,— ଗାଆଁରେ କୋଉଠିହେଲେ କୌଣସି ଶବ୍ଦ ଶୁଣାଯାଉନାହିଁ । କେବଳ ଧୂଳିଗୁଳାକୁ ଉଠାଇ ପୁଣି ପକାଇ ଦେଉଥିବା ପ୍ରବଳ ପବନର ଶବ୍ଦାକୁଳ ଗର୍ଜନ ହିଁ ଶୁଣିବାକୁ ମିଳୁଚି, ପୁଣି କେତେବେଳେ ବରଫର ବରଷା ହୋଇ ଝରକାର କାଚଉପରେ ସଶବ୍ଦ କୁଣ୍ଡା ଝାଡ଼ିଦେଇ ଯାଉଚି, ଗହମ ଅମଳ ହେଉଥିବା ଖଳାମାନଙ୍କରୁ ଗହମ-ବାଡ଼ିଆର ପାହାରମାନ ଶୁଭୁଚି,— ଏହି ପାହାରର ଶବ୍ଦ ଯେପରି ଦିନକୁଦିନ ଅଧିକ ଉତ୍କଟ ହେଉଥିବାପରି ବୋଧ ହେଉଚି ।

ହଁ, ପ୍ରକୃତରେ ଶରତ୍‌କାଳ ଆସି ଉପଗତ ହୋଇଗଲାଣି, ଶୀତକାଳର ଜନନୀ ଆସି ଉପଗତ ହୋଇ ଗଲାଣି !

ମନଭିତରେ ଆଶ୍ୱାସନା ଦେବାଲାଗି ଏପର୍ଯ୍ୟନ୍ତ କେବଳ ଗୋଟିଏ ସୂଚନା ବାକୀ ରହିଛି । ପାଗଟା ଏପର୍ଯ୍ୟନ୍ତ ମଧ୍ୟ ଖୁବ୍ ଖରାପ ହୋଇନାହିଁ, ରାସ୍ତାଘାଟ ଏପର୍ଯ୍ୟନ୍ତ କାଦୁଅ ହୋଇନାହିଁ । ହୁଏତ ମେଳାଯାଏ ବର୍ତ୍ତମାନ ଏହିପରି ପାଗ କରିବ,— ସତେ ଯେପରି କୌଣସି ଉତ୍ସବଭୋଜି ଖାଇବାକୁ ବାହାରିବାପରି ଲପ୍‌କା ଗାଁ ଗୋଟାକର ଲୋକେ ସଜବାଜ ହୋଇ ମେଳା ଦେଖି ବାହାରିବେ ।

ମେଳା ଆଉ ଅଳପଦିନ ରହିଲା । ବଡ଼ଦିନ ପୂର୍ବରୁ ଏହାହିଁ ହେଉଛି ଶେଷ ପରବ । ତେଣୁ ଗାଆଁର ଲୋକମାନେ ଏଥିଲାଗି ସଜ ହେବାକୁ ଲାଗିଲେ ।

ମେଳା ଆହୁରି ଅନେକଦିନ ଅଛି, ଲୋକମାନଙ୍କର ମନଭିତରେ ସେହି ବୃହତ୍ ପ୍ରଶ୍ନଟି ଆସି ବାରବାର ଆଘାତ କରିବାକୁ ଲାଗିଲା : ଏଥର କ'ଣ ବିକିଲେ ହେବ ? ଏହି ପ୍ରଶ୍ନଟି ଉପରେ ସେମାନେ କେତେପ୍ରକାର କେତେ ବିଚାର କରିବାକୁ ଆରମ୍ଭ କରି ସାରିଲେଣି । ଗାଈ ବିକିବା ନା ଶସ୍ୟ ବିକିବା, ବା ଗ୍ରୋଟମୋଟ ଦେଖି ଗୋଟାଏ ଘୁଷୁରି ବିକିଲେ ଚଳିଯିବ ? ଆଗରେ ଶୀତକାଳ ବି ମାଡ଼ିଆସୁଚି, ତେଣୁ ସେଥିପାଇଁ ଜରୁ ଆବଶ୍ୟକ ସାମଗ୍ରୀ କିଣି ସାଇତି ରଖିବାକୁ ମଧ୍ୟ ପଡ଼ିବ । ସେଥିରେ ତ ଅନେକ ପଇସା ଲାଗିଯିବ । ଏହି କଥା ନେଇ ପରିବାରମାନଙ୍କରେ କେତେ ତର୍କ, କେତେ ବଚସା ଓ କେତେ କଳହ ମଧ୍ୟ ଆରମ୍ଭ ହୋଇଗଲା । ଏଣେ ଅଣ୍ଟାରେ କାହାରିହେଲେ ଯଥେଷ୍ଟ ପଇସାନାହିଁ, ନଗଦ ପଇସା ପାଇବା ମଧ୍ୟ ଦିନକୁଦିନ ଅଧିକ କଠିନ ହୋଇ ପଡ଼ିଲାଣି ।

ହଁ, ଠିକ୍ ଏତିକିବେଳେ ମଧ୍ୟ ଲଟବନ୍ଦୀ ସମସ୍ୟା ଆସି ପହଞ୍ଚିଲା । ବରଷଯାକର ଖଜଣା ମଧ୍ୟ ବର୍ତ୍ତମାନ ଦେବାକୁ ପଡ଼ିବ ! ଏହା ବ୍ୟତୀତ ଆହୁରି କେତେପ୍ରକାର ଟିକସ ଓ ଦେଣା ମଧ୍ୟ ଦେବାକୁ ହେବ । ଆଗରୁ କରଜ କରିଥିବା ପଇସାଗୁଡ଼ାକୁ ମଧ୍ୟ ଏତିକିବେଳେ ଶୁଝିବାକୁ ପଡ଼ିବ,

ଗୃକରମାନେ ମଧ୍ୟ ସେମାନଙ୍କର ପାଉଣା ପାଇବେ । ଏହିପରି ନାନା ସମସ୍ୟା ଭିତରେ ପଡ଼ି କେଉଁଠା କ'ଣ କଲେ କାମ ଚଳିଯିବ ବୋଲି ଭାବି କୃଷିମାନେ ବଡ଼ ବିବ୍ରତ ହୋଇ ପଡ଼ୁଥାନ୍ତି, ସତରି ଅଠର ମାଣ ଜମି ଥିଲାବାଲାମାନଙ୍କର ମୁଣ୍ଡ ମଧ୍ୟ ଏହି ଚକ୍ରାନ୍ତରୁ ଉଦ୍ଧାର ପାଉନଥାଏ ।

ଏହିପରି ନାନା ବିଚ୍ଛୁରିତ କରିସାରିବା ପରେ କିଏ ଆପଣାର ଗୁହାଳରୁ ଗୋଟିଏ ଗାଈ ବାହାର କରିନେଲା, କୁଟା ଦେଇ ଗାଈର ପଛଗୋଡ଼ ଉପରେ କୋଉଦିନୁ ଲାଗିରହିଥିବା ଗୋବର କଷଗୁଡ଼ାକୁ ପୋଛି ପରିଷ୍କାର କରିଦେଲା, ଘରେ ତାକୁ ଭଲକରି ଘାସ ଖାଇବାକୁ ଦେଲା ବା ଯଥାସହିତ ଆଳୁ ସିଝାଇ ଖାଇବାକୁ ଦେଲା, ଯେତେଟିକିଏ ହେଲେ ମଧ୍ୟ ଗାଈଟି ଟିକିଏ ବଳିଆର ହୋଇ ଉଠିବ ବୋଲି ଆପଣାର ପାରୁପର୍ଯ୍ୟନ୍ତ ଚେଷ୍ଟା କରିବାରେ କୌଣସି ହେଳା କଲାନାହିଁ । ବିଲକୁଲ ଅକାମୀ ହୋଇ ଯାଇଥିବା ବୁଢ଼ା ଘୋଡ଼ାଟିକୁ ଦେଖି କିଏ ବାହାରକୁ ବାହାର କରି ଆଣିଲା; ଯେପରିକି ଅନ୍ତତଃ ତାହା ଟିକିଏ ହେଲେ ଘୋଡ଼ାପରି ଦଉଡ଼ିପାରିବ, ସେଥିଲାଗି ସେ ସବୁପ୍ରକାରେ ଚେଷ୍ଟା କରିବାକୁ ଲାଗିଲା ।

ଠିକ୍ ସମୟ ଅନୁସାରେ ଆପଣାର ଫସଲକୁ ବିକିବାଲାଗି ମହଜୁଦ୍ କରି ରଖିବାର ମତଲବରେ ଅନ୍ୟମାନେ ଭାରି ତରତର ହୋଇ ଫସଲ-ବାଡ଼ିଆରେ ବ୍ୟସ୍ତ ହୋଇ ରହିଲେ ।

ବୋଉନାର ସଂସାରରେ ମଧ୍ୟ ନାନା କାମରେ ଧୂମ୍‌ଧାମ୍ ଲାଗିଗଲାଣି । କୁବାର ସାହାଯ୍ୟରେ ବୁଢ଼ା ବୋଉନା ଆପଣାର ସମସ୍ତ ଗହମକୁ ଅମଳ କରିନେଲା,— ଯୁକ୍‌କା ଆଉ ହାଙ୍କା ଆପଣା ଅବସରର ସମସ୍ତ ସମୟ ଦେଇ ମାଈ ଘୁଷୁରିଟାକୁ ମୋଟା କରିବାକୁ ଲାଗିଲେ, ବିକିବାଲାଗି ମନକରି ରଖିଥିବା ବତକମାନଙ୍କୁ ମଧ୍ୟ ଭଲକରି ଖାଇବାକୁ ଦେଲେ । କେତେବେଳେ ଯେ ଅସରାଏ ପାଣି ବରଷିଯିବ, ସେକଥା ଏବେ କିଏ ଜାଣିଚି,— ତେଣୁ ଭତେକ୍‌କୁ ସାଙ୍ଗରେ ନେଇ ଆନ୍ଦ୍ରେକ୍ ଅନେକବାର ଜଙ୍ଗଲକୁ ଯିବାକୁ ପଡ଼ିଲା, ଶୀତ— ମାସରେ ଜଳା ହେବାପାଇଁ ଶୁଖିଲା କାଠ ଓ ଡାଳପତ୍ର ସାଉଁଟି ନେଇ ଆସିଲା । ଏଥିରୁ କେତେଗୋଟି ଗୁହାଳଘରକୁ ଗଲା ଓ

ଅବଶିଷ୍ଟ ଘରର ଚଉବେଢ଼ରେ ପଡ଼ି, ଶୀତଦିନଲାଗି ରକ୍ଷାବରଣ ହୋଇ ରହିଲା ।

ଠିକ୍ ମେଳାଦିନ ଆସି ପହଞ୍ଚିବାର ଶେଷଦିନ ପର୍ଯ୍ୟନ୍ତ ଏହି କାର୍ଯ୍ୟ-ବ୍ୟସ୍ତତାର ଧୁମ୍ ଲାଗିରହିଥିଲା । ଶେଷକୁ ବଡ଼ବଡ଼ ବସ୍ତାଭିତରେ ପଶି ଗାଡ଼ିରେ ବୋଝାଇହୋଇ ଗହମ ଖଳାଘରକୁ ଆସିଲା, ଶୀତକାଳ ପାଇଁ ସମସ୍ତ ସଜବାଜ ସମ୍ପୂର୍ଣ୍ଣ ହେଲା ଏବଂ ବୋଉନାର ଶୋଇବାଘରେ ସମସ୍ତେ ଏକଜୁଟ ହୋଇ ରାତିଭୋଜନ କରିବାକୁ ଆସିଲେ ।

ଚେମଣିତଳେ ହୁରୁହୁରୁ ଉଲ୍ଲାସରେ ନିଆଁ ଜଳିବାରେ ଲାଗିଥାଏ, ସେହି ନିଆଁର ଆଲୁଅରେ ସମସ୍ତେ ମନଆନନ୍ଦରେ ଧୀରେଧୀରେ ଭାତ ତୃଣ ଖାଇବାରେ ଲାଗିଥାନ୍ତି,— କାହାରି ତୁଣ୍ଡରୁ କୌଣସି କଥା ବାହାରୁନଥାଏ । କିଛିସମୟ ଉତ୍ତାରୁ ଖିଆପିଆ ସରିଗଲା, ଘରର ସ୍ତ୍ରୀଲୋକମାନେ ଅଇଁଠା ବାସନକୁସନ ଉଠାଇ ପରିଷ୍କାର କରିଦେଲେ ଓ ନିଆଁ ଜଳୁଥିବା ଆନର ଅଧିକ ନିକଟବର୍ତ୍ତୀ ହୋଇ ଆସି ବୋଉନା କହିବାକୁ ଆରମ୍ଭ କଲା :

"କାଲି ସିନ୍ଦୂରି ନମ୍ବରୁ ପୁଣି କାମ ଆରମ୍ଭ କରିବାକୁ ହେବ !"

"ନିଶ୍ଚୟ, ମଠ କଲେ ଚଳନ୍ତା କେମିତି ?"— ଆନ୍ତେକ୍ ଉତ୍ତରଦେଲା ଓ ଘୋଡ଼ାସାଜରେ ତେଲ ଦେବାକୁ ଲାଗିଲା । ଗହମ ବାଡ଼େଇବାର ପିଟଣାପାଇଁ କୁବା ଗୋଟାଏ ଖିଲ ତିଆରି କରିବାରେ ବ୍ୟସ୍ତଥାଏ । ଭିତେକ୍ କାଲି ସକାଳେ ଖାଇବାଲାଗି ସିଝିବାକୁ ଯାଉଥିବା ଆଳୁରୁ ଚୋପା ଛଡ଼ାଇ ବସିଥାଏ ଏବଂ ତଥାପି ଅବସର ବାହାରକରି ଲୁଚାସହିତ ଖୁରି ମଧ୍ୟ ଖାଉଥାଏ । ଖଣ୍ଡେଦୂରରେ ମାଟିଉପରେ ଲମ୍ବହୋଇ ପଡ଼ି କୁକୁରଟା ମାଛିର ସନ୍ଧାନ କରିବାରେ ଲାଗିଥାଏ ।

କିଛିସମୟ ପର୍ଯ୍ୟନ୍ତ କାହାରି ତୁଣ୍ଡରୁ କୌଣସି ଶବ୍ଦ ଶୁଣାଗଲାନାହିଁ,— କେବଳ ନିଆଁରେ ପଡ଼ି ଜଳୁଥିବା କାଠଗୁଡ଼ାକ ଚଡ଼ଚଡ଼ ହୋଇ ଜଳିବାରେ ଲାଗିଥାଏ, ଉହ୍ମେଇଆନର ଅନ୍ଧସନ୍ଧିରୁ ଝିଙ୍କାରିମାନେ ଝିଁ ଝିଁ ହେଉଥାନ୍ତି,— ବଖରାର ବାହାରୁ ପାଣି ଚଳଚଳ ହେବାର ଓ ବାସନକୁସନ ଝଣଝଣ ହେବାର ଶବ୍ଦ ଶୁଣାଯାଉଥାଏ ।

"କୁବା, ତୁ ଏବର୍ଷ ମୋ'ଘରେ କୋଠିଆ ହୋଇ ରହିବୁ ନା ନାହିଁ ?"

କୁବାର ହାତରୁ ଖାଇବାର ଛୁରୀ ତଳେ ଖସିପଡ଼ିଲା, ସେ ବକବକ ହୋଇ ଆଖି ତରାଟି ନଆଁ ଆଡ଼କୁ ଅନାଇ ରହିଲା । ତା'ର ପ୍ରଶ୍ନ କୁବା ଶୁଣିଚି କି ନାହିଁ, ବୋଉନା ପୁଣିଥରେ ପ୍ରଶ୍ନ କଲା ।

"ଶୁଣିଚି ? ହଁ, ହଁ, ଶୁଣିଚି,— ମୁଁ ପରା ଠିକ୍ ସେଇକଥା ଭାବୁଥିଲି । ପ୍ରକୃତ କଥା କହିବାକୁ ଗଲେ ତୁମେ ଏବର୍ଷ ମୋ'ପ୍ରତି କୌଣସି ମନ୍ଦ ବ୍ୟବହାର ଦେଖାଇ ନାହିଁ । ଖାଲି ଯାହା······"— ସେ କ'ଣଗୋଟାଏ ଗୋଳମାଳିଆ ଭିତରେ ପଡ଼ିଯାଇ ହଠାତ୍ ଅଟକିଗଲା ।

"ଘୂଜ୍କା ! ମୋ' ପାଇଁ ଟିକିଏ ଭଡ଼୍କା ଆଣ, ତା'ପାଇଁକୁ କିଛି ଖାଇବାକୁ ମଧ୍ୟ ନେଇ ଆ' ! ଇଏ କ'ଣ ଇହୁଦୀଘର ହୋଇଚି ଯେ କାମର କଥା ପଡ଼ିଥିଲାବେଳେ ଆମର ତଣ୍ଟି ଶୁଖିଲା ରହିବ ?"

ବୋଲି ବଡାଇଦେଇ ସେ ବେଞ୍ଚଟାକୁ ଟାଣିନେଇ ନଆଁର ଆହୁରି ପାଖକୁ ଯାଇ ବସିଲା । କ୍ଷଣକପରେ ଘୂଜ୍କା ବୋତଲେ ମଦ ଓ ତା'ପାଇଁକୁ ପାଉଁରୁଟି ଓ ମାଉଁସର ଗଣ୍ଠା ଆଣି ବେଞ୍ଚଉପରେ ବାଢ଼ିଦେଇ ଗଲା ।

"ତୁ ବି ଟିକିଏ ପି', କୁବା ! ହଁ, ମୁଁ ପଚାରୁଥିବା କଥାଟି ପୁଣି କ'ଣ ହେଲା ?"

"ଧନ୍ୟବାଦ, ସାଆନ୍ତ । ହଁ, ଆଉବର୍ଷେ ରହିବାକୁ ମୋର ଇଚ୍ଛା ନହେବ କାହିଁକି,— କିନ୍ତୁ···କିନ୍ତୁ···"

"ଦରମା ବଢ଼ାଇବା ଦରକାର,— ତୁ ଏଇଆ କହିବାକୁ ଯାଉଚୁ ?"

"ବଢ଼ିଲେ ଏକା ହିଁ ଉପକାର ହୁଅନ୍ତା । ଏଇ ଦେଖିଲ, ମେଣ୍ଢା-ଲୋମର ଏଇ କୋଟ୍‌ଟା ଚଣ ବିଲ୍‌କୁଲ ଫିକାଟିକା ହୋଇଗଲାଣି । ଜୋତା-ଦୁଇଟା ବି ଆଉ ଜୋତା ଅବସ୍ଥାରେ ନାହିଁ । ତା'ଛଡ଼ା ମୋର ଟୋପିଟିଏ ମଧ୍ୟ ନହାତି ଦରକାର । ଏଇ ଟୋପିଟି ନଥିବାରୁ ଗୀର୍ଜାକୁ ଗଲେ ମୋତେ ବାହାରେ ବାହାରେ ରହିବାକୁ ପଡୁଚି । ଏମିତି ଛିଣ୍ଡାକନା ପିନ୍ଧି ମୁଁ ଉପାସନା-ବେଦୀ ପାଖକୁ କପରି ଯାଇ ପାରିବି କହିଲ ?"

ଗମ୍ଭୀର ସ୍ୱରରେ ବୋଉନା ଉତ୍ତର ଦେଲା, "ହଁ'ରେ ହଁ'— ସେଦିନ ରବିବାର ଉପାସନାବେଳେ ତୁ କିଛି ନମାନି ସମସ୍ତଙ୍କୁ ଠେଲିପେଲି ସିଧା ଆଗରେ ଯାଇ ଠିଆହେଲୁ, ଯୋଉଠି ଗାଆଁର ମୁଖିଆ ମୁଖିଆ ଲୋକମାନେ ଠିଆ ହୋଇଥିଲେ !"

"ହଁ, ସତକଥା,— ସତକଥା,—କିନ୍ତୁ..." କଥାଟା ହଠାତ୍ ତା'ର ତଣ୍ଟିରେ ଲାଗିଯିବାପରି ହେଲା,— କ'ଣ ଗୋଟାଏ ସଙ୍କୋଚରେ ସେ ବଡ଼ ଅପ୍ରସ୍ତୁତ ହୋଇପଡ଼ିଲା, ତା'ର ମୁହଁ ରଙ୍ଗା ପଡ଼ିଗଲା ।

"ଆଉ ଖୋଦ୍ ପାଦ୍ରୀ ଆମକୁ କେତେଥର ଉପଦେଶ ଦେଇ କହିଚନ୍ତି ଯେ ବଡ଼ମାନଙ୍କୁ ସବୁବେଳେ ଖାତିର ଦେଖାଇବା ଉଚିତ । ଶୁଣ୍ କୁବା,— ଆମଭିତରେ ଭଲ ବୁଝାମଣା ରହିବ, ଏହି ପ୍ରତିଶ୍ରୁତି ରଖି ଆମେ ଆଜି ଏ ମଦ ପିଇବା । ବର୍ତ୍ତିମାନ ମୁଁ ଯାହାସବୁ କହୁଚି, ଶୁଣ ! ତୁ ଭଲକରି ଜାଣିଚୁ ଯେ କୋଠିଆକୁ କେବଳ କୋଠିଆ ହିଁ କୁହାଯିବ, କୃଷୀ ବୋଲି କଦାପି କୁହାଯାଇ ପାରିବନାହିଁ । ଭଗବାନ ଯାହାକୁ ଯୋଉ ପାହାଚରେ ରଖିବାର ଆଗରୁ ନିର୍ଣ୍ଣିୟ କରି ଆମକୁ ସଂସାରକୁ ପଠାଇଚନ୍ତି । ଭଗବାନ ଯୀଶୁ ମଧ୍ୟ ତୋ'ର ଉଚିତ ଥାନ ନିର୍ଣ୍ଣିୟକରି ଦେଇଚନ୍ତି । ତୋ'ର ଆପଣା ଥାନରେ ରହିବା ଉଚିତ, ଏପରି ମସ୍ତ ହୋଇ ଆଗକୁ ମାଡ଼ିଆସିବା ଉଚିତ ନୁହେଁ, ଅନ୍ୟମାନଙ୍କଠାରୁ ଆପଣାକୁ ଉପରକୁ ନେଇଯିବା ଉଚିତ ନୁହେଁ । କାରଣ ଏପରି କଲେ ତୋ'ର ଭାରି ଅପରାଧ ହେବ । ପାଦ୍ରୀଙ୍କୁ ପଚାରିଲେ ମଧ୍ୟ ସେ ତୋତେ ଠିକ୍ ଏହିକଥା କହିବେ । ଏପରି ନହେଲେ ସଂସାର ପୁଣି ରହିବ କିପରି ? ମୋ' କଥାମାନ ବୁଝିଲୁ ?"

"ମୁଁ କ'ଣ ଗଧ ହୋଇଚି ଯେ ଶବ୍ଦଗୁଡ଼ାକର ଅର୍ଥ ବୁଝି ପାରିବନାହିଁ ?"

"ତେବେ ହୋସିଆର ହୋଇଥା',— ଯେପରି କି ଆପଣାକୁ ଆଉ କାହାରିଠାରୁ ଉପରକୁ ନେଇଯିବା ଲାଗି ତୋ'ର କେବେ କୌଣସି ଅଭିମାନ ନହୁଏ !"

"କିନ୍ତୁ ସେଦିନ ମୁଁ ତ ଆଉ କିଛି ଭାବିନଥିଲି, କେବଳ ଭଗବାନଙ୍କର ଉପାସନାବେଦୀ ପାଖକୁ ଯିବାଲାଗି ମନ ବଳାଇଥିଲି !"

ତୁ ଗୀର୍ଜା ଭିତରେ ଯେତେ ଦୂରରେ ଯୋଡ଼ି କଣରେ ଥାଆ ପଛକେ, ତୋ'ର ପ୍ରାର୍ଥନା ନିଶ୍ଚୟ ଭଗବାନଙ୍କର କାନରେ ଯାଇ ନେଶ୍ ବାଜି-ପାରିବ । ସେଥିପାଇଁ ତୋ'ର ମନରେ କୌଣସି ଦୁଃଖ ରହିବା ଉଚିତ ନୁହେଁ । ପୁଣି ଯେଉଁଠି ଗାଆଁର ମୁଖିଆ ମୁଖିଆ ଲୋକମାନେ ଠିଆହୋଇଛନ୍ତି, ପଛରୁ ଠେଲିପେଲି ଯାଇ ସେଠାରେ ଠିଆହେବାଟା କେଉଁ ସୁନ୍ଦର ହେବ କହିଲୁ ? ଏଇ ଗାଆଁରେ ତୋତେ ସମସ୍ତେ ଭଲକରି ଚିହ୍ନିଛନ୍ତି, ତୁ କ'ଣ ଏକଥା ଜାଣିନୁ ?"

"ତୁମେ ସତକଥା କହୁଚ, ସାଆନ୍ତେ,— ତୁମେ ସବୁବେଳେ ସତକଥା କହୁଚ । ଯଦି ମୁଁ ଜଣେ ଗୃହୀ ହୋଇଥାନ୍ତି, ତେବେ ପାଦ୍ରୀଙ୍କର ମୁଣ୍ଡଉପରେ ଛତି ଆ ଟାଣିଧରିବାର ଅଧିକାର ମୁଁ ଅବଶ୍ୟ ପାଇଥାନ୍ତି । ବେଞ୍ଚ୍ ଉପରେ ବସିପାରୁଥାନ୍ତି, ଭଜନପୁସ୍ତକରୁ ବଡ଼ପାଟିକରି ଭଜନମାନ ଗାଇପାରୁଥାନ୍ତି । କିନ୍ତୁ—", ଦୀର୍ଘନିଶ୍ୱାସ ପକାଇ ସେ କହିଲି, "ମୁଁ ତ ଜଣେ ସାଧାରଣ କୋଠିଆ, ସାମାନ୍ୟ ଚାକର,— ଗୃହୀର ଛୁଆ ହେଲିବୋଲି ସେଥିରେ କ'ଣ ହେଲା ?— ମୋର ବାହାରେ ବାହାରେ ଠିଆହୋଇ ହିଁ ପ୍ରାର୍ଥନା କରିବା ଉଚିତ,— ଠିକ୍ କୁକୁରର ଯେମିତି ହେବା ଉଚିତ, ସେହିପରି !"

"ସାରା ସଂସାର ଏହି ନିୟମରେ ଚାଲୁଚି, ଖାଲି ତୁ ଭାବିଦେଲେ ତ ଏହା ବଦଳି ଯିବନାହିଁ !"

"ନା— ମୁଁ କେବେ ଏପରି ଭାବିବନାହିଁ ।"

"ଆଚ୍ଛା, ଆଉଟିକିଏ ପି',— ଆଉ ଦରମା କେତେ ବଢ଼ିଲେ ହେବ ମୋତେ ସେହିକଥା କହି !"

କୁବା ଭଡ଼୍କା ପିଇଲା । ସେତେବେଳକୁ ତାକୁ ନିଶା ଲାଗିଆସିଲାଣି । ସରାଇଘରେ ସେଦିନ ଯେମିତି ବୋଧ ହୋଇଥିଲା, ଆଜି ଠିକ୍ ସେମିତି ବୋଧ ହେଲାପରି ଲାଗୁଚି । ତା'ର ମନେହେଲା, ସତେ ଯେପରି ସେ ଆପଣାର ସାଙ୍ଗସାଥିମାନଙ୍କ ସାଥିରେ କଥାବାର୍ତ୍ତା କରୁଚି ! ଭାରି ଉଶ୍ୱାସ

ମନରେ ସେ ଆପଣା କୁରୁତାରୁ ଗୋଟାଏ ଦୁଇଟା ବୋତାମ ଫିଟାଇଦେଲା, ଗୋଡ଼କୁ ଫରକଟା କରି ଲମ୍ବାଇଦେଲା ଓ ବେଞ୍ଚଉପରେ ହାତକୁ ବାଡ଼େଇ ପାଟିକରି କହିଲା :

"ମୋତେ ଆଉ ଅଧିକ ଗୃହି ରବଲ୍ ମିଳିବ, ତେବେଯାଇ ମୁଁ ତୁମଘରେ ରହିବି !"

"ନିଶାଜୋରରେ ତୋ'ର ମୁଣ୍ଡ ଖରାପ ହୋଇଗଲାଣି",-- ବୋଉନା ପ୍ରତିବାଦ କରିଉତ୍ତର ଦେଲା । କିନ୍ତୁ ବୋଉନା ଆଉ ହଟିଲାନାହିଁ । ଏପର୍ଯ୍ୟନ୍ତ ମନଭିତରେ ଯେ ଯେଉଁ ଇଚ୍ଛାର ସ୍ୱପ୍ନ ଦେଖୁଥିଲା, ଥରେ ଯେତେବେଳେ ତାହା ମୁହଁରୁ ବାହାରି ପଡ଼ିଲାଣି, ତେବେ ସେ ଆଉ ହଟିବ କାହିଁକି ? ସାଆନ୍ତଙ୍କର କଥାକୁ ସେ ଆଦୌ କାନକୁ ନେଲାନାହିଁ । ତା'ର କଳ୍ପନାଉପରୁ ତା'ର ସମସ୍ତ ଲଗାମ ଖସିଗଲା, ମନପକ୍ଷୀ ଡେଣା ମେଲିଇ ଉଡ଼ିବାରେ ଲାଗିଲା, ଆପଣାଉପରେ ତା'ର ବିଶ୍ୱାସ କ୍ରମେ ବଢ଼ିବାକୁ ଆରମ୍ଭକଲା, ସେ ଆପଣାକୁ ଠିକ୍ ଯେକୌଣସି ଗୃହୀ ପରି କ୍ଷମତାଶାଳୀ ଅନୁଭବ କରିବାକୁ ଲାଗିଲା ।

"ହଁ, ହଁ, ଗୃହିରବଲ୍ ହେଲେ ଯାଇ ମୁଁ ରହିବି । ନହେଲେ ତୁମେ ଆଉକାହାକୁ ଠିକ୍ କର, ମୁଁ ସିଧା ମେଲାକୁ ଚାଲିଯିବି, ସେଠି ମୋତେ କେତେକେତେ କାମ ମିଳିବ । ସେଠି ମୋତେ ସମସ୍ତେ ଚିହ୍ନି ଚନ୍ତି । ସମସ୍ତେ ମୋର ନିଷ୍ଠା କଥା ଜାଣିଚନ୍ତି, ଘରେ ହେଉ କି ଖେତରେ ହେଉ, ଯେକୌଣସି ଗୃହକାମରେ ମୁଁ କଦାପି ହଟିଯିବିନାହିଁ ବୋଲି ସମସ୍ତେ ଭଲକରି ଜାଣିଚନ୍ତି । ଆରେ, କେତେକେତେ ଗୃହୀ ମନକଲେ ମୋ'ଠାରୁ କାମ ଶିଖିବାକୁ ଆସିବେ ! ମୁଁ ଗାଈଗୋରୁଙ୍କର କିପରି ହିପାଜତ ନେଇପାରେ, ସେକଥା ଶିଖିବାକୁ ଆସିବେ । ଗୃହ ନହେଲେ ମୋତେ ତ ଶିକାର କରିବା ମଧ୍ୟ ଜଣାଅଛି । ପାଦ୍ରୀଙ୍କ ପାଇଁ ହେଉ ବା ଯ୍ୟାଙ୍କେଲ୍ ପାଇଁ ହେଉ, ମୁଁ ଚଢ଼େଇ ମାରି ଆଣିଦେବି ନହେଲେ······"

"ତା'ର ବଢ଼ି ଆପଣ ଦେଖ,"— ବୁଢ଼ା ଗର୍ଜନ କରି କହିଲା,— "ଦେଖ, ତା'ର ଗ୍ରେଟାଗୋଡଟା କିପରି ନାଚିବାରେ ଲାଗିଚି, ଦେଖ !"

ଏତକ ଅପମାନରେ କୁବାର ସବୁ ଜ୍ଞାନ ଘର ଧଇଲା, ତା'ର ସ୍ୱପ୍ନ-ମଗ୍ନତା ଏକାବେଳେକେ ଭାଙ୍ଗିଗଲା । ଆପଣାର ବାହାଦୁରୀ ବଖାଣିବା ତା'ର ଏତିକରେ ବନ୍ଦ ହୋଇଗଲା । ତଥାପି ଥରେ ଯାହା କହିଚ, ସେଥିରୁ ପଦେହେଲେ ନଇଁଲାନାହିଁ, ଏକାଜିଦ୍ କରି ଆଣ୍ଠି ବସିଲା । ବୋଇରନା କମାଇ କମାଇ ଶେଷକୁ ଅଧିକା ତିନି ରବଲ୍‌ରେ ଆପେ ଦରମା ଛିଣ୍ଡାଇଲା,— କଥାହେଲା ଦରମା ବ୍ୟତୀତ ସେ ଦୁଇଖଣ୍ଡ ନୂଆ କୁରୁତା ମଧ୍ୟ ପାଇବ

"ତୁ ସତେ କେଡ଼େ ଅବାଗିଆ ମଣିଷ କହିଲୁ ?"— ଶେଷ ରାଜିନାମାଟି ଲାଗି ସମ୍ମାନ ଜଣାଇ କୁବା ସହିତ ଆଉଟୋପାଏ ମଦ ପିଇପିଇ ବୋଇରନା କହିଲା । ଏବର୍ଷ ଏତେଗୁଡ଼ାଏ ବେଶୀ ଖରଚ କରିବାକୁ ହେବ ବୋଲି ଅବଶ୍ୟ ଭିତରେ ତା'ର ମିଜାଜଟା ଭାରି ଚେଗିଯାଇଥାଏ । ତଥାପି କୁବା ପରି ଚାକରଲାଗି ଏତକ ଅଧିକ ଖରଚ ହେଲେ ମଧ୍ୟ ବେଶୀ କ୍ଷତି ହେବନାହିଁ । ଖେତକାମରେ ସେ ଦୁଇଟା ମଣିଷଙ୍କର କାମ କରିଦେବ । ପୁଣି ଲୋକଟା ଭାରି ସଚ୍ଚୋଟ, ମିଛ ନାହିଁ କି ଭୁରୁଡ଼ି ନାହିଁ, ଗୋରୁଗାଈଙ୍କ ଉପରେ ସାଆନ୍ତଠାରୁ ମଧ୍ୟ ତା'ର ଅଧିକ ଦୟା ।

ଆଉ ଗୋଟାଏ ଦୁଇଟା କଥା ଠିକ୍ ହୋଇସାରିବା ପରେ କୁବା ଉଠିଯିବାକୁ ବାହାରୁଥିଲା, ମାତ୍ର କବାଟ ପାଖରେ ପହଞ୍ଚି ପୁଣି ପଛକୁ ମୁହଁ ବୁଲାଇ ବଲବଲ କରି କହିବାକୁ ଲାଗିଲା :

"ତା'ହେଲେ ଏବର୍ଷ ପାଇଁ ଏଇ ରାଜିନାମା ହେଲା, ନା ?— ଅଧିକା ତିନିରବଲ୍ ଆଉ ଦୁଇଖଣ୍ଡ କୁରୁତା । କିନ୍ତୁ ମୋର ଆଉ ଗୋଟାଏ କଥା ନେହୁରା କରିବାର ଅଛି । ଏବର୍ଷ ତୁମେ ଘୋଡ଼ାଛୁଆଟାକୁ ମୋଟେ ବିକନାହିଁ ! ମୋର ଥିବାବେଳେ ସେ ଜନ୍ମ ହୋଇଚ,— ଜନମ ହେଲା-ବେଳେ ନିଜର ମେଣ୍ଢାଗ୍ଲଲରେ ଘୋଡ଼ାଇଦେଇ ମୁଁ ତାକୁ ଉଷୁମ ଦେଇଚ, ନହେଲେ ଚଗୁଲା କାଲୁଆ ହୋଇ ଖତମ ହୋଇ ଯାଇଥାନ୍ତା । ବର୍ତ୍ତମାନ ତୁମେ ତାକୁ ଇହୁଦୀ ହାତରେ ଦେବ କି କଂସେଇ ହାତରେ ଦେବ, ତା'ର ନରଖର ମୁଁ ଆଖିରେ ଦେଖି ପାରିବିନାହିଁ । ଗୋଟାଏ ଘୋଡ଼ା ଆଗରେ

ଜଣେ ମଣିଷ ମଧ୍ୟ କିଛି ନୁହେଁ । ଏବର୍ଷଟା ସବୁଦିନ କରିଯା', ସେଇଟାକୁ ବିକନାହିଁ ।"

"କିନ୍ତୁ ମୁଁ ତାକୁ ବିକିବି ବୋଲି ତୋତେ କିଏ କହିଲା ?"

"ସେଦିନ ସବ୍ରାଇଘରେ ମୁଁ ଶୁଣିଆସିଲି,— ଲୋକେ କଥାବାର୍ତ୍ତା ହେଉଥିଲେ ।"

"ଲୋକଙ୍କର ତ ଆଉ କାମ ନାହିଁ ! ତେଣୁ ଏସବୁ କଥାବାର୍ତ୍ତା ନହେଲେ ଖାଇବା ହଜମ ହେବ କିପରି ? ସବୁକଥା ଯାଇ ଆଗ ସେଇ-ମାନଙ୍କୁ ଜଣା ହୋଇଯାଉଚି !"

କୁବାର ମନ ଆନନ୍ଦରେ କୁଣ୍ଢେମୋଟ ହୋଇଗଲା । ସେହି ଆନନ୍ଦର ଉତ୍ତେଜନାରେ ସାହସ କରିଥିଲେ ହୁଏତ ସେ ତତ୍‌କ୍ଷଣାତ୍ ଯାଇ ସାଆନ୍ତଙ୍କର ଆଣ୍ଠୁକୁ ଧରି ଆଲିଙ୍ଗନ କରି ପକାଇଥାନ୍ତା । କିନ୍ତୁ ରାତି ଅନେକ ହୋଇ-ଗଲାଣି, ଏଥର ଶୋଇବାକୁ ଯିବାକୁ ହେବ । ପୁଣି କାଲି ମେଳାଟା ବି ରହିଚି !

× × × ×

ତା'ଆରଦିନ ସକାଳେ କୁକୁଡ଼ା ଦୁଇଥର ଡାକୁନଡାକୁଣୁ ଟାଇମୋଭ୍‌କୁ ଯିବାର ଯାନବଡ଼ ସବୁ ରାସ୍ତା ମଣିଷଗହଳରେ ଭରପୂର ହୋଇଉଠିଲା । ଆଜି ସମସ୍ତେ ଟାଇମୋଭ୍ ଯିବାକୁ ବାହାରିଚନ୍ତି !

ପାହାନ୍ତା ପହରକୁ ମୁନ୍ଦାଏ ପାଣି ମଧ୍ୟ ବରଷି ଯାଇଚି । ପୂର୍ବଦିଗରେ ଟିକିଏ ଟିକିଏ ସିନ୍ଦୁରା ଫାଟି ଆସିଲାଣି, କିନ୍ତୁ ଆକାଶଯାକ ମାଟିଆ ରଙ୍ଗର ମେଘମାନ ଘୋଟିଘୋଟି କରି ରହିଚି । ଖେତଉପରେ କୁହୁଡ଼ି କରିଚି, ଠିକ୍ ଗୋଟାଏ ମୋଟା କେଉପାଲ ପରି ଓଦା ଧୂସରରଙ୍ଗ ହୋଇ ଝୁଲିକରି ରହିଥିବାପରି ମନେ ହେଉଚି । ରାସ୍ତାର ଖାଲଖମାମାନଙ୍କରେ ପାଣି ଜମି ଯାଇଚି ।

ସେମାନେ ସମସ୍ତେ ବଡ଼ଭୋ'ରୁ ଲମ୍ଫ୍‌କାରୁ ବାହାରି ପଡ଼ିଥିଲେ ।

ଗୀର୍ଜା ଯେପାଖରୁ ଆରମ୍ଭ କରି ଜଙ୍ଗଲ ପର୍ଯ୍ୟନ୍ତ ପଛଲର ଗଛର ଧାଡ଼ୀଲଗିଥିବା ରାସ୍ତା ଉପରେ ଆଜି କେତେ ଗାଡ଼ୀର ଧାଡ଼ୀ ଲାଗିରହିଚି

ଏବଂ ଦୁଇପାଖଯାକ ନାଲିଆ ବ୍ଲାଉଜ୍‌ ଓ ଧଳାକୁରୁତାର ଝଲମଲରେ ଝଟକ ଉଠୁଚି ।

ଏ ଭିଡ଼ ଦେଖି ମନେହେଉଚି ଯେପରି ଗାଆଁ ଟାଯାକ ଆଜି ଯାତ୍ରା ଦେଖି ବାହାରିଚି !

ଅଳପ ଥିଲବାଲା ଗ୍ରେଟିଆ କୃଷୀମାନେ ପାଦରେ ଚାଲିଚାଲି ଯାଉଚନ୍ତି,—ସେମାନଙ୍କ ସହିତ ସ୍ତ୍ରୀଲୋକ, ଚାକରବାକର ଓ ଝିଅମାନେ ମଧ୍ୟ ଚାଲିକରି ଯାଉଚନ୍ତି । ଏହି ଯାତ୍ରାରେ ଠିକାକାମ ମିଳିବାର ଖୁବ ସମ୍ଭାବନା ରହିଥିବାରୁ ନାଉ ମୂଲଲାଗି ଖାଇବା ମୂଲିଆମାନେ ମଧ୍ୟ ସେଠାକୁ ଯାଉଚନ୍ତି ।

କିଏ କିଣିବାକୁ ଯାଉଚି ତ ଆଉକିଏ ବିକିବାକୁ ଯାଉଚି, ପୁଣି ଆଉକିଏ କେବଳ ଯାତ୍ରା ଦେଖିବାକୁ ହିଁ ବାହାରିଚି ।

କିଏ ହାତରେ ଥିବା ପଘାରେ ଗାଈଟାଏ କି ଦାମୁଡ଼ିଟାଏ ବାନ୍ଧିକରି ଚାଲିଚି, କିଏ ଆଗରେ ପଲେ ମେଣ୍ଢା ଅଡ଼ାଇ ଅଡ଼ାଇ ଯାଉଚି, ଆଉକିଏ ମାଆସହିତ ପଲେ ଛୁଆ ଘୁଷୁରିଙ୍କର ପଛେପଛେ ଚାଲିଚି ବା ପଲେ ବତକ ଅଡ଼ାଇ ଚାଲିଚି । କିଏ ଗୋଟାଏ ମୁଟୁକୁଟିଆ ଘୋଡ଼ା ଉପରେ ବସି ଯାଉଚି, ତାହାର ଅଣ୍ଟି ଭିତରୁ ଗୋଟାଏ ଗଞ୍ଜାକୁକୁଡ଼ାର ନାଲିଆ ଚୂଳ ବାହାରକୁ ଦିଶିଦିଶି ଯାଉଚି । ଗାଡ଼ୀଗୁଡ଼ାକରେ ମଧ୍ୟ କେତେତରକମର ମାଲ ବୋଝାଇ ହୋଇଚି । କୁଞ୍ଜ ବା ପାଲରେ ଢାଆଣ ହୋଇଥିବା ଲୋଦର ଭିତରୁ କୋଉ ଗାଡ଼ୀରେ ଗୋଟାଏ ଘୁଷୁରି ଥୋଡ଼ୀ ବାହାରକରି ବୋବାଳି ଛାଡ଼ୁଚି, ତା'ର ବୋବାଳିରେ ଡରିକିଯାଇ ବତକଗୁଡ଼ାକ କେଁ କଟର କରି ଉଠୁଚନ୍ତି,— ମାଲିକମାନଙ୍କର ପିଛୁ ଧରି ଚାଲିଥିବା କୁକୁରଗୁଡ଼ାକ ମଧ୍ୟ ସମସ୍ୱରରେ ରଡ଼ିଦେବାରେ ଲାଗିଚନ୍ତି ।

କଲୁ ସାତ ପାହି ଭଲକରି ଫରଚ୍ଛ ହୋଇ ଗଲାପରେ ଯାଇ ବୋରନା ଘରୁ ବାହାରିଲା । ଯୁଜ୍‌କା ଆଉ ହାଙ୍କା କୋଉ ପାହାନ୍ତାରୁ ଉଠି ବାହାରି ଚାଲିଗଲେଣି,— ସେମାନେ ଗଲାବେଳେ ମାଈଘୁଷୁରି ଓ ଖାସିକୁ ନେଇ ଯାଇଚନ୍ତି, ଗାଡ଼ୀରେ ଲଦି ଆନ୍ତେକ୍‌ ଦାଣବସ୍ତା ଗହମ ଓ ପାଞ୍ଚପସୁରି ଘାସମଞ୍ଜି ନେଇ ଯାଇଚି । କେବଳ କୁବା, ଭିତେକ୍‌ ଆଉ ଯୁସୁଷ୍ଟିଙ୍କା,

ଏହି ତିନିଜଣ ଘରେ ଅଛନ୍ତି । ସେମାନେ ଆଜି ଘରେ ରହି ଗାଈ ଦୁହିଁବେ ଓ ସୀତପାଇଁ ଭୋଜନ ପ୍ରସ୍ତୁତ କରି ରଖିବେ ।

ଯାତ୍ରାକୁ ଯିବାପାଇଁ ଭଟେକ୍‌ର ମନ ଭାରି ଛଟପଟ ହେଉଥାଏ, ତେଣୁ ସେ ଗୁହାଳଘର ବାହାରେ ବସି ସାଆନ୍ତକୁ ଶୁଣାଇ ଗରଗର ହେଉଥିଲା ।

"ତୋ'ର ପୁଣି ଏତେ ଦମାଗ କାହିଁକି ବାହାରୁଚ ?"— ତୋଡ଼ ଦେଖାଇ ବୋଉଳା କହିଲା ଏବଂ ଶୂନ୍ୟରେ କ୍ରସ୍‌ଚିହ୍ନ ଅଙ୍କିତ କରି ଅନୁକୂଳ କରି ବାହାରିଲା । ସେ ପାଦରେ ଚାଲିଚାଲି ଯିବ, ଅବଶ୍ୟ ବାଟରେ କିଏ ଆପଣା ଗାଡ଼ୀରେ ଉଠାଇନେଲେ ସେକଥା ନିଆରା । ଠିକ୍ ସେହିକଥା ହିଁ ଘଟିଲା;— ସରାଇଘର ତେଉଁ ନନ୍ତେଉଁଣ୍ଟ ଗୀର୍ଜାରେ ବାଜା ବଜାଇବାରେ ନିଯୁକ୍ତଥିବା ଲୋକଟି ଦୁଇଟି ଘୋଡ଼ା ଯୋଚି ଆପଣାର ଗାଡ଼ୀଟି ଧରି ପଛରୁ ଯାଇ ତାକୁ ହାବୁଡ଼ିଗଲା ।

"କିଓ ମାଥିଆସ୍, ତୁମେ ଚାଲିଚାଲି ଯାଉଚ ?"

"ହଁ, ଟିକିଏ ଗୋଡ଼ଦୁଇଟାକୁ ଖେଳାଇ ବାହାରିଚି । ନମସ୍କାର !"

ଗାଡ଼ୀଭିତରୁ ଘରଣୀ କହିଲା, "ଇଏ କୋଉଆଡ଼ର କଥା ମ ? ତୁମେ ଗାଡ଼ୀଉପରକୁ ଉଠି ଆସିବଟି, ଏଠି କେତେ ଜାଗା ଅଛି !

"ଅନେକ ଧନ୍ୟବାଦ । ମୁଁ ତ ଚାଲିକରି ଯିବବୋଲି ବାହାରିଥିଲି, କିନ୍ତୁ—",—ସେ ଉଠିପଡ଼ି ଘୋଡ଼ାଙ୍କ ଆଡ଼କୁ ପିଠିକରି ଆଗପଟେ ଯାଇ ବସିଲା ।

"ଆଜି ତେବେ ସ୍ତାନେକ୍ ଇସ୍କୁଲକୁ ନଯାଇ ଯାତ୍ରା ଦେଖି ବାହାରିଚ ?"— ଟ୍ରକର ସହିତ ଆଗରେ ବସି ଘୋଡ଼ା ଅଡ଼ାଇ ଯାଉଥିବା ଗୋଟିଏ ବାଳକକୁ ଉଦ୍ଦେଶ୍ୟ କରି ବୋଉଳା କହିଲା ।

ବାଳକଟି ଉତ୍ତର ଦେଲା, "ହଁ, ଯାତ୍ରା ଦେଖି ଯାଉଚି । ହାତରେ ଥିବା ଗୋଟିଏ ଡବା ଆଗକୁ ବଢ଼ାଇଦେଇ ବାପ କହିଲା : "ଫରାସୀ ନାସ, ଭାରି ବଢ଼ିଆ ନାସ, ଚିମୁଟାଏ ନିଅ !" ଦୁହେଁ ନାସ ଟାଣିଲେ ଏବଂ ଦୁହେଁଯାକ ଛିଙ୍କିବାକୁ ଲଗିଲେ ।

"ଆଉ ସବୁ ଖବର କ'ଣ କହୁଚ ? କ'ଣ କିଛି କିଣାବିକି କରି ବାହାରିଚ ?"

"ନା— ସେପରି କିଛି ନୁହେଁ । କିଛି ଗହମ ଆଗରୁ ପଠାଇ ଦେଇଛି । ଝିଅମାନେ ଘୁଷୁରି ଧରି ମଧ୍ୟ ଯାଇଚନ୍ତି ।"

"ମନ୍ଦ ନୁହେଁ,— ମନ୍ଦ ନୁହେଁ !" — ଘରଣୀ ଜବାବ ଦେଲି । "ସ୍ୱାନେକ୍, ଏଇ କମ୍ପାର୍ଟ୍‌ମେଣ୍ଟାକୁ ନେଇ ବେକରେ ବାନ୍ଧିଦେ,' ଭାରି ଅଣ୍ଡାପାଗ ହୋଇଛି !"

"ନାଁ— ମୋର କିଛି ହେବନାହିଁ ।" — ସ୍ୱାନେକ୍ ଉତ୍ତରରେ କହିଲି । କିନ୍ତୁ ମାଆ ଏକା ଜିଦ୍ ଧରି ତାକୁ କମ୍ପାର୍ଟ୍‌ମେଣ୍ଟି ବେକରେ ଗୁଡ଼ାଇ ବସିବାକୁ କହୁଥାଏ ।

ବୋରିନା କହିଲି, "କିନ୍ତୁ ମୋତେ କ'ଣ ଗାଡ଼ୀଭଡ଼ା ଦେବାକୁ ପଡ଼ିବ ? ପାଖରେ ତ ମୋର କମାରୁ ପଇସା ନାହିଁ !"

"ମାଥିଆସ୍, ସେସବୁ କଥା କାହିଁକି ପଡ଼ିଚ ? ଭଡ଼ା ଦେବାକୁ ତୁମକୁ କିଏ କହୁଚି ? ଠାକୁରଙ୍କ ଦୟାରୁ ତୁମର ଏବେ କୋଉକଥାର ଅଭାବ ରହିଚି ?"

ଆଗରେ ଘରର ଚାକରଟା ବସିଚି । ତା'ର ଆଗରେ ତାକୁ ଏପରି ଦୟା ଦେଖାଇହେବାଟା ଆଦୌ ଭଲ ଲାଗିଲାନାହିଁ । ତେଣୁ ସେ ତତ୍‌କ୍ଷଣାତ୍ ଆଗକୁ ଉହୁଙ୍କି ପଡ଼ି କାନପାଖରେ ଫୁସ୍‌ଫୁସ୍ କରି ପଚାରିଲି :

"ସ୍ୱାନେକ୍ ଆଉ କେତେଦିନ ଇସ୍କୁଲକୁ ଯିବ ?"

"ମୋଟେ ଏଇ ଇଷ୍ଟର୍‌ଛୁଟି ପର୍ଯ୍ୟନ୍ତ ।"

"ପୁଣି ତା'ପରେ ? ତା'ପରେ ଘରେ ରହିବ ନା ହାକିମ ହେବାକୁ ଯିବ ?"

"ଘରେ ବସି ପୁଣି ସିଏ କରିବ କ'ଣ ? ଘରେ ତ ପଲେ ପିଲ, ଜମି ମୋଟେ ପନ୍ଦରମାଣ । ସମୟ ତ ଭାରି ଖରାପ ପଡ଼ିଚି । ଗୀର୍ଜାରେ ଅବଶ୍ୟ ଦଉଁ ଲାଗି ଅନେକ ହେଉଚି, କିନ୍ତୁ ସେଥିରୁ ଯାହା ମିଳୁଚି, ସେଥିକରେ କ'ଣ ପେଟ ପୂରିହିବ ?"

"ପୁଣି କବରଢ଼ିଆ ମଧ୍ୟ ଅଛି ତ ? ଲୋକମାନେ କ'ଣ କମ୍ ମରୁଚନ୍ତି ?"— ବ୍ୟଙ୍ଗ କରି ବୋରିନା ପଚାରିଲି ।

"ଜବରଦଖଆରୁ ଆମକୁ କ'ଣ ବା ମିଳୁଚ ? ଧର୍ମଲୋକ ତ ମରୁନାହାନ୍ତି, ଖାଲି ଗରିବଗୁଡ଼ାକ ହିଁ ମରୁଚନ୍ତି । କଦବା କୋଉଠି ଜଣେ ବଡ଼ଗୃହୀ ମଲେ ହୁଏତ ଆମର କିଛି ଆୟ ହୁଅନ୍ତା,— କିନ୍ତୁ ତାହା ବରଷକରେ କେବଳ ଥରେ ଦୁଇଥରରୁ ବେଶୀ ନୁହେଁ ।"

"ଆଉ ଅଭିଷେକ ମାଜଣା ତ ଆଜକାଲି ସପନପରି ହେଲଣି । ସେଥିରେ ପୁଣି ଲୋକମାନେ ଦେହରୁ ମଳିଟାଏ ଦେବାକୁ ବି ରାଜି ନୁହନ୍ତି, ଠିକ୍ ଇହୁଦୀଙ୍କ ପରି ଆସି ଦରଦାମ୍ କରୁଚନ୍ତି !"— ଘରଣୀ କହିଲା ।

"ହିଁ, ସମୟଟା ମଧ୍ୟ ଭାରି ଖରାପ ପଡ଼ିଚ । ଲୋକମାନେ ଭାରି ଗରିବ ହୋଇଗଲେଣି"— ବୋଉନା ଉତ୍ତର ଦେଲା ।

"ମଣିଷଗୁଡ଼ାକ ମଧ୍ୟ ଆଜକାଲି ଆପଣାର ମୁକ୍ତି ବିଷୟରେ ଆଦୌ ଚିନ୍ତା କରୁନାହାନ୍ତି,— ନରକରେ ଘାଣ୍ଟି ହେଉଥିବା ସନ୍ତପ୍ତ ଆତ୍ମାଗୁଡ଼ିକ ବିଷୟରେ ସେମାନେ ଆଦୌ କିଛି ଭାବୁନାହାନ୍ତି !"

ଏତିକିବେଳେ ସ୍ୱାମୀ କହିବାକୁ ଆରମ୍ଭ କଲା :— "ଲୋକମାନଙ୍କ-ଠାରୁ ମଧ୍ୟ ଆମକୁ ଆଉ ସେପରି କିଛି ମିଳୁନାହିଁ । ଆଗେ ବରଷକେ କେତେଥର ଆମେ ଗାଆଁକୁ ମାଗୁଣି କରି ଯାଉଥିଲୁ । ଗହମ, ପଇସା ବା ପିଠାପଣା କରିବାଲାଗି ଅଟାଦେବାକୁ ସେତେବେଳେ କେହି ନାହିଁ ବୋଲି କହୁ ନଥିଲେ । କିନ୍ତୁ ଆଜି ଆଉ ସେକାଳ ପଖାଳ ଅଛି ? ସମସ୍ତେ ଆଜି ବଡ଼ କୃପଣ ହୋଇଗଲେଣି । କିଏ ପୋଷେ ମାଣ୍ଡିଆ ଦେଉଚ ତ ସିଏ ପୁଣି ମୃତ୍ତାଖିଆ,— କିଏ ଯଅମାଣେ ଦେଉଚ ତ ସେଥିରେ ପୁଣି ଅଧକରୁ ବେଶୀ ଅଗାଡ଼ି, ଖାଲି ଚୋପା ! ଆମର ଯଦି ଆପଣାର ଅଳ୍ପ ଏ ଜମି ନଥାନ୍ତା, ତେବେ ଆମକୁ କ'ଣ ପ୍ରକୃତରେ ଭିକ ମାଗିବାକୁ ପଡ଼ୁଥାନ୍ତା !"— ନାସ-ଡିବାଟାକୁ ପୁଣି ବୋଉନା ଆଡ଼କୁ ବଢାଇଦେଇ ସେ ଆପଣାର କଥା ଶେଷ କଲା ।

"ହିଁ, ହିଁ,— ସତକଥା !"— ବୋଉନା ଉତ୍ତରଦେଇ କହିଲା । କିନ୍ତୁ ସେ କ'ଣ ଓଲି ହୋଇଚ ଏଇ କଥାରେ ବିଶ୍ୱାସ କରିଦିବ ? ଏଲୋକଟି ପାଖରେ ଯେ ଟଇସା ଅଛି, ସେକଥା ତାକୁ ଭଲକରି ଜଣା ଥିଲା । କିଛି

ବ୍ୟାଙ୍କ୍‌ରେ ଅଛୁ, କିନ୍ତୁ ସୁଧପାଇଁ ଲଗାହୋଇଚ ; କେତେକେତେ ଗୃହସ୍ଥୀ ଏହାଙ୍କଠାରୁ କରଜ ନେଇଚନ୍ତି । ତେଣୁ ବର୍ତ୍ତମାନ ଏଇ ସାକୁଲ୍ କଥାମାନ ଶୁଣି ସେ ମୁରୁକି ହସି ପୁଣିଥରେ ସ୍କାନେକ୍ ବିଷୟରେ ପ୍ରଶ୍ନ କଲି ।

"ତୁମେ କ'ଣ ତାକୁ ସରକାରୀ ଅଫିସରେ କିରାଣି କରି ପଠାଇବ ?"

"ତାକୁ,— ସ୍କାନେକ୍‌କୁ— ସରକାରୀ ଅଫିସ୍‌ରେ ? ଏତିକରେ ତା'ର ପାଠପଢ଼ା ଶେଷ ହୋଇଯିବ ବୋଲି କ'ଣ ମୁଁ ତାକୁ ଆପଣା ପେଟରୁ କାଟି ପାଠ ପଢ଼ାଇଚ ? ନାଇଁ, ନାଇଁ,-- ସେ ପାଦ୍ରୀ ହେବ ।"

"ପାଦ୍ରୀ ?"

"ହଁ, ହଁ, ନହେବ କାହିଁକି ? ସେଥିରେ କ'ଣ ତା'ର କୌଣସି ଲୋକସାନ୍ ହେବ ? ସେ ପାଦ୍ରୀ ହେଲେ କାହାର ବା କ'ଣ ଲୋକସାନ୍ ହୋଇଯିବ ? କାହା ଦହ କାହିଁକି ସହିବନାହିଁ ?"

"ନାଇଁ, ନାଇଁ, ମୁଁ ସେକଥା କହୁନାହିଁ ଯେ,--" କ'ଣ ଗୋଟାଏ କଥା ଭାବୁଥିଲାପରି ବୋଶନା ଉତ୍ତର ଦେଲି ଓ ଅତ୍ୟନ୍ତ ସମ୍ମାନପୂର୍ଣ୍ଣ ଦୃଷ୍ଟିରେ ପଛରେ ବସିଥିବା ପିଲାଟି ଆଡ଼କୁ ଅନାଇଲି । "ଇଏ ତ ଅତି ଗୌରବର କଥା । ପୁଣି ପାଦ୍ରୀ ହେଲେ ଆଉ ଅଭାବ କ'ଣ ଅଛି ?"

"ଲୋକେ କହୁଥିଲେ ପେଷଣିଆର ପୁଅ ଷ୍ଟାହୋ କୁଆଡ଼େ ପାଦ୍ରୀ ହେବାକୁ ଯାଉଥିଲା । କିନ୍ତୁ ବର୍ତ୍ତମାନ ଶୁଣିବାକୁ ପାଉଚ ଯେ ସେ କଲେଜରେ ଡାକ୍ତରୀ ପଢିବାକୁ ଯାଇଚ ।"

"ଆଚ୍ଛା, ସେଇ ପାପୀଟା ପୁଣି ପାଦ୍ରୀ ହୋଇଥାନ୍ତା ? ହେ ଭଗବାନ୍ ! ମୋର ଗୃହକତ୍ରୀଣୀ ମାଗ୍‌ଡ଼ା ପରି ତା'ର ଆଉ ଗର୍ବ ହୋଇଚ ଯେ ଛୁଆ ଆସି ପେଟରେ ଛଅମାସ ହେଲାଣି !"

"କିନ୍ତୁ ଲୋକେ ତ କହୁଚନ୍ତି, ଖୋଦ୍ ପେଷଣିଆ ଆଉ !"

"ଲୋକେ କହୁନାହାନ୍ତି ଯେ ତା'ର ମାଆ କହୁଚ । କିନ୍ତୁ ତାହା କେବଳ ପୁଅର ନିନ୍ଦାକୁ ଘୋଡ଼ାଇ ରଖିବାକୁ । ପୁଅର କଥା କହିଲେ ସରିବନାହିଁ । ଭଗବାନ କରନ୍ତୁ, ଏପରି ଗୋଟାଏ ଚରିତ୍ରହୀନ ମଣିଷ ପାଦ୍ରୀ ନହେଉ । ହଁ,-- ଡାକ୍ତରହେଲେ ସେ ପ୍ରକୃତରେ ଭାରି ଉନ୍ନତି କରିବ ।"

ବୋରନା ଏହିପରି ସେମାନଙ୍କର କଥା ଶୁଣୁଥାଏ ଓ ସେମାନଙ୍କୁ ପ୍ରସନ୍ନ କରି ରଖିବାକୁ ମଝିରେ ମଝିରେ ହଁ ମାରୁଥାଏ । ରାସ୍ତାରେ ଯାଉଥିବା କେତେଲୋକ ନମସ୍କାର ବୋଲି କହୁଥାନ୍ତି । ଗାଡ଼ୀ ବେଶ୍ ଗତିରେ ଆଗକୁ ଚାଲିଥାଏ । ରାସ୍ତାର ଗାଡ଼ୀ, ମଣିଷ ଓ ଗୋରୁଗାଈଙ୍କ ଭିତରେ ବାଟ କାଟି ସ୍ୱାନେକ୍ ଖୁବ ନିପୁଣ ଭାବରେ ଗାଡ଼ୀ ଚଲାଇ ନେଇଯାଉଥାଏ । ଆଖିର ସେମାନେ ଜଙ୍ଗଲକାନ୍ଥରେ ଆସି ପହଞ୍ଚିଲେ । ଏଠି ସେତେବେଶୀ ଭିଡ଼ ନଥିଲା, ରାସ୍ତା ମଧ୍ୟ ବେଶ୍ ଓସାରିଆ ଥିଲା ।

ସେଇଠି ସେମାନଙ୍କର ଡୋମିନିକଙ୍କ ସହିତ ଭେଟ ହେଲା । ଡୋମିନିକଙ୍କ ସହିତ ଝିଅ ସ୍ୱଗ୍‌ନା ଓ ପୁଅ ସିମନ୍ ମଧ୍ୟ ଯାତ୍ରା ଦେଖି ଯାଉଥାନ୍ତି ଏବଂ ଗାଡ଼ୀପଛରେ ଗୋଟିଏ ଗାଈ ମଧ୍ୟ ବନ୍ଧାହୋଇ ଯାଉଥାଏ ଓ ଗାଡ଼ୀଭିତରୁ କେତୋଟି ଧଳା ଅଣ୍ଡିରା ବତକଙ୍କର ବେକ ସାପପରି ଲହଲହ ହେଉଥାଏ ।

ସେମାନେ ପରସ୍ପରକୁ ଅଭିବାଦନ ଜଣାଇଲେ ଏବଂ ଦୁଇଗାଡ଼ୀ ପରସ୍ପରକୁ ଅତିକ୍ରମ କରୁଥିବା ସମୟରେ ବୋରନା ଆଗକୁ ଉହୁଙ୍କି ପଡ଼ି ସେମାନଙ୍କୁ କହିଲା : "ତୁମମାନଙ୍କର ଭାରି ବିଳମ୍ବ ହୋଇଯିବ !"

"ନାଇଁ, ବିଳମ୍ବ କାହିଁକି ହେବ ? ବର୍ତ୍ତମାନ ତ କେତେ ସମୟ ପଡ଼ିଚି !"-- ହସିକରି ସ୍ୱଗ୍‌ନା ଉତ୍ତର ଦେଲା ।

ଗାଡ଼ୀଦୁଇଟା ପରସ୍ପରକୁ ଅତିକ୍ରମ କରିଯିବା ପରେ ସ୍ୱାନେକ୍ ଅନେକ ବାର ପଛକୁ ମୁହଁ ବୁଲାଇ ସ୍ୱଗ୍‌ନା ଆଡ଼କୁ ଅନାଇ ଦେଖିବାରେ ଲାଗିଥାଏ । ଶେଷରେ ସେ ପଚାରିଲା :

"ଇଏ କ'ଣ ସେଇ ଡୋମିନିକଙ୍କର ଝିଅ ସ୍ୱଗ୍‌ନା ?"

"ହଁ, ହଁ, ଡୋମିନିକଙ୍କର ଝିଅ ।"-- ବୋରନା ଉତ୍ତର ଦେଲା । ସେ ମଧ୍ୟ ସେତେବେଳେ ସ୍ୱଗ୍‌ନା ଆଡ଼କୁ ଅନାଇ ରହିଥାଏ । ସେମାନେ ସେତେବେଳକୁ ଅନେକ ପଛରେ ରହିଲେଣି ।

"ମୁଁ ଠିକ୍ ଚିହ୍ନି ପାରିଲି ନାହିଁ । କାରଣ ପ୍ରାୟ ଦୁଇବର୍ଷ ତଳେ ଯାଇ ତା'ସହିତ ମୋର ଦେଖା ହୋଇଥିଲା ।"

"ଆଃ, ଯେତେବେଳେ ତ ସିଏ ଭାରି ସାନ ଥିବ, ଠିକ୍ ସୁକୁମାର ଝିଲ୍ ଥିବ । ବର୍ତ୍ତିମାନ ମଧ୍ୟ ତା'ର ବୟସ ଅତ କମ, କିନ୍ତୁ ବର୍ତ୍ତିମାନ ତ ସିଏ କଅଁଳ ଘାସ ଖାଉଥିବା ଗୋଟାଏ ଛଡ଼ାପଶ ବଳୁଆଲ ହୋଇ ବଢ଼ୁଚ !"

"ହଁ,— ଦେଖିବାକୁ ସେ ପ୍ରକୃତରେ ସୁନ୍ଦର । ତା'ଉପରେ ଏତେ-ଲୋକଙ୍କର ଶୁଭଦୃଷ୍ଟି ପଡ଼ୁଚ, ଯେ ପ୍ରାୟ ପ୍ରତ୍ୟେକ ସପ୍ତାହରେ ଭଡ୍‌କା ଭାରି ନେଇ ତା'ଘରକୁ ମଣିଷ ଆସୁଚନ୍ତି,— ପ୍ରସ୍ତାବ ନେଇ ଭଲଲୋକ ଆସୁଚନ୍ତି ।"

"କିନ୍ତୁ ସିଏ ସେମାନଙ୍କୁ କାହାରିକୁ ହେଲେ ଜବାବ ଦେବନାହିଁ । ଝୁଡ଼ୀ ମନେମନେ ଭାବଚି ଯେ ଦିନେ କୋଉଠୁ ଜଣେ ତହସିଲଦାର ମଧ୍ୟ ତା'ଘରକୁ ପ୍ରସ୍ତାବ ନେଇ ଆସିବ ଏବଂ ତା'ହେଲେ ବର୍ତ୍ତିମାନ ମେଲାମେଲା ହେଉଥିବା ଚାଷୀମାନେ ହୁରୁଡ଼ି ପଳାଇବେ ।"— ଫ୍ରାନେକ୍‌ର ମାଆ କହିଲ ।

"ଜାଣ୍ଟସ୍ଥ, ନାଷ୍ଟସ୍ଥ, ସେ ପଇଁତିରିଶ ମାଣ ଚାଷ ଥିବା ଚାଷୀର ଲାଖି ହୋଇପାରିବ ।"

"ମାଥିଆସ୍, ତୁମ ଆଖିରେ ଯଦି ଝିଅଟି ଏତେ ଯୋଗ୍ୟର ମନେ-ହେଉଚ, ତେବେ ତୁମେ ମଧ୍ୟ ଭଲ ଲୋକ ପଠାଇ ଥରେ ଦେଖୁନା କାହିଁକି ?"— ହସିହସି ଫ୍ରାନେକ୍‌ର ମାଆ କହିଲ । ତା'ପରେ ବୋରିନା ମୁହଁରୁ ଆଉ ପଦେ ସୁଦ୍ଧା କଥା ବାହାରିଲନାହିଁ ।

"ତୁ ସହରୁଣୀ, ବଜାରୁଣୀ,— ଏଠି ଗାଆଁକୁ ଆସି ତୁ ଭାରି କଥା କହି ଶିଖିଚୁ, ନା ? ଘରଘର ବୁଲି ଚାଷୀମାନଙ୍କର ଘରେ ବସିଥିବା କୋଉ କୁକୁଡ଼ାର ପେଟତଳେ କେତୋଟା ଅଣ୍ଡା ଅଚ୍ଛି, ସେକଥା ଅଣ୍ଡାଳି ଦେଖିବାରେ ତୁମେସବୁ ଭାରି ମୁହଁ ପାଇ ଯାଇଚ, ନା ? ଚାଷୀମାନଙ୍କଠାରୁ ପଇସା ଟାଣି ଭାରି ମୁହଁ ବଢ଼ିଯାଇଚ, ନା ? ମୋ'ପରି ଗୋଟାଏ ଚାଷୀକୁ ମଧ୍ୟ ବେଇଜତ କରି କହିବାକୁ ତୁମର ସାହସ ହେଉଚ । ଯୁଗ୍‌ନା ପରଘର ଝିଅ, ତା'ପିଛୁରେ କାହିଁକି ତୁମେମାନେ ଲାଗିଛ ?"— ସେ ମନେମନେ ଭାବିଲି ଓ ଭାରି ରୁଷ୍ଟ ଓ ଉତ୍ତେଜିତ ଭାବରେ ସିଧା ଡୋମିନିକଭାରି ଗାଡ଼ୀଆଡ଼କୁ ଅନାଇରହିଲ ।

ଗାଡ଼ୀଟା ଯେତେବେଳକୁ ଅନେକ ପଛରେ ପଡ଼ିଗଲାଣି, ଗାଡ଼ୀରେ ବସିଥିବା ମଣିଷମାନଙ୍କର ନାଲିଆ ପୋଷାକମାନ ଖରାପଡ଼ି ଦୂରରୁ ଚକଚକ ଦେଖା-ଯାଉଚ । ଯେତେବେଳେ ଫ୍ରାନେକ୍ ଛୁଟମାରି ଘୋଡ଼ାଙ୍କୁ ଖୁବ ଜୋରରେ ଦଉଡ଼ାଇବାରେ ଲଗିଥାଏ ଏବଂ ରାସ୍ତାର କାଦୁଅ ଉପରେ ଘୋଡ଼ାଙ୍କର ଖୁରା ଗଳିଯାଇ ବଡ଼ବଡ଼ ଗାତ ହୋଇ ଯାଉଥାଏ ।

ଫ୍ରାନେକ୍ର ମାଆ କେତେକ'ଣ ଗପିଗପି ଯାଉଥାଏ । ବୋଉନା କିଛି କହିନି କେବଳ ମୁଣ୍ଡ ହଲାଇବାରେ ଲଗିଥାଏ ବା ଅସ୍ପଷ୍ଟ ଭାବରେ କ'ଣ କେତେପଦ କହି ପକାଉଥାଏ,— କିନ୍ତୁ ଆପଣାକୁ ଖୁବ ସଂଯତ କରି ମୁହଁ ବନ୍ଦ କରି ବସିଥାଏ ।

ଜଙ୍ଗଲ ପାରହୋଇ ସେମାନେ ସହର ରାସ୍ତାରେ ଯାଇ ପହଞ୍ଚିଲା ବେଳକୁ ବୋଉନା ଗାଡ଼ୀଉପରୁ ତଳକୁ ଓହ୍ଲାଇପଡ଼ିଲା ଓ ତାକୁ ଗାଡ଼ୀରେ ବସାଇ ଆଣିଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଲା ।

"ସଞ୍ଜ ବୁଡ଼ିଲା ବେଳକୁ ଆମେ ଯାତ୍ରାରୁ ଫେରିବୁ"— ଫ୍ରାନେକ୍ର ମାଆ କହିଲା ।

ବୋଉନା ଉତ୍ତର ଦେଲା, "ନାହିଁ,— ଅନେକ ଧନ୍ୟବାଦ । ମୋର ନିଜର ଘୋଡ଼ା ମଧ୍ୟ ଅଛି । ନହେଲେ ଲୋକେ ଦେଖିଲେ ଟାପରା କରି କହିବେ ଯେ ମୁଁ ବୋଧହୁଏ ଗୀର୍ଜାରେ ବାଜା ବଜାଇବାର ସହକାରୀ ହୋଇ ରହିବାକୁ ମନ ବଳାଇଲିଣି । ତୁମେ ତ ଜାଣିଚ, ମୋତେ ଗୀତଗାଇ ଆସେନାହିଁ କି ଗୀର୍ଜାର ବଣ୍ଟା ବଜାଇ ମଧ୍ୟ ଆସେନାହିଁ !"

ଗ୍ରେଟରାସ୍ତାରୁ ବଡ଼ରାସ୍ତାକୁ ଆସି ସେ ଶେଷକୁ ବଜାରରେ ଯାଇ ପହଞ୍ଚିଲା । ଭାରି ବଢ଼ିଆ ମେଳା ଲଗିଚ, ମଣିଷଙ୍କର ଗହଳି ଲଗିଗଲାଣି । ରାସ୍ତା, ଗଳି, ଅନ୍ଧକନ୍ଦି ସବୁ ମଣିଷ, ଗାଡ଼ୀ, ଘୋଡ଼ା ଓ ଗାଆଁମାନଙ୍କରୁ ଆସିଥିବା କେତେକେତେ ସାମଗ୍ରୀରେ ଭରପୂର ହୋଇ ରହିଚ ; ସତେଅବା କେଉଁ ବନ୍ୟାର ପ୍ଲାବନରେ ଭାସିଆସି କେତେକେତେ ମଣିଷଙ୍କର ନଦୀ-ସ୍ରୋତ ଏଠାରେ ଏକାଠି ମିଶିବାରେ ଲଗିଚନ୍ତି ; ଲହଡ଼ିପରେ ଲହଡ଼ିମାରି ଯେପରି ସେମାନେ ଗଳିରାସ୍ତାର ଘରଗୁଡ଼ିକୁ ଭୁସୁଡ଼ାଇ ଦେବାକୁ ବସିଚନ୍ତି

ଏବଂ ଶେଷକୁ ଆସି ମଠପାଖରେ ଥିବା ଛକଉପରେ ଆସି ଅଜାଡ଼ିହୋଇ ପଡୁଚନ୍ତି । ସହର ରାସ୍ତାରେ ମାଟିକାଦୁଅ ଟିକିଏ କମ୍,— କିନ୍ତୁ ଆଜି ଏଠାରେ ହଜାର ହଜାର ପାଦର ମହାଚକଟାରେ ଗୋଡ଼ ଗୋଇଠି ଯାଏ କାଦୁଅରେ ପଶିଯାଉଚି । ଗାଡ଼ୀମାନଙ୍କର ଚକରୁ ପିଚିକି କାଦୁଅପାଣି ନାନାଦିଗକୁ ପଡ଼ିବାରେ ଲଗିଚି ।

ଯାନର ଘୋ' ଘୋ' ଶବ୍ଦ ଯେପରି ପ୍ରତିମୁହୂର୍ତ୍ତରେ ମଧ୍ୟ ଅଧିକରୁ ଅଧିକ ହୋଇ ଚାଲିଚି । କୋଉଠି ବେଁବାଉଥିବା ଗୋଟାଏ ଗାଈର ବୋବାଳି ବା ନାଗରଦୋଳର ବୁଲିବା ସହିତ ବାଜୁଥିବା କୌଣସି ବାଜାର ଶବ୍ଦ ବା ଭିକମାଗି ବୁଲୁଥିବା ଯୋଗୀଭିକାରୀଙ୍କର ଗୀତବୋଲିବା ଶବ୍ଦ ବ୍ୟତୀତ ଆଉ କିଛି ସ୍ପଷ୍ଟଭାବରେ ଶୁଣାଯାଉନାହିଁ ।

ପ୍ରକୃତରେ ଏହି ଯାତଟି ଭାରି ବଡ଼ ଯାତ । ଭିଡ଼ ଭିତରେ ଆଗକୁ ଗୋଡ଼ ପକାଇବାର ଜୁ'ନାହିଁ,— ଛକ ଉପରେ ଯାଇ ପହଞ୍ଚିବାଲାଗି ଦୋକାନ ବଜାରର ମଣିଷଗହଳି ଭିତରେ ବୋଉନାକୁ କେତେ ଯେ ପେଲପେଲି ଆଗକୁ ଯିବାକୁ ପଡ଼ୁଚି, ସେକଥା ସିଏ ଜାଣେ ।

ଏହି ଯାତରେ ପୁଣି କେତେ ଚଳ ଭରତହୋଇ ରହିଚି, ସେକଥା କିଏ ସୁମାରିକରି କହିପାରିବ ?

ଦୁଇଧାଡ଼ୀ ପାଲ ଟଣାହୋଇ ବସିଥିବା ଦୋକାନ ଭିତରେ ସ୍ତ୍ରୀଲୋକ-ମାନଙ୍କର ସାଜ;— ପୋଷାକ, ଗହଣା, ଓ ଆଉ ପରିଫୁଲ ପରି ନାଲିରଙ୍ଗର କେତେକ'ଣ ଲୁଗାପଟା ଖୁଣ୍ଟ ଉପରେ ଟଙ୍ଗାହୋଇ ଝୁଲୁଚି । ଅନାଇଲା-ବେଳକୁ ଆଖି କ'ଣ ହୋଇଯାଉଚି । ଆଉଗୋଟାଏ ଦୋକାନରେ ମେଲାଇ ଦିଆଯାଇଥିବା ପସରାରୁ ହାଲଦିଆ ପୋଷାକମାନ ଝଟକି ଉଠୁଚି । ଏସବୁ ଦେଖି ମନେରଖିବାକୁ କାହାର ଶକ୍ତି ରହିଚି ?

ଏହିସବୁ ଦୋକାନରେ କେତେକେତେ ଝିଅବୋହୂ ଏପରି ଗହଳି କରି ଠିଆ ହୋଇଚନ୍ତି ଯେ ସେଠି ସୋରିଷଟାଏ ପକାଇବାକୁ ମଧ୍ୟ ଆଉ ଜାଗା ନାହିଁ । କିଏ ପସନ୍ଦ କରିବାରେ ଲଗିଚି, କିଏ ଦରଦାମ୍ ଛିଣ୍ଡାଉଚି, କିଏ କେବଳ ଠିଆହୋଇ ଲୋଭିଲା ନୟନରେ ଖାଲି ଅନାଇ ରହିଚି ।

ତା'ପରେ ଯୋଉସବୁ ଦୋକାନ ବସିଚ, ସେଥିରେ କେତେଭଳି ମାଳ, ଆଇନା, ନକଲି ଅଳଙ୍କାର, ଚୁଡ଼ୁକୁ ଓ ନାଲି ନେଳି ସୁନେଲି ନାନାରଙ୍ଗର ଫୁଲମାଳ ଚକ୍‌ଚକ୍ କରି ଉଠୁଚି, ଆଉ ଯେ କେତେକେତେ ସାମଗ୍ରୀ ରହିଚ, ସେକଥା ଭଗବାନେ ଜାଣନ୍ତି ।

ଆଉ ଆଉ ଦୋକାନରେ ଠାକୁରଙ୍କର ମୂର୍ତ୍ତିମାନ ବିକାହେଉଚ । ସେସବୁ ଥାକଥାକ ହୋଇ ଶୃଙ୍ଖାରେ ସଜାହୋଇ ଏପରି ଜାକଜମକ ଦେଖାଯାଉଚ ଯେ ସେଠାକୁ ଆସି କେତେକେତେ ସୃଷ୍ଟି ଭକ୍ତଭରେ ଆପଣା ମୁଣ୍ଡରୁ ଟୋପି କାଢ଼ି ପକାଉଚନ୍ତି ଏବଂ ଶୂନ୍ୟରେ ପବିତ୍ର କ୍ରସ୍‌ଚିହ୍ନ ଆଙ୍କିବାରେ ଲଗିଚନ୍ତି ।

ମୁକ୍ତା ଲଗି ପ୍ରତିଶ୍ରୁତି ଦେଇଥିବା ଖଣ୍ଡେ ମୁଣ୍ଡବନ୍ଧା ରୁମାଲ କିଣି ସାରିବା ପରେ ବୋଉନା ଭିଡ଼ ଭିତରେ ଠେଲପେଲ ବାଟକାଟି ମଠ ସେପାଖକୁ ବସିଥିବା ପୂଜୁରି ହାଟରେ ଯାଇ ପହଞ୍ଚିଲା । ବାଟର ମଣିଚଭିଡ଼ କାଟି ଓ ଦୁଇପାଖରେ ସଜାହୋଇ ରହିଥିବା ଭଲଭଲ ମନୋହର ଦରବ-ଉପରେ ଆଖି ପକାଇ ପକାଇ ଯାଉଯାଉ ତାକୁ ପ୍ରକୃତରେ ଅନେକ ସମୟ ଲଗିଗଲା ।

ଆଗ ଟୋପି ଦୋକାନ, ତା'ପରେ ଜୋତାର ଦୋକାନ, ତା'ପରେ ଘୋଡ଼ା ଓ ଗାଡ଼ୀର ସାଜମାନ ଓ ପୁଣି ତା'ପରେ ଦଉଡ଼ି, ଜାଲି ଓ କୁଲା ପାଚଆର ଦୋକାନ । ତା' ସେପାଖକୁ କମାରଶାଳ ଓ ମୋଚିମାନଙ୍କର ବସିବାଥାନ ।

ତା' ସେପାଖକୁ ଦରଜୀ ଓ ପୁଣି ତା' ସେପାଖକୁ ବଣିଆଙ୍କର ଦୋକାନ । ବଣିଆଦୋକାନରେ ବିକାହେଉଥିବା କେତେପ୍ରକାରର ମସଲରେ ନାକ ଫାଟିଯାଉଚ । ଆଗକୁ ଶୀତଋତୁ ଆସୁଚ, ଘରେ ସବୁ-ପ୍ରକାରର ମସଲ ସାଇତକରି ରଖିବାକୁ ହେବ । ତେଣୁ ଏହିସବୁ ଦୋକାନ-ମାନଙ୍କରେ କମ୍ ଗହଳି ଲଗିନାହିଁ ।

ତାକୁ ପାରିହୋଇ ଗଲେ ମାଉଁସର ଦୋକାନ । ପାଲର ଗ୍ରୁତତଳେ ମେଣ୍ଢା ବନ୍ଧାହେବା ଦଉଡ଼ିପରି ଏଡ଼େ ମୋଟ ସସେଜ୍‌ମାନ ମାଳମାଳ ହୋଇ

ଝୁଲୁଛି, ହଳଦିଆ ରଙ୍ଗର ଚର୍ବି ଓ ମହଣମାନ ମେଦ ହୋଇ ରହିଛି, ତା’ ପରେ ଧୂଆଁ ଦିଆ ହୋଇଥିବା ଏବଂ ଲୁଣରେ ଜୁଆହୋଇଥିବା ଘୁଷୁରି ମାଉଁସ କୁଢ଼କୁଢ଼ ହୋଇ ଥୁଆହୋଇଛି । ଆଉଆଉ ଦୋକାନମାନଙ୍କରେ ଉପରୁ କଣ୍ଟାରେ ଟଙ୍ଗାହୋଇ ଗୋଟାଗୋଟା ମଲା ଘୁଷୁରିଗୁଡ଼ିକ ଝୁଲୁଛନ୍ତି । ସେମାନଙ୍କର ଶରୀରରୁ ଅପଅପ ରକ୍ତ ବୋହି ଯାଉଛି, ସେଇଆକୁ ଦେଖି କେତେଟା ଟକଲା କୁକୁର ମଧ୍ଯ ଆସି ସେଠାରେ ଜମା ହେଉଛନ୍ତି ଏବଂ ଦୋକାନଦାରମାନେ ସେମାନଙ୍କୁ ଘଉଡ଼ାଇ ବାହାର କରିଦେବାକୁ ଚେଷ୍ଟା କରୁଛନ୍ତି ।

କଂଶେଇମାନଙ୍କର ଦୋକାନ ଯେ ପାଖକୁ ପାଉଁରୁଟିର ଦୋକାନ । ମହିରେ ହୁରୁହୁରୁ ଜଳୁଥିବା ଭାଟିଭିତରେ ରୁଟି ସେକାହେବାରେ ଲାଗିଛି । ଟୋକେଇ, କୁଲ, ବାଉଁଶିଆ ଓ ଆହୁରି ନାନାଜାଗାରେ କୁଢ଼କୁଢ଼ ପାଉଁରୁଟି ଭରତି ହୋଇ ରହିଛି, କେତେପ୍ରକାର କେକ୍ ଉପରେ ଅଣ୍ଡାର ହଳଦୀଅଂଶ ବୋଲିଦିଆହୋଇ ଚକଚକ ଦିଶୁଛି, ଆହୁରି କେତେପ୍ରକାର ବଡ଼ ଓ ସାନ ରୁଟିମାନ ସଜାହୋଇ ରହିଛି ।

ଖେଳନାର ଦୋକାନମାନ ଯାହାକୁଯେତେ । ତା’ ପରେ ବହି-ଦୋକାନ,— ପାଞ୍ଜି, ଭଜନମାଳା, ସ୍ତୁତି, ଜଣାଣ, ପ୍ରେମ ଡକାଇତର ଗପ ଓ ପାରଧିଗପ,— ଯାହା ଖୋଜିବ ତାହା ମିଳିବ । ଇହୁଦୀବଣିଆମାନେ କେତେପ୍ରକାରର କଣ୍ଢେଇ ଓ ଖେଳନାର ବିପଣି ଖୋଲି ବସିଚନ୍ତି, ସେମାନଙ୍କର ଟବରଟବର ପାଗଡ଼ି ପାଟି କାନପାଖରେ ଚାଉଁଚାଉଁ ହୋଇ ବାଜୁଛି, କୋଉଠି ପେଁକାଳୀ ପେଁ କରି ଶୁଭୁଛି ତ କୋଉଠି ଚଢ଼େଇକୁ ଚିପିଦେଲେ କୁଁକୁଁ ଶବ୍ଦ କରି ଉଠୁଛି । କୋଉଠି ବେଙ୍ଗବାଇଦ ଭଁଭଁ ବୁଲିବାରେ ଲାଗିଛି ବା କୋଉଠି କୋଉ ବାଜା ଫଟଫଟ ହୋଇ ବାଜୁଛି । ମଣିଷ ଭିଡ଼ର କୋଳାହଳରେ ମୁଣ୍ଡ ଝାଇଁଝାଇଁ ହୋଇଯାଉଛି ।

ନ୍ତକ ମହିରେ ଗଛ ଗୁଡ଼ିରେ କମାର ଓ କୁମ୍ଭାରମାନେ ଆପଣାର ଅଲଗା ବଜାର ଜମାଇ ବସିଚନ୍ତି । ତା’ପରେ ବଢ଼େଇମାନେ ଭଲଭଲ କାଠର ସରଞ୍ଜାମମାନ ମେଲାଇ ଦେଇଛନ୍ତି ।

ଏହାବ୍ୟତୀତ ଗାର୍ଡ଼ୀଙ୍କ ଘରଠାରୁ ଆରମ୍ଭ କରି କାନ୍ଥ, ବାଡ଼ ଆଉ ରାସ୍ତା ଦୁଇପାଖରେ ଥିବା ନାଳାଉପର ପର୍ଯ୍ୟନ୍ତ ସ୍ତ୍ରୀଲୋକମାନେ ନାନାପ୍ରକାର ଚଜ ବିକ ବସିଚନ୍ତି । କିଏ ଝୋଟେଇରେ ପୂରାଇ ବା ମାଳ ଛନ୍ଦ ପିଆଜ ବିକୁଚି, କିଏ ହାତ ତଆରି କୁରୁଚା ବିକ ବସିଚି, କିଏ ଅଣ୍ଡା, ଛେନା, ଛତୁ ବା କନାରେ ଗୁଡ଼ାହୋଇ ଥୁଆହୋଇଥିବା ନହୁଣୀର ପସରା ମେଲାଇ ବସିଚି । କିଏ ଆଳୁ ବିକୁଚି, କିଏ ଦିଇଟା ବତକଙ୍କୁ ଆଗରେ ଧରି ବସିଚି, କିଏ ତା'ର ଓଲଟା ହୋଇଥିବା କୁକୁଡ଼ା ବିକିବାକୁ ଆଣିଚି, କୋଉଠି ପୁଣି ଝୋଟ ବିକା-ହେଉଚି । ଆପଣାଆପଣା ପସରା ଆବୋରି ବସି ସମସ୍ତେ ପାଖରେ ବସିଥିବା ଆଉ ଲୋକମାନଙ୍କ ସହିତ ଖୁସିଗପ କରିବାରେ ଲଗିଚନ୍ତି, ସାଧାରଣତଃ ଯାନଯାତରେ ଲୋକମାନେ ସରଗରଚର ଯେପରି କରିଥାନ୍ତି । କିନ୍ତୁ କେହି ଜଣେ କିଣିବାବାଲା ଆସି ପହଞ୍ଚିଗଲେ ସେମାନେ ଭାରି ଶାନ୍ତ ଓ ଗମ୍ଭୀର ଭାବରେ ସେମାନଙ୍କ ସହିତ କଥାବାର୍ତ୍ତା କରୁଚନ୍ତି, ଠିକ୍ ଭଲ ଗୃହୀକୁଳର ଘରଣୀମାନଙ୍କ ପରି କଥାବାର୍ତ୍ତା କରୁଚନ୍ତି ; ଏକାବେଳେକେ କଳହ, ଚିତ୍କାର ଓ ଠେଲାପେଲା ହାତଛଡ଼ାଛଡ଼ି କରୁଥିବା ମୁଣ୍ଡଖରାପ ଖଳ ଇହୁଦୀମାନଙ୍କର ଦୁର୍ବ୍ୟବହାର ଏଠାରେ ଆଦୌ ଦେଖିବାକୁ ମିଳୁନାହିଁ ।

କେତେ କେତେ ଜାଗାରେ ଭିତରେ ଜଳୁଥିବା ଚୂଲିମାନଙ୍କରୁ ଉପରକୁ ଧୂଆଁ ଉଠିବାକୁ ଲଗିଚି । ଏଠି ଗରମ ଗୃହା ବିକା ହେଉଚି । ଆଉ-କୋଉଠି ତାଟକା ଛଣା ବା ସେକାହେଉଥିବା ଖାଇବାଜିନଷ ମଧ୍ୟ ମିଳୁଚି,— ଗରମ ସସେଜ୍, ବନ୍ଧାକୋବି, କନ୍ଦମୂଳ ଓ ଆଳୁସିଝା ଯାହା ଖୋଜିବ ତାହା ।

ଭିକାରୀମାନେ ପଲପଲ ହୋଇ ଗୃରିଆଡ଼େ ବୁଲୁବାରେ ଲଗିଚନ୍ତି । ଅନ୍ଧ, ଛୋଟା, ଘୁଙ୍ଗା ବା କଣା କାହାରି ଅଭାବ ନାହିଁ । କାହାର ଗୋଟାଏ ଗୋଡ଼ ନାହିଁ ତ ଆଉ କାହାର ଗୋଟାଏ ହାତ ନାହିଁ । ମଫସଲର ଯାନଯାତରେ ସବୁଠିଁ ଏମାନଙ୍କୁ ପଲପଲ ହୋଇ ଦେଖିବାକୁ ମିଳେ । କିଏ କେଁ କେଁ କରି କେନ୍ଦରା ବଜାଉଚି, କିଏ ଭଜନ ଗୀତ ଗାଉଚି,— ଆପଣା

ହାତରେ ଧରିଥିବା କାଠକୁଣ୍ଢାଟିକୁ ହଲାଇ ହଲାଇ ସେମାନେ ପଇସା ଝମଝମ କରିବାରେ ଲାଗିଚନ୍ତି ।

ବୋରିନା ଚାରିଆଡ଼କୁ ଆଖିବୁଲାଇ ସମସ୍ତ ଦୃଶ୍ୟ ଦେଖିବାରେ ଲାଗିଥାଏ, ମନେମନେ ସେ ଅବାକ୍‌ ହୋଇ ପଡୁଥାଏ ଏବଂ କଦବା କେଉଁଠି ପରିଚିତ ବନ୍ଧୁବାନ୍ଧବଙ୍କ ସହିତ ଭେଟ ହେଲେ ଦଣ୍ଡେ ଠିଆହୋଇ କଥାବାର୍ତ୍ତା ମଧ୍ୟ କରୁଥାଏ । ଶେଷକୁ ମଠ ପାରହୋଇ ସେ ଘୁଞ୍ଚୁରିହାଟରେ ଆସି ପହଞ୍ଚିଲା । ବାଲିଆମାଟିର ଗୋଟିଏ ଖୋଲା ଓସାରିଆ ପଡ଼ିଆ, ମଝିରେ ମଝିରେ ପଲା ମରିହୋଇଚି । ମଠପାଚେରୀ କଡ଼େକଡ଼େ ବଡ଼ବଡ଼ ଓକ୍‌ଗଛ ପାଚେରୀ ଉପରେ ଭୀମକାୟ ଶାଖାପ୍ରଶାଖା ବିସ୍ତାରକରି ରହିଚି । ସେଇଠି ଗୁଡ଼ଇଜାଗା ଦେଖି ଅନେକ ଲୋକ ଜମା ହୋଇଚନ୍ତି । ପାଖରେ ଗାଡ଼ୀସବୁ ମଧ୍ୟ ଥୁଆ-ହୋଇଚି ଓ ତା' ଆଗକୁ ଯାହାରେ ବିକା ହେବାଲାଗି ଆସିଥିବା ଘୁଷୁରିପଲ ମଧ୍ୟ ଦୃଷ୍ଟିଗୋଚର ହେଉଚନ୍ତି ।

ତା'ର ଭିତରୁ ମୁଜୁକା ଓ ମାଙ୍କୁ ଖୋଜି ବାହାର କରିବାକୁ ତାକୁ ବେଶୀ ବେଳ ଲାଗିଲାନାହିଁ ।

"କିଛି ବିକିଲଣି ନା ନାହିଁ ?"

"ହଁ, କଂସେଇମାନେ ଆସି ମୂଲ୍ୟକରି ଯାଇଚନ୍ତି । କିନ୍ତୁ ସେମାନେ ଖାରି ଶସ୍ତାରେ କିଣିବାକୁ ଚାହୁଁଚନ୍ତି ।"

"ଘୁଷୁରିଙ୍କର ଭାଉ କେମିତି ହୋଇଚି ? କ'ଣ ଖାରି ଚଢ଼ା ?"

"ନା— ଯାତ୍ରାକୁ ଘୁଷୁରି ଆସିଚନ୍ତି ଅନେକ, କିନ୍ତୁ କିଣିବା ଲୋକ କମ୍‌ ।"

"ଲିପ୍‌କାରୁ ଆଉ କେହି ଆସିଚନ୍ତି ?"

"ହଁ, କ୍ଲେମ୍ବାଙ୍କ ଘରଲୋକେ ଗ୍ରେଟଗ୍ରେଟ କେତୋଟି ଘୁଷୁରି-ନେଇ ଆସିଚନ୍ତି । ଡୋମିନିକଙ୍କର ପୁଅ ସିମନ୍‌ ମଧ୍ୟ ଗୋଟାଏ ଘୁଷୁରି ନେଇ ଆସିଚି ।"

"ହଁ, ଧଅସି ଧଅସି ଯାହା ବିକିବାର ବିକିପକାଅ । ପୁଣି ଯାହା ଦେଖିସିବ ନା ନାହିଁ ?"

"ଆମେ ତ କେତେବେଳୁ ଏଠି ବସିକରି ରହିଲୁଣି ।"

"ମାଈ ଘୁଷୁରିଟା ପାଇଁ ସେମାନେ କେତେ ଦେବାକୁ କହୁଚନ୍ତି ?"

"ତିରିଶି ରୁବଲ୍ । ସେମାନେ କହୁଚନ୍ତି ମାଈ ଘୁଷୁରିଟା କୁଆଡ଼େ ଆହୁରି ଟିକିଏ ମୋଟାସୋଟା ହୋଇଥାନ୍ତା । ଖାଲି ହାଡ଼,— ଚର୍ବି ବୋଲି ଟିକିଏ ନାହିଁ ।"

"ସେମାନେ ତୁଚ୍ଛା ମିଛକଥା କହୁଚନ୍ତି । ତା' ଦେହରେ ଗୃହିଆଙ୍ଗୁଳି ବହଳର ଚର୍ବି ରହିଚି ।"— ଘୁଷୁରିର ପିଠି ଓ କଡ଼ପାଖରେ ହାତ ବୁଲାଇ ବୋରିନା ଉତ୍ତରଦେଲା । "ସାନ ଖାସିଟାର ଅବଶ୍ୟ ଚର୍ବି ହୋଇନାହିଁ, କିନ୍ତୁ ସେଥିରୁ ମାଉଁସ ବହୁତ ମିଳିବ ।"—କହି ବାଲି ଭିତରେ ଅଧେ ପୋତିହୋଇ ଶୋଇଥିବା ଖାସିଟାକୁ ସେ ହାତଭରିକା ଦେଇ ଠିଆ କରାଇଦେଲା ।

"ପଇଁତିରିଶ ରୁବଲ୍ ହେଲେ ଏଇଟାକୁ ବିକିଦିଅ । ମୁଁ ଏଇନାଗେ ଅଁନ୍ଦ୍ରେଇ ପାଖରୁ ହୋଇ ପୁଣି ଏଠାକୁ ତୁମମାନଙ୍କ ପାଖକୁ ଆସିବି । କିଛି ଖାଇବାକୁ ମନ ହେଉଚି କି ?"

"ଆମେ ସାଙ୍ଗରେ ଆଣିଥିବା ରୁଟିତକ ଶେଷ କରି ସାରିଲୁଣି ।"

"ଆଚ୍ଛା, ମୁଁ କିଛି ସସେଜ୍ କିଣିଆଣି ଦେଉଚି । କିନ୍ତୁ ଘୁଷୁରି ଖାସିଟା ଯେପରି ଆଜି ଭଲ ଭାଉରେ କଟିଯାଏ ?"

"ବାପା, ଖରିଦିନେ ମୋତେ ଯେଉଁ ରୁମାଲ କିଣିଦେବବୋଲି କହିଥିଲ, ଆଜି କିଣି ଦେବନାହିଁ ?"

ବୋରିନା ତତ୍‌କ୍ଷଣାତ୍ ଗ୍ରୀଟଭିତରକୁ ହାତ ଗଳାଇ କ'ଣ ବାହାର କରିବାକୁ ଯାଉଥିଲା, କିନ୍ତୁ ପୁଣି କ'ଣ ମନେକରି ହାତଟାକୁ ବାହାର କରିଆଣି କହିଲା : "ହଁ, ହଁ, ଅବଶ୍ୟ, ଅବଶ୍ୟ !"

ସେ ତରତର ହୋଇ ସେଠୁ ବାହାରି ଗ୍ଲଲିଗଲା, କାରଣ ଦୂରରୁ କେଉଁ ଗାଡ଼ୀପାଖରୁ ସେ ଯୁଗନାର ମୁହଁ ଦେଖିବାକୁ ପାଇଲା । କିନ୍ତୁ ସେଠି ଯାଇ ପହଞ୍ଚୁ ପହଞ୍ଚୁ ଯୁଗନା ଭିଡ଼ଭିତରେ କୁଆଡ଼େ ଅଦୃଶ୍ୟ ହୋଇ ଯାଇଥିଲା । ବୋରିନା ଆଉ ଖୋଜଖୋଜ ଠାବ କରି ପାରିଲାନାହିଁ ।

ତେଣୁ ସେ ପୁଣି ଆନ୍ତ୍ରେକ୍‌କୁ ଖୋଜି ବାହାରିଲା । କିନ୍ତୁ ଏଇ ଭିଡ଼ଭିତରେ ତାକୁ ଖୋଜି ବାହାର କରିବା କି ସହଜ କଥା ? ଘୁଷୁତ୍ରେହାଟ ପାଖରୁ ବଜାର ଛକଯାଏ ଯାଇଥିବା ରାସ୍ତାଟି ଉପରେ ଗାଡ଼ୀମାନ ଏପରି ଛନ୍ଦାଛନ୍ଦ ହୋଇ ରହିଛି ଯେ ସେସବୁ ଭିତରେ ବାଟ କାଟି ଯିବା ପ୍ରକୃତରେ କାଠିକର ପାଠ ହୋଇ ଯାଉଛି ।

ଏହିପରି ଖୋଜୁଖୋଜୁ ସେ ହଠାତ୍ ଆସି ଆନ୍ତ୍ରେକ୍ ପାଖରେ ହାଜୁର୍ ଗଲା । ଆନ୍ତ୍ରେକ୍ ଗୋଟିଏ ଗହମ ବସ୍ତା ଉପରେ ବସି ଗ୍ରାଣ୍ଟ ଧରି ଇହୁଦୀ-ମାନଙ୍କର କୁକୁଡ଼ାପଲ ହୁରୁଡ଼ାଇବାରେ ଲାଗିଛି । ଘୋଡ଼ା ଖାଉଥିବା ଅଖା ପାଖକୁ କୁକୁଡ଼ାଗୁଡ଼ାକ ବାରବାର ମାଡ଼ମାଡ଼ ଆସୁଛନ୍ତି । କୁକୁଡ଼ା ହୁରୁଡ଼ାଇବା ସଙ୍ଗେସଙ୍ଗେ ଏଣେ ସେ ଗରାହକମାନଙ୍କ ସହିତ କଥାବାର୍ତ୍ତାରେ ମଧ୍ୟ ବ୍ୟସ୍ତଅଛି ।

"ମୁଁ ପରା ସାତ ବୋଲି କହିଲି, ସାତରୁ କଦାପି କମ୍ ହେବନାହିଁ ।"

"ମୁଁ ସାଢ଼େଛଅ ଦେବି । ଗହମଟା ଟିକିଏ ନୀରସ ଜଣାପଡୁଛି ।"

"କ'ଣ କହିଲୁ ? ନୀରସ ଜଣାପଡୁଛି ? ତୋ' ଅବର୍ଜିଆ ମୁହଁରେ ଗୋଟାଏ ମୁଥ ବସାଇଲେ ଯାଇ ସେଥିରେ ଯେତେ ରସ ଅଛି, ସବୁ ବାହାରି ପଡ଼ିବ । ମୋ' ଗହମକୁ ପୁଣି ତୁ ନୀରସ ବୋଲି କହିବୁ ?"

"ହଁ, ଗହମଟା ଟିକିଏ ପାଣି ଖାଇଯାଇଛି । ହଁ, ମୁଁ ମାପିକରି ନେବି ଆଉ ସାଢ଼େ ଛଅ ଭାଉରେ ଦେବି ।"

"ନାଇଁ,— ମୁଁ ଓଜନ କରି ଦେବି, ଆଉ ସାତରେ ବିକିବି ।"

"କିନ୍ତୁ ବାବୁ ତୁ ଏପରି ଲାଲ ହୋଇଯାଉଛୁ କାହିଁକି କହିଲୁ ? କିଣିବି କି ନ କିଣିବି, ସିଏ ତ ମୋର ଖୁସିର କଥା । କିନ୍ତୁ ଦରଦାମ ତ ପୂର୍ଣ୍ଣି କରିବାକୁ ପଡ଼ିବ ?"

"ତେବେ ଯାଆ ଆଉକୋଉଠି ଦରଦାମ କରିବୁ !"— ଗୋଟାକପରେ ଗୋଟାଏ ବସ୍ତା ଫିଟାଇ ପରୀକ୍ଷା କରି ଗହମ ଦେଖୁଥିବା ଇହୁଦୀମାନଙ୍କ ପ୍ରତି ସେ ଆଉ କୌଣସି ନଜର ଦେଲାନାହିଁ ।

"ଆଲେକ୍, ମୁଁ ଟିକିଏ ମୋହରରର ପାଖ ହୋଇ ଆସିପାରିଲାକେ ଆସୁଚ !"

"କ'ଣ ଜଙ୍ଗଲଉରର ଲୋକମାନଙ୍କ ନାଆଁରେ ନାଲିସ୍ କରିବାକୁ ?"

"କରିବନାହିଁ ଆଉ କ'ଣ ଛାଡ଼ିଦେବ ? ସେମାନେ ମୋର ଯେତେ-ବଡ଼ ଷତଟାଏ କରିଦେଲେ—"

"ତେବେ ଜଙ୍ଗଲ ଜଗୁଆଳକୁ ଗଛରେ ବାନ୍ଧି ଦନେ ପିଟିପିଟି ତାକୁ ଗୋଗଛବାଙ୍ଗିଆ କରିଦେଲେ ତ ସବୁ କାମ ସିଦ୍ଧ ହୋଇଯିବ ।"

"ସେକଥା ତ ହେବ, କିନ୍ତୁ ଜଙ୍ଗଲଉରର ଲୋକମାନେ ତ ପୁଣି ସେମାନଙ୍କର ଭାଗ ପାଇବେ ନା ନାହିଁ ?"—ସେ କର୍କଶ କଣ୍ଠରେ କହିଲା ।

"ମତେ ସୁଉକାଏ ପଇସା ଦେବ ?

"କାହିଁକି ?"

"ଟୋପାଏ କ'ଣ ପିଇବ ଆଉ ଗଣ୍ଡାଏ କ'ଣ ଖାଇବ ।"

"ବାପର ବଟୁଆକୁ ତୋ'ର ସବୁବେଳେ ଭାରି ଲୋଭ ! ତୋ' ପାଖରେ କ'ଣ ମୋଟେ ପଇସା ନାହିଁ ?"

ରାଗରେ ଆଲେକ୍ ବାପଆଡ଼ୁ ମୁହଁ ବୁଲାଇ ଅନ୍ୟଆଡ଼େ ଅନାଇବାକୁ ଲାଗିଲା । ଆଉ ଯେତେ ଅନିଚ୍ଛା ରହିଥିଲେ ମଧ୍ୟ ବୁଢ଼ା ସୁଉକାଏ ପଇସା ବାହାରକରି ପୁଅକୁ ଦେଲା ।

"ହଁ, ଆପଣା ଦେହର ରକ୍ତକୁ ପଇସା କରି ଯେତେ ହାଡ଼ିବାଉର ସମ୍ପତ୍ତିକୁ ଦାନ କରିବ"— କଣରେ ଥିବା ଗୋଟାଏ ସରାଇଘର ଆଡ଼କୁ ଯାଉଯାଉ ଆଲେକ୍ ମନେମନେ ଭାବିବାକୁ ଲାଗିଲା । ସରାଇଘରେ କେତେ-କେତେ ଲୋକ ଜଳଖିଆ କରୁଥାନ୍ତି । ସରାଇଘର ଦୁଆରେ ଗୋଟିଏ ଗ୍ରେଟ ବଖରାରେ ମୋହରରର ବସାଘର । ମୋହରରର ଦେହରେ ଖଣ୍ଡିଏ ମାତ୍ର କୁରୁତା ଥାଏ, ଅଗାଧୂଆ ଓ ଅଳରାସଲରା ବେଶରେ ମୁହଁ ଭିତରେ ଗୋଟାଏ ପିକା କାମୁଡ଼ିଧରି ସେ ଝରକା ଆଡ଼କୁ ପଡ଼ିଥିବା ଟେବୁଲ ପାଖରେ ବସିଥାଏ । ଘରକୋଣକୁ ଗୋଟାଏ ହେଁସଉପରେ ଜଣେ ସ୍ତ୍ରୀଲୋକ କୋଟ୍ ଘୋରିହୋଇ ଶୋଇରହିଥାଏ ।

"ବସ, ଏଇ ଚଉକି ଉପରେ ବସ !"— ଚଉକିଉପରେ ଥିବା ପୋଷାକମାନ ମାଟି ଉପରକୁ ପକାଇଦେଇ ସେ ବୋଗନାକୁ ବସିବାକୁ ନିର୍ଦ୍ଦେଶ ଦେଲା । ବୋଗନା ଗୋଟିଗୋଟି କରି ଆପଣାର ସମସ୍ତ କଥା ତାକୁ ବୁଝାଇ କହିବାକୁ ଲାଗିଲା ।

"କିନ୍ତୁ ପିଲାର ତ କିଛି ହୋଇନାହିଁ ।"

"ହେଲା ଏବେ ! କିନ୍ତୁ ତା' ଦେହ ଖରାପ ହୋଇଥିଲେ ପୁଣି କ'ଣ ହୋଇଥାନ୍ତା କହିଲ ? ଜଗୁଆଳି ତାକୁ ମାଡ଼ ମାରିଲା କାହିଁକି ?"

"ତାକୁ ତ ମାରିନାହିଁ, ପଢ଼ଶାଘରର ଗାଈଆଳକୁ ମାରିଚି ।"

"ହେଲା ଏବେ,— କିନ୍ତୁ ଆମେ ଏମିତି ବାଗରେ ଲେଖିବା, ଯେପରି ସେଥିରୁ ଜଣାପଡ଼ିବ ଯେ ଗାଈଟା ମରିଗଲା, ପିଲାଟାର ଦେହ ମଧ୍ୟ ଭାରି ଖରାପ ହେଲା । ଜଙ୍ଗଲାଡ଼ିକୁ ଏଥିପାଇଁ କ୍ଷତିପୂରଣ ଦେବାକୁ ହିଁ ହେବ !"

"ହଉ, ସେଇଆ କରିଦିଅ । ମୁଁ କିଛିବୁଝୁନାହିଁ, କେବଳ ନ୍ୟାୟ-ବିଚାର ଲୋଡ଼ୁଚି ।"

"ମୁଁ ସାଙ୍ଗେ ସାଙ୍ଗେ ତୋ'ର ଅର୍ଜି ଲେଖିଦେଉଚି । ହେ ଫ୍ରାଙ୍କା ! ମଣିଷଟାଏ ନା ଗଧଟାଏ !"— ତଳେ ଶୋଇଥିବା ସ୍ତ୍ରୀଲୋକଟିକୁ ଗୋଡ଼ରେ ହଲାଇଦେଇ ସେ ତାକୁ ଉଠାଇଦେଲା । ସ୍ତ୍ରୀଲୋକଟି ଆପଣାର ବାଳମୁକୁଳା ଝାମ୍ପୁରା ମୁଣ୍ଡକୁ ଉପରକୁ ଟେକିଲା । "ଆଲୋ, ଆମପାଇଁ କିଛି ଭଡ୍‌କା ଆଉ କିଛି ଖାଇବାକୁ ନେଇଆ ।"

"ମୋ' ପାଖରେ ତ ଫଟା ପାଇଲାଟାଏ ନାହିଁ । ତୁମେ ତ ଭଲକରି ଜାଣିଚ ଯେ ବିଶ୍ୱାସକରି ଆମକୁ କେହି ଉଧାରି ଦେବେନାହିଁ,"— ସ୍ତ୍ରୀଲୋକଟି ଆପତ୍ତି ଜଣାଇଲା ଏବଂ ହାଇମାରି ହେଁସଉପରୁ ଉଠି ଅଳସ ଭଙ୍ଗି ଭିଡ଼ମୋଡ଼ ହେବାକୁ ଲାଗିଲା । ଦେଖିବାକୁ ଏଡ଼େବଡ଼ ଜବର ମାଇପି-ଟାଏ, ମୁହଁଟା ଠିକ୍ ଗୋଟାଏ ମଦପିଇଲା ଲୋକର ମୁହଁପରି ଫଣଫଣ ଦିଶୁଚି, କିନ୍ତୁ ଏଣେ କଣ୍ଠର ଶବ୍ଦ କୁକୁରପିଲାର କଣ୍ଠଶବ୍ଦ ଠାରୁ ମଧ୍ୟ ଅଧିକ ଚେଁ ଚେଁ ଶୁଭୁଚି ।

କାଗଜ ଉପରେ କଲମଟାକୁ ଚରଚର୍‌ର୍ କରି ମୋହରିର ଲେଖି-ବସିଲା । ଏଣେ ଫାଁସୁଫାସୁ କରି ମୁହଁଭିତରୁ ଧୂଆଁ ଉଡ଼ାଇ ସେ ପିକା ଟାଣୁଥାଏ ଓ ତା'ଆଡ଼କୁ ଏକାନଘାରେ ଅନାଇ ରହିଥିବା ବୋଉନାର ମୁହଁ ଉପରେ ଧୂଆଁ ଛାଡ଼ିବାରେ ଲଗିଥାଏ । ମଝିରେ ମଝିରେ ଲେଖା ବନ୍ଦକରି ହାତରେ ହାତ ଘଷି ସେ ଫାଙ୍କା ଆଡ଼କୁ ମୁହଁ ବୁଲାଇ ଅନାଉଥାଏ । ତା'ର ଆଗଦାନ୍ତ କେଇଟୀ ଭାଙ୍ଗିଯାଇଚି, ଓଠଦୁଇଟା କଳା ଦେଖାଯାଉଚି ।

ଅର୍ଜି ଲେଖା ସରିଲା । ଲେଖିବାର ଖରଚ ଗୋଟାଏ ଟଙ୍କା ଓ ଟିକଟ ପାଇଁ ଆଉଗୋଟାଏ ଟଙ୍କା ଦେବାକୁ ପଡ଼ିଲା ଏବଂ ଆଉ ତିନିଟଙ୍କା ଦେଲେ ସେ ଏହାକୁ ନେଇ କଚେରୀରେ ଦାଖଲ କରିବ ବୋଲି ମୋହରିର ଜବାବ ଦେଲା ।

ଏସବୁ ଖରଚ ଓ କ୍ଷତିପୂରଣ ତ ଜଙ୍ଗଲଓ୍ଵାଲା ଦେବ, ଏହିପରି ଭାବି ବୋଉନା କୌଣସି ଆପତ୍ତି ନକରି ପଇସାତକ ଗଣିଦେଲା ।

"ସଂସାରରୁ କ'ଣ ନ୍ୟାୟ ବୋଲି ଗୋଟାଏ ଜିନିଷ ଲୁଆଡ଼େ ଚାଲି-ଗଲା ?"— ଗଲାବେଳେ ସେ କହିକହି ଗଲା । "ଏ କଚେରୀରେ ନହେଲେ ମୁଁ ଉପର କଚେରୀକୁ ଯିବି, ସେଠି ନହେଲେ ଆହୁରି ଉପରକୁ ଯିବି, କିନ୍ତୁ କଦାପି ଛାଡ଼ିଦେବିନାହିଁ ।" ସେ ଅତ୍ୟନ୍ତ ଏକ୍‌ଜିଦ୍‌ଥା କଣ୍ଠରେ କହିବାକୁ ଲାଗିଲା । "ଯାହା ହକ୍ ମୋ'ର ହେଉଚି, ମୁଁ ତାହା ଛାଡ଼ିଦେବାକୁ ଯିବି କାହିଁକି ? ଆଉ ଛାଡ଼ିଦେବି କାହାକୁ ? ଯାହା ହାତରେ ଏତେଏତେ ଜଙ୍ଗଲ ରହିଚି, ଏତେଏତେ ଜମି ରହିଚି, ସେଇମାନଙ୍କୁ ? ନା— କଦାପି ନୁହେଁ !"

ବଜାରଭିତରକୁ ଯାଉଥିବାବେଳେ ତା'ର ମନଭିତରେ ଏହିସବୁ କଥା ଗୋଳେଇଘାଣ୍ଟି ହେଉଥାଏ । କିନ୍ତୁ ଟୋପିଦୋକାନ ଡେଇଁକରି ଗଲାବେଳେ ସୁଗନା ସହିତ ତା'ର ସାକ୍ଷାତ ହେଲା ।

ମୁଣ୍ଡଉପରେ ଗୋଟାଏ ଗାଢ଼ନାଳ ରଙ୍ଗର ଟୋପିପିନ୍ଧି ସେ ଠିଆ ହୋଇଥାଏ ଓ ଆଉ ଗୋଟାଏ ଟୋପି ମୂଲେଇବାରେ ଲାଗିଥାଏ ।

"ଦେଖିଲ ମାଥିଆସ୍, ଏ 'ହଲଦିଆ'* ଠକ କହୁଚ ଏଇଟା କୁଆଡ଼େ ଭାରି ଭଲ ଟୋପି ! ମୋତେ ଭଣ୍ଡିଦେବାକୁ ବସିଚ !"

"ବେଶ୍ ଖାସା ଟୋପିଟିଏ । କାହାପାଇଁ, ଆଣ୍ଡ୍ରି ଉପାଇଁ କିଣୁଚୁ ?"

"ହଁ, କାରଣ ସିମନ୍ ଆପଣାଲାଗି କିଣିସାରିଚ ।"

"କିନ୍ତୁ ତା'ମୁଣ୍ଡକୁ ଏଇଟା ସାନ ହେବନାହିଁ ?"

"ମୋ' ମୁଣ୍ଡ ଯେଉଁକି, ତା' ମୁଣ୍ଡ ମଧ ଠିକ୍ ସେତିକି ।"

"ତୁ ମଧ କେତେ ଚମତ୍କାର ଭାବରେ ଗାଈଆଳ ପିଲାର କାମ କରିପାରୁଥାନ୍ତୁ ?"

"ପାରନ୍ତିନାହିଁ ?"— ମୁଣ୍ଡର ଟୋପିଟାକୁ ଆଉ ଗୋଟାଏ ଆଡ଼କୁ କରିଦେଇ ସେ ଭାରି ଗର୍ବରେ କହିଲା ।

"ତା'ହେଲେ ମୁଁ ଆଗଯାଇ ତୋତେ ମୋ'ଘର କାମ ଲାଗି ନେଇଆସନ୍ତି !"

"ଖାଲି ମୋତେ ଟିକିଏ ବେଶୀ ଦରମା ଦେବାକୁ ପଡ଼ନ୍ତା"— ଯୁଗନା ହସିହସି କହିଲା ।

"ଆଉ କାହାକୁ ଦେବାକୁ ପଡ଼ନ୍ତା ସିନା, କିନ୍ତୁ ମୋତେ ନୁହେଁ !"

କାରଣ ମୁଁ ଖେତରେ କୌଣସି କାମ କରିବାକୁ ଯାଆନ୍ତିନାହିଁ ।"

"କିନ୍ତୁ ମୁଁ ତୋ'ର ସବୁକାମ କରିଦିଅନ୍ତି !"— କାନପାଖରେ ବୋରନା ଫୁସ୍‌ଫୁସ୍ କରି କହିଲା ଏବଂ ଏପରି ଏକ ବାସନାବହୁଳ ଦୃଷ୍ଟିରେ ଯୁଗନା ଆଡ଼କୁ ଅନାଇଲା ଯେ ସେ ଭାରି ଇତସ୍ତତଃ ହୋଇପଡ଼ି ପଛକୁ ଘୁଞ୍ଚିଗଲା ଓ ଆଉ ଅଧିକ ଦରଦାମ ନକରି ଟୋପିର ପଇସା ଗଣିଦେଲା ।

"ତୁମର ଗାଈବିକା ସରିଲାଣି ?"— ଆପଣାକୁ ପ୍ରକୃତସ୍ଥ କରିସାରିବା ପରେ ବୋରନା ପୁଣି ପଚାରିଲା, ଏବଂ ଆପଣା ମୁଣ୍ଡଉପରକୁ ଉଠିଆସିଥିବା ବାଆଁକୁ କ୍ରମେ ସଂଯତ କରିବାକୁ ଚେଷ୍ଟା କଲା ।

---

* 'ହଲଦିଆ' ଠକ— କୃଷୀମାନେ ସାଧାରଣତଃ ଏହି ବ୍ୟଙ୍ଗ ନାମ ଦେଇ ଇହୁଦୀମାନଙ୍କୁ ସମ୍ବୋଧନ କରିଥାଆନ୍ତି ।

"ହଁ, ମ୍ବେର୍ଜଭ୍‌ର ପାଦ୍ରୀଙ୍କ ପାଇଁ ସେମାନେ ଗାଈଟିକୁ କିଣିନେଇ ଗଲେ । ବୋଉ ମଧ୍ଯ ଗିର୍ଜାର ବାଜାବଜାଳୀ ସାଙ୍ଗରେ ଯାଇଚ, ଖେଡଲଙ୍କ ତା'ର ଜଣେ ମୂଲିଆ ଦରକାର ।"

"ତେବେ ଚାଲ, ତୁହେଁ କୋଉ ଦୋକାନକୁ ଯାଇ ମନ୍ଦାଏ ମନ୍ଦାଏ ମିଠା ଭଡ଼କାପାଣି ପିଇଆସିବା !"

"ତୁମେ ଏମିତି ସବୁ କ କଥା କହୁଚ ?"

"ତୁ ଶୀତରେ କାଳୁଆ ହୋଇଗଲୁଣି । ଭଡ୍‌କା ପେଟକୁ ଗଲେ ଟିକିଏ ଉଷୁମ ଲଗିବ ।"

"ତୁମ ସାଙ୍ଗରେ ମଦ ପିଇବାକୁ ଯିବ ?······କୋଉଠିକି ?"

"ଅଚ୍ଛା, ତେବେ ମୁଁ ଏକା ଯାଉଚ, ନେଇଆସିବି ଆଉ ଏଇଠି ବସି ତୁହେଁ ଏକାଠି ହୋଇ ପିଇବା !"

"ତୁମର ଦୟାଲଗି ଅନେକ ଧନ୍ୟବାଦ, କିନ୍ତୁ ମୋତେ ସବୁ ବୋଉକୁ ଖୋଜିବାକୁ ଯିବାକୁ ପଡ଼ିବ !"

"ଆଚ୍ଛା, ମୁଁ ତୋ'ପାଇଁ ଖୋଜିଦେବି ।"— ଫୁସ୍‌ଫୁସ୍ କରି ଏତିକି କହି ବୋରନା ମଣିଷ ଭିଡ଼କୁ ଠେଲିପେଲି ଆଗରେ ଗ୍ଲେଲି ଓ ସୁଗ୍ନାକୁ ପଛେପଛେ ଯିବାପାଇଁ ରାସ୍ତା ପରିଷ୍କାର କରିଦେଲି । କିନ୍ତୁ କପଡ଼ା ଦୋକାନ ମାନ ପାରିହୋଇ ଯାଉଥିବା ସମୟରେ ସୁଗ୍ନାର ପାଦ କ୍ରମେ ଧୀରହୋଇ ଆସିଲି ଓ ଶେଷକୁ ଅଟକିଯାଇ ସେ ଲୋଭାସକ୍ତ ଟୁଳୁଟୁଳୁ ଆଖିରେ ଆଗରେ ଥିବା ସାମଗ୍ରୀଗୁଡ଼ିକୁ ଦେଖିବାକୁ ଲଗିଲି ।

"ହେ ଭଗବାନ୍, କେତେ କେତେ ବଢ଼ିଆ ଜିନିଷମାନ ଏଠି ବିକା ହେଉଚି !"— ଆଗରେ ଝୁଲୁଥିବା ମାଳେ ରିବନ୍ ଆଡ଼କୁ ଅନାଇ ସେ କହିଲି । ପବନରେ ଦୋହଲି ରିବନ୍‌ଫିତାଗୁଡ଼ିକ ଠିକ୍ ଚକଚକ ଇନ୍ଦ୍ରଧନୁ-ପରି ଝଟକି ଯାଉଥାଏ ।

"ତୋ'ର ଯୋଉଟାକୁ ମନ ହେଉଚି, ତୁ ବାଛିଦେ' !"

"କିନ୍ତୁ ସେଇ ଫୁଲପକା ହୋଇଥିବା ହଳଦିଆ ରିବନଟା ତ ଗୋଟାଏ ରୁବଲ୍ ହେବନି କ'ଣ, — ବା ଏତେବେଶୀ ନହେଲେ ଦଶ-ଖୁଦିକା ତ ନିଶ୍ଚୟ ହେବ !"

"ସେଥିପାଇଁ କୌଣସି ଭାବନା କରିବା ଦରକାର ନାହିଁ । ଇଚ୍ଛା ହେଉଚ ତ ନେ' !"

ମନକୁ ଅନେକ ଦୁଃଖ ଦେଇ ଓ ଆପଣାକୁ ଅନେକ ଚେଷ୍ଟାରେ ଅଟକାଇ ରଖି ସ୍ୱଗ୍‌ନା ଶବନ୍‌ର ଲୋଭ ସମ୍ବରଣ କଲା ଓ ଆଉ ଦୋକାନକୁ ଗଲା ! ବୋଉନା ଦଣ୍ଡକଲାଗି ପଛରେ ରହିଗଲା ।

ଏଥର ସ୍ୱଗ୍‌ନାର ଆଖି ଯାଇ ରୁମାଲଗୁଡ଼ିକ ଉପରେ ପଡ଼ିଲା,— ତା'ପରେ ବ୍ଲାଉଜକନା, ସେମିଜକନା ଓ ଆହୁରି କେତେ ଚଜ— !

"କେଡ଼େକେଡ଼େ ବଢ଼ିଆ ଜିନଷ ! ହେ ଭଗବାନ୍ !"— ଅଭିଭୂତ ହୋଇପଡ଼ିବା ପରି ସେ ମନେମନେ କହିବାକୁ ଲଗିଲା । ନାଲି ଓ ନେଳି ରଙ୍ଗର ସେହି କପଡ଼ାଭିତରେ ଥରଥର ହାତ ମାରି ସେ ଥରକୁଥର ଦେଖିବାକୁ ଲଗିଥାଏ । ଶେଷକୁ ଆନନ୍ଦବହ୍ୱଳ ଭାବରେ ତା'ର ଆଖି ଜ୍ୱେଳ୍ପଟ ହୋଇ ଆସିଲା ଓ ଛାତିଟା ଦପଦପ ହୋଇ ପଡ଼ିବାକୁ ଲଗିଲା ।

ଆହା— ସେଇ ଯୋଡ଼ି ରୁମାଲଟି ସେଠି ଟଙ୍ଗାହୋଇଚ, ସଞ୍ଜବେଳର ସୂର୍ଯ୍ୟକରଣରେ ପାଣି ଝଟକି ଉଠିଲାପରି ତା'ର ରଙ୍ଗ ! ନା— ଆଉ ଲୋଭକୁ ଦବାଇରଖିବା ସମ୍ଭବ ହେବନାହିଁ । ସେହି ରୁମାଲଟି ଆଣି ଅବଶ୍ୟ ମୁଣ୍ଡରେ ବାନ୍ଧି ଦେଖିବାକୁ ପଡ଼ିବ ଏବଂ ଇହୁଦୀ ସ୍ତ୍ରୀଲୋକଟି ତା' ଆଗରେ ଧରିଥିବା ଦର୍ପଣରେ ଆପଣାର ମୁହଁ ଦେଖି କେମିତି ଦଶୁଚ, ସେକଥା ଜାଣିବାକୁ ହିଁ ପଡ଼ିବ !

ହିଁ, ରୁମାଲଟି ଏକା ତାହାର ମୁଣ୍ଡଲଖି ହୋଇଚ । ତାକୁ ପିନ୍ଧିଲା ମାତ୍ରକେ ସେ ଏପରି ସୁନ୍ଦର ଦଶିବାକୁ ଲଗିଲା ଯେ ଲୋକମାନେ ଗୁରିଆଡ଼ୁ ତା'ରି ଆଡ଼କୁ ଅନାଇବାରେ ଲଗିଥାଆନ୍ତି । ଯତେ ଯେପରି ତା'ର ମୁହଁଭିତରୁ ପୂର୍ଣ୍ଣଯୌବନ ଓ ପୂର୍ଣ୍ଣସ୍ୱାସ୍ଥ୍ୟର ପ୍ରଭାମାନ ବିଛୁରିହୋଇ ପଡ଼ୁଥାଏ !

ଅନେକ ସମୟ ପର୍ଯ୍ୟନ୍ତ ସେ ରୁମାଲଟି ବିଷୟରେ ଭାରି ଚନ୍ତା କରିବାକୁ ଲଗିଲା ଏବଂ ତା'ପରେ ନାଗଣ ହେଲପରି ସେଇଟିକୁ ମୁଣ୍ଡରୁ କାଢ଼ି ମୂଲଇବାକୁ ଆରମ୍ଭ କଲା । ଅବଶ୍ୟ ଏଇଟି କିଣିବାର କୌଣସି ପ୍ରଶ୍ନ ହିଁ ଉଠୁନାହିଁ, ମାତ୍ର କେବଳ ଆଉ କେତେ ସମୟପାଇଁ ଏହାର ସୌନ୍ଦର୍ଯ୍ୟକୁ ଉପଭୋଗ କରିବାପାଇଁ ସେ ମୂଲ କରିବାର ଛଳନା କରୁଥାଏ ।

କିନ୍ତୁ ତା'ର ଉତ୍ସାହ ଶୀତଳ ହୋଇ ଆସିବାକୁ ଅଧିକ ବିଳମ୍ବ ହେଲନାହିଁ । ଇନ୍ଦୁଦୀ ସ୍ତ୍ରୀଲୋକଟି ପାଞ୍ଚ ରବଲ୍ ବୋଲି କହିଲା । ଦାମ୍ ଶୁଣି ବୋରନା ମଧ୍ୟ ତାକୁ ନିବୃତ୍ତ କରିବାକୁ ଚେଷ୍ଟା କଲା ।

ତା'ପରେ ସେମାନେ ମାଳୀର ଦୋକାନକୁ ଆସିଲେ । ଦୋକାନକୁ ଅନାଇ ମନେହେଉଥାଏ, ସତେ ଯେପରି କିଏ ଏଠି କେତେକେତେ ମୁକୁତା ବାଛିକରି ରଖିଛି ! ଗୃହଆଡ଼ ଖାଲି ଚକଚକ ଦିଶୁଛି, ଖାଲି ଦାଉଦାଉ ହୋଇ ଜଳୁଛି ! ଦଣ୍ଡେହେଲେ ସେଆଡ଼ୁ ଆଖି ବୁଲାଇନେଇ ଆଉ କୁଆଡ଼କୁ ଅନାଇବାକୁ ଆଦୌ ଇଚ୍ଛା ହେଉନାହିଁ ।

ନାନାପ୍ରକାରେ ପରୀକ୍ଷା କରିବାପରେ ସୁଗ୍ନା ସବୁଠାରୁ ଭଲ ମାଳୀ-ଟିକୁ ବାଛିବାକୁ ଲାଗିଲା । ଶେଷକୁ ପୋହଳାମାଳଟିଏ ବାଛି ଆପଣା ବେକରେ ଗୃହଥର ପିନ୍ଧି ଦେଖିଲା ଓ ବୁଢାଆଡ଼କୁ ଅନାଇ ପଚାରିଲା !

"ଏଇଟି ମୋତେ ସୁନ୍ଦର ଦିଶୁଛି ? ସତ କହିଲ ?"

"ଭାରି ସୁନ୍ଦର ଦେଖାଯାଉଛି । କିନ୍ତୁ ପୋହଳାମାଳ କ'ଣ ଅପୂରୁବ ଜିନିଷ ହୋଇଛି ? ମୋ'ଘରେ ସିନ୍ଧୁକ ଭିତରେ ଆଠସରିଆ ଗୋଟିଏ ହାର ରହିଛି । ଏହା ମୋର ସ୍ତ୍ରୀ'ର ହାର । ପ୍ରତ୍ୟେକଟି ମାଳୀ ଠିକ୍ ଏତେଏତେ ମଟରଦାନା ପରି !"— ଟିକିଏ ଉଦାସ ଭାବରେ ବୋରନା କହିଲା ।

"କିନ୍ତୁ ସେଇ ହାରଟା ତ ମୋ'ର ନୁହେଁ, ମୁଁ ତାକୁ ନେଇ କ'ଣ କରିବି ?"— ପୋହଳା ମାଳାଟାକୁ ଫେରାଇଦେଇ ସେ କ'ଣ ଭାବ ଉଚ୍ଛନ୍ନ ହୋଇପଡ଼ିବାପରି ସେଠାରୁ ଗୃଲିଗଲା ।

"ସୁଗ୍ନା, ଆ' ଏଇଠି ଟିକିଏ ବସିବା ।"

"କିନ୍ତୁ ବୋଉକୁ ପରା ଖୋଜିବାକୁ ପଡ଼ିବ !"

"କିଛି ଭୟନାହିଁ, ସେ କଦାପି ତୋତେ ଏକା ଛାଡ଼ିଦେଇ ଗୃଲି-ଯିବନାହିଁ ।"

ଦୁହେଁ ଯାଇ ଗୋଟାଏ ଗାଡ଼ୀଉପରେ ଏକାଠି ବସିଲେ ।

ହାଟଆଡ଼କୁ ଅନାଇ ବୋରନା କହିଲା, "ଏଇ ଯାତଟା ଭାରି ବଡ଼ ଯାତ !"

ଅଳ୍ପସମୟ ପୂର୍ବରୁ ଗ୍ରାହକର ଆସିଥିବା ଦୋକାନଗୁଡ଼ିକ ଆଡ଼କୁ ଅନାଇ ଅନାଇ ସ୍ୱଗ୍ନା ମନ ମରିଯାଇଥିବା ପରି ଉତ୍ତର ଦେଲା : "ହଁ, ଗ୍ରେଟିଆ ତ ଆଦୌ ନୁହେଁ !" କହି ଗୋଟାଏ ଗମ୍ଭୀରନିଶ୍ୱାସ ପକାଇଲା । ତା'ପରେ ଦଣ୍ଡେ ଚୁପ୍‌ରହି ଆପଣାର ମନଦୁଃଖକୁ ଝାଡ଼ିଦେବାକୁ ଚେଷ୍ଟା କରି ସେ ପୁଣି କହିଲା :

"ଏସବୁ ଟଙ୍କ ଜମିଦାରର ଘରକୁ ମାନିବ ! ଥରେ ଜଣେ ଜମିଦାର ଘରର ଝିଅକୁ ମୁଁ ଏଇ ଯାତରେ ଦେଖିଥିଲି । ସେ ଯାତରୁ ଏତେଏତେ ଚଳମାନ କିଣିଲା ଯେ ସେ ସବୁକୁ ଘରକୁ ବୋହିନେଇ ଦିବାଲଗି ଗୋଟାଏ ବୋଝିଆ କରିବାକୁ ପଡ଼ିଲା !"

"ଯିଏ ଲଗଲଗ ଯାତକୁ ଯାଏ, ସିଏ ଅଳପଦିନରେ ସର୍ବସ୍ୱାନ୍ତ ହୁଏ ।"— ବୋଉନା କହିଲା ।

"କିନ୍ତୁ ଏଇ କଥାଟା ଆମକୁ ଖାପ ଖାଇବ, ସେମାନଙ୍କୁ ନୁହେଁ ।"

"ଇହୁଦୀମାନଙ୍କଠାରୁ କରଜ କରୁଥିବା ପର୍ଯ୍ୟନ୍ତ ଅବଶ୍ୟ ଖାପ ଖାଇବନାହିଁ"— ସେ ତିକ୍ତଭାବରେ ଉତ୍ତରଦେଲା । ସ୍ୱଗ୍ନା ଆଶ୍ଚର୍ଯ୍ୟ ହୋଇ ତା'ଆଡ଼କୁ ଅନାଇ ରହିଥାଏ ଓ କ'ଣ କହିବ କିଛି ଠିକ୍ କରି ପାରୁନଥାଏ । ଅନ୍ୟଆଡ଼କୁ ଆଖି ବୁଲାଇ ବୋଉନା ଧୀରକଣ୍ଠରେ ପଚ୍ଛରିଲା :

"ପଧାନପୁଅ ମାଇକେଲ ବିଷୟରେ ପ୍ରସ୍ତାବ ଆଣି ତୋ'ପାଖକୁ ଭଲଲୋକ ଆସିଥିଲେ, ନୁହଁ ?

"ହଁ, ଆସିଥିଲେ, କିନ୍ତୁ ଯେମିତି ଆସିଥିଲେ, ସେମିତି ଲେଉଟିଗଲେ । ତା'ର କେଡ଼େ ସାହସ, ମୋ'— ପାଖକୁ ପୁଣି ପ୍ରସ୍ତାବ ପଠାଇଥିଲା !"

ବୋଉନା ତରବର ହୋଇ ଠିଆହୋଇ ପଡ଼ିଲା ଏବଂ କୁରୁତାଭିତରୁ ଗୋଟିଏ ରୁମାଲ ଓ କାଗଜରେ ବନ୍ଧା ହୋଇଥିବା କ'ଣ ଗୋଟିଏ ଟଙ୍କ ବାହାରକରି କହିଲା :

"ଏତକ ରଖିଥାଆ, ସ୍ୱଗ୍ନା । ମୁଁ ଆନ୍ଦ୍ରେକ୍ ପାଖରୁ ଆସେ ।"

ନାଆଁ ଶୁଣି ସ୍ୱଗ୍ନାର ଆଖିଦୁଇଟା ଉଜ୍ଜ୍ୱଳ ହୋଇ ଉଠିଲା । "ସେ ଯାତକୁ ଆସିଚି ?"

"ହଁ, ସିଆଡେ ଗୋଟାଏ ଜାଗାରେ ବସି ସିଏ ଗହମ ବାଛୁଚ । ଏତକ ରଖ ସ୍ବପ୍ନା, ଏସବୁ ଜିନଷ ତୋ'ର,— ତୋ'ପାଇଁ କଣା-ହୋଇଚ ।"— ବସିୃତ ନୟନରେ ରୁମାଲଟିକୁ ଦେଖୁଥିବା ସ୍ବପ୍ନା-ଆଡ଼କୁ ଅନାଇ ବୋଉନା କହିଲା ।

"ତୁମେ ସତରେ ଏହିସବୁ ଚଜ ମୋତେ ଦେଉଚ ? ସତରେ ? କେଡ଼େ ବଢ଼ିଆ ଜିନଷଗୁଡ଼ିକ !"— ସ୍ବପ୍ନା କାଗଜର ପୁଡ଼ିଆଟି ଖୋଲି-ବସିଲା । ଖଣକ ଆଗରୁ ଦୋକାନରେ ଥିବା ଯେଉଁ ରିବନଟି ତା'ର ଖୁବ ପସନ୍ଦ ହୋଇଥିଲା, ପୁଡ଼ିଆଟି ଭିତରେ ସେଇ ରିବନଟି ବନ୍ଧାହୋଇଚ ! ସ୍ବପ୍ନା ଆନନ୍ଦବିହ୍ଵଳ ହୋଇ ପଚାରିଲା, "ତୁମେ ସତରେ ଏସବୁ ମୋ'ପାଇଁ କଣିଚ ? କିନ୍ତୁ ମୋ'ପାଇଁ କଣିଚ କାହିଁକ ? ଏସବୁ ତ ଖୁବ ଦାମିକା ଜିନଷ, ପୁଣି ରୁମାଲଟି ବି ରେଶମରେ ତିଆରି ହୋଇଚ !"

"ଏ'ସବୁ ତୋ'ର ସ୍ବପ୍ନା, ତୋ'ରିପାଇଁ କଣାହୋଇଚ । ଆଉ ଯଦି କୌଣସି ତୃଷ୍ଣା ଆସି ତୋ'ର ଶୁଭମନାସି ମଦ ପିଇବସିବ, ତୁ ତରତର ହୋଇ ତା'ର ପ୍ରତ୍ୟୁତ୍ତରରେ ମଦପିଇ ବସିପିବୁ ନାହିଁ । ଏତେ ତରତର ହେବାରେ କ'ଣ ଲେଡ଼ା ଅଛୁ ? ଆଚ୍ଛା, ମୁଁ ଯାଉଚ ।"

"କିନ୍ତୁ ସତରେ କହୁଚ, ଏସବୁ ଜିନଷ ମୋର ?"

"କିନ୍ତୁ ମୁଁ ତୋ'ତେ ମିଛକଥା କହିବି କାହିଁକି ?"

"କିନ୍ତୁ ମୋ'ର ମନକୁ ଆଦୌ ପରତେ ଯାଉନାହିଁ !— କହି ସେ ରୁମାଲଟିର ଭାଙ୍ଗ ଫିଟାଇ ଦେଖିଲା, ରିବନ୍‌ଟିକୁ ମଧ୍ୟ ଆଉଥରେ ବାହାରକରି ଦେଖିବାକୁ ଲଗିଲା ।

"ଭଗବାନ୍ ତୋର ମଙ୍ଗଳ କରନ୍ତୁ, ସ୍ବପ୍ନା !"

"ତୁମକୁ କୋଟିକୋଟି ଧନ୍ୟବାଦ, ମାଥିଆସ୍ !"

ବୋଉନା ଚାଲିଗଲା । ଜିନଷଗୁଡ଼ିକୁ ଆଉଥରେ ଫିଟାଇ ସ୍ବପ୍ନା ବଡ଼ ଲୋଭାସକ୍ତ ଭାବରେ ସେଗୁଡ଼ିକ ଉପରେ ଆଖିବୁଲାଇ ଦେଖିବାକୁ ଲଗିଲା । ତା'ପରେ ସେ ସେଗୁଡ଼ିକୁ ଏକାଠି ପୁଟୁଳାଭିତରେ ବାନ୍ଧିଲା, ଦଉଡ଼ିଯାଇ ଜିନଷଗୁଡ଼ିକ ବୋଉନାକୁ ଫେରାଇଦେଇ ଆସିବବୋଲି ହଠାତ୍ ତା'ର

ଖୁବ ଇଚ୍ଛା ହେଲା । କିନ୍ତୁ ଜଣେ ଅପରଲୋକଠାରୁ ସେ ଏପରି ଜିନିଷବୁ ଗ୍ରହଣ କରିବ ବା କିପରି ? କିନ୍ତୁ ବୋରନା ଭିଡ଼ଭିତରେ ଅଦୃଶ୍ୟ ହୋଇ ଗଲାଣି । ନିରସ୍ତ ହୋଇ ସେ ମାଆକୁ ଖୋଜିବା ଉଦ୍ଦେଶ୍ୟରେ ଧୀରେ ଧୀରେ ଆଗକୁ ଖୋଜ ପକାଇ ଯିବାକୁ ଲଗିଲା, — କୁରୁତାଭିତରେ ଖୋସିକରି ରଖିଥିବା ଉପହାରଦୁଇଟି ଉପରେ ଥରେକରି ହାତମାରି ଦେଖିଲାବେଳକୁ ତା'ର ମନ ବାରଦାର ଉତ୍ଫୁଲ୍ଲ ହୋଇ ଯାଉଥାଏ । ଆନନ୍ଦରେ ତା'ର ଗାଲଦୁଇଟି ରଙ୍ଗା ପଡ଼ିଯାଇଥାଏ, ଧଳାଦାନ୍ତ ଦୁଇଧାଡ଼ି ବାହାର କରି ସେ ମୁରୁକି ମୁରୁକି ହସିବାରେ ଲଗିଥାଏ ।

"ଯୁଗ୍‌ନା, ଏ ଭିକାରୁଣୀଟାକୁ କିଛି ମିଳୁ ! ତୁମର ଲୋକମାନେ ଖୁବ ଦୟାଳୁ, ଖ୍ରୀଷ୍ଟପ୍ରଭୁଙ୍କ ଠାରେ ସେମାନଙ୍କର ପ୍ରକୃତ ବିଶ୍ୱାସ ରହିଛି ! ତୁମର ପୂର୍ବପୁରୁଷଙ୍କ ପାଇଁ ମୁଁ ମେରୀଠାକୁରାଣୀଙ୍କ ପାଖରେ ପ୍ରାର୍ଥନା କରିବି ।... ଯୁଗ୍‌ନା !"

କଥା କେଇପଦ ଶୁଣି ଯୁଗ୍‌ନାର ଧ୍ୟାନ ଭାଙ୍ଗିଗଲା । କିଏ ବୋଲି ଜାଣିବାଲଗି ସେ ମୁହଁ ବୁଲାଇ ଏପାଖକୁ ଅନାଇଲା । ଦେଖିଲା, ମଠପାଚେରୀକୁ ଲଗିକରି ଆଗାଥା ବଡ଼ୀଏ କୁଣ୍ଢାଉପରେ ବସିଛି । କାରଣ ସେଠି କାଦୁଅ ହୋଇ ପ୍ରାୟ ଆଣ୍ଠୁ ଗଳିଯିବାପରି ହୋଇଛି ।

ଅଟକି ଠିଆହୋଇ ସିଏ ତମ୍ବାପଇସା ବାହାର କରିବାକୁ କୁରୁତାଭିତରେ ହାତ ପୂରାଇ ଅଣ୍ଡାଳି ବସିଲା । ଆପଣା ଗାଆଁର ଜଣକୁ ଭେଟିଥିବାରୁ ଖୁବ ହୃଷ୍ଟ ହୋଇ ଆଗାଥା ତାକୁ ଗାଆଁର ଖବରମାନ ପଚାରିବାକୁ ଲଗିଲା ।

"ସମସ୍ତଙ୍କ ଭଲରୁ ଆଳୁ ଖୋଳାସରିଲାଣି ?"

"ହଁ, ବଡ଼ାକେ ସମସ୍ତଙ୍କର ସରିଲାଣି ।"

"କ୍ଲେମ୍ବାଙ୍କ ଘରେ କିଛି ନୂଆ ଖବର ?"

"ସେମାନେ ସବୁ ତୋତେ ଘରୁ ବାହାର କରିଦେଇଚନ୍ତି ? ତଥାପି ତାଙ୍କପ୍ରତି ତୋ'ର ଏଡ଼େ ଉପରୋଧ ?"

"ଘରୁ ବାହାର କରି ଦେଇଚନ୍ତି ? କିଏ କହିଲା ? ମୁଁ ତ ଆପେ ଆପେ ବାହାରି ଆସିଛି । ବାହାରି ଆସିବା ଉଚିତ ମନେକରି ମୁଁ ବାହାରି ଆସିଚି । ତାଙ୍କପ୍ରତି ଉପରୋଧ ରହିବନାହିଁ, ଯେମାନେ ପରା ମୋର ଆପଣାଲୋକ ?"

"ତୁ ବର୍ତ୍ତମାନ କଅଣ କରୁଚୁ ?"

"ଗୀର୍ଜାରୁ ଗୀର୍ଜା, ଗାଆଁରୁ ଗାଆଁ, ଆଉ ଯାତ୍ରାରୁ ଯାତ୍ରା ହୋଇ ବୁଲୁଚି । ଆଉ ମୋର ପ୍ରାର୍ଥନାର ପୁରସ୍କାର ସ୍ୱରୂପ ଭଲଭଲ ଲୋକମାନେ ମୋ' କାନରେ ପୋଷେ ମୁଠାଏ ପକାଇ ଦେଉଚନ୍ତି । କିଏ କୋଉଦିନ ମୁଁ ଶୋଇବି ବୋଲି ଘରେ କଣେ ଜାଗା ଛାଡ଼ିଦେଉଚି, କିଏ ଖାଇବାଲାଗି ଖାଇବାଜିନଷ ଦେଉଚି, ଆଉକିଏ ପଇସାଏ ଅଧଲାଏ ମଧ୍ୟ ଦେଉଚି । ଲୋକମାନେ ଭାରି ଭଲ । ଗୋଟାଏ ଗରିବ ମଣିଷ ନଖାଇ ଉପାସ ରହୁ, ହନ୍ତସନ୍ତ ହେଉ, ଏକଥା ଯେମାନେ ଆଦୌ ଚାହାନ୍ତିନାହିଁ !" ଦଣ୍ଡେ ଚୁପ୍ ରହି ସେ ପୁଣି ଟିକିଏ ଅଭିମନ୍ତ ହେଲପରି ପଚାରିଲା, "କ୍ଲେମ୍ବାଙ୍କ ଘରେ ସମସ୍ତଙ୍କର ଦେହ ଭଲ ଅଛି ତ ?"

"ହଁ, ଅଛି ! ଆଉ ତୋ' ଦେହ କିପରି ଅଛି ?"

"ମୋ' ଦେହକଥା କାହିଁକି ପଚାରୁଚ ! ଛାତିଭିତରଟା ସବୁବେଳେ କେମିତିପରି ଖେଞ୍ଚିଖେଞ୍ଚି ଦେଉଚି ଆଉ ସର୍ଦ୍ଦି ଲାଗିଲେ ଖଙ୍କାରରେ ରକ୍ତ ପଡୁଚି । ଯଦି କୌଣସିପ୍ରକାରେ ଏଇ ଶୀତକାଳଟା କଟାଇନେଇ ପାରିବି, ତେବେ ବସନ୍ତସମୟକୁ ମୁଁ ଗାଆଁକୁ ଲେଉଟିଯିବି, ସେଇଠି ମୋର ଆପଣା ଲୋକଙ୍କର ମୁହଁ ଦେଖୁଦେଖୁ ମରିବି । ଭଗବାନଙ୍କଠାରେ ମୋର କେବଳ ଏତିକି ପ୍ରାର୍ଥନା ! ମୁଁ ଆଉ କିଛି ମାଗୁନାହିଁ !"

"ବାପା ପାଇଁ ଭଗବାନଙ୍କୁ ଜଣାଇବୁ, ବୁଝିଲୁ ?"— କହି ସ୍ୱଗନା ତା'ର ହାତରେ କେତୁଟା ପଇସା ଗୁଞ୍ଜିଦେଲା ।

"ତୁମ ବଂଶରେ ମରିଥିବା ସମସ୍ତଙ୍କ ପାଇଁ ଜଣାଇବି; ମୁଁ ଯେତେ-ଜଣଙ୍କୁ ଜାଣିଚି, ସମସ୍ତଙ୍କପାଇଁ ଜଣାଇବି । କିନ୍ତୁ ସ୍ୱଗନା,— ଭଉଣୀ ସଂଖୋଳ କେହି ତୋ'ପାଖକୁ ଭଲଲୋକ ପଠାଇଲେଣି ନା ନାହିଁ ?"

"ହଁ, ପଠାଇଲେଣି ।"

"କିନ୍ତୁ ତୁ କାହାର କଥାରେ ମଜିଚୁ ନା ନାହିଁ ?"

"ନା— କାହାରିକଥାରେ ନୁହେଁ ।"— ସୁଗ୍ନା କଥାବାର୍ତ୍ତାକୁ ସଂକ୍ଷେପ କରି କହିଲା । "ଆଚ୍ଛା, ଠାକୁରେ ତୋତେ ଭଲରେ ରଖିଥାନ୍ତୁ । ଶୀତକାଳ ଅନ୍ତେ ଆମ ଗାଆଁକୁ ଆସିବୁ, ମନେରହିଲା ?"— ଖଣ୍ଡେ-ଦୂରରେ ମାଆକୁ ଦେଖିପାରି ସେ ସେଇଆଡ଼କୁ ବାହାରିଗଲା ।

ଥରଥର ଖୋଜ ପକାଇ ବୋରନା ଆଲ୍ଲେକ୍ସାଣ୍ଡଙ୍କୁ ଆସୁଥାଏ । ମଣିଷଭିଡ଼ ଠେଲି ଚଞ୍ଚଳ ଆସିବା ଏକେତ ସମ୍ଭବ ନୁହେଁ, ପୁଣି ସୁଗ୍ନାର କଥାଗୁଡ଼ାକ ମଧ୍ୟ ବାରବାର ତା'ର ମନେପଡ଼ି ଯାଉଥାଏ । ପୁଅ ପାଖରେ ଆସି ପହଞ୍ଚିବା ପୂର୍ବରୁ ସେ ଆଗ କମାରପୁଅକୁ ଭେଟିଲା । ଦୁହେଁ ଦୁହିଁଙ୍କୁ ନମସ୍କାର କଲେ, କିନ୍ତୁ କୌଣସି କଥା ନ କହି ଆପଣା ବାଟରେ ଚାଲିଗଲେ । ମାତ୍ର କ୍ଷଣକରେ !

"କିନ୍ତୁ ସେ କଥାଟା ପୁଣି ଉଠିବ ନା ସେମିତି ରହିଥିବ ?"— ଟିକିଏ କର୍କଶ ଭାବରେ କମାରପୁଅ ଆରମ୍ଭ କଲା । ସାଙ୍ଗେସାଙ୍ଗେ ବୋରନା ମୂର୍ଚ୍ଛିବ ବୋଲି ତିଆରି ହୋଇଗଲା ।

"କ'ଣଟାଏ ଉଠିବ ? ମୋ'ସାଙ୍ଗେ ଗାଆଁରେ ଯାଇ କଥାବାର୍ତ୍ତା ହେବୁ !"

"ମୁଁ ତିନତିନି ବରଷ ସବୁରି କଲିଣି । ଲୋକେ ମୋତେ କଚେରୀକୁ ଯିବାକୁ କହୁଚନ୍ତି······କିନ୍ତୁ······"

ଯାଉନୁ କଚେରୀକୁ ! ଚାଲ, ମୁଁ ଗୋଟାଏ ମୋହରିର ପାଖକୁ ନେଇ-ଯିବି ଆଉ କହିବୁ ତ ହାତରୁ ପଇସା ଦେଇ ତୋ'ପାଇଁ ଅର୍ଜି ଲେଖାଇ-ଦେବି !"

"······କିନ୍ତୁ ମୁଁ ଭାବୁଚି,"— ଚତୁର ଭାବରେ ଆପଣାକୁ ସଂଯତ ରଖି କମାରପୁଅ କହିଲା, "କିନ୍ତୁ ଏକାଠି ବସି ଗୋଟାଏ ବୁଝାମଣା କରିନେଲେ କ'ଣ ଭଲ ହୁଅନ୍ତାନାହିଁ ?"

"ହଁ, ହୁଅନ୍ତା । କିଏ ସେଥିପାଇଁ ମନା କରୁଚି ?"

"ତୁମେ କ'ଣ କହୁଚ ସତ କରି କହିଲ !"

"ଏବାଟେ ଗଲେ ପାଇବୁନାହିଁ କି ସେବାଟେ ଗଲେ ପାଇବୁନାହିଁ !"

"ମୁଁ ତ ମୋର ଭାଇଜାକୁ ସବୁବେଳେ କହିଆସିଚି ଯେ ତୁମେ ନିଶ୍ଚୟ ନ୍ୟାୟବାଟରେ ଯିବ !"

"ଆରେ ନ୍ୟାୟବାଟ ନଗୃହେ କିଏ ? ଖାଲି ନ୍ୟାୟଟା ଆପଣା ପକ୍ଷରେ ଗଲେ ହେଲ ! ଏଥିରେ କିନ୍ତୁ ମୋର ମୁଣ୍ଡ ବଥାଇବାର କ'ଣ ଅଛି । ମୋ'ପାଖରେ ତ ତୋ'ର କିଛି ପାଉଣା ନାହିଁ !"— ଏହି ଟାଣ-ଟାଣ କଥା ଶୁଣି କମାରପୁଅ ବେଶ୍ ବୁଝିପାରିଲ ଯେ ପୁରୁଣା କାଇଦାରେ ଆଉକିଛି ଫଳ ହେବନାହିଁ । ତେଣୁ କାଇଦା ବଦଳାଇ, ଯତେ ଯେପରି ଆଗରୁ କିଛି ବିବାଦ ହୋଇନାହିଁ, ସେହିପରି ସେ ଶାନ୍ତ ଭାବରେ ଅନୁରୋଧ ଜଣାଇଲ ।

"ତୁମହାତରୁ ଏକାଠି ମଦ ପିଇବାକୁ ଗଲେ ହୁଅନ୍ତାନାହିଁ ?"

"ହଁ ଜୁଆଇଁ, ସେକଥା ନହେବ କାହିଁକି ? ଏଥିପାଇଁ ପୁଣି ମାଗିବାକୁ ପଡ଼ିବ ନା କ'ଣ ?"— ବୋଉକା ଛୁସ୍କୁଲେଇ ଉତ୍ତର ଦେଲ । ସେମାନେ ଏକାଠି ଗୋଟିଏ ଦୋକାନ ଭିତରକୁ ଗଲେ । ଭିତରକୁ ଯାଇ ଦେଖିଲେ ସେଠି ଆମ୍ବ୍ରୋଜ୍ ମଧ ଅଛି; ମଦ ପିଉନାହିଁ, — ଖାଲି ମନ ମାରିଦେଇ ଗୋଟାଏ କଣକୁ ଚୁପ୍ ହୋଇ ବସିଚି ।

"ମୋ'ର ଦେହଟା ଭାରି ଖରାପ ଲାଗୁଚି । ପାଗଟା କିଛି ଭଲହେବ ବୋଲି ଆଦୌ ମନେ ହେଉନାହିଁ,"— ଆମ୍ବ୍ରୋଜ୍ କହିଲ ।

ସେମାନେ ମଦପିଇ ବସିଲେ । ରାଗରେ ଦୁହେଁ ଦୁହିଁଙ୍କ ଉପରେ ଜଳିବାରେ ଲଗିଥାନ୍ତି, କିନ୍ତୁ କେହି କାହାରିକୁ କିଛିହେଲେ କହୁନଥାନ୍ତି ।-

"ମୁର୍ଦ୍ଦାର ପୋଡା ହେଲବେଳେ ଲୋକେ ଯେମିତି ମଦ ପିଅନ୍ତି, ତୁମେ ଦୁହେଁ ସେମିତି ପିଉଚ"! —ସେମାନେ ତାକୁ ଡାକିଲେନାହିଁ ବୋଲି ସେ ଭାରି ଅପମାନିତ ବୋଧ କରୁଥାଏ । ଆଜି ସକାଳୁ ତା'ର ପେଟରେ କିଛିହେଲେ ପଡ଼ିନାହିଁ ।

"କଥା କହିବାକୁ ଆଉ ବାଟ ଅଛି ନା ? ବାପାଙ୍କର ଆଜ ଏତେ ଖବି ହେଉଚ ଯେ ନଗଦଟଙ୍କାଗୁଡ଼ାକ କାହାକୁ କରଜ ଦେବେ, ସେ କେବଳ ସେଇକଥା ଭାବୁଚନ୍ତି ।"

"ମାଥିଆସ୍, ମାଥିଆସ୍, ମୋ'ର କହିବାର ଦଆ ହେଉଚ, ଭଗବାନ୍......"— ଆମ୍ବ୍ରୋଜ୍ ବଡ଼ପାଟିରେ କହିବାକୁ ଆରମ୍ଭ କଲ ।

"ମୁଁ ଆଉ କାହାପାଇଁ ସିନା ମାଥିଆସ୍, କିନ୍ତୁ ତୋ'ପାଇଁ ନୁହେଁ । ତୁ ମୋତେ ମାଥିଆସ୍ ବୋଲି ଡାକବୁ ? ଦେଖିବଟି ତା'ର ମୁହଁ କେଡ଼େ ! ଘମ୍ବର କହୁଚ ଘୁମ୍ବୁରିଆକୁ, ଭାଇ, ମୁଁ ତୋ' ମୁଣ୍ଡରେ ବସିବ !"

ସେତେବେଳକୁ କମାରପୁଅ ବେଶ୍ ଟାଣକରି ଦୁଇଗିଲାସ ପକାଇ ସାରଲଣି । କଥାଉପରେ କଥା କହିବାଲାଗି ତା'ର ପାଟି ଖଲଖଲ ହେଉଥାଏ । କଣ୍ଠକୁ ଧୀର କରିଆଣି ସେ କହିଲ !

"ବାପା, ମୋତେ ଶେଷଥର ପାଇଁ ଗୋଟାଏ ଜବାବ ଦଅ । ମୁଁ ଯାହା ଦାବୀ କରୁଚ, ତୁମେ ମୋତେ ସେତକ ଦେବ ନା ନାହିଁ ?"

"ଜବାବ ତ ମୁଁ ଆଗରୁ ଦେଇସାରଚ । ମୁଁ କ'ଣ ଜମିଗୁଡ଼ାକୁ ମଶାଣିକୁ ନେଇକରି ଯିବ କି ? କିନ୍ତୁ ମୁଁ ବଞ୍ଚିଥିଲାତକ ମାଣେ ଜମି ମଧ୍ୟ କାହାରିକୁ ଦେବିନାହିଁ ।

"ମୁଁ କାହାରି ଦୁଆରେ ହାତ ପତାଇ ଖାଇବାକୁ ଯିବିନାହିଁ । ଆଗେ ଆଉ ଗୋଟାଏ କି ଦୁଇଟା ବରଷ ଏହି ସଂସାରରେ ରହିବା କଥା, ମୁଁ ଟିକିଏ ଭଲରେ ରହିବିନାହିଁ ?"

"ତା'ହେଲେ ଟଙ୍କା ଦଅ !"

"ମୁଁ ଯାହା କହିଲି, ତୋତେ ଶୁଭିଲା ନା ନାହିଁ ?"

କାନପାଖରେ ଆମ୍ବ୍ରୋଜ୍ ଫୋଡ଼ିଦେଇ କହିଲା— "ସେ ଆଉ-ଗୋଟାଏ ବାହାହେବ ! ଏଇଟାକୁ ମିଶାଇ ତିନଟା ହେବ ନା ? ପିଲାଙ୍କ ପ୍ରତି ତା'ର ଲଗା ଅଛି ନା ପଘା ଅଛି ?"

"ମୋର ଖୁସୀ ହେଲେ ମୁଁ ବାହା ହେବ, ସେଥିରେ ତୋ'ର କ'ଣ ଅଛି ?"

"ନାଇଁ, ମୋର କାହିଁକି କ'ଣ ରହିବ ? ଖାଲି·····"

ମୋର ମନହେଲେ ମୁଁ କାହାପାଖକୁ ଏବେ ପ୍ରସ୍ତାବ କରି ପଠାଇବି । ହଁ, ମନହେଲେ କାଲି ବି ପଠାଇବି !"

"ପଠାଉନା ! ମୋର ସେଥିରେ କାହିଁକି କି ଆପତ୍ତି ରହିବ ? ଖାଲି ମୋତେ ସେଇ ଗୁପିଗୁପିକଥା ଗାଈର ବାଛୁରୀଟାକୁ ଦେଇଦିଅ, ଦେଖିବ, ମୁଁ ତୁମର କେତେ ଉପକାର କରିବି । ତୁମେ ଜାଣିବା ଶୁଣିବା ମଣିଷ; ଯେଉଁଥିରେ ଆପଣାର ଭଲ ହେବ ତାହାହିଁ କରିବ । ମୁଁ ତ ମୋ' ଘରଜାକୁ କେତେଥର କହିଚି,—"ଆଲୋ, ଘର ସମ୍ଭାଳିବ ତ ଘରେ ଗୋଟାଏ ଘରଜା ଆଣି ରଖିବ !"

"ମାଇକେଲ, ତୁ ସତରେ ସେକଥା କହିଚୁ ?"

"ନ କହିଥିଲେ ମୋର ମୂର୍ଦ୍ଧନା ଫାଟିଯିବ ! ହଁ କହିଚି । ଯୋଉ ମଣିଷର ଯେପରି ଦରକାର, ଗାଆଁରେ ମୁଁ ତାକୁ ସେହିପରି ପରାମର୍ଶ ଦିଏ । ତୁମର କୋଉଥିରେ ଭଲହେବ, ମୋତେ କ'ଣ ସେକଥା ଅଛପା ରହିଚି ?

"ତୁ ପାଜି, ତୁ ନଷ୍ଟସ୍ୱ ମିଛକଥା କହୁବୁ । କିନ୍ତୁ କାଲି ମୋ' ଘରକୁ ଆସିଲେ ତୁ ନଷ୍ଟସ୍ୱ ବାଛୁରୀଟି ପାଇବୁ । ମୋତେ ଯାହା ମାଗିବୁ, ମୁଁ ଅବଶ୍ୟ ଦେବି । କିନ୍ତୁ ସେମିତି ଜବରଦସ୍ତି କଲେ ପାହାର ଖାଇବୁ ।"

ତା'ପରେ ମଦପିଆ ଚାଲିଲା । ଏଥର କମାରପୁଅ ବୋଇନାକୁ ପିଆଉଥାଏ । ଆମ୍ବ୍ରୋଜ୍‌କୁ ମଧ୍ୟ ଯେ ପିଇବାକୁ ଡାକିଆଣିଲା । ଆମ୍ବ୍ରୋଜ୍ ଆଗଭର ହୋଇ ଆସି ପାଖରେ ବସିଲା, କେତେକେତେ ହସକଥା କହିଲା । ଶଶୁର ଜୁଆଇଁ ଦୁହେଁ କଥାଶୁଣି ଖାଲି ହସିହସି ଗଡ଼ି ଯାଉଥାନ୍ତି ।

ଚାଲିବେଳକୁ ଦୁହେଁ ଭଲରେ ଭଲରେ ପରସ୍ପରଠାରୁ ବିଦାହୋଇ ଗଲେ । କିନ୍ତୁ ପରସ୍ପରର କାହାରିପ୍ରତି ଏତେ ଟିକିଏହେଲେ ବିଶ୍ୱାସ ନ ଥାଏ । ପରସ୍ପରର ଭିତରଟା ପରସ୍ପରର ଆଖିକୁ ବେଶ୍ କାଚପରି ଜଳଜଳ ହୋଇ ଦେଖାଯାଉଥାଏ, — ବୃଦ୍ଧଆଘୋଡ଼ାର ବୃଦ୍ଧ ପୁଣି କାହାଆଖିରେ ନପଡ଼ି ଲୁଚିକରି ରହିଯିବ !

ଆମ୍ବ୍ରୋଜ୍ ଦୋକାନଭିତରେ ବସିରହିଥାଏ । କେତେଲୋକ ଆସିବେ, କଥାବାର୍ତ୍ତା ଜମିବ । ଚିହ୍ନାପରିଚ ଥିବା ଆଉ କେତେଲୋକ ଆସି ମଦାଏ ପିଇବାକୁ ମଧ୍ୟ ଡାକିବେ । ଏହି ଆଶାରେ ସେ ବସିରହିଥାଏ । ପେଟରେ କିଛି ନଥିବା କୁକୁର ମାଛଟାଏ ଦେଖିଲେ ମଧ୍ୟ ଟାଣିକରି ପାଟିକୁ ପକାଇ ଦେବାକୁ ଯାଏ ।

ସେତେବେଳକୁ ଯାତ୍ରା ସରିଆସିବାକୁ ବସିଲଣି ।

ଖରାବେଳେ କେବଳ ଗୋଟାଏ ମୁହୂର୍ତ୍ତପାଇଁ ସୂର୍ଯ୍ୟ ମେଘ ଉହାଡ଼ରୁ ବାହାରିଥିଲା ଓ ଭଲକରି ଖରା ପଡ଼ିଥିଲା, ପୃଥିବୀ ଉପରେ ଗୋଟାଏ ଦର୍ପଣ-ପରି ଚକଚକ ହୋଇ ଦେଖାଯାଉଥିଲା । ତା'ପରେ ପୁଣି ମେଘ ଘୋଟିଗଲା । ସନ୍ଧ୍ୟା ବୁଡ଼ିବାର ଅନେକ ଆଗରୁ ଚତୁର୍ଦ୍ଦିଗ ଅନ୍ଧାରୁଆ ଦିଶିଲା । ଜଳଭରା ମେଘଖଣ୍ଡମାନ ଘରଗୃହମାନଙ୍କ ପାଖକୁ ଲାଗିଲାଗି ଆସିଲେ, କୁଳରୁ ଡମ୍ବୁ ଝାଡ଼ିଲାପରି ଅସରାଏ ବରଷା ମଧ୍ୟ ଝାଡ଼ିଦେଇ ଚାଲିଗଲା । ପାଗର ଏପରି ଉପକ୍ରମ ଦେଖି ଲୋକମାନେ ଶୀଘ୍ରଶୀଘ୍ର ଘରକୁ ଲେଉଟିଯିବାକୁ ସଜବାଜ ହେଲେ । ରାତି ମାଡ଼ି ଆସୁଛି, ବରଷା ଘୋଟିଆସିବା ପୂର୍ବରୁ ଘରେ ଯାଇ ପହଞ୍ଚିପାରିଲେ ରକ୍ଷା ।

ଚାରିଆଡ଼ୁ ଅନ୍ଧାର କରି ଗୋଧୂଳି ଘନାଇ ଆସିଲା । ବଜାରଟାଯାକ ପୁଣି ଜନଶୂନ୍ୟ ହୋଇ ଖାଁ ଖାଁ ଦେଖାଗଲା ।

କେବଳ ପାଟେଣ୍ଟ କଡରେ ଏଠିସେଠି କେତେଜଣ ଭିକାରୀଙ୍କର ପାଟିତୁଣ୍ଡ ଶୁଭୁଥାଏ । ସରାଇଘର ଭିତରେ ଲୋକମାନେ ବଡ଼ପାଟିରେ ନାନାପ୍ରକାର ଚିତ୍କାର ଓ କଳହ କରିବାରେ ଲାଗିଥାନ୍ତି ।

ସବୁକାମ ସାରି ବୋରନା ମଧ୍ୟ ଆପଣା କୁଟୁମ୍ବ ସହିତ ଘରକୁ ବାହାରିଲା । ଘରୁ ଆଣିଥିବା ସମସ୍ତ ଜିନଷ ବିକ୍ରୀ ହୋଇଯାଇଚି, ଆଉକେତେ ଜିନଷ କଣା ମଧ୍ୟ ହୋଇଚି । ସମସ୍ତେ ମନଖୁସୀ ହେବା ପର୍ଯ୍ୟନ୍ତ ମେଳାରେ ମଉଜକରି ବୁଲିଚନ୍ତି । ଘୋଡ଼ାଙ୍କ ପିଠିରେ ଆମ୍ବ୍ରେଜ୍ ପାଏଁ ପାଏଁ ଗୁଡ଼ଟ ପିଟୁଥାଏ, ରାସ୍ତାର କାଦୁଅକୁ ପାଚୁପାଚୁ କରିଦେଇ ଗାଡ଼ୀ ଦଉଡ଼ିଯାଉଥାଏ । ତାକୁ ଭାରି ଜାଡ଼ ଲାଗିଲାଣି, ଏଣେ ଠିକ୍ ନାକପୁଡ଼ାଯାଏ ମଦ ବି ପିଆ-

ହୋଇଚ । ବୁଢ଼ାର ସ୍ୱଭାବ ଭାରି କୃପଣ, ଅଜାଣତରେ ମଧ୍ୟ ସେ କେବେହେଲେ ଅଣ୍ଟାରୁ ପଇସା କାଢ଼େନାହିଁ, କାଣିକଉଡ଼ିଟାର ମଧ୍ୟ ହିସାବ ନେବ । କିନ୍ତୁ ଆଜି ସେ ହାତ ଖୋଲିଦେଇ ସମସ୍ତଙ୍କୁ ଖୁଆଇଚ, ପିଆଇଚ, କେତେ ଭଲ କଥା କହୁଚ । ସମସ୍ତେ ଆଜି ବୁଢ଼ାର ଏହି ବ୍ୟବହାର ଦେଖି ବିସ୍ମିତ ହୋଇ ଯାଇଚନ୍ତି ।

ସେମାନେ ଜଙ୍ଗଲକଡ଼ରେ ଆସି ପହଞ୍ଚିଲ ବେଳକୁ ରାତି ହୋଇଯାଇ-ଥାଏ । ଅନ୍ଧାରରେ କୁଆଡ଼େ କିଛି ଦେଖାଯାଉ ନଥାଏ । ବରକୋଳିଆ ଟୋପାରେ ପାଣି ପଡ଼ିବାକୁ ଆରମ୍ଭ କଲାଣି । ରାସ୍ତାର କେତେକୁଆଡ଼ୁ ଗାଡ଼ୀ ଚାଲିଯାଉ ଥିବାର କେଁକେଁଟର ଶୁଣାଯାଉଚ, କୋଉଠୁ କୋଉ ମାତାଲ ଗୀତଗାଇବା ନାମରେ ଭୋ' ଭୋ' ହୋଇ ଚାଲିଯାଉଚ, ପୁଣି କାଦୁଅ-ଭିତରେ ବାଟ ଅଣ୍ଡାଳି ଚାଲିଯାଉଥିବା ବାଟୋଇର ପାଦଶବ୍ଦ ମଧ୍ୟ ଦୁଲଦୁଲ ଶୁଣାଯାଉଚ ।

ପପ୍‌ଲର ଗଛରୁ ସୁଁ ସୁଁ ପବନ ଶବ୍ଦ ଶୁଣାଯାଉଚ, ସତେଅବା ଗଛଗୁଡ଼ାକ ଶୀତରେ ଥରିବାରେ ଲାଗିଚନ୍ତି । ସେଇଠି ମଦାନଶାରେ ଟଳମଟଳ ହୋଇ ଆମ୍ବ୍ରୋଜ୍ ସଙ୍ଜ୍ଞାହୀନ ଭାବରେ ବାଟ ଚାଲିଚ । ଗୋଡ଼ କେତେବେଳେ କୋଉଠି ପଡ଼ୁଚ, ତାର ଠିକଣା ନାହିଁ । କେତେବେଳେ ରାସ୍ତାର ଏପାଖକୁ ତ ଆଉ କେତେବେଳେ ସେପାଖକୁ ମୁହାଁଇ ଚାଲିଯାଉଚ । କୋଉଠି ଗଛରେ ଯାଇ ଧକ୍କା ବାଜୁଚ ତ ପୁଣି କୋଉଠି କାଦୁଅ ଭିତରେ ପଡ଼ିଯାଉଚ । କିନ୍ତୁ ପୁଣି ତତ୍‌କ୍ଷଣାତ୍ ଉଠି ନସରପସର ହୋଇ ଆପଣାର ଚିରାଚରିତ ଅଭ୍ୟାସରେ ଗୀତଗାଇ ଗଗନ କମ୍ପାଇ ଚାଲିବାରେ ଲାଗିଚ ।

## ଛଅ

ଏତେବେଳଯାଏ ମେଘ ହେବହେବ ହେଉଥିଲ । ବର୍ତ୍ତମାନ ଠିକ୍‌ଭାବରେ ଆରମ୍ଭ ହେଲ ।

ମେଲା ଶେଷହେବା ଦିନଠାରୁ ସମସ୍ତ ଜଗତ ଯେପରି ଏକ ଧୂସର ଆଲୋକମୟ ପ୍ରଭାତରେ ନିମଗ୍ନ ହୋଇ ଯାଉଥିଲା ପରି ମନେ ହେଉଥିଲା । ସେହି ପ୍ରକାର ପୃଷ୍ଠଭୂମି ଉପରେ ଦୂର ଜଙ୍ଗଲ ଓ ଗାଆଁର ସୀମାରେଖା-ଗୁଡ଼ିକ ଝଲକି ଉଠୁଥିଲା, ସିକ୍ତ ପୃଥିବୀପଟ ଉପରେ କମକୁଟ ହୋଇ ରହିଥିବାପରି ମନେହେଉଥିଲା ।

ଶରତ୍ କାଳର ମେଘଅସୁରମାନ ଆକାଶଉପରୁ ପୃଥିବୀ ଉପରକୁ ଅଜାଡ଼ିହୋଇ ପଡ଼ିଲେ । ହିମ-ଶୀତଳ ବରଷାର ଅସର, ଦେହରେ ବାଜିଲା-ବେଳକୁ କଣ୍ଟା ଫୋଡ଼ିହୋଇ ଯାଉଛି । ଏହି ବରଷାର ଆଉ ବିରାମନାହିଁ ବୋଲି ମନେ ହେଉଛି ।

ପାଉଁଶିଆ ରଙ୍ଗର ତୀରପରି ଦେଖାଯାଉଥିବା ବରଷାର ବିନ୍ଦୁମାନ ମାଟିଉପରେ ଆସି ତୀରମାରିଦେଇ ଯାଉଛି । ଗଛପତ୍ରର ମଞ୍ଜଯାଏ ଏ ପାଣି ଭେଦିଗଲାଣି, ସତେଅବା ପ୍ରବଳ ଯନ୍ତ୍ରଣାରେ ଛଟପଟ ହୋଇ ତୃଣଭୂମିର ଗାତ କମ୍ପି ଉଠୁଛି ।

ଚଉଦିଗ ଆଚ୍ଛନ୍ନ କରି ରଖିଥିବା ଏହି ଘନମେଘସ୍ତୂପ ଓ ଧୂସରରଙ୍ଗର ଭୀଷଣ ବୃଷ୍ଟିଧାରାରେ ନମେଷକ ପାଇଁ ଟିକଏ ଫାଙ୍କ ହୋଇଗଲେ ପଛରୁ ଶସ୍ୟକ୍ଷେତର କାଦୁଅ, ସନ୍ତସନ୍ତିଆ ସମତଳଭୂଇଁମାନ ଦିଶିଯାଉଛି । କୋଉଠି ଅବା ବହିଯାଉଥିବା ପାଣିର ଫେଣ ଦିଶିଯାଉଛି । କୋଉଠି ରାସ୍ତାର ଦୁଇକଡ଼ରେ କଳାକଳା ଏଡ଼େଏଡ଼େ ଗଛମାନ ଠିଆହୋଇ ରହିଛି, ସେଗୁଡ଼ିକର ଡାଳ ବରଷାପାଣିରେ ଗୋଟାସୁଦ୍ଧା ଜୁଡ଼ୁବୁଡ଼ୁ ହୋଇ ତଳକୁ ଝୁଲିପଡ଼ୁଛି, ଏପର୍ଯ୍ୟନ୍ତ ଅବଶେଷ ଥିବା ପତ୍ରମାନ ଝରଝର ଖସିପଡ଼ୁଛି ।

ରାସ୍ତାଗୁଡ଼ିକ ବଡ଼ ନିର୍ଜନ, ବଡ଼ ଜନଶୂନ୍ୟ । ସେଗୁଡ଼ିକ କ୍ରମେ ନାନାପ୍ରକାର ଆବର୍ଜନାର କୁଢ଼ରେ ପୋତିହୋଇ ଯିବାକୁ ବସିଲାଣି ।

ଗ୍ଲେଟିଆ, ସୂର୍ଯ୍ୟହୀନ, ଉଦାସ ଦିନଗୁଡ଼ିକ ଗୋଟିକ ପରେ ଗୋଟିଏ କରି ବିଦାୟନେଇ ଚାଲିଯାଉଛି । ହେମାଳ ବଢୁଛି, ସରସତା ମରିମରି ଯାଉଛି । ରାତିରେ ବରଷାର ବଜର ବଜର ଶବ୍ଦ ବଡ଼ ଅବିରାମ ଭାବରେ କାନଅତଡ଼ା ପକାଇବାରେ ଲାଗିଛି ।

ଶସ୍ୟକ୍ଷେତ, ଗାଆଁ ଆଉ ଅରଣ୍ୟ,— ଆଜି ସବୁ ନିର୍ଜନ ଓ ନିଃଶବ୍ଦ । ସ୍ୱବର୍ଣ୍ଣ ଗୃହଗୁଡ଼ିକ ସତେଅବା କ୍ରମେ ମାଟିରେ ମିଳାଇଯାଇ ଏକାକାର ହୋଇଗଲାପରି ଲାଗୁଚି । ବାଡ଼, ବାଉଁଶ ଓ ତୋଟାର ପତ୍ରଶୂନ୍ୟ ନଗ୍ନ ଡାଳ-ଗୁଡ଼ିକ ସତେଅବା କ୍ଷୀଣସ୍ୱରରେ ଆର୍ତ୍ତନାଦ କରୁଅଛନ୍ତି ।

ଏଇ ଝୁପୁରୁ ଝୁପୁରୁ ବରଷା ଆଉ ଶେଷହେବ ବୋଲି ମନେହେଉ-ନାହିଁ । ବରଷାର ଆଚ୍ଛାଦନ ତଳେ ଲୁଚିକା ଗାଆଁର ଅବସ୍ଥିତି ମଧ୍ୟ ଅଦୃଶ୍ୟ ହୋଇ ରହିଚି । କଳାକଳା ଘରଗୁଡ଼ିକ, ପାଚେରିକାନ୍ଥର କଳାପଥର, ଚେମଣିଗୁଡ଼ିକରୁ ଉପରକୁ ଉଠି ତୋଟାଉପରେ ପହଁରିବା ମାରୁଥିବା କଳା ଧୂଆଁ,— ବରଷାର ଫାଙ୍କ ଭିତରୁ କେବଳ ବେଳେବେଳେ ଦୃଷ୍ଟିଗୋଚର ହୋଇଯାଉଚି ।

ଗାଆଁରେ ଖୁଡ଼୍ କି ଖାଡ଼୍ କୌଣସି ଶବ୍ଦ ଶୁଣାଯାଉନାହିଁ । କେବଳ କୋଉଠୁ କଦବା ଖଳାଘରୁ ଗହମବାଡ଼ିଆର ଶବ୍ଦ ଶୁଭୁଚି । ଅଧିକାଂଶ ଲୋକ ବନ୍ଧାକୋଠର କଣ୍ଢାଗୁଡ଼ିକୁ ବାହାରି ଯାଇଚନ୍ତି । କାଦୁଅପଙ୍କରେ ଗାଆଁର ରାସ୍ତା ଅମଡ଼ାହୋଇ ପଡ଼ିଚି । ଘରଦୁଆର ମଧ୍ୟ ଅଯନା ଅଖିରକା ଦେଖାଯାଉଚି । ହୁଏତ ମଝିରେ ମଝିରେ କୁହୁଡ଼ି ଭିତରୁ ଲୁଚି ବାହାରିବା ପରି ଜଣେ ଦୁଇଜଣ ମଣିଷ ଦୃଷ୍ଟିଗୋଚର ହେଉଚନ୍ତି ଓ କ୍ଷଣକ ପରେ ପୁଣି ସେହି କୁହୁଡ଼ିଭିତରେ ଅଦୃଶ୍ୟ ହୋଇ ଯାଉଚନ୍ତି । କେବଳ ସେମାନଙ୍କର କାଠ କଠାଉର ଠପଠପ ଶବ୍ଦ କାନରେ ଆସି ବାଜୁଚି । ପୁଣି କେତେବେଳେ ବନ୍ଧାକୋଠରେ ବୋଝାଇ ହୋଇଥିବା ଗୋଟାଏ ଗାଡ଼ୀ ରାସ୍ତାଉପର ଦେଇ ଚାଲିଯାଉଚି, ଓ ଗାଡ଼ୀରୁ ଖସିପଡ଼ୁଥିବା କୋଠପଡ଼ରର ଲେଉରେ ମାଳମାଳ ହୋଇ ଦଉଡ଼ୁଥିବା ବତକମାନଙ୍କୁ ହୁରୁଡ଼ାଇଦେଇ ଯାଉଚି ।

ଗାଆଁର ପୋଖରୀ ଆପଣାର ଘରଦାଢ଼ ଦେଇ ବର୍ଷଣାପାଣି ସହିତ ସଂଗ୍ରାମ କରିବାରେ ଲାଗିଚି । ପୋଖରୀର ପାଣି ଦାନକୁଦାନ ବଢ଼ିଚାଲିଚି । ବୋଉନାର ଦୁଆରସରିକି ଆସି ଲାଗିବା ପୂର୍ବରୁ ଏହା କୂଳଡେଇଁ ବାଡ଼ର ସୀମା ସ୍ପର୍ଶ କଲାଣି ।

ବନ୍ଧାକୋବି କାଟି ସେଗୁଡ଼ିକ ବୋହାଇ କରି ଘରକୁ ବୋହିଆଣିବା କାମରେ ଗାଆଁଟାଯାକ ସବୁଲୋକ ବ୍ୟସ୍ତ ଅଛନ୍ତି । ସବୁଠିଁ ବନ୍ଧାକୋବିମାନ ଗୁଡ଼ ହୋଇ ରହିଛି । ଖଳାଘରେ, ବାଟରେ, ଗୋହିରିରେ, ଶୋଇବାଘରେ, ଅଧିଗ୍ରଳ ତଳେ, ସବୁଠି ଶହଶହ କୋବି ଜମାହୋଇଛି ।

ବରଷାପାଗ ଲାଗି ରହିଥିବାରୁ ସମସ୍ତେ ଭାରି ତରତର ହେଉଛନ୍ତି । ରାସ୍ତାଉପରଟା ଦଖଲ ହୋଇଗଲାଣି, ଗାଡ଼ୀର ଚକ ପୋତହୋଇ ଲଖିଯାଉଛି ।

ସେଦିନ ସେମାନେ ଡୋମିନିକଙ୍କର କିଆରିରୁ କୋବି ଓପାଡ଼ି ଯାଇଥିଲେ ।

ସୁଗ୍‌ନା ଅଉ ସିମନ୍ ସକାଳ ପହରରୁ ଯାଇ ବିଲରେ ଥିଲେ, ଗ୍ରଲରେ ଖୁଣ୍ଟାକେଇଟା ମାଡ଼ଦେବାକୁ ଆଣ୍ଡ୍ରୁ ଘରେ ଥିଲା ।

ମୁହଁସଞ୍ଜ ହୋଇ ଆସିଲାଣି, ସେମାନେ ଘରକୁ ଫେରିନାହାନ୍ତି । ଥରକୁଥର ଦାଣ୍ଡଦୁଆରକୁ ଆସି ଘରଣୀ ବୁଢ଼ୀ ଅଟାପେଷା ଘରଆଡ଼େ ଦୂରକୁ ଅନାଇବାରେ ଲଗିଛି । ସେମାନେ ଆସୁଥିବେ ପରା, ସେଥିପାଇଁ ସେଇଆଡ଼କୁ କାନଡେରି ରହିଛି ।

କିନ୍ତୁ ଅଟାପେଷା ଘରର ସେପାଖରୁ ଆରମ୍ଭ ହୋଇଥିବା କିଆରି-ଗୁଡ଼ିକରେ ଏପର୍ଯ୍ୟନ୍ତ କାମ ଲଗିଛି । ବିଲଉପରେ କୁହୁଡ଼ିର ବହଳ ପରସ୍ତ ଧୂଆଁ ଟାଣିଦେଇ ଗଲାଣି । ଖାଲଖମାରେ ଭରି ରହିଥିବା ପାଣି ଗୋଧୂଳିର ଆଲୁଅରେ ଚକଚକ ଦେଖାଯାଉଛି । କୋବିକିଆରି ଉପରେ ନଇଁପଡ଼ି ନାଲିଆ କୁରୁତା ପିନ୍ଧିଥିବା ସ୍ତ୍ରୀଲୋକମାନେ ଗଦାଗଦା କୋବି ଜମା କରିବାରେ ଲଗିଚନ୍ତି ।

କୋଉ କିଆରିରେ କାମ ସରିଗଲାଣି, ଲୋକମାନେ ଘରକୁ ଫେରି-ଆସୁଚନ୍ତି । କୁହୁଡ଼ି ଭିତରୁ ସେମାନଙ୍କର ଗୁଣ୍ଡର ଶବ୍ଦ ଏପାଖରେ ଆସି ଅକାଡ଼ିହୋଇ ପଡ଼ୁଛି ।

ସୁଗ୍‌ନାର କାମ ମୋଟେ ଏଇନାଗେ ଶେଷ ହୋଇଛି । ସେ ଏକା-ବେଳେକେ ହାଲିଆ ହୋଇପଡ଼ିଛି, ତାର ଗୋଡ଼ର ବୁଟ୍‌କୋଡ଼ାଦୁଇଟା

ପାଣିକାଦୁଅରେ ଜୁଡ଼ୁବୁଡ଼ୁ ହୋଇରହିଛି । ଆଣୁ ଏ କାଦୁଅରେ ପଶି ଧନମାନ କାମକଲେ ଯୋଉ ଦଶା ହେବା କଥା, ତାହାର ଠିକ୍ ସେହି ଦଶା ହୋଇଛି । ବୁଟଡଳେ ପିନ୍ଧିଥିବା କାଠର ଜୋତାଯୋଡ଼ାକରେ ମଧ୍ୟ ପାଣି ଭରତି ହୋଇ ରହିଛି । ଧନଯାକ ଯେ କେତେଥର ତାକୁ ଗୋଡ଼ରୁ ଯୋତାକାଢ଼ି ପାଣିଗୁଡ଼ାକୁ ବାହାର କରିଦେବାକୁ ପଡ଼ୁଛି, ସେକଥା ଏକା ସେଇ ଜାଣେ ।

"ସିମନ୍, ଚଞ୍ଚଳ କାମ ସାର୍ । ମୋର ହାତଗୋଡ଼ରେ ଆଉ ଜୀବନ ନାହିଁ",— ବଡ଼ କ୍ଳାନ୍ତ ସ୍ୱରରେ ସେ ସିମନ୍‌କୁ ଡାକିକରି କହିଲା । ଜୁଆନ୍ ଟୋକା ସିମନ୍ ସେତେବେଳକୁ ତା'ର ପିଠିଉପରର ବୋଝକୁ ଉଠାଇବାକୁ ଯାଇ ନୟାନ୍ତ ହୋଇ ପଡ଼ୁଥାଏ, ତଥାପି ଉଠାଇ ପାରୁ ନଥାଏ । ଦଉଡ଼ିଯାଇ ସ୍ୱଗ୍‌ନା ତା'ର ବୋଝଟିକୁ ଧରିଲା ଓ ପିଠିରେ ପକାଇ ଗାଡ଼ୀ ପାଖକୁ ନେଇଆସିଲା ।

"ଆସି ଏଡ଼େବଡ଼ ଟୋକାଟାଏ ହେଲୁଣି, ତଥାପି ଏଇ ବୋଝରେ ତୋ'ର ଅଣ୍ଟା ଭାଙ୍ଗିପଡ଼ୁଛି ?"— ସ୍ୱଗ୍‌ନା ବିରକ୍ତ ହୋଇ କହିଲା ଓ କୋବିଗୁଡାକୁ ଲେଦର ଭିତରକୁ ଅଜାଡ଼ିଦେଲା ।

ଲଜ୍ଜିତ ହୋଇ ସିମନ୍ କ'ଣ ଗଣଗଣ ହୋଇ କହୁଥିଲାପରି ମନେ-ହେଲା । ସେ ଗାଡ଼ୀଆଗକୁ ଯାଇ ଘୋଡ଼ା ଯୋଚିବାକୁ ଆରମ୍ଭ କଲା ।

"ଚଞ୍ଚଳ କର୍, ସିମନ୍ !"— ଗୋଟାକ ପରେ ଗୋଟାଏ ବୋଝ ଆଣି ଗାଡ଼ୀଭିତରେ ଅଜାଡ଼ୁ ଅଜାଡ଼ୁ ସ୍ୱଗ୍‌ନା ପୁଣି ପାଟିକରି କହିଲା ।

ରାତି ହୋଇଗଲାଣି, ଧରଣୀର ଛାଇ କଳାହୋଇ ଯାଉଲାଣି । ବଡ଼ବଡ଼ ଟୋପାରେ ବରଷା ମଧ୍ୟ ପଡ଼ୁଛି । କାଦୁଆ କଞ୍ଚା ମାଟି ଓ ଖାଲଭିତରେ ଜମାହୋଇ ରହିଥିବା ପାଣି ଉପରେ ବରଷାର ବିନ୍ଦୁଗୁଡ଼ାକ ପଡ଼ି ବାଜିଲା ବାଜିଲା ପରି ଶୁଣାଯାଉଛି ।

"ଷ୍ଟୁଜ୍‌କା, ଆଜିର କାମ ସରିଲାଣି ନା' ନାହିଁ ?"— ହାଙ୍କା ଆଉ ଲୁବା ସହିତ କଥାଛାଡ଼ି କୋବି କାଟୁଥିବା ବୋରନା-ଝିଅକୁ ଡାକି ସେ ପଚାରିଲା ।

"ହଁ ସରିଲଣି । ଆମେ ଘରକୁ ଫିବାକୁ ବାହାରିଲୁଣି । ପାଗ ଯାହା ହେଲଣି, ତାକୁ ଦେଖି ଡର ମାଡ଼ୁଚ । ମୁଁ ଗୋଟାସୁଦ୍ଧା ଓଦା । ତୁ ବ ଏଇନାଗେ ଫିରୁ ନା ଡେରି ହେବ ?"

"ଡେରି କରିବାକୁ ଆଉ ବେଳ ଅଛୁ ? ରାସ୍ତାଦାଟ ଅନ୍ଧାର ହୋଇ-ଗଲେ ତ ବାଟ ଦିଶିବନାହିଁ । ଆଜ ଯେତିକ ହେଲ ସେତିକ । ଯାହା ନହେଲ, ତାହା କାଲିକ ଥାଉ । ଆରେ ବାଃ,— ତୁମ କଆାଣ୍ଟ୍ରି କୋବିଚୁଡ଼ାକ ତ ଖୁବ ବଢ଼ିଆ ହୋଇଚ ! — କୁହୁଡ଼ିଭିତରୁ ଜକଜକ ହୋଇ ଦେଖା-ଯାଉଥିବା କୋବିଗଦା ଆଡ଼କୁ ଗୃହିଁ ସୃଗ୍‌ନା କହିଲ ।

"ତୁମ କୋବିଚୁଡ଼ାକ ବ କୋଉ ଖରାପ ହୋଇଚ ? ଆଉ ତୁମ କଆାଣ୍ଟିର ସାଲଗମ୍ ଗୁଡ଼ାକ ତ ଆମ କଆାଣ୍ଟିର ସାଲଗମ୍‌ର ଦୁଇଦୁଇ ଗୁଣ ହେବ !"

"ହଁ, ଆମେ ଏବର୍ଷ ନୂଆ ମଞ୍ଜି ମଗାଇଥିଲୁ, ପାଦ୍ରୀ ଓ୍ୱାର୍‌ଫ୍'ରୁ ମଗାଇ ଆମକୁ ଦେଇଥିଲେ ।"

"ସୃଗ୍‌ନା !"— କୁହୁଡ଼ି ଭିତରୁ ଡାକ ସୁଜ୍‌କା ପୁଣି କହିଲ । "ତୁ ଶୁଣିଚୁ, ଯୋସେଫର ପୁଅ ଭାଲେକ୍ କାଲ ମେଣ୍ଟ ପୋସିଓଟେକ୍ ପାଖକୁ ପ୍ରସ୍ତାବ ଦେଇ ଭଲଲୋକ ପଠାଉଚ !"

"କ'ଣହେଲ, ସେଇ ମେଣ୍ଟଡ଼ୀଟା ପାଖକୁ ? ସିଏ ତ ଅଡ଼ ପିଲାଟାଏ, ନୁହଁ ? ମୋର ଯାହା ମନେହେଉଚ ଆରବର୍ଷ ସେ ଗାଈ ଚରାଇ ବୁଲୁଥିଲ ନା' ?"

"ହଁ, କନ୍ତୁ ତା'ର ବୟସ ଆସି ହୋଇଗଲଣି । ପୁଣି ତା'ନାଆଁରେ ଏତେ ଜମିଅଛୁ ଯେ, ତାକୁ ବାହାହେବାପାଇଁ ଟୋକାଗୁଡ଼ାକ ଖାଲ ହାଇଁ-ପାଇଁ ହେଉଚନ୍ତ ।"

"ସୁଜକା, ଆଉ କେଇଦନଗଲେ ତୋତେ ବାହାହେବାକୁ କେତେ ଟୋକା ହାଇଁପାଇଁ ହେବେ !"

"ହଁ, ଖାଲ ବାପ ଆଉ ଗୋଟାଏ ବାହା ନହେଲେ ହେଲ !"— ଆଉ-ଗୋଟାଏ ଖେତରେ ଥାଇ ସୃଗୁଷ୍ଟିଙ୍କା କଥା ଯୋଖିଦେଇ କହିଲ ।

ଆଶ୍ଚର୍ଯ୍ୟ ଶଙ୍କିତ ଭାବରେ ହାଙ୍କା ଜବାବ ଦେଇ କହିଲା, "ଏହାର ଅର୍ଥ ? ମାଆ ମରିବା ବରଷେ ହୋଇନାହିଁ !"

"ସେଥିପାଇଁ କ'ଣ ମରଦପୁଅର ପରୁଆ ଅଛି ? କୁକୁର ପ୍ରକୃତି ଯାହା, ମରଦ ପ୍ରକୃତି ମଧ୍ୟ ସେଇଆ । ପେଟ ଯେତିକି ପୂରୁଥିବ, ସେତିକି ସେତିକି ଆଉ ଗୋଟାଏ କୁଣ୍ଡରେ ଯାଇ ମୁହଁ ମାରିବାକୁ ମନ ହେଉଥିବ । ଆଲୋ, ବଅସ ଗଳିଗଲାଣି ନା' ପାରୁଆପଣ ଗଳିଗଲାଣି ? ବୁଢ଼ା ଆଉ ଗୋଟାଏ ବାହାହେବ ବୋଲି ମନ କରିଛି । ମରଦଜାତି କୁକୁରଜାତି । ଦିଙ୍କୋରା ପୁଣି କଲା କ'ଣ ? ପହିଲି ମାଇପ ଗାଡ଼କୁ ଦିବାର ମାସ ନପୂରୁଣୁ ସିଏ ଆଉ-ଗୋଟାଏ ବାହା ହେଲା ନା' ନାହିଁ ?"

"ହଁ, ସତକଥା । କିନ୍ତୁ ତା'ର ପାଞ୍ଚପାଞ୍ଚଟା ପିଲା ଥିଲେ ଯେ !"

"କିନ୍ତୁ ସିଏ ବୋକା ହୋଇଥିବ, ସେଇ କହିବ ଯେ କେବଳ ପିଲାଙ୍କ ସକାଶେ ସେ ଆଉ ଗୋଟାଏ ବାହା ହେଲା । ଆରେ ବାବୁ, ଆପଣା ସୁଖର ସାଥୀ ସମସ୍ତେ । ଆଉ ଗୋଟାଏ ଘରକୁ ନଆସିଲେ କଡ଼ରେ ଶୋଇବାକୁ ପୁଣି କିଏ ଆସିବ ?"

ଏହି କଥା ଶୁଣି ମୁକ୍ତା ଭୋଡ଼ ଦେଖାଇ କହିଲା, "କିନ୍ତୁ ବାପାଙ୍କୁ ଏପରି କରିବାକୁ ଆମେ କଦାପି ଦେବୁନାହିଁ । କଦାପି ନୁହେଁ !"

"ତୁ ପିଲାବକଟେ କ'ଣ ଜାଣିଚୁ ? ଜମିଗୁଡ଼ାକ ଯେମିତି ବାପର, ଇଚ୍ଛାଟା ମଧ୍ୟ ସେମିତି କେବଳ ତା'ର !"

"କିନ୍ତୁ ପିଲାମାନଙ୍କର କଥା ପୁଣି ସେ ଭାବିବେ ନା' ନାହିଁ ? ସେମା-ନଙ୍କର ତ ପୁଣି ଦାବୀ ରହିଛି !"—ହାଙ୍କା କହିଲା ।

"ଆରେ ଆପଣା କଥା ଆଗ ନା' ପରକଥା ?"— ସୁଭୁଷ୍ଟିଙ୍କା ଉତ୍ତର ଦେଲା ।

ସୁଗନ୍ଧା ଏସବୁ କଥାବାର୍ତ୍ତାରେ ହୁଁ କି ଚୁଁ କିଛି କହୁନଥାଏ । କେବଳ ଚୁପ୍ ରହି ମୁରୁକି ମୁରୁକି ହସି ସେ କୋବି ବୋହି ଆଣିବାରେ ଲାଗିଥାଏ । ଯାତ୍ରାରେ ସେଦିନ ଘଟିଥିବା କଥାଗୁଡ଼ାକ ତା'ର ଭାରି ମନେପଡ଼ି ଯାଉଥାଏ ।

ଗାଡ଼ୀ ଲଦଉହୋଇ ସାରବାପରେ ସିମନ୍ ଗାଡ଼ୀ ଅଡ଼ାଇ ରାସ୍ତାକୁ ବାହାରିଲା ।

"ମୁଁ ଯାଉଚ ଲୋ । ବହୁତ ବହୁତ କହୁକର ଯାଉଚ !"— ସୁଗନ୍ଧା ଅନ୍ୟମାନଙ୍କୁ ଉଦ୍ଦେଶ୍ୟ କରି କହିଲା ।

"ବହୁତ ବହୁତ । ଆମେ ବି ତୋ' ପଛେ ପଛେ ଆସୁଚୁ । ପଡର ଘୁଡ଼ାକୁ ଛଡ଼ାଇବାରେ ତୁ ଆମକୁ ସାହାଯ୍ୟ କରିବାକୁ ଆସିବୁ ସୁଗନ୍ଧା ?"

"କେଉଁବେଳେ କହୁନା ! ଆସିବିନାହିଁ କାହିଁକି ?"

"ଏଇ ରଇବାରଦନ କ୍ଲେମ୍ବାଙ୍କ ଘରେ ଗାଆଁ ଟୋକାଏ ଗାଆଣ ବଜାଣର ବରାଦ କରିଚନ୍ତି, ତୁ ଜାଣିଚୁଟିକି ?"

"ଜାଣିଚ ।"

ହାଙ୍କା କହିଲା, "ଆନ୍ତେକକୁ ଦେଖିଲେ ଧଅସି ଆସିବାକୁ କହିଦେବୁ । ଆମେ ଏଠି ତା'ପାଇଁ ଅନାଇ କରି ରହିଚୁ ।"

"ହଉ ।"

ଦଉଡ଼ିକରି ସେ ଗାଡ଼ୀକୁ ଧରିବାକୁ ଗଲା । ସିମନ୍ ଗାଡ଼ୀ ଅଡ଼ାଇ ରାସ୍ତାକୁ ବାହାରିଗଲାଣି । ଦୂରରୁ ସେ ଘୋଡ଼ାକୁ ଗାଳି ଦେଉଥିବାର ଶୁଣାଯାଉଚ । କୋଉଠି କାଦୁଅଭିତରେ ଗାଡ଼ୀର ଚକ ଲାଖିକରି ରହିଯାଇଚ, ଠିକ୍ ଅଖଯାଏ କାଦୁଅଭିତରେ ପଶିଯାଇଚ । ଦୁହେଁଯାକ ଏକାଠି ମିଶି ଚକଦୁଇଟାକୁ ପଙ୍କଭିତରୁ ବାହାରକଲେ ଓ ଆଗକୁ ଗାଡ଼ୀଚଲାଇ ନେଲେ ।

କାହାର ମୁହଁରୁ କୌଣସି କଥା ଶୁଣାଯାଉ ନଥାଏ । ରାସ୍ତାଭିତରେ କୋଉଠି ଖାଲ କୋଉଠି ଖମା ସେଥିପାଇଁ କାଳେ ଲଦଉ ଗାଡ଼ୀଟା କୋଉଠି ଲେଉଟିପଡ଼ିବ, ଏହି ଭୟରେ ସିମନ୍ ଖୁବ ହୁସିଆର ହୋଇ ଘୋଡ଼ାକୁ ଅଡ଼ାଇ ନେଉଥାଏ । ସୁଗନ୍ଧା ପଛେପଛେ ଥାଇ ଦରକାର ବେଳେ ଗାଡ଼ୀରେ କାନ୍ଧ ଲଗାଇ ଦେଉଥାଏ ଏବଂ ବୋରନାଦରକୁ ପଡର ଛଡ଼ାଇ ଝିବାଦନ କ'ଣସବୁ ପିନ୍ଧକରି ଯିବ, ତାହାହିଁ ଚନ୍ତା କରିବାରେ ମଗ୍ନ ହୋଇ ରହିଥାଏ ।

ଗୋଟାଏ ଜାଗାରେ ଘାଟ କଠିନ ଉଠାଣି ପଡ଼ିଲା । ପାହାଡ଼ କାନ୍ଥ ପରି ଉଠାଣି, ପୁଣି ଏଥିରେ ବାଟ ବି ଖରାପ, ଗୋଡ଼ ଠାକିବାକୁ ବଳ ପାଉନାହିଁ ।

"ଗୋଟାଏ ଘୋଡ଼ାକୁ ବୋଝ ବହୁତ ହୋଇଯାଇଚି"— ଟେଣ୍ଡେ ଦୂରରୁ କିଏ ମତପ୍ରକାଶ କଲା ।

"କିଏ ଆନ୍ଟେକ୍ ନା କ'ଣ ?"

"ହଁ ।"

"ତେବେ ଚଞ୍ଚଳ ଯାଆ । ହାଙ୍କା ତେଣେ ଅନିସା କରି ବସିରହିଛନ୍ତି । କିନ୍ତୁ ଆମକୁ ଟିକିଏ ସାହାଯ୍ୟ କରିଯାଆ !"

"ଟିକିଏ ରହିଥା, ମୁଁ ଆଗ ତଳକୁ ଓହ୍ଲାଇଯାଏ'। ଏମିତି କଟିକଟି ଅନ୍ଧାର ହୋଇଚି ଯେ ମୁହଁକୁ ମୁହଁ ମଧ୍ୟ ଦିଶୁନାହିଁ ।"

ଆନ୍ଟେକ୍‌ର ବଳୁଆ ବାହୁର ସାହାଯ୍ୟଲାଗି ଗାଡ଼ୀ ଉପରକୁ ଉଠିଆସିଲା । ବାଟରେ କୋଉଠି ନଅଟିକି ଏକାବେଳେକେ ମଥାନଉପରେ ଆସି ଠିଆହେଲା ।

"ତୋତେ ଅନେକ ଧନ୍ୟବାଦ ।"—ସ୍ୱେଗ୍‌ନା କୃତଜ୍ଞତା ପ୍ରକାଶ କରି କହିଲା । "କିନ୍ତୁ ତୁ ସତରେ କେଡ଼େ ବଳୁଆ କହିଲୁ !"

ହାତ ବଢ଼ାଇଦେଇ ସେ ଆନ୍ଟେକ୍ ସହିତ କରମର୍ଦ୍ଦନ କଲା ।

ତା'ପରେ ପୁଣି ସମସ୍ତ ନୀରବ ହୋଇଗଲେ । ଗାଡ଼ୀ ଆଗେଆଗେ ଯାଉଥାଏ, ସେମାନେ ପଛେ ପଛେ ଯାଉଥାନ୍ତି । କଥାବାର୍ତ୍ତା ହେବାଲାଗି ସେମାନଙ୍କର ମୁଣ୍ଡକୁ କୌଣସି କଥା ଜୁଟୁନଥାଏ । ଅଥଚ ଦୁହିଁଙ୍କୁ ଦୁହେଁ ଭାରି ଉତ୍ତେଜିତ ହୋଇ ପଡ଼ିଥିବାପରି ଦିଶୁଥାନ୍ତି ।

"ତୁ କ'ଣ ପୁଣି ଲେଉଟି ଯାଉଚୁ କି ?"—ସ୍ୱେଗ୍‌ନା ଫୁସ୍‌ଫୁସ୍ କରି ପଚାରିଲା ।

"ହଁ, ମୁଁ ଅଟାପେକ୍ଷା ଘରଯାଏ ଦିବି । ସେଠି ପାଣିରେ ଗୋଟାଏ ବଡ଼ ଘୋଳିଆ ପଡ଼ିଯାଇଚି, ଯାଇ ଦେଖିବାକୁ ପଡ଼ିବ ।"

"ଭାରି କଟିକଟି ଅନ୍ଧାର, ନୁହେଁ ?"—ସ୍ୱେଗ୍‌ନା ପଚାରିଲା ।

"କ'ଣ ଡରମାଡ଼ୁଚି କି ?"— ସେ ପାଖକୁ ଲାଗିଆସି କହିଲା ।

ପୁଣି ଚୁପ୍‌ହୋଇ ଦୁହେଁ ବାଟ ଚାଲିଲେ । କାନ୍ଧକୁ କାନ୍ଧ ବାଜିଯାଉ-ଥାଏ, ଦେହରେ ଦେହ ଘଷିହୋଇ ଯାଉଥାଏ ।

"ତୋ'ର ଆଖିଦୁଇଟାରୁ ସତେଯେପରି ନିଆଁ ବାହାରୁଚି !......ଠିକ୍ ବାଘର ଆଖି ପରି !"

"ରବିବାରଦିନ ତୁ କ୍ଲେମ୍ବାଙ୍କ ଘରକୁ ଆସିବୁ ନା' ? ଗାଆଣ ବଜା-ଣର ବ୍ୟବସ୍ଥା ହେଉଚି ।"

"କିନ୍ତୁ ମୋ' ବୋଉ କ'ଣ ମୋତେ ଛାଡ଼ିଦେବ ?"

"ନାଇଁ, ନାଇଁ ! ତୁ ନିଶ୍ଚୟ ଆସିବୁ "— ଥରଥର ଶବ୍ଦରେ ସେ ଅନୁନୟ କରି କହିଲି ।

"ମୁଁ ଆସେ ବୋଲି ତୋ'ର କ'ଣ ପ୍ରକୃତରେ ଇଚ୍ଛା ?"— ତା'ର ଆଖିଦୁଇଟି ଆଡ଼କୁ ଅନାଇ ସୁଗ୍‌ନା କଅଁଳ ସ୍ୱରରେ ପଚାରିଲା ।

"ସେଥିରେ ପୁଣି ସନ୍ଦେହ କରିବାକୁ ଅଛୁ ନା' ? ମୁଁ ପରା ନିଜେ ଯାଇ ବାଜା ବଜାଇବାବାଲାଙ୍କୁ ବରାଦଦେଇ ଆସିଚି ! ଖାସ୍ ତୋ'ରି ସକାଶେ । ଖାସ୍ ତୋ'ରି ସକାଶେ ମୁଁ କ୍ଲେମ୍ବାଙ୍କ ମେଲଘରଟା ଛାଡ଼ିଦେବା ପାଇଁ ଅନୁରୋଧ କରିବାକୁ ଯାଇଚି !"— ଆନ୍ତେକ୍ ଥରଥର ଉତ୍ତର ଦେଲା । ତା'ର ମୁହଁ ସୁଗ୍‌ନାର ମୁହଁ ପାଖକୁ ଲଗିଲଗି ଆସୁଥାଏ, ତା'ର ଖର ନିଃଶ୍ୱାସ ଆସି ସୁଗ୍‌ନାର ମୁହଁ ଉପରେ ବାଜିବାରୁ ଭାବାବେଗରେ ଅଧୀର ହୋଇପଡ଼ି ସୁଗ୍‌ନା ମୁହଁଟାକୁ ଟିକିଏ ଆଡ଼େଇ ନେଇଗଲା ।

"ହଉ, ତୁ ଯାଆ । ସେମାନେ ତୋ'ଲାଗି ଅପେକ୍ଷା କରି ବସିଚନ୍ତି । କାଳେ କିଏ ଆମକୁ ଦେଖିପକାଇବ । ତୁ ଯାଆ !"

"କିନ୍ତୁ ତୁ ଆସିବୁଟି କି ?"

"ହଁ, ହଁ, ନିଶ୍ଚୟ ଆସିବି ।"— ଆନ୍ତେକ୍‌ର ଛିବାବାଟକୁ ଅନାଇ ସୁଗ୍‌ନା ଉତ୍ତର ଦେଲା । କିନ୍ତୁ କୁହୁଡ଼ି ତାକୁ ନିମେଷକ ମଧ୍ୟରେ ଏପରି ଗିଳିପକାଇଲା ଯେ କାଦୁଅ ଭିତରେ ତା'ର ଗୋଡ଼ପଡ଼ି ସେଥିରୁ ଶୁଭୁଥିବା

କେବଳ ଏକ ଘାଟ୍ରୁ ଘାଟ୍ରୁ ଶବ୍ଦ ଶୁଣିବା ବ୍ୟତୀତ ସୁଗ୍ନା ଆଉ କିଛି ଦେଖି ପାରିଲାନାହିଁ ।

ତା'ପରେ ସୁଗ୍ନାର ସମସ୍ତ ଶରୀରକୁ ଗୋଟାଏ ଅଦମ୍ୟ କମ୍ପନ ମାଡ଼ିବସିଲା ପରି ଲାଗିଲା । କିନ୍ତୁ ତଥାପି ଯେପରି ତା'ର ହୃଦୟ ଓ ମୁଣ୍ଡ ଭିତରଦେଇ ନିଆଁ ପବନ ବୋହିଯିବାରେ ଲାଗିଥାଏ ! ସେ ଏସବୁର କୌଣସି ଅର୍ଥ ବୁଝି ପାରିଲାନାହିଁ : ଆଖିଦୁଇଟା ଦାଉଦାଉ ହୋଇ ଜଳୁଛି, ଗୁଣ୍ଡାଭିତରେ ନିଃଶ୍ୱାସ ଅଟକିଗଲା ପରି ମନେହେଉଛି, ହୃଦୟର ସେହି ଦ୍ରୁତ ସ୍ପନ୍ଦନକୁ ଅଟକାଇ ରଖିବା ତା'ପକ୍ଷରେ ଆଦୌ ସମ୍ଭବ ହେଲାନାହିଁ । ସମ୍ମୋହିତ ହେଲାପରି କାହାକୁ ଆଲିଙ୍ଗନ କରିବା ଉଦ୍ଦେଶ୍ୟରେ ସେ ଆପଣାର ଦୁଇହାତ ଆଗକୁ ପ୍ରସାରିତ କରିଦେଲା । ତା'ପରେ ଯତେଯେପରି ତା'ର ଦେହଟାସାକ ଏକାବେଳେକେ କାଠ ହୋଇଗଲା,—ଯତେଯେପରି ସେ ବଡ଼ ପାଟିରେ ଚିତ୍କାର କରି ଉଠିବ, ତା'ର ଠିକ୍ ସେହିପରି ମନେହେଉଥାଏ । କିନ୍ତୁ ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଗାଡ଼ୀପାଏ ଆସିଲା ଓ ଦଣ୍ଡାଟାକୁ ଧରି ଅତି ଅନାବଶ୍ୟକ ବେଗରେ ଗାଡ଼ୀଟାକୁ ଆଗକୁ ଠେଲିଦେଲା । ଗାଡ଼ୀଟା କେଁ କରି ଶବ୍ଦକରି ଗୋଟାଏ ଆଡ଼କୁ ଫାଙ୍କିକରି ଅଟେଇହୋଇଗଲା ଓ କେତୋ'ଟି ବନ୍ଧାକୋବି ଖସିଯାଇ ତଳେ କାଦୁଅ ଉପରେ ଆସି ପଡ଼ିଲା । ତଥାପି ସେପର୍ଯ୍ୟନ୍ତ ମଧ୍ୟ ତା'ର ଆଖିଆଗରେ କେବଳ ସେହି ମୁହଁଟି ଦଉଡ଼ି ଯାଉଥାଏ । କେଡ଼େ ଉଜ୍ଜ୍ୱଳ ସେଇ ଆଖିଯୋଡ଼ିକ, କେତେ ଆକାଂକ୍ଷା ଓ କାମନାରେ ଟୁଲୁଟୁଲୁ ହୋଇ ରହିଛି ।

"ସିଏ ତ ମଣିଷ ନୁହେଁ, ସିଏ ହେଉଛି ଝଞ୍ଜାପବନ"— ଆପଣା ମନକୁମନ ସେ ଭାବିବାକୁ ଲାଗିଲା ।" ସାରା ପୃଥିବୀଟା ବୁଲିଆସିଲେ ତା'ପରି ଗୋଟାଏ ମରଦ ମିଳିବ ନା' ?"

ଅଟାପେଷା ଘରର ଘିଡ଼ିଘିଡ଼ି ଘିଡ଼ିରି ଶବ୍ଦ ଶୁଣି ଯାଇ ତା'ର ଜ୍ଞାନ ହେଲା । ଜଳଧାରାରେ ଆଜି ଅନେକ ପାଣି ଥିବାରୁ ଘଟାଘୁଡ଼ାକୁ ଖୋଲି ଦିଆଯାଇଛି । କୋଳାହଳମୟ ଗର୍ଜନ କରି ପାଣିର ସ୍ରୁଅ ତଳକୁ ଧାଇଁଯାଉଛି,

ନଦୀର ଜଳସମତଳ ଉପରେ ଫେଣର ଧଳା ଗାରମାନ କାଟିହୋଇ ଯାଉଛି ।

ଠିକ୍ ରାସ୍ତାଉପରେ ପେଷଣିଆର ଘର । ଘରଭିତରେ ଗୋଟିଏ ଟେବୁଲ ଉପରେ ବତୀ ଜଳୁଚି । ସେହି ଆଲୁଅରେ ଝରକାବାଟେ ଅନାଇଲେ ଘରଭିତରଟା ସ୍ପଷ୍ଟ ଦେଖାଯାଉଛି ।

"ଖାସା ବତୀଟାଏ ଏକା ! ଠିକ୍ ପାଦ୍ରୀଙ୍କ ଘରେ ଯେମିତି ଗୋଟାଏ ବତୀ ଅଛି, ସେମିତି ।"

"ଆରେ, ସେମାନେ କେଡ଼େ ଧନୀଘର କହିଲୁ !"—ସିମନ୍ କହିଲା । ବୋଉନାଠାରୁ ମଧ୍ୟ ସ୍ବାଙ୍କର ବେଶୀ ଜମି ଅଛି, କେତେକେତେ ଲୋକଙ୍କୁ କରଜ ଦେଇ ସେମାନେ ସୁଧ ଖାଉଚନ୍ତି, ଆଉ ତାଙ୍କ ଚକକୁ ଆମେ ଅଟା ପେଷାଇନେଲେ କେମିତି ଲଭ ମାରନେଉଚନ୍ତି !"

ଠିକ୍ ଜମିଦାରଘର ପରି ସେମାନେ ଅସ୍ବସରେ ରହିଚନ୍ତି । ଫରଗୃ ଫରଗୃ ଘର, ଶୋଇବାକୁ ଖଟ । ଖାଇବାବେଳକୁ କେତେ ବଢ଼ିଆ ବଢ଼ିଆ ଜିନିଷ ଆସି ଆଗରେ ବଢ଼ା ହେଉଚି । ସେମାନଙ୍କ ଜମିରେ କେତେକେତେ ଲୋକ କାମ କରିବାକୁ ଆସୁଚନ୍ତି !"— ସ୍ବଗ୍ନା ଭାବି ଗୁଲିଥାଏ । କିନ୍ତୁ ଏଥିରେ ତା'ର ମନରେ କୌଣସି ଈର୍ଷାଭାବ ଆଦୌ ଆସୁନଥାଏ ବା ସିମନ୍ କହୁଥିବା କଥାକୁ ମଧ୍ୟ ସେ କୌଣସି ଧ୍ୟାନ ଦେଉନଥାଏ । ସିମନ୍ ସ୍ବଭାବତଃ ଅଳପ କଥା କହେ, କିନ୍ତୁ ଆଜି ଏଇକଥାଟା ପଡ଼ିବାରୁ ସେ ପେଢ଼ୀ ଫିଟାଇଲା ପରି ଅନର୍ଗଳ କହିବାରେ ଲାଗିଥାଏ ।

ପରିଶେଷରେ ସେମାନେ ଆସି ଘରେ ପହଞ୍ଚିଲେ । ଘରଭିତରେ ଉହ୍ନେଇରେ ହୁତୁହୁତୁ ହୋଇ ନିଆଁ ଜଳୁଥାଏ । ଆଣ୍ଡ୍ର ଆଳୁରୁ ଚୋପା ଛଡ଼ାଉଥାଏ, ଆଉ ମାଆ ରାତ୍ରିପାଇଁ ଖାଇବା ତିଆରି କରୁଥାଏ ।

ନିଆଁ ପାଖକୁ ଲାଗିକରି ପାକଲ ଝୋଟପରି ବାଳଥିବା ଗୋଟିଏ ବୁଢ଼ା ବସିଥାଏ ।

"ସ୍ବଗ୍ନା, ଆଜି କ'ଣ ସବୁ କାମ ସରିଗଲା ?"

"ଆଉ ତନିଟା କଥାଣ୍ଡି ବାକି ରହିଲା ।"

ଭିତର ଘରକୁ ଲୁଗା ପାଲଟିବାକୁ ଯାଇ ସ୍ୱର୍ଗ୍ନା କିଛିସମୟ ପରେ ପୁଣି ଫେରିଆସିଲା ଓ ଖାଦ୍ୟ ଖାଇବାଲାଗି ଆୟୋଜନ କରିବାକୁ ଲାଗିଲା । ଆଖି ବୁଲାଇ ସେ ଘର ଏକୋନାପାରେ ସେଠାରେ ବସିରହିଥିବା ବୁଢ଼ାଟି ଆଡ଼କୁ ଅନାଇଥାଏ । ବୁଢ଼ା ଚୁପ୍ ହୋଇ ବସିଥାଏ, ନଁଆଁ ଆଡ଼କୁ ଅନାଇ-ଥାଏ, ହାତର ଆଙ୍ଗୁଠିଭିତର ଦେଇ ମାଳାର ମାଳିଗୁଡ଼ାକ ଗଡ଼ିଯିବା ସଙ୍ଗେସଙ୍ଗେ ତା'ର ପାଟିର ଓଠ ଦୁଇଟା ମଧ୍ୟ ପାକୁପାକୁ ହେଉଥାଏ । ଖାଇବା ବଢ଼ାହୋଇ ସାରିବାବେଳକୁ ବୁଢ଼ୀ ତା'ପାଇଁ ମଧ୍ୟ ଗୋଟିଏ ପ୍ଲେଟ ନେଇ ଟେବୁଲ ଉପରେ ରଖିଲା ଏବଂ ତାକୁ ଖାଇବାକୁ ଡାକିଲା ।

"ନାଇଁ, ଥାଉ, ଧନ୍ୟବାଦ ! "ମୁଁ ବର୍ତ୍ତମାନ ଯାଉଚି !"— ସେ ଉତ୍ତର ଦେଲା । "କିନ୍ତୁ ଆଉଥରେ ମୁଁ ପୁଣି ଆସିବି ଆଉ ସମ୍ଭବତଃ ଲପ୍‌କା ଗାଆଁରେ ଅଧିକ ସମୟ ରହିବାକୁ ବେଳ ପାଇବି ।"

ଘରମଝିରେ ଆଣ୍ଠୁମାଡ଼ି ବସି ସେ ପବିତ୍ର ଦେବମୂର୍ତ୍ତିଗୁଡ଼ିକ ଉଦ୍ଦେଶ୍ୟରେ ପ୍ରଣାମ କଲା ଓ ଶୂନ୍ୟରେ କ୍ରସଚିହ୍ନ ଆଙ୍କି ଗୋଟିଏ ଗୋଟିଏ ପାଦ ପକାଇ ଘରୁ ବାହାରିଗଲା ।

"ସେ କିଏ କି ?"— ସ୍ୱର୍ଗ୍ନା ପଚାରିଲା ।

"ଯୋଗୀ ଭିକାସ୍ତି,— ସାଧୁଲୋକ ଜଣେ ! ତାଙ୍କ ସହିତ ମୋ'ର ଅନେକ ଦିନର ପରିଚୟ । ଏଠାକୁ ସେ ଆଗରୁ ମଧ୍ୟ କେତେଥର ଆସିଚନ୍ତି ଏବଂ ତୀର୍ଥସ୍ଥାନମାନଙ୍କରୁ ମୋ'ଲାଗି କେତେକେତେ ପବିତ୍ର ସାମଗ୍ରୀମାନ ଆଣି ଦେଇଚନ୍ତି । ପ୍ରାୟ ତିନିବର୍ଷ ହେଲା······"

ଆମ୍ବ୍ରୋଜ୍‌କୁ ଘର ଭିତରକୁ ଆସିବାର ଦେଖି ତା' କଥା ଅଧାରୁ ବନ୍ଦ ହୋଇଗଲା । ଓଲଗି ହୋଇ ଆମ୍ବ୍ରୋଜ୍ ନିଆଁ ପାଖରେ ଯାଇ ବସିଲା ।

"ବାହାରେ ଏମିତି ଥଣ୍ଡା ପଡ଼ୁଚି ଆଉ ପାଣି ବରଷୁଚି ଯେ ମୋ'ର କାଠଡିଆର ଗୋଡ଼ଟା ମଧ୍ୟ କାଲୁଆ ମାରିଗଲାପରି ମନେହେଉଚି ।"

"ପାଗ ଯେମିତି ହୋଇଚି, ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ପୁଣି ସବୁକଥା ତ ଶୁଣୁଥିବ !"— ଡୋମିନିକଭି ଉତ୍ତର ଦେଲା । "ବାହାରକୁ ବାହାରିବାକୁ ତୋତେ କିଏ କହୁଥିଲା ?"

"ଘରେ ଏକୁଟିଆଟା ଭାରି ଖରାପ ଲାଗିଲା । ଭାବିଲି, ଯାଉଚି ଝିଅ-ମାନଙ୍କ ପାଖରେ ଟିକିଏ ମୁହଁ ମାରିଦେଇ ଆସେ । ଏହାପରେ ଭାବି ଆଗ ସୁଗ୍ନା ପାଖକୁ ଆସିଲି ।"

"କାହିଁକି ମରିବାକୁ ଗଲୁନାହିଁ ?"

"ମରିବାକୁ ? ମରଣ କ'ଣ ଆଉ ମୋତେ ମନେରଖିଚି ? ଟୋକା-ମାନଙ୍କୁ ଛାଡ଼ିଦେଇ ସେ ଏ ବୁଢ଼ାଟାକୁ କାହିଁକି ଖାତର କରିବାକୁ ଆସିବ ?"

"ତୋ' କଥାଗୁଡ଼ାକ ମୁଁ କିଛି ବୁଝିପାରୁନାହିଁ ।"— ଡୋମିନିକ୍ କହିଲା ।

"ପାଦ୍ରୀ ପରା ବର୍ତ୍ତମାନ ବାର୍ଣ୍ଣେକ୍ ଉପରେ ପାବୁକ-ପାଣି ସିଞ୍ଚିଦେଇ ଆସିଲେ !"

"କାହିଁକି ମ ମୁଁ ତ ତାକୁ ଏବେ ଯାଜାରେ ଦେଖିଥିଲି, ତା'ର ତ କିଛି ହୋଇନଥିଲା !"

"ତାର ଜୁଆଁଇଁ ତାକୁ ଏମିତି ନିର୍ଘାତଆ କରି ବାଡ଼େଇଚି ଯେ ତା'ର ଅନ୍ତବୁଜୁଳା ବାହାରି ପଡ଼ିଚି !"

"କେତେବେଳେ ? କାହିଁକି ବାଡ଼େଇଲା କହିଲୁ !"

"ଜମିପାଇଁ ! ଆଉ କୋଉଥି ପାଇଁ ସକାଳେ ବାଡ଼େଇବ ? ଛଅମାସ ହେଲା ଦୁହିଁଙ୍କଭିତରେ ଖୁବ୍ ଖିଆଖୋଇ ଚାଲିଥିଲା,— ଆଉ ଆଜି ଖରାବେଳେ ସବୁ ଫଇସଲା ହୋଇଗଲା ।"

"କାହିଁକି ?" —ଚିତ୍କାର କରି ସୁଗ୍ନା ପଚାରିଲା । "ଏ ମଣିଷମାରୁଙ୍କ ଉପରେ କ'ଣ ଭଗବାନଙ୍କ ଆଖି ପଡୁନାହିଁ ନା' କ'ଣ ?"

"ପଡ଼ିବ, ପଡ଼ିବ ! ଭଗବାନ ନିଶ୍ଚୟ ଏହାର ବିଗ୍ଭର କରିବେ !"— ଠାକୁରଙ୍କର ପିତୁଳାଗୁଡ଼ିକ ଆଡ଼କୁ ଆଖି ଉଠାଇ ତା'ର ମାଆ ଭାରି କର୍କଶ ଭାବରେ ଉତ୍ତର ଦେଲା ।

ହଁ, ବିଗ୍ଭର ସିନା କରିବେ, କିନ୍ତୁ ଗଲା ମଣିଷ ତ ଆଉ ଫେରି ଆସିବନାହିଁ !"— ଆମ୍ବ୍ରୋଜ୍ ଜବାବଦେଇ କହିଲା ।

"ଆଁ'— ଆମପାଖରେ ଖାଇ ବ'ସ !"

"ସେଥିରେ ମୋ'ର କୌଣସି ଆପତ୍ତି ନାହିଁ । ବର୍ତ୍ତମାନ ମଧ୍ୟ ମୁଁ ଥାଳୀରେ ଥାଳେ ଖାଇପାରିବି !"

"ସବୁବେଳେ ଖାଲି ତୋ'ର ଥଟ୍ଟା ଆଉ ତାମସା !"

"ଆଉ ମୋ'ର ସଂସାରରେ କ'ଣ ଅଛି କହିଲ ? କେଉଁଥିକୁ ମୁଁ ଆଉ କାହିଁକି ଖାତର କରିବି ?"

ଟେବୁଲ ଉପରେ ଦୁଇଟି ବଡ଼ ଥାଳୀରେ ଆଳୁ ଓ ଘୋଳଦହି ବଢା ହୋଇ ଥୁଆହୋଇଥାଏ । ସମସ୍ତେ ଯାଇ ଟେବୁଲ ଚାରିପାଖରେ ବସିଲେ ଏବଂ ଖାଇବାକୁ ଆରମ୍ଭ କଲେ । କେତେବେଳେ କଥାବାର୍ତ୍ତା ହେଉଥାନ୍ତି ତ ପୁଣି କେତେବେଳେ ଚୁପ୍ ହୋଇ ରହିଯାଉଥାନ୍ତି । କାହାର ଖାଇବାଥାଳୀ ଯେପରି ଖାଲି ହୋଇନଯାଏ, ଆଣ୍ଡ୍ରୁ ସେଥିପ୍ରତି ନଜର ରଖିଥାଏ । ଆମ୍ବ୍ରୋଜ୍ ମଝିରେ ମଝିରେ ଥାଇଥାଇ ଗୋଟାଏ ଗୋଟାଏ ହସକଥା କହୁଥାଏ ଓ ଅନ୍ୟମାନେ ହସିବା ଆଗରୁ ଆପେ ହସି ପକାଉଥାଏ ।

"ପାଦ୍ରୀ ଘରେ ଅଛନ୍ତି ନା ନାହିଁ ?"— ଖାଇବା ଶେଷହୋଇ ଆସିବାବେଳକୁ ଡୋମିନିକଭାଇ ପଚାରିଲା ।

"ଏଇ ପାଗରେ ଆଉ କୁଆଡ଼କୁ ଯାଆନ୍ତେ ? ଠିକ୍ ଗୋଟାଏ ଇହୁଦୀ ପରି ଘରେ ବସି ଖାଲି ବହି ପରେ ବହି ପଢ଼ିବାରେ ଲାଗିଛନ୍ତି !"

"ପାଦ୍ରୀ ଆମର ଭାରି ପଣ୍ଡିତ ଲୋକ !"

"ପୁଣି କେଡ଼େ ଭଲଲୋକ କହିଲ ! ସଂସାରଗୋଟାକରେ ଏପରି ଆଉଜଣେ ମଣିଷ ବାହାରିବେ ନା !"— ସ୍ୱର୍ଣ୍ଣା ଉଚ୍ଛ୍ୱସିତହୋଇ କହିଲା ।

"ହଁ, ଭାରି ଭଲଲୋକ । ତାଙ୍କ ମନରେ ଖରାପକଥା ବୋଲି କିଛି ନାହିଁ । ଆପଣା କାମରେ ବ୍ୟସ୍ତ ଥାଆନ୍ତି, କାହାର ଅନିଷ୍ଟ ପାଞ୍ଚନ୍ତି ନାହିଁ ।"

"ତୁ ସେମିତି ଅବାଗିଆ କରି କାହିଁକି କଥା କହୁଚୁ, ଆମ୍ବ୍ରୋଜ୍ ?"

ଖାଇବା ସରିଲା । ସ୍ୱର୍ଣ୍ଣା ତା'ର ମାଆସହିତ ଚୁଲ୍ଲିପାଖ ଉପରେ ଖୋସାହୋଇଥିବା ତାକୁଡ଼ି ଆଣିବାକୁ ଗଲା । ସବୁଦିନପରି ଦୁଇଭାଇ ବାସନ କୁସନ ଉଠାଇନେଲେ, ଧୋଇଧାଇ ସେସବୁଡ଼ିକୁ ଆପଣା ଜାଗାରେ ଆଣି ରଖିଦେଲେ । ଡୋମିନିକଭାଇର ଶାସନ ଭାରି କଡ଼ା, ପୁଅ ଦୁହିଁଙ୍କୁ ସେ ଭାରି

ନଜରରେ ରଖିଆସିଚି । ସୁଗ୍ନାର ସୁନ୍ଦର ହାତଦୁଇଟି ଏଷ୍ଟେଟର କାମକଣ୍ଡ କାଲେ ଟାଆଁସିଆ ହୋଇଯିବ, ସେଥିପାଇଁ ସେ ପୁଅମାନଙ୍କଦ୍ୱାରା ଘରର କାମ କରାଇଆଣିଚି ।

ଆମ୍ବ୍ରୋଜ୍ ପିକା ଲଗାଇ କଳକଳ ଧୂଆଁ ଛାଡ଼ିବାକୁ ଲାଗିଲା । ନଭି-ଆସୁଥିବା ନିଆଁ ଆଡ଼କୁ କଚ୍ଛପମସ୍ତ ଅନାଇ ଦେଖିଲା, ତା'ପରେ ସେଥିରେ ଆଉ କେତେଖଣ୍ଡ କାଠ ନେଇ ପକାଇଦେଲା ଓ ତା'ପରେ ସ୍ତ୍ରୀଲୋକମାନଙ୍କ ଆଡ଼କୁ ଅନାଇବାକୁ ଲାଗିଲା । ମନେହେଉଥାଏ, ଯେପରି ସେ କ'ଣଗୋଟାଏ ଖାସ୍ ବକ୍ତବ୍ୟ ଭାବୁଚି, କିନ୍ତୁ କଥାଟା କପରଭାବରେ ଉକ୍ତ କରିବ ଭାବି ଠିକ୍ କରିପାରୁନାହିଁ ।

"ତୁମ ଘରକୁ ଥରେ ଦୁଇଥର ଭଲଲୋକ ଆସିବେଣି !"

"ଦୁଇଥର କାହିଁକି, ଅନେକ ଥର ।"

"ଅବଶ୍ୟ, ଅତି ସ୍ୱାଭାବିକ କଥା । ସୁଗ୍ନା ଯୋଉ ରୂପଖଣ୍ଡକ ପାଇଚି, ସାକ୍ଷାତ ଗୋଟିଏ ଛବିପରି । ପାଦ୍ରୀ କହୁଥିଲେ ଯେ ତା'ପରି ସୁନ୍ଦରୀ ଝିଅ ଏ ଗାଆଁରେ ଆଉ କେହି ନାହାନ୍ତି ।"

ମନ ଆନନ୍ଦରେ ସୁଗ୍ନାର ମୁହଁ ରଙ୍ଗା ହୋଇଆସିଲା ।

"ପାଦ୍ରୀ କହୁଥିଲେ ?"— ବୁଢ଼ୀ ପଚାରିଲା । "ଭଗବାନ ତାଙ୍କୁ ଆଇଷ ଦେଇ ରଖନ୍ତୁ ! ମୁଁ ତ ଗୀର୍ଜାରେ ଦାଅଁ ଲାଗି କହିବବୋଲି କେତେ-ଦିନୁ ପଇସା ସଞ୍ଚି ରଖୁଚି : ମୁଁ ନିଶ୍ଚୟ ପୂରା ଗୋଟାଏ ଅଷ୍ଟକ ବୋଲାଇବି ।"

"ତୁମଘରକୁ ପ୍ରସ୍ତାବ ପଠାଇବ ବୋଲି ଜଣେ ଭାବୁଥିଲା ଯେ,— କିନ୍ତୁ ତାକୁ ଏମିତି ଲାଜ ମାଡୁଚି ଯେ ସେ ସେଥିଲାଗି ଭରସି ପାରୁନାହିଁ ।"

"କିଏ ମ ? ଗ୍ରଜ୍ନୀ ଘରର କେହି ନା' ଆଉ କିଏ ?"—ତାକୁଡ଼ିଟାକୁ ଜୋର କରି ବୁଲାଇ ଦେଇ ଡୋମିନିକକା ପଚାରି ବସିଲା । ଘରର ଚଟାଣ ଉପରେ ତାକୁଡ଼ିଟା ଘର୍ଘର୍ ବୁଲିବାକୁ ଲାଗିଲା ।

"ହଁ, ତା'ର ଘର ସଂସାର ମଧ୍ୟ ରହିଚି । ଭଲ ଘର, କିନ୍ତୁ ମାଇପ ମରିଚି ।"

"କ'ଣ ହେଲା ? ମୁଁ ଆଉ କାହା ପିଲାଙ୍କର ଖିଦମତ କରିବାକୁ ଯିବି ? ମୋ' ଭେକ ସରୁନାହିଁ !"

"ସେମିତ ଡରିବାର କୌଣସି କାରଣ ନାହିଁ, ସ୍ୱର୍ଣ୍ଣ ! ପିଲାମାନେ ବେଶ୍ ବଡ଼ ବଡ଼ ହୋଇ ଗଲେଣି, ସେମାନଙ୍କର ହେତୁ ପାଇଲାଣି । ତୋତେ ସେମାନଙ୍କର କିଛି କରିବାକୁ ପଡ଼ିବନାହିଁ ।"

"ମୋ' ଝିଅର ବୟସ ତ ଗଲାଯାଇ ନାହିଁ ଯେ ସେ ଗୋଟାଏ ବୁଢ଼ାର ହାତ ଧରିବାକୁ ଯିବ ! ଏତେ ତରତର କୋଉଥିପାଇଁ ? ଆଉ କିଛିଦିନ ଅପେକ୍ଷା କଲେ କ'ଣ ଅଳପ ବୟସର ପାତ୍ର ମିଳିବେ ନାହିଁ ?"

"ଆରେ ମିଳିବେନାହିଁ କାହିଁକି, ବହୁତ ମିଳିବେ । ଟୋକାଙ୍କର କ'ଣ ଅଭାବ ପଡ଼ିଛି ? ଏ ଗାଆଁରେ ଘଣ୍ଟା ଘଣ୍ଟା କେତେ ଟୋକା ବୁଲୁଚନ୍ତି, ସିଗାରେଟ ଟାଣି ସବାଇଘରକୁ ନାଟବାକୁ ଯାଉଚନ୍ତି, ଡବାଏ ଡେଖାଏ ଭଡ଼ୁକା ପିଇଯାଉଚନ୍ତି, ଆଉ ଯୋଉ ଝିଅ ହାତରେ ଜମି ଅଛି ବା ପଇସା ଅଛି, ତାହାର ତଲାଟ କରି ବୁଲୁଚନ୍ତି । ଅବଶ୍ୟ ଯେମାନେ ଗୃହୀ ନୁହନ୍ତି, କେବଳ କୋଠିଆ । ଦିନ ଦ୍ୱିପହରେ ବିଛଣାରୁ ଉଠୁଚନ୍ତି, ଉପରବେଳାକୁ ଗାଡ଼ିରେ ଗୋବର ଲଦି ବିଲକୁ ଯାଉଚନ୍ତି ଆଉ ଲଙ୍ଗଳ ଧରି ଜମି ଚଷୁଚନ୍ତି !"

"ମୋ' ସ୍ୱର୍ଣ୍ଣକୁ ମୁଁ କଦାପି ଏମିତ ଟୋକାଙ୍କ ହାତରେ ଦେବି ନାହିଁ !"

"ସମସ୍ତେ କ'ଣ ଆଉ ମିଛରେ କହନ୍ତି ଯେ ତୁମର ବୁଦ୍ଧି ପରି ଆଉ କାହାର ବୁଦ୍ଧି ହେବନାହିଁ !"

"କିନ୍ତୁ — ବୁଢ଼ାଟା ସାଥିରେ ବାହାହେଲେ ମୋ' ଝିଅ କି ରସ୍ ପାଇବ କହିଲ ?"

"ରସ ?— ରସ ପାଇବା ଲାଗି କ'ଣ ଯାନ ପିଲାଙ୍କର ଅଭାବ ଅଛି ? ଯେତେ ଇଚ୍ଛା !"

ବୁଢ଼ୀ କଟମଟ କରି ଆମ୍ଭୋଜକୁ ଅନାଇ କହିଲା, — "ବୟସରେ ଏତୁଟିଏ ହେଲୁଣି, କିନ୍ତୁ ତୋ'ର କଥାଗୁଡ଼ାକ କେଡ଼େ ଅବାଗିଆ ମ !"

ସମସ୍ତେ କିଛୁକ୍ଷଣ ନୀରବ ରହିଲେ ।

"ମୁଁ ଯାହାର କଥା କହୁଚି, ଏ ଗାଁରେ ତା'ର ଖୁବ ସମ୍ମାନ । ସେ ଜଣେ ଖୁବ ପୁରୁଖା ଲୋକ । କାହାର ପଇସାକୁ ସେ କେବେହେଲେ ଆଖି ଦିଏନାହିଁ ।"

"ନାଇଁ, ନାଇଁ,— ଏମିତି ବାହ୍ମଘରରେ ଖାଲି ଅନର୍ଥ ଭୋଗିବାହିଁ ଲାଭ ହେବ ।"

"ତୁମ୍ଭେମାନେ ମତ ଦେଲେ ସେ ପ୍ରସ୍ତାବଟାକୁ ପକ୍କା କରି-ନେବ !"— ପିଙ୍କାଭିତରୁ ପାଉଁଶ ଝାଡ଼ି ଦେଉଦେଉ ଆମ୍ବ୍ରୋଜ୍ ଗମ୍ଭୀରଭାବରେ କହିଲା ।

ଅଚ୍ଚ କୁଣ୍ଠାର ସହିତ ଉତ୍ତର ମିଳିଲା :—

"ସ୍ୱର୍ଗକାର କ'ଣ ନାହିଁ ଯେ ସେ ଏପରି ସ୍ଥାନମାନ ହେବାକୁ ଦିବ ।"

"କିନ୍ତୁ ସେ ପାଇବ ଯେତେ, ଦେବ ତାହାର ଦଶଗୁଣ । ଆହୁରି ବେଶୀ ।"

"ତୁ କ'ଣ ସବୁ ଖିଆଲ ନିଶାରେ କହିଯାଉଚୁ କହିଲୁ ?"

"ମୁଁ ଯାହା ଜାଣିଚି, ତାହାହିଁ କହୁଚି । ଖିଆଲ ନିଶାରେ ଉଡ଼ାକଥା କହୁନାହିଁ । ମୁଁ ବର୍ତ୍ତମାନ ଆଉ ଜଣକ ତରଫରୁ ଏଠିକି ଆସିଚି ।"

ପୁଣି ସମସ୍ତେ ଚୁପ୍ ରହିଲେ । ଅତିଆ ହୋଇ ତାକୁଡ଼ିରେ ବୁଝାଇ-ହୋଇ ଯାଇଥିବା ତୁଳାକୁ ସଜାଡ଼ି ବାହାର କରିବାକୁ ବୁଢ଼ୀକୁ ବେଶ୍ କିଛି ସମୟ ଲାଗିଲା । ତା'ପରେ ବାଆଁ ହାତର ଆଙ୍ଗୁଠିଗୁଡ଼ାକୁ ପାଣିରେ ଟିକିଏ ଓଦାକରି ଦେଇ ସେ ତୁଳାମେଞ୍ଚାକ ଧରି ଟାଣି ନେବାକୁ ଲାଗିଲା ଓ ଡାହାଣ ହାତରେ ତାକୁଡ଼ିଟାକୁ ଘରକଣ ବୁଲାଇ ଦେଲା । ତାକୁଡ଼ିଟା ଘରର ଟାଣ ଚଟାଣ ଉପରେ ନଟୁପରି ଠକଠକ ବାଜି ବୁଲିବାରେ ଲାଗିଥାଏ ।

"ତେବେ ସେ କ'ଣ ଭଡ଼୍କା ଖୁବ ସହିତ ଟୁଅପାଖକୁ ଲୋକଙ୍କ ପଠାଇବ ?"

"ସିଏ ବୋଇଲେ କିଏ ?"

"କିଏ ତୁମକୁ ଜଣାନାହିଁ, ସେଇ ଯିଏ ପୋଖରୀ ସେ ପାଖରେ ଘର-କରି ରହିଛ !"— ଆମ୍ରୋସ୍ ହାତ ଲମ୍ବାଇ ବୋଉନାର ଘର ଭିତରେ ଜଳୁଥିବା ବତୀଆଡ଼କୁ ସୂଚିତ କରିଦେଲା । ବତୀର ଆଲୁଅ ଆସି ପୋଖରୀର ପାଣି ଉପରେ ପଡ଼ୁଥାଏ ।

"ତା'ର ପିଲାମାନେ ବଡ଼ ହୋଇ ଗଲେଣି, ସେମାନେ ଏଥିରେ ଆପତ୍ତି କରିବେ ନାହିଁ ? ପୁଣି, ବାପର ସମ୍ପତ୍ତିରୁ ତ ସେମାନେ ଭାଗ ଦାବୀ କରିବେ ନା ନାହିଁ ?"

"କିନ୍ତୁ ଆପଣା ସମ୍ପତ୍ତି ବିଷୟରେ ସବୁ ବନ୍ଦୋବସ୍ତି କରିବାକୁ ତାକୁ ପଡ଼ିଏ ସମୟ ବି ଲାଗିବ ନାହିଁ । ସେ ଭାରି ଭଲ ମଣିଷ । ଆପଣାର ଜମିବାଡ଼ିରେ ତା'ର ଖୁବ ଲୋଭ, ଧର୍ମରେ ମଧ୍ୟ ଖୁବ ବିଶ୍ୱାସ ! ଆଉ କାହାର ତାକିଛ କଥା କାହିଁକି କହୁଚ । ମୁଁ ନିଜେ ତାକୁ କୁଇକୁଇ ବସ୍ତା ମାଣ୍ଡିଆ କାନ୍ଧ ଉପରକୁ ଉଠାଇନାର ଦେଖିଛି । ସେଥିପାଇଁ ଛାଡ଼ିଦେଇ ତୁମର ଝିଅ ସୁଶ୍ରୀନା ଯେତେବେଳେ ଯାହା ମାଗିବ, ସେତେବେଳେ ତାହା ପାଇବ । ହଁ, ତୁମ ଆଣ୍ଟି ଆପଣା ବର୍ଷକୁ ଫଉଜରେ ଭରତି ହେବାକୁ ଦିବ ନା ? ବୋଉନା ସେ ବିଷୟରେ ସବୁ କଥା ଜାଣିଛି । କୋଉଠିକି ଯିବାକୁ ହେବ, କୋଉଠି ଦରଖାସ୍ତ ପକାଇବାକୁ ହେବ, ତାକୁ ସବୁକଥା ଜଣାଅଛି ।"

"କିନ୍ତୁ ତୁ କହିଲୁ, ସୁଶ୍ରୀନା, ତୋ'ମନ ଏଥିରେ କିପରି ମାନୁଚି ?"

"ମୋ'ମନ ମାନିବାରେ କ'ଣ ଅଛି ? ତୁ ଯାହା ଯେଉଁଠି ବାହାହେବାକୁ କହିବୁ, ମୁଁ ନିଶ୍ଚୟ ବାହାହେବି । ତୁ ସିନା ଠିକ୍ କରିବୁ, ମୋତେ କାହିଁକି ପଚାରୁଚୁ ?"— ଧୀର କଣ୍ଠରେ ସୁଶ୍ରୀନା ଜବାବ ଦେଇ କହିଲା । ତା'ର ମୁଣ୍ଡଟି ତାକୁଡ଼ ପାଖକୁ ଏକାବେଳେକେ ଲାଗିଆସିଥିଲା ପରି ଦେଖା-ଯାଉଥାଏ । ଉଦାସ ମନରେ ଜଳୁଥିବା ନିଆଁ ଆଡ଼କୁ ଅନାଇ ସେ କାଠ ଫାଳଆଳୁଡ଼ାକର ଚଡ଼ଚଡ଼ ଜଳିବା ଶବ୍ଦ ଶୁଣୁଥାଏ ।

"ତେବେ ମୁଁ କ'ଣ ଯାଇ କହିବି ?"— ଉଠିବାର ଉପକ୍ରମ କରି ଆମ୍ରୋସ୍ ପଚାରିଲେ ।

"ସେ ଆଗ ଭଲଲୋକ ପଠାଉ",— ବୁଢ଼ୀର ମୁହଁରୁ କଥାଗୁଡ଼ିକ ଗୋଟିଗୋଟି ହୋଇ ବାହାର ଆସିବାପରେ ମନେ ହେଉଥାଏ । "କଥା ପଡ଼ିବା ଆଉ ବାହାଘର ହେବା କ'ଣ ସମାନ କଥା ?"

ଶୂନ୍ୟରେ କହଚିହ୍ନ ଅଙ୍କନ କରି ଅମ୍ବ୍ରୋଜ୍ ଉଠି ଠିଆହେଲା ଓ ସିଧା ବୋଉମା ଘରକୁ ବାହାରିଗଲା ।

ସ୍ୱରନା ସେଇଠି ସ୍ଥିରହୋଇ ସେମିତି ବସି ରହିଥାଏ । ତା'ପାଟିରୁ କୌଣସି କଥା ବାହାରୁ ନ ଥାଏ ।

"ସ୍ୱରନା, ମୋ' ସୁନାଝିଅ ! ତୋ'ର ମନକଥା କ'ଣ ମତେ କହିଲୁ !"

"ମୋ'ର ମନକଥା ପୁଣି କ'ଣ । ତୋ'ର ଯାହା, ମୋର ସେଇଆ । ତୁ ବୋଉଲାକୁ ବାହାହେବାକୁ କହିଲେ ମୁଁ ନିଶ୍ଚୟ ବାହାହେବି । ନହେଲେ ମୁଁ ତୋ'କତରେ ରହିବି । ତୋ' କଡରେ ଥିଲାପର୍ଯ୍ୟନ୍ତ ମୋର ଆଉ ଚିନ୍ତା କରିବାର କ'ଣ ଅଛି ?"

ତାକୁଡ଼ିରେ ସୂତା କାଟୁକାଟୁ ମାଆ ରୁଦ୍ଧକଣ୍ଠରେ କହିବାକୁ ଲଗିଲା :

"ଯୋଉଥିରେ ମୋ' ଝିଅର ଭଲ ହେବ, ମୁଁ କ'ଣ ସେକଥା କରିବନାହିଁ ? ହିଁ, ତା'ର ବଅସ ସିନା ବହୁତ ହୋଇଗଲଣି, କିନ୍ତୁ ଦିହରେ ତାକତ ତ ପୁଣି ରହିଚ, ମନଟା ତ ଯୁଆନ୍ ରହିଚ ! ସେ ତୋତେ ଖୁବ ଭଲରେ ରଖିବ, ଆଉ ଗୃହିଣୀଙ୍କପରି ନରଖର କରିବନାହିଁ । ତୁ ତା'ଘରର ମାଲିକାଣୀ ହୋଇ ରହିବୁ, ତା'ର ଘରଗୋଟାକୁ ଚଳାଇବୁ । ଯେତେବେଳେ କଥାବାର୍ତ୍ତା ପଡ଼ିବ, ସେତେବେଳେ ମୁଁ ସବୁ କଥାର ଏପରି ମୀମାଂସା କରିନେବି ଯେପରି ସେ ଆମକୁ ଦେବା ଜମିତକ ଠିକ୍ ଆମ ଜମିର ସରହଦକୁ ଲଗିକରି ପଡ଼ିବ ।···ଛଅମାଣ ଜମି ! କାହାକୁ ଏମିତ ଛଅମାଣ ଜମି ମିଳେ କହିଲୁ ! ଜାଣିଲୁ ଝିଅ, ତୁ ସେଇଠି ବାହାହେବୁ, ସେଇଠି ଅବଶ୍ୟ ବାହାହେବୁ ! ଗାଆଁ ଲୋକଙ୍କର ସେଥିରେ କ'ଣ ଅଛି, ସେମାନେ କାହିଁକି କୁକୁର ଲଙ୍ଗୁଡ଼ ପରି ଜିଭ ହଲାଇ ତୋ'ର ନିନ୍ଦା କରିବାକୁ ଆସିବେ ?...ହିଁ, ଘରେ ରହିଥିବା ଘୁଷୁରିଟାକୁ ମଧ୍ୟ ମାରି-

ବାକୁ ପଡ଼ିବ······" ହଠାତ୍ କହିବା ବନ୍ଦକରି ଆଉଆଉ କଥାଗୁଡ଼ାକର ସମାଧାନ ଆପଣା ମନଭିତରେ କରିବାଲାଗି ସେ ଚୁପ୍ ହୋଇଗଲା । ସ୍ୱର୍ଣ୍ଣା ଯନ୍ତ୍ରବତ୍ ତାକୁଡ଼ ବୁଲାଇ ସୂତାକାଟି ଚାଲିଥାଏ, ସତେଅବା ମାଆର କଥା ତା'ର କାନଭିତରେ ଆଦୌ ପ୍ରବେଶ ମଧ୍ୟ କରୁନଥାଏ ।

ନୀରବହୋଇ ବସି ସ୍ୱର୍ଣ୍ଣା କେତେକ'ଣ ଭାବିବାରେ ଲାଗିଥାଏ । ତା'ର ଆଖିର ତୋଳାଦୁଇଟା ବସନ୍ତ ମଧ୍ୟାହ୍ନର ସ୍ଥିର ଜଳପରି ସ୍ଥିର ହୋଇ ରହିଥାଏ, ତାପରେ ଜଳଜଳ କରିବାରେ ଲଗିଥାଏ ।

ହଠାତ୍ ତା'ର ସ୍ୱପ୍ନାବେଶ ଭାଙ୍ଗିଗଲା । ଘରର କବାଟ ମେଲାକରି କିଏ ଜେପରି ଭିତରକୁ ଆସିଲା । ଅଣନିଃଶ୍ୱାସୀ ହୋଇ ସୁଜନ୍ମା ଘରଭିତରେ ପ୍ରବେଶ କଲା ।

ଆପଣାର କାଠକୋଡ଼ାରୁ ପାଣି ଝାଡ଼ିଦେଇ ସେ କହିଲା,— "ସ୍ୱର୍ଣ୍ଣା କାଲି ଆମେ ପତର ଛିଡ଼ାଇବା କାମ କରିବୁ । ତୁ ଆସିବୁ ତ ?"

"ନିଶ୍ଚୟ ଆସିବ ।"

"ଆମ ବଡ଼ଘରେ ଆମେ ପତର ଛିଡ଼ାଇବାକୁ ଠିକ୍ କରିଚୁ । ବର୍ତ୍ତମାନ ଆମ୍ଭୋକ୍ ସେଠି ବସି ବାପାମାଙ୍କରେ କ'ଣ କଥାବାର୍ତ୍ତା ହେଉଚି । ଏହି ଅବସରରେ ତୋତେ ମୁଁ ଖବରଟା ଦେବାକୁ ଦଉଡ଼ି ଆସିଲି । ଉଲସିଆ, ମେରି, ଉଭିକା, ଏମାନେ ଆସିବେ । ସାଇର ଟୋକାମାନେ ବି ଆସିବେ । ପିଟର୍ ତା'ର ବାଜାକୁ ସାଙ୍ଗରେ ନେଇ ଆସିବାକୁ କହିଚି ।"

"ପିଟର୍ ? ସେ ପୁଣି କିଏ ?"

"ପଧାନଘର ସେପାଖରେ ଯୋଉ ମାଇକେଲ ଘର, ପିଟର ହେଉଚି ତାହାର ପୁଅ । ଆଜ୍ଞ ଖୋଲା ହେଉଥିବାବେଳେ ସିଏ ଫଉଜରୁ ଗାଆଁକୁ ଆସିଲା, ସେଇ । ଫଉଜରେ ରହି ତା'ର କଥା କହିବା ଏମିତ ବଦଳିଯାଇଚି ଯେ ସେ କ'ଣ କହୁଚି ବୁଝିବା ସହଜ କଥା ନୁହେଁ ।"

ଏହିପରି କେତୁଟମସ୍ତ କଥାବାର୍ତ୍ତା ହୋଇ ସୁଜନ୍ମା ପୁଣି ଘରକୁ ଫେରିଗଲା । ଘରେ ସମସ୍ତେ ନୀରବ ହୋଇ ବସିରହିଲେ ।

ଝରକାର କାଚଉପରେ ବରଷାର ବିନ୍ଦୁମାନ ବାଜେଇହୋଇ ଯାଉଛି, ଯେପରି କିଏ ମୁଠା ମୁଠା ବାଲି ଧରି ଝରକାଉପରକୁ ପକାଉଥିଲା ପରି ଶବ୍ଦ ଶୁଭୁଛି । ବଗିଚାଭିତରେ ବତାସ ପବନ ସାଇଁ ସାଇଁ ଗର୍ଜନ କରୁଛି, ଘରର ଚାଳ ପଡ଼ୁଥିଲା ଉଠୁଥିଲାପରି ମନେହେଉଛି । ଚିମନି ଭିତରେ ଉପରୁ ପବନର ହାଲୁକାମାନ ପଶିଯାଇ ଘରଭିତରଟାକୁ ଧୂଆଁମୟ କରିପକାଉଛି । କିନ୍ତୁ ତଥାପି ଡାକୁଣ୍ଡି ଦୁଇଟା ଘର୍ ଘର୍ ହୋଇ ଘରର ଚଟାଣ ଉପରେ ଘୂରିବାକୁ ଲାଗିଛି ।

ଶୀତ କ୍ରମେ ଅଧିକରୁ ଅଧିକ ହେବାକୁ ଆରମ୍ଭ କଲାଣି । ଶେଷକୁ ଥରଥର ସ୍ୱରରେ ଯୁଗ୍‌ନାର ମାଆ ପ୍ରାର୍ଥନାଗୀତ ଗାଇବାକୁ ଲାଗିଲା । ଯୁଗ୍‌ନା ଓ ତା'ର ଭାଇମାନେ ମାଆସହିତ ଏପରି ବଡ଼ପାଟିରେ ଧୂମ୍‌ଧାମରେ ଗାଇବାକୁ ଆରମ୍ଭ କରିଦେଲେ ଯେ ଘରପିଣ୍ଡାରେ ଅଣ୍ଡା ଉପରେ ବସିଥିବା ମାଈକୁକୁଡ଼ାଗୁଡ଼ାକ ମଧ୍ୟ କେଁ କେଁ ହୋଇ କରି ତାଳରେ ତାଳ ମିଳାଇ କହିଲେ ।

## ସାତ

ସେଦିନ ଯେମିତି ବରଫପାତ ହୋଇଥିଲା, ଯେମିତି ଶୀତ ଲାଗୁଥିଲା, ତା'ପର ଦିନ ମଧ୍ୟ ଠିକ୍ ସେମିତି ବରଫପାତ ହେଲା, ସେମିତି ଶୀତ ଲାଗିଲା ।

ବେଳେବେଳେ କେହିକେହି ଆପଣାର କୁଡ଼ିଆଘରୁ ବାହାରକୁ ବାହାରିଆସି କୁହୁଡ଼ିଦ୍ୱାରା ଆଚ୍ଛନ୍ନ ହୋଇ ରହିଥିବା ପୃଥିବୀ ଭିତରକୁ ଅନାଇ ଦେଖୁଥାନ୍ତି, କୁହୁଡ଼ି ଟିକିଏ ପାତଳା ହୋଇ ଆସୁଛି କି ନାହିଁ, ବଡ଼ ବ୍ୟସ୍ତ ଭାବରେ ସେହିକଥା ଜାଣିବାକୁ ଚାହୁଁଥାନ୍ତି । କିନ୍ତୁ କେବଳ ପିଲ୍‌ଟରଙ୍କର ମେଘପରସ୍ତ ବ୍ୟତୀତ ଆଉ କିଛି ଦୃଷ୍ଟିଗୋଚର ହେଉନଥାଏ, ମେଘମାଳା ନଇଁଆସି ଗଛଅଗକୁ ସ୍ପର୍ଶ କରୁଥିଲାପରି ମନେହେଉଥାଏ । ଏବେ ପାଣି ବରଷିବାରେ ଢେର ଲାଗିଥାଏ ।

ଲୋକମାନଙ୍କର ପନ୍ଦାକୁ ବାହାରିବା ଏଣିକି ଏଣିକି ପ୍ରାୟ ବନ୍ଦହୋଇ ଆସିଲାଣି । ଖରାପ ପାଗଟା ସଙ୍ଗେସଙ୍ଗେ ଦେହଟା ମଧ୍ୟ କେମିତି ଖରାପ ଖରାପ ଲାଗିଲାଣି । କେହିକେହି ଆଣ୍ଠୁଏ କାଦୁଅରେ ପଶି ବରଷାପାଣିରେ ତନ୍ତି ପଡ଼ଣାପରେ ମୁହଁ ମାରିଦେଇ ଆସିବାକୁ ଯାଉଥାନ୍ତି । କାହାର ଘାସ ଜଙ୍ଗଲରେ ରହିଗଲା, ସେ ତାକୁ ଦେଲଆଉ ଘରକୁ ଆଣି ପାରିଲାନାହିଁ, କାହାର ଜାଳେଣିକାଠ ଏପର୍ଯ୍ୟନ୍ତ ଘରକୁ ଆସିନାହିଁ । ଗ୍ରାମ୍ୟ ସମସ୍ତଙ୍କର ଜମିରେ ଏପର୍ଯ୍ୟନ୍ତ ବନ୍ଧାକୋଡ଼ ରହିଯାଇଛି, କଟା ସରିନାହିଁ, ଆଉ ବର୍ତ୍ତମାନ ଯାଇ ସେଗୁଡ଼ିକ କାଟିଆଣିବା ଆଦୌ ସମ୍ଭବ ହେବନାହିଁ,— ଲୋକମାନେ ଏକାଠି ହେଲେ ଏହି ସବୁ ଦୁଃଖକଥାମାନ ପଡ଼ିଥାଏ । ପୋଖରୀପାଣି ଫୁଲିଫୁଲି ଘାଟକଭିତରେ ବନ୍ଧଭାଙ୍ଗି ସାରିଲାଣି ଓ ନାଳୀ ଭିତରେ ଯାଇ ନଦୀସହିତ ମିଶିଗଲାଣି, ନଈରୁ ବଢ଼ିପାଣି ମାଡ଼ିଆସି ପାଟକୁ ବୁଡ଼ାଇ ରଖିଛି, ଯେହ୍ନ ସମୁଦ୍ରଭିତରେ କୋଳପଟାଳିଗୁଡ଼ିକ ଶ୍ରେଣୀ-ଶ୍ରେଣୀ ଟାପୁପରି ଦେଖାଯାଉଛି ।

ଜୋମିନାକର୍ତ୍ତ ମଧ୍ୟ ଏବର୍ଷ ଆପଣା ଜମିରୁ ସବୁ କୋଳତକ ଘରକୁ ଆଣିପାରିନାହିଁ ।

ସକାଳ ପହରରୁ ଆଜି ସୁର୍ନାକୁ କିଛିହେଲେ ଭଲଲାଗୁନାହିଁ, ତା'ର ମନଭିତରଟା ଏକାବେଳେକେ ମରିଯାଇଛି, ଏକଣରୁ ସେକଣ ପର୍ଯ୍ୟନ୍ତ ଯାଉଯାଉ ସେ କେବଳ ବିରକ୍ତିକର ଦୀର୍ଘନିଃଶ୍ୱାସ ପକାଇବାରେ ଲାଗିଛି । ବେଳେବେଳେ ସେ ଝରକାବାଟେ ବାହାରେ ଫୁଟିଥିବା ଜାହ୍ନିଲିଆ ଗଛଗୁଡ଼ିକୁ ଅନାଇଦେଖୁଛି ଓ ବର୍ଷାପାଣିରେ ବୁଡ଼ିରହିଥିବା ସଂସାରଟା ଆଡ଼କୁ ଅନାଇରହୁଛି ।

“ହେ ଭଗବାନ୍, ଏ କି ଅଶାନ୍ତି ମୋତେ ତୁମେ ଆଣି ଦେଲ !”— ସେ ମନେମନେ କହିବାକୁ ଲାଗିଲା । କେତେବେଳେ ସଞ୍ଜ ବୁଡ଼ିବ ଓ ସେ ବୋରନାଭ ଘରକୁ ଯିବ, ଏହି ଅନସାରେ ସେ ଅପେକ୍ଷା କରି ରହିଥାଏ । କାଦୁଅ ଭିତରେ ଥରିଥରି ବାଡ଼ି ପକାଇ ଯାଉଥିବା ବୁଢ଼ାଟିଏ ପରି ଦିନମାନର ପ୍ରହରଗୁଡ଼ିକ ଯିବାପରି ମନେହେଉଥାଏ । ଏପରି ଅଳସ,

କ୍ଲାନ୍ତ ଓ ବିରକ୍ତିକର ଭାବରେ ସମସ୍ତ ଯାଉଥାଏ ଯେ ବେଳେବେଳେ ଭାରି ଅସହ୍ୟ ବୋଧ ହେଉଥାଏ । କ୍ରମେ ତାକୁ ସବୁକଥା ଭାରି ଚିଡ଼ଚିଡ଼ ଲାଗିଲା । କେତେବେଳେ ସେ ଆପଣାର ଭାଇମାନଙ୍କୁ ଗାଳିଦେବାରେ ଲାଗିଥାଏ, ପୁଣି ଆପଣା ହାତରେ ଆଗରେ ଆସି ପଡ଼ିଥିବା ଜଳକ୍ଷପତ୍ରଗୁଡ଼ାକୁ ସେ ଖାଲି କଚୁଡ଼ିବାରେ ଲାଗିଥାଏ । ଏଣେ ମୁଣ୍ଡଟା ବି ବଥାଇଲାଣି, ସେଥିପାଇଁ ଯଥଚନ୍ଦ୍ରାକୁ ପାଣିରେ ଚକଟି ତା'ଉପରେ ଭିନେଗାର ଛାଣି ସେ କପାଳ ଉପରେ ଗୋଟାଏ ପଟି ବାନ୍ଧିକରି ରଖିଛି । କେତେବେଳେକେ ଯାଇ ମୁଣ୍ଡଟା ଟିକିଏ ଭଲ ଲାଗିଲା, କିନ୍ତୁ ତଥାପି ଯେପରି ଆପଣାଭିତରେ ସବୁ କେବଳ ବଗିଡ଼ି ଯାଇଥିବାପରି ମନେହେଉଥାଏ । କୌଣସିକାମରେ ହେଲେ ତା'ର ମନ ଲାଗୁନଥାଏ, ମଝିରେ ମଝିରେ ସେ ପୋଖରୀରେ ଫୁଲୁଥିବା ପାଣିଆଡ଼କୁ ଅନାଇକରି ଦେଖୁଥାଏ । ଗୋଟାଏ ପକ୍ଷୀଚଟା ଚଢ଼େଇପରି ଡେଣା ମେଲାଇ ପୋଖରୀଟା ଆଜି କେବଳ ଫୁଲିଉଠିବାରେ ଲାଗିଛି । ଶେଷକୁ ପୋଖରୀର ପାଣି କୂଳ ବୁଡ଼ାଇ ରାସ୍ତା ଉପରକୁ ଉଠିଲା ।

ଗାଆଁ ସେ ମୁଣ୍ଡରେ କାହାଘରେ କଏ ପୋଖଇ ହୋଇଛି, ସକାଳୁ ଡୋମିନିକସ୍ ଆଜି ତାହାର ଶୁଶ୍ରୂଷା କରି ଯାଇଥିଲା । ତାକୁ ଏସବୁ କାମ ଭାରି ଜଣା, ଔଷଧ ମଧ୍ୟ ଦେଇପାରେ, ନାନାପ୍ରକାର ରୋଗ ଚିହ୍ନି ଆରୋଗ୍ୟ ମଧ୍ୟ କରିପାରେ ।

ଯୁବ୍ରନାକୁ ଏକୁଟିଆ ବସିବସି ଭାରି ଖରାପ ଲାଗୁଥାଏ । ସେ ମଧ୍ୟ ଟିକିଏ ବାହାରକୁ ଯାଇ କାହାସହିତ ସାକ୍ଷାତ କରି ଆସିବବୋଲି ଅସ୍ଥିର ଭାବରେ ଅନାଇ ରହିଥାଏ । କିନ୍ତୁ ଯେତେଥର ମୁଣ୍ଡରେ ରୁମାଲଟି ବାନ୍ଧିଦେଇ କବାଟପାଖରେ ଠିଆହୋଇ ସେ ବାହାରର ସେଇ ପାଣିକାଦୁଅ ଆଡ଼କୁ ଅନାଉଥାଏ, ସେତେଥର ତା'ର ସାହସ ଭାଙ୍ଗିଯାଉଥାଏ । ଶେଷକୁ କ'ଣ କରିବ କିଛି ଠିକ୍ କରିନପାରି ସେ ଆପଣାର ବାକ୍ସ ଖୋଲି ଭଲଭାବେ ପିନ୍ଧିକରି ଯିବାର ସାଜମାନ ବାହାରକଲା ଏବଂ ବିଛଣା ଉପରେ ମେଲାଇକରି ରଖିଲା । କେତେପ୍ରକାର ଭଲଭଲ ଜାମା ଓ କୁରୁତାରେ ବିଛଣାଉପରଟା ଝୀଲି ଚକଚକ ଦେଖାଯାଉଥାଏ । କିନ୍ତୁ ଆଜି ଏସବୁ ଦେଖି ତାକୁ ଆଦୌ

ଖୁସୀ ଲାଗିଲାନାହିଁ, କେବଳ ଏକ ପରିକ୍ଲାନ୍ତ ଉଦାସୀନତାର ସହିତ ସେ ଏହିସବୁ ସାମଗ୍ରୀଆଡ଼କୁ ଅନାଇବାକୁ ଲାଗିଲା । କିନ୍ତୁ ଶେଷକୁ ବାକ୍ସଭିତରୁ ଲୁଗାତଳୁ ସେ ବୋଉନା ଦେଇଥିବା ରୁମାଲ ଓ ରିବନ ବାହାରକଲା । ସେଇଆକୁ ପିନ୍ଧି ସେ ଅଇନାଭିତରେ ଆପଣାର ମୁହଁ ଦେଖିବାକୁ ଗଲା ।

"ଭାରି ଭଲ ଦିଶୁଛୁ । ଆଜି ମୁଁ ଏଇଆକୁ ପିନ୍ଧିବି ।"— କିନ୍ତୁ ପୁଣି କ'ଣ ଭାବି ସେ ତରତର ହୋଇ ସେଗୁଡ଼ାକୁ ଓହ୍ଲାଇ ପକାଇଲା । ବାଡ଼ିପାଖରେ ଯେପରି କେହିଜଣେ ଏଆଡ଼କୁ ଆସୁଛି ।

ହଁ, ମାଧିଉ ଆସୁଚି । ସେ ଆସିବାମାତ୍ରକେ ସୁଗନ୍ଧ ସତେଅବା ବସ୍ତୁସ୍ଥରେ ଚିତ୍କାର କରି ଉଠୁଥାଏ । ଏହାରିପାଇଁ ଗାଆଁଲୋକେ ତା'ନାଆଁରେ କେତେକଥା ଲଗାଇକରି କହିଚନ୍ତି । ସେ କୁଆଡ଼େ ବୀରଭିତରେ ଖିଡରେ କେତେଥର ତା'ସହିତ ଭେଟିବାକୁ ଆସିଚି, ଏପରି କାହାମାନ ମଧ୍ୟ ଦେଇଚନ୍ତି । ତା'ର ବୟସ ଢେରଦିନରୁ ସେପାଖକୁ ଡେଇଁଗଲାଣି । ତଥାପି ବାହା ହୋଇନାହିଁ । ବାହା ହେବାକୁ ମନ ମଧ୍ୟ କରୁନାହିଁ । ଘରେ ତ ତା'ର ଆପଣା ଭଉଣୀମାନେ ବସିଚନ୍ତି, ତା'କଥା କଏ ପଚାରୁଛି ! (ବା ବୁଢ଼ୀଙ୍କ ଆପଣାର ଖର ତୁଣ୍ଡରେ ଯାହା କହିପକାଏ, ସାଇରେ କେତେ କି ଅବୋଧ୍ୟ ଅଛନ୍ତି,— ତାଙ୍କ ଉପରେ ଯାହାର ମନ ଲାଗିଚି, ସେ ବାହାହେବାକୁ ଯିବ କାହିଁକି ? ) ତେଣା ଦନ୍ତମାଡ଼ି ଭେଣ୍ଡାଟାଏ, ଭିତରେ ଏତେ ବର୍ଷ ଆଉ ଗଲା ସେ ଗାଆଁସାକ ସମସ୍ତେ ତାକୁ ଗୋଟେଡ଼ଗେଟେ ଡରି କରି ରହିଥାନ୍ତି । ତାକୁ କେଉଁକଥା ନଆସେ କହିଲ ? ବଇଁଶୀ ବଜାଇପାରେ, ଗାଡ଼ୀ ତିଆରି କରିପାରେ, ଘର ତୋଳି ଜାଣେ, ଡଙ୍ଗା ବଞ୍ଚାଇପାରେ,—ଯାହାକରେ, ଭାରି ସଣ୍ଣାରେ କରେ । ସେଥିପାଇଁ ତା'ର ହାତଦୁଇଟାକୁ ଆଉ କେତେବେଳେ ହେଲେ ତର ନଥାଏ । ଏତେ କାମ କରେ, କିନ୍ତୁ କାହାଠାରୁ ପଇସାଟାଏ ମଧ୍ୟ ଛୁଏଁନାହିଁ । ହାତକୁ ଯାହା ପଇସା ଆସେ, ତାହା ସେଇକ୍ଷଣିକା ହାତରୁ ଉଡ଼ିପଳାଏ । ପିଏ, ପିଆଏ, ସାଙ୍ଗସାଥୀଙ୍କୁ ଉଧାର ମଧ୍ୟ ଦିଏ । ତା'ର ଆଖିଭିତରୁ ଓ କାଆଁପର ପ୍ରକୃତିରୁ ଛଣ୍ଡାଣ ପ୍ରକୃତିର ଅଧିକ ପରିଚୟ ମିଳୁଥିଲେ ମଧ୍ୟ ଧାଇପଡ଼ିଯାଉ ତାର 'ଲୋବଡା' ବୋଲି ଡାକନାମ ଥାଏ ।

"କିଏ, ମାଥିଉ !"

"ହଁ, ସ୍ବଗ୍ନା, ମୁଁ !"

ମାଥିଉ ଆସି ସ୍ବଗ୍ନାର ଦୁଇହାତକୁ ଯାବୁଡ଼ି ଧରିଲା ଏବଂ ଏପରି କାମନାପୂର୍ଣ୍ଣ ଉଷ୍ମ କତାରେ ଦୁଇଆଖି ଚଳଚଳ କରି ତା'ଆଡ଼କୁ ଅନାଇବାକୁ ଲାଗିଲା ଯେ ସ୍ବଗ୍ନା ଗୋଟା ସୁଦ୍ଧା ରଙ୍ଗା ପଡ଼ିଗଲା ଏବଂ ବଡ଼ ଅଣସ୍ତ ଭାବରେ କବାଟ ଆଡ଼କୁ ଅନାଇ ରହିଲା ।

"ତୁ ଏ ଛଅମାସ ହେଲା କୁଆଡ଼େ ଯାଇଥିଲୁ କହିଲୁ !"— ତା'ର ପାଟି ଖନ୍ନ ମାରି ଯାଉଥାଏ ।

"ଠିକ୍‌ଠିକ୍ କହିଲେ ଛଅମାସ ଆଉ ତେଇଶି ଦିନ"— ମାଥିଉ ଏ ପର୍ଯ୍ୟନ୍ତ ମଧ୍ୟ ସ୍ବଗ୍ନାର ହାତକୁ ସେହିପରି ଯାବୁଡ଼ି ଧରିଥାଏ ।

"ମୁଁ ଗୋଟାଏ ଆଲୁଅ ନେଇ ଆସେ !"— ସ୍ବଗ୍ନା କହିଲା । କାରଣ ସେତେବେଳକୁ ଅନ୍ଧାର ହୋଇ ଆସିଲାଣି । ସେ ଆପଣା ହାତ ଦୁଇଟାକୁ ମଧ୍ୟ ତା'ର ମୁଠାଭିତରୁ ଛଡ଼ାଇବାକୁ ଚାହୁଥାଏ ।

"ମୋତେ ତୁ ନମସ୍କାର ବୋଲି ବି କହିଲୁ ନାହିଁ !"— ସ୍ବଗ୍ନାର କାନପାଖରେ ଫୁସ୍‌ଫୁସ୍ କରି କହି ସେ ତା'ର ଅଣ୍ଟା ଉପରେ ଆପଣା ହାତ ବେଢ଼ାଇ ରଖିବାକୁ ଚେଷ୍ଟା କଲା । ସ୍ବଗ୍ନା ଖସିଯାଇ ଚୁଲିପାଖକୁ ଆଲୁଅ ଲଗାଇବା ପାଇଁ ଦଉଡ଼ି ପଳାଇଲା । ଭୟ ହେଉଥାଏ, କାଳେ ବୋଉ ଆସି ସେମାନଙ୍କୁ ଅନ୍ଧାର ଘରେ ଏକାଠି ଦେଖିବାକୁ ପାଇବ ! କିନ୍ତୁ ମାଥିଉ ବି ଛାଡ଼ିବା ଲୋକ ନୁହେଁ । ସେ ଦଉଡ଼ିଯାଇ ତାକୁ ଧରିପକାଇଲା, ଆପଣାର ଦେହ ପାଖକୁ ଟାଣିଆଣିଲା ଓ ବଳିଲା ଉଦ୍‌ବେଗରେ ସହିତ ତାହାକୁ ଚୁମ୍ବନ କରିବାକୁ ଚେଷ୍ଟା କଲା ।

ସ୍ବଗ୍ନା ଠିକ୍ ଗୋଟିଏ ସଂତ୍ରସ୍ତ ଚଢ଼େଇପରି ଛଟପିଟି ହେଉଥାଏ, କିନ୍ତୁ ଏଇ ଛଞ୍ଚାଣ କବଳରୁ ମୁକ୍ତିଲାଭ କରିବାକୁ ତା'ର ବଳ କାହିଁ । ତା'ର ପ୍ରବଳ ଆଲିଙ୍ଗନ ଭିତରେ ସ୍ବଗ୍ନାର ପିଞ୍ଜରାହାଡ଼ଗୁଡ଼ାକ ମଡ଼ମଡ଼ ହୋଇ ଭାଙ୍ଗିଗଲାପରି ମନେହେଉଥାଏ, ତା'ର ପାଗଳ ଚୁମ୍ବନାଘାତରେ ସେ ମୂର୍ଚ୍ଛିତପ୍ରାୟ ହୋଇଯାଉଥାଏ । ତା'ର ଆଖିଉପରକୁ ଯେପରି ଗୋଟାଏ

ଭୟଙ୍କର ପର୍ଦ୍ଦା ମାତ୍ରଆସିଲା, ତାକୁ ଆଉ କିଛି ଦେଖାଗଲାନାହିଁ । ଏଣେ ନିଃଶ୍ୱାସ ମଧ୍ୟ ବନ୍ଦ ହୋଇଗଲାପରି ଲଗିଲା ।

"ମାଥିଉ, ମାଥିଉ, ମୋ' ଉପରେ ଟିକିଏହେଲେ ଦୟା କର, ମୋତେ ଛାଡ଼ି ଦେ !"

"ଟିକିଏ ରହିଥା, ଯମୁନା,— ଆଉ ଟିକିଏ,— ଆଉ ଥରେ,— ମୁଁ ଘରୁ ଏକାବେଳେକେ ଅସମ୍ଭାଳ ହୋଇ ପଡ଼ିଛି !" ତା'ର ସ୍ପର୍ଶ, ମୁହଁ, ଚୁମ୍ବନରେ ଶେଷରେ ବାଳିକାଟି ସମ୍ପୂର୍ଣ୍ଣ ଅକର୍ତ୍ତବ୍ୟ ହୋଇପଡ଼ିଲା ଓ ଜୀବନ ନଥିବା ପରି ତାହାର କୋଳଭିତରେ ଢଳିପଡ଼ିଲା । ଠିକ୍ ଏହି ସମୟରେ ମାଥିଉ କବାଟ ପାଖରୁ କାହାର ପାଦଶବ୍ଦ ଶୁଣିବାକୁ ପାଇଲା । ତେଣୁ ଯମୁନାକୁ ଛାଡ଼ିଦେଇ ସେ ଚୁଲି ପାଖକୁ ଆସି ଗୋଟିଏ ଖବର କାଳିଦେଲା ଓ ଗୋଟିଏ ସିଗାରେଟ୍ ଜଳାଇବାକୁ ଲଗିଲା । ଉନ୍ମତ୍ତ ଆନନ୍ଦରେ ଢଳଢଳ ହେଉଥିବା ଆଖିରେ ସେ ଅବିଶ୍ରାମ ଭାବରେ ଯମୁନା ଆଡ଼କୁ ଅନାଇ ରହୁଥାଏ ।

ଆଣ୍ଡ୍ରୁ ଘର ଭିତରକୁ ଆସିଲା, ଚୁଲିରେ ଥିବା ନିଆଁକୁ ପବନ କରି ଜଳାଇଦେଲା ଏବଂ ଘର ଭିତରେ ଏପାଖସେପାଖ ହେବାକୁ ଲଗିଲା । ଯମୁନା ଓ ମାଥିଉ ପରସ୍ପର ସହିତ କୌଣସି କଥାବାର୍ତ୍ତା ହେଉ ନ ଥାନ୍ତି, କେବଳ କ୍ଷୁଧିତ ଓ ଅତୃପ୍ତ ବାସନାରେ ଉତ୍ତପ୍ତ ହୋଇ ରହିଥିବା ଚାହାଣିରେ ପରସ୍ପର ଆଡ଼କୁ ଅନାଇ ରହିଥାନ୍ତି ।

ଦଣ୍ଡେକପରେ ଡୋମିନିକଭି ମଧ୍ୟ ଘରଭିତରକୁ ଆସିଲା । ଆଗରୁ ବୋଧ ହୁଏ କ'ଣ ଗୋଟାଏ କଥାରେ ସେ ଖୁବ ବିରକ୍ତ ହୋଇ ପଡ଼ିଥିଲା, କାରଣ ସିଣ୍ଡିରେ ଆସୁଥିଲାବେଳେ ସେ ସିମନ୍‌କୁ କ'ଣପାଇଁ ଗାଳି ଦେଇ ଦେଇ ଆସୁଥିଲା । ମାଥିଉ ଉପରେ ଆଖି ପଡ଼ିଯିବା ମାତ୍ରକେ ସେ ଅତି ଭୟଙ୍କର ଭାବରେ ତା' ଆଡ଼କୁ ଅନାଇବାକୁ ଲଗିଲା, ତା'ର ନମସ୍କାରର ପ୍ରତ୍ୟୁତ୍ତର ମଧ୍ୟ ଦେଲା ନାହିଁ ଏବଂ ଲୁଗା ପାଲଟିବାକୁ ଶୋଇବାଘର ଭିତରକୁ ଚାଲିଗଲା ।

"ତୁ ଏଇକ୍ଷଣି ଚାଲିଯାଆ !"— ଯମୁନା ଅନୁନୟ କରି କହିଲା, "ନ ହେଲେ ବୋଉ ଆସିଲେ ତୋତେ ନିଶ୍ଚୟ ଗାଳିଗୁଲଜ କରିବ ।"

କିନ୍ତୁ ମାଥିଉ ନଯାଇ ଡୋମିନିକଭିକୁ ଡାକି ବାହାରକୁ ଆସିବାକୁ ଅନୁରୋଧ କଲା ।

ଡୋମିନିକଭି ଶୋଇବାଘରୁ ଏ ଘରକୁ ଆସିଲା । "ତୁ-ତୁ-ତୁ ପୁଣି ଫେରି ଆସିଲୁଣି ?"— ସତେ ଯେପରି ସେ ଆଗରୁ କେବେହେଲେ ମାଥିଉକୁ ଦେଖିନାହିଁ, ସେହିପରି ଅଭିନୟ କରି ପଚାରିଲା ।

"ହଁ, ମାଆ, ମୁଁ ଫେରି ଆସିଲିଣି !"— ମାଥିଉ ଭାରି ଭଦ୍ରଭାବରେ ଉତ୍ତର ଦେଲା ଓ ଡୋମିନିକଭିର ହାତକୁ ଚୁମ୍ବନ କରିବାକୁ ଉଦ୍ୟତ ହେଲା ।

"ମୁଁ କ'ଣ ଏଡ଼େ ସମ୍ମାନୀ ହୋଇଛି ଯେ ତୁ ମୋତେ ମାଆ ବୋଲି କହୁଛୁ ?"— ରାଗରେ ହାତଟାକୁ ନେଇଯାଇ ସେ ଉମତମ ହୋଇ କହିଲା । "ତୁ କାହିଁକି ମୋ' ଘରକୁ ଆସୁଚୁ, କହିଲୁ ? ମୁଁ କେତେଥର କହିଚି ଯେ ତୁ ଖଣ୍ଡିଆ ମୋ' ଦୁଆର ମାଡ଼ିବୁ ନାହିଁ ?"

"ମୁଁ ତ ତୋ' ପାଖକୁ ଆସେ ନାହିଁ, ୟୁଗ୍ନା ପାଖକୁ ଆସେ ।"— ଖାତିରି ନ କଲାପରି ମାଥିଉ ଉତ୍ତର ଦେଲା । କ୍ରମେ ତା'ର ରାଗ ଚଢ଼ିବାକୁ ଆରମ୍ଭ କରୁଥାଏ ।

"ମୁଁ କହି ରଖୁଚି, ୟୁଗ୍ନା ପାଖକୁ ଆସିବା ମଧ୍ୟ ଏଣିକି ଛାଡ଼ି ଦେବାକୁ ପଡ଼ିବ ! ହଁ, ଏଣିକି ତୁ ତା' ପିଛା ଛାଡ଼ିଦେ', ନ ହେଲେ ଖାସ୍ ଢୋଲ ପକାଇଣ ଲୋକମାନେ ତାକୁ ବାଉ ନନ୍ଦାକରି କହିବେ । ଯାଆ', ଚାଲିଯାଆ ମୋ' ଆଗରୁ କହୁଚି !"

"କାଉ ପରି ଏମିତି ରାଉ ରାଉ କ'ଣ ପାଇଁ ହେଉଚୁ ? ଗାଁଆଁ ଲୋକ ଶୁଣିବାକୁ ପାଇବେ ।"

"ଶୁଣନ୍ତୁ, ଆସି ଦେଖିଯାନ୍ତୁ ! କୁକୁର ଲାଞ୍ଜ ପଛରେ ମାଛି ଗୋଡ଼ାଇଥିଲା ପରି ତୁ କେମିତି ମୋ' ୟୁଗ୍ନା ପଛରେ ଗୋଡ଼ାଉଚୁ, ସେଇକଥା ସେମାନେ ଦେଖିଯାଆନ୍ତୁ,— ଗୋଟାଏ ଜଳନ୍ତା କାଠଫାଳିଆ ନ ହେଲେ କ'ଣ ତୁ ସେମିତି ସେମିତି ଯିବୁ କି ?"

"ଉ ଛାରି ମାଇକିନିଆଟା, ତୁ ପୁଣି କେଡ଼େ ମୁହଁରେ କଥା କହୁଚୁ ?"

"କ'ଣ ମାରିବୁ କି ? ମାରିଲୁ ! ଖଣ୍ଡିଆ, ଶଇତାନ ଟୋକା, ହାତ ଲଗାଇଲୁ ଦେଖି !"— ଏକଥା କହୁ କହୁ ସେ ଯାଇ ନିଆଁ ଫୁଙ୍କିବାର ଲୁହା ନଳୀଟାକୁ ହାତରେ ଧରିଲା ।

ଏଇଠାରେ ହିଁ ଏଇ ଦୃଶ୍ୟଟି ଶେଷ ହୋଇଗଲା । ରାଗରେ ମାଟି ଉପରକୁ ଥୁ'ଥୁ' କରି ଛେପ ପକାଉ ପକାଉ ମାଧିଉ ସେଠାରୁ ପ୍ରସ୍ଥାନ କଲା, ଗଲା ବେଳକୁ କବାଟଟାକୁ ଦୁଲ୍ କରି ବାଡ଼େଇ ଦେଇ ଗଲା । ସ୍ତ୍ରୀ ଲୋକଟା' ସାଙ୍ଗରେ ଝଗଡ଼ା ଲାଗି ସେ କାହିଁକି ସମସ୍ତଙ୍କ ଆଖିରେ ହାସ୍ୟାସ୍ପଦ ହେବାକୁ ଯାଇଥାନ୍ତା ?

ଏଥିଉତ୍ତାରୁ ବୁଢ଼ୀ ସ୍ୱର୍ଣ୍ଣା ଉପରେ ଆପଣାର ସବୁ ରାଗ ଶୁଝାଇବାକୁ ଆସିଲା । ଆପଣା ଭିତରେ କ୍ରୋଧର ଯେଉଁ ନିଆଁ ବରଷୁଥିଲା, ତାକୁ ସେ ଝିଅ ଉପରେ ଆଖିବୁଜା ହୋଇ ଝାଡ଼ି ଦେଇଗଲା । ଶେଷକୁ ସ୍ୱର୍ଣ୍ଣା ନିର୍ବାକ୍ ପଥରଟିଏ ହୋଇ ବସିପଡ଼ିଲା, ତା'ରି ମନଭିତରଟା ଭାରି ଦୁଃଖରେ ବିଦୀର୍ଣ୍ଣ ହୋଇ ଯାଉଥାଏ । ମାଆର ଖରମୁହଁରୁ ବାହାରୁଥିବା ଶବ୍ଦଗୁଡ଼ାକ ତା'ର ହୃଦୟ ଭିତରେ କଣ୍ଟା ବିନ୍ଧିଦେଇ ଯାଉଥାଏ । ବସିଥିବା ବିଛଣା ଉପରେ ମୁହଁଟାକୁ ମାଡ଼ିଦେଇ ସେ ବଡ଼ ବିକଳ ଭାବରେ କାନ୍ଦିବାକୁ ଲାଗିଲା, ତା'ର ହୃଦୟକୁ ପ୍ରକୃତରେ ଭାରି ବାଧୁଥାଏ···ତା'ର ଏଥିରେ କି ଦୋଷ ହେଲା ? ତାକୁ ସେ କେତେବେଳେ ଘରେ ପଶିବାକୁ କହିଲା ; ସେ ଟୋକାଟା ତ ଆପଣାଛାଏଁ ଆସିଥିଲା··· ହଁ, ଗଲାବର୍ଷ ଫଗୁଣ ମାସରେ ଯେଉଁ କାଣ୍ଡ ଘଟିଥିଲା, ମାଆ ସେ ବିଷୟରେ ତାକୁ ଚେତାଇଦେଇଚି···ହଁ,··· ମାଧିଉ ଆସି ବାରିପଟ ଧଡ଼ା ପାଖରେ ତା'ସହିତ ସାକ୍ଷାତ କରିଥିଲା···ଏତେ ବଡ଼ ବଳୁଆ ମରଦଟୋକା ପାଖରୁ ଆପଣାକୁ ବଞ୍ଚାଇ ରଖିବାକୁ ତା'ର ଆଉ କି ଶକ୍ତିଥିଲା କହିଲ ? ଆଉ ତା'ପରେ···ସେ କେମିତି ତାକୁ ସେଠାରୁ ବାହାରକରି ଦେଇଥାନ୍ତା ? ଅସମ୍ଭବ । ସବୁକାଳେ ତା'ର ଜୀବନରେ ଏଇକଥାହିଁ ଘଟିଚି । କୋଉ ମରଦ ପୁଅ ଯେତେବେଳେ ତା'ର ଆଖିକୁ କଟମଟ କରି ଅନାଇଚି ବା ଜୋରକରି କୁଣ୍ଢାଇଧରି ତାକୁ ଆଲିଙ୍ଗନ କରିଚି: ସେତେବେଳେ ତା'ର ଭିତରଟାଯାକ ଖାଲି ଠକଠକ ହୋଇ କମ୍ପିବାରେ

ଲାଗିଚ, ତା'ର ଦେହର ସବୁବଳ ତାକୁ ଛାଡ଼ି ଚାଲିଯାଉଚି ଗୁଳଗୁଳପଣ ମନେହୋଇଚ, ତା'ର ଭିତରଟା ଝାଳି ମାରଯାଇଚ, ଏବଂ ତା'ପରେ ସେ ଆଉ କିଛି ଜାଣିପାରନାହିଁ । କିନ୍ତୁ ଏଥିପାଇଁ କ'ଣ ତାକୁ ଦୋଷ ଦେବା ଉଚିତ ?

ଭେଁ ଭେଁ ହୋଇ କାନ୍ଦକାନ୍ଦ ସେ ଏହିସବୁ ଅଭିଯୋଗ କରିବାରେ ଲାଗିଥାଏ । ତା'ର ଆଖିରୁ ଧାରଧାର ଲୁହ ବୋହି ଯାଉଥାଏ । କ୍ରମେ ତା'ର ମାଆର ହୃଦୟ ଟିକିଏ ଦବି ଆସିଲା । ସେ ଯାଇ ଆପଣା କାନରେ ଝିଅର ମୁହଁ ପୋଛି ଦେଲା, ଭାରି ଆଦର ଦେଖାଇଲା ପରି ଆଖିରୁ ଲୁହ ପୋଛି ଦେଲା, ତା'ର ମୁଣ୍ଡର ବାଳକୁ ସାଉଁଳେଇ ଦେଉଦେଉ ତାକୁ ସାନ୍ତ୍ୱନା ଦେବାକୁ ଲାଗିଲା ।

"ଆଉ କାନ୍ଦ୍‌ ନା ମୋ ଝିଅ, ଚୁପ ହୋଇ ଯା । ବେଶୀ କାନ୍ଦିଲେ ତୋ'ର ଆଖିଦୁଇଟା କେମିତି ଦିଶିବ କହିଲୁ ? ତେବେ ବୋଉନା ଘରକୁ ତୁ କିପରି ଯାଇପାରିବୁ ?"

ଟିକିଏ ସାନ୍ତ୍ୱନା ପାଇ କ୍ଷଣକପରେ ସୁଗ୍‌ନା ପଚାରିଲା, "କ'ଣ ଯିବା ବେଳ ହୋଇ ଗଲାଣି ?"

"ହଁ, ହୋଇ ଆସିଲାଣି, ଏଥର ଲୁଗାପଟା ପିନ୍ଧି ସଜ ହୋଇଯାଆ । ସେଠି ଆଉ କେତେ କେତେ ଲୋକ ମଧ୍ୟ ଆସିଥିବେ, ବୋଉନା ମଧ୍ୟ ତୋତେ ଦେଖିବାକୁ ପାଇବ ।"

ସୁଗ୍‌ନା ଉଠି ଠିଆହେଲା ଓ ସଜ ହେବାକୁ ବାହାରିଲା ।

"ତୋ'ପାଇଁ ମୁଁ କିଛି କ୍ଷୀର ଆଉଟିଦେବି କି ?"

"ନା,— ବର୍ତ୍ତମାନ କିଛି ଖାଇବାକୁ କି ପିଇବାକୁ ଇଚ୍ଛା ନାହିଁ, ଆଉ ମାଆ ।"

"ସିମନ୍‌, ହେ ମାଦଲ । ସେଠି ନିଆଁ ପାଖରେ ବସି ସେକ କ'ଣ ହେଉଚୁ ? ଆଜି ତେଙ୍କେ ଘୋରୁଗାଇ ଖାଲି କୁଣ୍ଡକୁ ଘୃଷିବାରେ ଲାଗିଚନ୍ତି !" —ଆପଣା ଭିତରେ ଥିବା ରାଗର ଅବଶେଷତକ ସେ ପୁଅ ଉପରେ ଝାଡ଼ି ଦେଲା । ମାଡ଼ ଭୟରେ ପୁଅ ସେଠାରୁ ଦଉଡ଼ି ପଳାଇଲା ।

ସ୍ୱର୍ନାକୁ ସଜାଜଡ଼ କରି ଦେଉଦେଉ ବୁଢ଼ୀ କହୁଥାଏ, — "ମୋର ମନେ-ହେଉଚି ବୋଉନା ସନ୍ଧ୍ୟାକୁ କମାର ପୁଅର ଅନେକଦିନରୁ ରହିଥିବା କଳଅଣ ମେଣ୍ଟି ମାଣ୍ଟି ଗଲାଣି । ସେଦିନ ମୁଁ ବାଟରେ ଦେଖିଲି କମାରପୁଅ ବୋଉନା ଘରୁ ଗୋଟାଏ ବାକ୍ସୁଣି ବାନ୍ଧିକରି ଆଣୁଚି । ଦୁର୍ଭାଗ୍ୟର କଥା, କାରଣ ବାକ୍ସୁଣିଟା ଘରେ ଥିଲେ ପନ୍ଦର ଟଙ୍କାରୁ କମ୍ ଦାମରେ କଦାପି ବିକାହୋଇ ନଥାନ୍ତା । ତଥାପି ଯାହାହେଉ ପଛେ, ସେମାନେ ମିଳାମିଳି ଗଲେ, ଖରି ଭଲ ହେଲା । କାରଣ କମାରପୁଅର ଯୋଉ ଖରଜୁଣ୍ଡ, ତାକୁ କେହି ପାରିବେ ନାହିଁ । ପୁଣି କଉଟା ବାଉଟା କଥା ମଧ୍ୟ ତାକୁ ସବୁ ଖରି ଭଲ-ଭାବରେ ଜଣାଅଛି ।"

ସ୍ୱର୍ନା ବାହାରିଗଲା ; ଘୁଷୁରିବୁଢ଼ାଙ୍କୁ ଖୁଣ୍ଟାକୁ ଫିଟାଇ ଦେଇଥିବାରୁ ଓ କୁକୁଡ଼ାବୁଢ଼ାଙ୍କୁ ଗଛଉପରକୁ ହୁରୁଡ଼ାଇ ଦେଇଥିବାରୁ ମାଆ ଆଣ୍ଡ୍ରୁ-ଉପରେ ଗାଳିବର୍ଷଣ କରିବାରେ ଲାଗିଥାଏ, ବାଟରେ ଚାଲି ଯାଉ ଯାଉ ସ୍ୱର୍ନା ସେସବୁ ବେଶ୍ ଶୁଣିବାକୁ ପାଉଥାଏ ।

ସେ ଯାଇ ବୋଉନାର ଘରେ ପହଞ୍ଚିଲା ବେଳକୁ ସେଠାକୁ ଆହୁରି କେତେ ଲୋକ ଆସି ସାରିଥିଲେ ।

ଚେମଣିତଳେ ହୁରୁହୁରୁ ହୋଇ ନିଆଁ ଜଳୁଚି, ଘରଯାକ [illegible]ମୟ ଦେଖାଯାଉଚି । କାନ୍ଥରେ ଟଙ୍ଗାହୋଇଥିବା ଚଦିପଟଗୁଡ଼ିକ ନିଆଁ ଧାସରେ ଝଟକି ଉଠୁଚି । ଘରମଝିରେ ଗଦାଏ ବନ୍ଧାକୋବି ଜମା ହୋଇ ରହିଥାଏ, ଏହି ଗଦାର ଚାରିପାଖରେ ଗୋଟିଏ ବଡ଼ ଅର୍ଦ୍ଧବୃତ୍ତ ଆକାରରେ ନିଆଁକୁ ମୁହାଁକରି ବସି କେତେ ଝିଅ ଓ ବୟସ୍ଥ ହୋଇଯାଇଥିବା ସ୍ତ୍ରୀଲୋକ ବନ୍ଧା-କୋବିଗୁଡ଼ାକରୁ ବାହାର ପତରମାନ ଛଡ଼ାଇବାରେ ଲାଗିଥାନ୍ତି ଓ ଝରକା ତଳେ ପଡ଼ିଥିବା ଗୋଟିଏ ପଟିଉପରକୁ ସେଗୁଡ଼ିକୁ ଫୋପାଡ଼ି ଦେଉଥାନ୍ତି ।

ଆଗ ଆପଣାର ହାତଦୁଇଟାକୁ ନିଆଁକୁ ଦେଖାଇ ଟିକିଏ ଉଷୁମ କରିନେଇ ସ୍ୱର୍ନା ଗୋଡ଼ରୁ କାଠଯୋତା ଓହ୍ଲାଇଦେଲା ଏବଂ ଧାଡ଼ିର ଶେଷମୁଣ୍ଡକୁ ବସିପଡ଼ି ପତର ଛଡ଼ାଇବା ଆରମ୍ଭ କରିଦେଲା । ତା'ପାଖକୁ ଲାଗିକରି ଯୁଗୁଷ୍ଟିଙ୍କା ବସିଥାଏ ।

ବେଳୁଁ ବେଳ ଅଧିକ ମଣିଷ ଘର ଭିତରକୁ ଆସିଲେ । ମରଦ ଆସିଲେ, ମାଇପେ ମଧ୍ୟ ଆସିଲେ । ତୁଣ୍ଡଗୋଳରେ ଘରଭିତରଟା କ୍ରମେ ସରଗରମ ହୋଇଉଠିଲା । ମରଦମାନେ କୁବା ସହିତ ମିଶି ଖଳାଘରୁ ବେତାବେତା ବନ୍ଧାକୋବ ଆଣି ଘରଭିତରେ ଜମାକରି ଦେଉଥାନ୍ତି । କିନ୍ତୁ ଅଧିକାଂଶ ସମୟ ସେମାନେ କେବଳ ସିଗାରେଟ୍‌ ଟାଣି ଝିଅମାନଙ୍କ ଆଡ଼କୁ ଅନାଇ ଦାନ୍ତ ନକୁଟିବାରେ ଲଗିଥାନ୍ତି, ବା ଆପଣା ଭିତରେ ଥଟ୍ଟାତାମସା କରିବାରେ ବ୍ୟସ୍ତ ଥାଆନ୍ତି ।

ସ୍ନୁକାର ବୟସ ଏପର୍ଯ୍ୟନ୍ତ ପାକଲ ହୋଇନାହିଁ,—ସେ ଏହି କାମ ଓ ଥଟ୍ଟାତାମସାର ତଦାରଖ କରୁଥାଏ । କାରଣ ବୋଉନା ଏପର୍ଯ୍ୟନ୍ତ ଘରକୁ ଫେରିନଥାଏ, ଏବଂ ହ୍ୱାଙ୍କା ମଧ୍ୟ ତା'ର ଚିରାଚରିତ ପ୍ରକୃତି ଅନୁସାରେ ଘରଭିତରେ ଏଠିସେଠି ନଡ଼ବଡ଼ ହେଉଥାଏ ।

"ନାଲିଆ ପରିଫୁଲର ପଟାଳଫର ଏଇ ଘରଟା ଖାଲି ନାଲିଟହଟହ ଦିଶୁଚି, ନୁହଁ ?"— ଆଲେକ୍‌ ଖୁବ ଉଲ୍ଲସିତ ଭାବରେ କହିଲା ।

"ଏ ଝିଅଗୁଡ଼ାକ ପୁଣି କେମିତି ବେଶଭୂଷା ହୋଇ ଆସିଚନ୍ତି ଦେଖ ! ସତେଅବା ବାହାଘର ଦେଖି ଆସିଚନ୍ତି !"— ବୟସ ଗଡ଼ିଯାଇଥିବା ଜଣେ ସ୍ତ୍ରୀଲୋକ ମତପ୍ରକାଶ କରି କହିଲା ।

"ଆଉ ଏଣେ ସୁଗନାକୁ ଦେଖିଲ ! ସତେଯେପରି ଦୁଧହାଣ୍ଡିରୁ ଉଠିକରି ଆସିଚି !"— ଉପହାସ କଲାପରି ସ୍ୱୁର୍ଣ୍ଣିଙ୍କା କହିଲା ।

"ମୋ' ଇଚ୍ଛା, ସେଥିରେ ତୋ'ର କ'ଣ ଗଲା ?"— ସରମରେ ଲେସଡ଼ି ପଡ଼ି ସୁଗନା ତା'ର କାନପାଖରେ ଫୁସ୍‌ ଫୁସ୍‌ କରି ଉତ୍ତର ଦେଲା ।

କିନ୍ତୁ ସ୍ୱୁର୍ଣ୍ଣିଙ୍କା କି କେବେହେଲେ ଦବିଯିବା ମଣିଷ ? ସେ କହିଲା, "ହଁ ଲୋ ମାଆ, ହେବନାହିଁ କାହିଁକି ? ମାଷ୍ଟର ପରା ବିଦେଶରୁ ଗାଆଁକୁ ଫେରିଛନ୍ତି, ଏଥର ତ ଝିଅମାନଙ୍କର ପାକଳ ପଡ଼ିବ । ଏଥର କେତେ ଗାଆଣ ହେବ, ନାଚହେବ, ପୁଣି ତୋଟାଭିତରେ ଭେଟାଭେଟି ବି ହେବ !"

"ପଡ଼େ ଏବର୍ଷ ସେ ଖଗାଦନପାଙ୍କ କୁଆଡ଼େ ଯାଇଥିଲା କେଜାଣି ?"

"ହଁ, ସହରରେ ଘର ଡଆର କରିବାକୁ ଯାଇଥିଲା ।"

"ତା'ଭଳ ବନ୍ଧାଣି ଆଉ କଏ ଅଚ୍ଛ କହୁଲ ? ଶୂନ୍ୟଉପରେ ସେ ପଥରକଲା ଢଆର କଲାବାଲା ।"— କାହାଘର କୋଠିଆ କହିଲା ।

"ଆଉ ଛୁଆଟାଏ ଢଆର କରଦେବାକୁ ତାକୁ ନଅଟାମାସ ବି ଲାଗିବନାହିଁ,"— ସ୍ୱଗୁଷ୍ଟିଙ୍କା କଥାସହିତ କଥା ଯୋଖିଦେଲା ।

"ସବୁବେଳେ କାହାର ନା କାହାର ନାଆଁରେ ଲଗାଇକର କହିବା କ'ଣ ତୋ'ର ଖୋଇହୋଇ ଗଲାଣି କି ?"— ଜଣେ ଟିଏ ପ୍ରତିବାଦ କଲା ।

"ହୁସିଆର୍, ନହେଲେ ତୋ'ର ଗୋଇତକ ଖୋଲି ବାହାର କରଦେବଟି !"— ସ୍ୱଗୁଷ୍ଟିଙ୍କା ଜବାବ ଦେଲା ।

"ତୁମେସବୁ ଶୁଣିଚ ସେଇ ବୁଢ଼ାଫକୀର ମଧ୍ୟ ଏବେ ପୁଣି ଲପ୍‌କାକୁ ଆସିଚ !"

"ସେ ଆଜରାତରେ ଆମଘରକୁ ମଧ୍ୟ ଆସିବ !"— ସ୍ମୁଳ୍‌କା ଗୌରବ ଅନୁଭବ କରି କହିଲା ।

"ତନବର୍ଷ ହେଲା ତା'ର ଦେଖାନଥିଲା !"

"ହଁ, ସିଏ କେତେକେତେ ଜାଗାକୁ ତୀର୍ଥକରି ଯାଇଥିଲା ।"

"ତୁଚ୍ଛା ମିଛକଥା ! କଏ ତାକୁ କୋଉ ତୀର୍ଥରେ ଦେଖିଚ କହିଲ ? ସିଏ ମିଛ କହିବାକୁ ଯେମିତ, ବୋକା ମଣିଷଗୁଡ଼ାକ ସେଥିରେ ବିଶ୍ୱାସ କରିବାକୁ ମଧ୍ୟ ସେମିତ ! ଠିକ୍ କମାରପୁଅ କହିଲାଭଳ ଯେ, ସେ କୁଆଡ଼େ ଖବରକାଗଜରେ ବିଦେଶର ଖବରମାନ ପଢ଼ିଚ !"

"ଏପରି କହିବା ଭାରି ଅନ୍ୟାୟ, ସ୍ୱଗୁଷ୍ଟିଙ୍କା ! ଫକୀର ତୀର୍ଥକରି ଯାଇଥିଲା ବୋଲି ନକେଁ ପାଦ୍ରୀ ପରି ମୋ' ବୋଉଆଗରେ କହୁଥିଲେ !"

"ଆଲୋ ମୁଁ କ'ଣ ସେକଥା ଜାଣେନାହିଁ ? ଆଜକାଲି ପରି ଡୋମିନିକଣ୍ଡ ଯାଇ ପାଦ୍ରୀଙ୍କ ଘରେ ବସାଘର କଲାଣି ! ପାଦ୍ରୀଙ୍କର ପେଟ କ'ଣ ହେଲେ ପରି ତାକୁ ଆଗ ଖବର ମିଳଯାଉଚ !"

ସୁଗ୍‌ନା ରମ କ ବନ୍ଧୁ କଛୁ ପାଟି ଫିଟାଉନଥାଏ । କନ୍ତୁ ତା'ର ଇଚ୍ଛା ହେଉଥାଏ, ଗୋଟାଏ ଛୁରୀ ନେଇ ସେ ତତ୍‌କ୍ଷଣାତ୍ କଳାବୁଢ଼ୀ ବୁଢ଼ୀ ଦେହରେ ଭୁଷିଦେବ । କାରଣ ତା'ର କଥା ସରଲେ ସମସ୍ତେ ହୋ' ହୋ' ହୋଇ ହସିବେ । ତାହା କେଡ଼େବଡ଼ ଲଜର କଥା ନହେବ ?

ତା'ପରେ ସେହି ଫକୀର ବିଷୟରେ କଥା ପଡ଼ିଲା । ହଠାତ୍ ସମସ୍ତେ ହୋ' ହୋ' ହୋଇ ହସିଉଠିଲେ । କଥା କ'ଣ କଥା କ'ଣ ବୋଲି ବୁଝିଲା-ବେଳକୁ ଜଣାପଡ଼ିଲା ଯେ କୁବା ଗୋଟାଏ ପଟି ଭିତରେ ବନ୍ଧାକୋବିଗୁଡ଼ାକୁ ଧରି ଯାଉଯାଉ ମାଟିଉପରେ କଗ୍ରିଡ଼ ହୋଇ ପଡ଼ିଲା । ବୋଧହୁଏ ମଜା ଦେଖିବାପାଇଁ କଏ ତାକୁ ପଛରୁ ଠେଲିଦେଇଛି । ଘରଯାକ ବନ୍ଧାକୋବି-ଗୁଡ଼ାକ ଗଡ଼ିବାରେ ଲଗିଥାଏ । ସେ ତଳୁ ଉଠି ପୁଣି ଯିବାକୁ ବାହାରିଲା, କନ୍ତୁ ଆଉଗୋଟାଏ ଠେଲିରେ ପୁଣି ତଳେ ପଡ଼ିଗଲା ।

ଶେଷରେ ସୁଜୁକା ଉଠିପଡ଼ି ତାକୁ ସାହାଯ୍ୟ କରିବାକୁ ଆସିଲା । କନ୍ତୁ ସେତେବେଳକୁ କୁବାର ମିଜାଜ ଗରମ ହୋଇ ଯାଇଥାଏ, ସେ ଯାହା ମନକୁ ଆସୁଥାଏ, ଖାଲି ବକିଯିବାରେ ଲଗିଥାଏ ।

କନ୍ତୁ ଆହୁରି ନାନାପ୍ରକାର ଉତ୍ପାତ ଆଗ୍ରହରେ ଏହି ଘଟଣାଟି କୁଆଡ଼େ ଦବିଦାବିଗଲା । କ୍ରମେ କୋଳାହଳ ଅଧିକରୁ ଅଧିକ ହେବାରେ ଲଗୁଥାଏ । ଗୃକୁଗୁଡ଼ାକ ଚର୍‌ଚର୍ ହୋଇ ଗ୍ଲଲଛ, ବନ୍ଧାକୋବିଗୁଡ଼ାକ ଖୁବ ବେଗରେ ଧାଉଁଥିବା ତୋପଗୁଳା ପରି ଯାଇ ପଟିଉପରେ ପଡ଼ୁଛି, ବନ୍ଧାକୋବିର ଗଦାଟି ପ୍ରତିମୁହୂର୍ତ୍ତରେ ଅଧିକରୁ ଅଧିକ ବଡ଼ ହେବାରେ ଲଗିଛି । ନିଆଁ ପାଖରେ ଠିଆହୋଇ ବନ୍ଧାକୋବିକଟା କଳରେ ଆନ୍ଦ୍ରେକ୍ ବନ୍ଧାକୋବି କାଟି ଗ୍ଲଲଛି । ତା'ଦେହରେ ଆଜି କେବଳ ଜର୍ଦ୍ଧିଆ ଆଉ କୁରୁତା;-- ମୁଣ୍ଡର ବାଳଗୁଡ଼ାକ ଅଲବିହୋଇ ଗୃରିପାଖକୁ ପଡ଼ିଛି, ଦେହଗୋଟାକରୁ ଗମ୍ ଗମ୍ ହୋଇ ଝାଳ ବୋହିଯାଉଛି । ତଥାପି ସେ ଏଡ଼େ ସୁନ୍ଦର ଦେଖାଯାଉଛି ଯେ ସୁଗ୍‌ନା ମୁଗ୍‌ଧ ନୟନରେ ତାହାର ଛବିଲ ଶରୀରର ରୂପସୌନ୍ଦର୍ଯ୍ୟକୁ ପାନ କରିବାରେ ଲଗିଛି । ଆନ୍ଦ୍ରେକ୍ ମଝିରେ ମଝିରେ ଅଟକିଯାଇ ଟିକିଏ ଦମ୍ ମାରୁଛି, ତା'ପରେ ସୁଗ୍‌ନା-

ଆଡ଼କୁ ଅନାଉଛି । ଲଜରେ ସୁଜାତା ମୁହଁକୁ ତଳକୁ ପୋତିଦେଉଛି । ଏ କଥାଟି କେବଳ ସୁସୁଷ୍ଟିଙ୍କା ବ୍ୟତୀତ ଆଉ କାହାର ଆଖିରେ ପଡ଼ୁନାହିଁ । ସେ କିଛି ଦେଖୁନଥିବାର ବାହାନା କରୁଚି, କିନ୍ତୁ ଗାଆଁରେ କପଟି ଭାବରେ ଏହି ଘଟଣାଟାକୁ ରଟାଇବାକୁ ହେବ, ମନେମନେ ତାହାର ଉପାୟ ଚିନ୍ତା କରୁଚି ।

"ମାରସିଆନ୍ନାର ପେଟରେ ହୋଇଚି ବୋଲି ଯାହା ଶୁଣାଯାଉଥିଲା, ସେକଥା ସତ ନା ମିଛ ମ ?"-- କ୍ଲେମେଣ୍ଟାଇନ ପଚାରିଲି ।

"ଗୋଟାଏ ଭାରି ଖବର ତୁ କହିଲୁ ! ଇଏ କ'ଣ ଖବର, ଇଏ ତ ଚିଁ' ବରଷର କଥା ।"

"ସିଏ ତ ମଣିଷ ନୁହେଁ, ସିଏ ହେଉଚି ଗୋଟାଏ ମଇଁଷି ! ଛୁଆ-ଗୁଡ଼ାକ ଜନ୍ମ ହେଉନଥିଲେ ସେ ଆହୁରି କ'ଣ ମନ କରୁଥାନ୍ତା !" — ସୁବୁଷ୍ଟିଙ୍କା ଆହୁରି କେତେ କ'ଣ କହିଯାଇ ଥାନ୍ତା । କିନ୍ତୁ ଅନ୍ୟମାନେ ଗାଳିଦେବାରୁ ସେ ବାଧହୋଇ ନିରସ୍ତ ହେଲା । ଏଠି ସାନସାନ ଝିଅଗୁଡ଼ାକ ଅଛନ୍ତି, ଏଠାରେ ଏସବୁ କଥା କହିବା ଉଚିତ ନୁହେଁ ।

ଉତ୍ତର ଦେଇ ସୁସୁଷ୍ଟିଙ୍କା କହିଲା,— "ଆଲୋ ମାଆ, ସେଇଗୁଡ଼ାଙ୍କୁ ତୁମ୍ଭେମାନେ ଡରୁଚ ? ସେମାନେ ପରା ଆଜିକାଲିକା ଛୁଆ, ସେମାନେ କ'ଣ ଜାଣିନାହାନ୍ତି କହିଲ ? ଆଜିକାଲିକା ପିଲାଙ୍କ ପାଖରେ ତୁମେ କ'ଣ କେବେ ବଗବଗୁଲି ଗପ କହି ରକ୍ଷାପାଇ ପାରିବ ? କହିଲେ ସେମାନେ ଠୋ' ଠୋ' ହସି ତୁମ କଥାକୁ କୁଆଡ଼େ ଉଡ଼ାଇଦେବେ । ଆଗକାଳ ପିଲାଙ୍କ କଥା ସିନା ନିଆରା ଥିଲା !"

"ତୁ ଝିଅହୋଇ ଗାଈ ଚରାଉଥିଲାବେଳେ ସବୁକଥା ଜାଣିସାରି-ଥିଲୁ, ନୁହଁ ?"— ଭାରି ଗମ୍ଭୀର ହୋଇ ଭାଉରେଜର ବଅସୀ ଭାରିଯା କହିଲା, "ସେଇ ବୟସରେ ତୁ ଯାହାସବୁ କରିଚୁ, ମୋର କ'ଣ ସେକଥା ପାସୋର ଗଲାଣି ?"

"ଯଦି ପାସୋର ନଯାଇଚି, ତେବେ ଆପଣା ଭିତରେ ସାଇତିକରି ରଖିଥା,"— ରାଗରେ ତମତମ ହୋଇ ସୁସୁଷ୍ଟିଙ୍କା କହିଲା ।

ଏହି ସମୟରେ ମାଥିଉର ଭଉଣୀ ନାଷ୍ଟୁସିଆ ଅଣନଶ୍ୱାସୀ ହେଲାପଣି ଦଉଡ଼ି ଦଉଡ଼ି ସେଠାରେ ଆସି ପହଞ୍ଚିଲା । "ଆଲୋ, ତୁମେସବୁ ଏଠି ବସିଚ । ତେଣେ କ'ଣ ହେଲାଣି, ତୁମ୍ଭମାନଙ୍କୁ ଜଣାନାହିଁ କି ?"

ତା'ଆଡ଼କୁ ଅନାଇ ସମସ୍ତେ ଏକାବେଳେକେ ପଚାରିବାକୁ ଆରମ୍ଭ କଲେ : "କ'ଣ ହେଲା, କ'ଣ ହେଲା ? "କ'ଣ ହେଲା ?"— ଯେ ଉତ୍ତର ଦେଇ କହିଲା । "ପେଷଣିଆ ଘରର ଘୋଡ଼ାମାନଙ୍କୁ କିଏ ଚୋରିକରି ନେଇଯାଇଚି !"

"କେତେବେଳେ ?"

"ଦୁଇ ମିନଟ ବି ହେବନାହିଁ । ମାଥିଉ ପରା ବର୍ତ୍ତମାନ ଷ୍ଟାଙ୍କେଲ୍ ପାଖରୁ ଶୁଣିଆସି କହିଲା !"

"ଷ୍ଟାଙ୍କେଲକୁ ସବୁକଥା ଆଗ ଜଣା ପଡ଼ିଯାଏ,— ହଁ, ଆଗରୁ ବି ଜଣାପଡ଼ିଯାଏ !"

"ସେମାନଙ୍କୁ ଗୁହାଳରୁ ଫିଟାଇ ନିଆଯାଇଥିଲା । ଜଗୁଆଳ ଚାକରଟା ଆପଣାର ଖାଇବାସାମଗ୍ରୀ ଆଣିବାକୁ ପେଷାଘର ଭିତରକୁ ଯାଇଥିଲା । ଚାକର ଫେରି ଲେଉଟିଆସି ଦେଖିଲା ଯେ ଗୁହାଳଘର ଖାଲିପଡ଼ିଚି । କୁକୁର-ଟାକୁ ମଧ୍ୟ ବିଷଦେଇ କିଏ ମାରିଦେଇଚି ।"

"ଶୀତକାଳ ପରା ଆସୁଚି ! ଏଇ ଶୀତକାଳେ କେତେ ବିଭ୍ରମଣ କଥା ଶୁଣିବାକୁ ମିଳିବ !"

"କାରଣ ଏ ଦେଶରେ ଚୋରଙ୍କଲାଗି କୌଣସି ଦଣ୍ଡ ନାହିଁ ! ଚୋରଙ୍କର ତ ମଜା । ଜହଲ ଘରେ ନିବୁଜ ବଖରାଟିରେ ବସି ଉଷୁମ ଟାଣିବାକୁ ମିଳିବ, ପେଟପୂରା ଖାଇବାକୁ ଦିଆଯିବ;— ପୁଣି ଆଉ ଚୋର-ମାନଙ୍କ ଠାରୁ ଏତେକଥା ଶିଖିବାକୁ ମିଳିବ ଯେ ଜହଲରୁ ଖଲାସ ହେଲା ବେଳକୁ ସେମାନେ ଦୁଇଗୁଣ ସିଆଣିଆ ହୋଇ ସଦାକୁ ବାହାରିବେ । ଦୁଇଗୁଣ ପାଷାଣ୍ଡ ହୋଇ ବାହାରିବେ ।"

"କିନ୍ତୁ ଯଦି ମୋର ଘୋଡ଼ାକୁ କେହି ଚୋରି କରିବାକୁ ଆସି ମୋର ହାତୁଡ଼ରେ ପଡ଼େ, ତେବେ ମୁଁ ସେଇଠି ତାକୁ କାଟି ଦ'ଖଣ୍ଡ କରିପକାଇବି" — ଜଣେ କୋଠିଆ କହିବାକୁ ଲାଗିଲା ।

"ଯିଏ ବୋକା ହୋଇଥିବ, କେବଳ ସେଇ ଏ ସଂସାରରେ ନ୍ୟାୟ ଖୋଜିବାକୁ ଯିବ । ଯିଏ ବୁଦ୍ଧିମାନ, ସିଏ ଆପେ ଆପଣା ପ୍ରତି ହୋଇଥିବା ଅନ୍ୟାୟର ପ୍ରତିଶୋଧ ନେବ ।"

"ଯଦି ଅନେକ ଲୋକ ଏକାଠି ମିଶି ଘୃଣିତକରୁଥିବା ମଣିଷକୁ ଜୀବନରୁ ମାରିଦିଅନ୍ତି, ତେବେ ସେମାନଙ୍କୁ ଆଉ କୌଣସି ଦଣ୍ଡ ଦେବା ସମ୍ଭବ ହେବନାହିଁ । ଏତେଗୁଡ଼ାଏ ଲୋକଙ୍କୁ କିଏ କିପରି ଦଣ୍ଡ ଦେବାକୁ ଆସିବ ?"

ଏହି ସମୟରେ ବୋଉନା ଆସି ଘରଭିତରେ ପହଞ୍ଚିଲା । ତା'ର ମିଜାଜ ଆଜି ଭାରି ଖୁସି । ସେ ଘରଭିତରକୁ ପଶିଆସି କହିଲା, "ତୁମେସବୁ ଏଠାରେ ଏତେବଡ ପାଟିରେ କଥାବାର୍ତ୍ତା ହେଉଛ ଯେ ତାହା ପୋଖରୀ ସେପାଖକୁ ମଧ୍ୟ ଶୁଣା ଯାଉଛି ।" ମୁଣ୍ଡରୁ ଟୋପି କାଢ଼ି ସେ ଜଣଜଣ କରି ସମସ୍ତଙ୍କୁ ପ୍ରଣାମ ଜଣାଇଲା । ସୁଗନା ପାଖରେ ଆସି ବସିବାଲାଗି ତା'ର ବଳବତ୍ତର ଇଚ୍ଛା ହେଉଥିଲେ ହେଁ ସେ ତଥାପି ସେପରି କରିବାକୁ ସାହସ କରି ପାରିଲାନାହିଁ । ବିବାହ ବିଷୟରେ ଗୋଟାଏ କିଛି ପକା ହୋଇନଗଲା ପର୍ଯ୍ୟନ୍ତ ସେ ଏକଥା କିପରି କରିପାରିବ ? ତେଣୁ ଦୂରରେ ଥାଇ ସେ କେବଳ ତାର ଗୃହିଣୀ ଓ ଚେହେରାକୁ ଦେଖିବାକୁ ଲାଗିଲା । ଆଜି ସେ କେତେ ବଢ଼ିଆ ପୋଷାକମାନ ପିନ୍ଧି ଆସିଛି । ଯାତ୍ରାରେ ସେ କିଣିଦେଇ-ଥିବା ରୁମାଲଟିକୁ ସୁଗନା ଆଜି ମୁଣ୍ଡରେ ବାନ୍ଧି ଆସିଛି ।

ଭିଟେକ୍ ଆଉ କୁବା ନଆଁ ପାଖରେ ଗୋଟାଏ ଲମ୍ବା ବେଞ୍ଚ୍ ଆଣି ପକାଇଦେଲେ । ସୁଜକା ଖଣ୍ଡେ ସଫାକନାରେ ବେଞ୍ଚଉପରଟି ଝକଝକ କରି ପୋଛିଦେଲା ଏବଂ ରାତ୍ରିଭୋଜନ ପାଇଁ ଥାଳିଆ ଓ ଚାମଚମାନ ଆଣି ସଜାଇ-ଦେବାକୁ ଲାଗିଲା ।

ଭଣ୍ଡାରଘରୁ ବୋଉନା ଗୋଟିଏ ଠୋଲା ବୋତଲ ବାହାରକରି ଆଣିଲା ଏବଂ ସେଥିରୁ ଭଡ୍‌କା ବାହାରକରି ଗିଲାସରେ ଢାଳି ଅତିଥିମାନଙ୍କୁ ପିଆଇବାରେ ଲାଗିଲା, ନିଜେ ମଧ୍ୟ ପିଇଲା ।

ମଦପିଆ ଗୁଲୁଥିବାବେଳେ ଝିଅମାନେ ଅବର୍ଜିଆ ମୁହଁ କରି ଦୂରଛଡ଼ା ହୋଇ ବସିଥାନ୍ତି । ଏହା ଦେଖି କୋଠିଆ ଜଣେ କହିଲା, "ବିଲେଇ କ୍ଷୀର ଦେଖିଲେ ଯେମିତି ହୁଏ, ଏ ଝିଅଗୁଡ଼ାକ ଭଡ଼୍କା ଦେଖି ଠିକ୍ ସେମିତି ହେଉଛନ୍ତି । କିନ୍ତୁ ଖାଲି ଲୋକନିନ୍ଦାକୁ ଡରି ଆଡ଼େଇହୋଇ ରହିଛନ୍ତି ।"

"ତୁ ପିନା ମଦଖାଇ ସବୁବେଳେ ସ୍ମାଙ୍କେଲ୍‌ର ଦୋକାନରେ ଯାଇ ପଶିଥାଉ, ସମସ୍ତେ କାହିଁକି ତୋ ଭଳି ପର ହେବାକୁ ଯିବେ ?"

ଶେଷକୁ ଝିଅମାନେ ମଧ୍ୟ ଭଡ଼କା ପିଇଲେ । ପ୍ରଥମେ ପ୍ରଥମେ ନପିଇଲା-ପରି ଅଭିନୟ କଲେ, ପାଟିଉପରେ ହାତଦେଇ ମୁହଁ ଆଡ଼େଇନେଲେ, ଶେଷରେ ପିଇସାରି ଗିଲାସ ଶେଣ୍ଟୁରେ ରହିଥିବା ମଦକୁ ମାଟିଉପରେ ଢାଳିଦେଇ କହିଲେ, "ଖୁବ୍ କଡ଼ା ମଦ !"— ଓ ଗୋଟିଗୋଟି କରି ଗିଲାସମାନ ବୋଉନାକୁ ଫେରାଇଦେଲେ ।

କିନ୍ତୁ ଯେତେ ପିଏ ଅନୁରୋଧ କରି କହିଲେ ମଧ୍ୟ ସୁଗ୍‌ନା ଭଡ଼୍କା ପିଇଲାନାହିଁ ।

"ମୁଁ ଭଡ଼୍କା କେମିତି ଲାଗେ, ଥରେହେଲେ ମଧ୍ୟ ସେକଥା ଜାଣିନାହିଁ । ସେକଥା ଜାଣିବାଲାଗି ମଧ୍ୟ ମୋର ଏତେଟିକିଏ ଆଗ୍ରହ ନାହିଁ ।"

"ଆଚ୍ଛା, ଏଥର ସମସ୍ତେ ବସି ଆମ ଘରେ ଯାହା ଅଛି, ସେଥିରୁ ଟିକିଏଟିକିଏ ପାଟିରେ ମାର !" — ଭଡ଼କା ପରେ ବୋଉନା ଖାଇବାଲାଗି ନିମନ୍ତ୍ରଣ ଜଣାଇଲା ।

ଭଦ୍ରଘରର ଅନେକ ରୀତିର ଆଚରଣ କରାଗଲାପରେ ସମସ୍ତେ ଯାଇ ଖାଇବାକୁ ବସିଲେ, ଓ ତା'ପରେ ଖୁବ୍ ଜୋରସୋରରେ କଥାବାର୍ତ୍ତା ଆରମ୍ଭ ହୋଇଗଲା ।

ଖାଇବା ସାମଗ୍ରୀ ସେଦିନ ଏପରି ଚମତ୍କାର ଭାବରେ ତିଆରି କରାହୋଇଥିଲା ଯେ ଅତିଥିମାନେ ଖାଉଖାଉ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଉଥାନ୍ତି । ଆଳୁସିଝା, ତା'ସାଙ୍ଗକୁ ଝୋଳ । ପୁଣି ଜଅପଡ଼ି ରନ୍ଧା ହୋଇଥିବା ମାଉଁସ । ଆଉଗୋଟାଏ ଥାଳିରେ ମଟର ଆଉ ବନ୍ଧାକୋବିର ତରକାରୀ । ସବୁ

ଜନଙ୍କୁ ଖୁବ ସଶୁଣା କରି ବାଣ୍ଟି ଦିଆଯାଇଚ । ବୋଉନା ସମସ୍ତଙ୍କ ପାଖକୁ ଯାଇ କେତେ ବନସ୍ତୁ ଦେଖାଇ 'ଖାଅ, ଖାଅ' ବୋଲି କହୁଚ ।

ଭଡେକ୍ ଆଉକେତେଟା କାଠମୂଳ ନେଇ ନିଆଁ ଭିତରେ ମୋହି-ଦେଲ । ଚଡ଼ଚଡ଼ ଶବ୍ଦ କରି ନିଆଁ ଜଳଉଠିଲ । ସମସ୍ତେ ଖାଇ ବସିଥିବା-ବେଳେ କୁବା ଯାଇ ଅଙ୍ଗୁର ବୋଝେ ବନ୍ଧାକୋବି ନେଇ ଆସିଲ । ସେଗୁଡ଼ାକୁ ତଳେ ଜମାକରି ଖୁବ ଲେଭସକ୍ତ ଭାବରେ ଟେବୁଲ ଉପରେ ବଢ଼ାହୋଇଥିବା ଖାଇବା ପଦାର୍ଥଗୁଡ଼ିକର ମହକକୁ ନାକଭିତରକୁ ଟାଣି ନେବାକୁ ଲଗିଲ ଓ ନିରାଶ ହୋଇ ଦୀର୍ଘଶ୍ୱାସ ତ୍ୟାଗ କରିବାକୁ ଲଗିଲ ।

ସେ ଆପଣା ମନକୁ ମନ କହୁଥାଏ, "ଶଳାଏ ଆଜି ରାକ୍ଷସଙ୍କପରି କେମିତି ଖାଇବାରେ ଲଗିଚନ୍ତି ଦେଖ ! ଘୋଡ଼ା ଅନେକଦିନ ଖାଇବାକୁ ନପାଇଲେ ଯେମିତି ହୁଏ, ଏମାନେ ଠିକ୍ ସେମିତି ହେଉଚନ୍ତି । ଏମାନଙ୍କୁ ଦେଖି ଯାହା ମନେହେଉଚ, ଏମାନେ ଆଜିକାଏ ଖାଇବବୋଲି ଖଣ୍ଡିଆ ହାଡ଼ଟାଏ ମଧ୍ୟ ଗୁଣ୍ଡକରି ଯିବେନାହିଁ !"

ଖାଇବାଅନ୍ତେ ସମସ୍ତେ ଠିଆହୋଇ ସମସ୍ୱରରେ ଗୃହସ୍ୱାମୀକୁ ଧନ୍ୟବାଦ ଦେଲେ !

"ଭଗବାନ ତୁମକୁ ବହୁତରୁ ବହୁତ ଦେଇଥାନ୍ତୁ !"

"ତୁମ୍ଭମାନଙ୍କର ମଧ୍ୟ ମଙ୍ଗଳ ହେଉ !"—ସାମାଜିକ ସ୍ୱରରେ ଉତ୍ତର ମିଳିଲ ।

ତା'ପରେ କିଛିସମସ୍ତ ପାଇଁ କେହିକେହି ଟିକଏ ଗୋଡ଼ହାତ ଖେଲାଇ ଆସିବାପାଇଁ ବାହାରକୁ ଗଲେ, କେହିକେହି ଉପରକୁ ଅନାଇ ମେଘର ଗତି ଦେଖିବାକୁ ଲଗିଲେ ଏବଂ କୋଠିଆ ଟୋକାଗୁଡ଼ାକ ଦୁଆରବନ୍ଧ ପାଖରେ ଠିଆହୋଇ ଝିଅମାନଙ୍କ ସହିତ ଖୁବ ଖାଇବାକୁ ଲଗିଲେ ।

ଏତିକିବେଳେ କୁବା ଗୋଟିଏ ଥାଳୀ ଧରି ଖାଇ ବସିଲ । ଏପରି ଅଣନିଶ୍ୱାସୀ ହୋଇ ସେ ଖାଇବାରେ ଲଗିଗଲ ଯେ ଲପା କୁକୁର ଉପରେ ତା'ର ଦୃଷ୍ଟି ମଧ୍ୟ ପଡ଼ିଲନାହିଁ । ଲପା ନାନାପ୍ରକାରେ ଇଙ୍ଗିତ କରିବାରେ ଲଗିଥାଏ । ଶେଷକୁ କୁବା ପାଖରୁ ଆଜି କିଛି ମିଳିବାର ଆଶା ନଦେଖି ସେ

ସେ ପିଣ୍ଡା ସେପାଖକୁ ଚାଲିଗଲା ଓ ସୁଜ୍‌କା ବାହାରକୁ ଫୋପାଡ଼ିଦେଇଥିବା ହାଡ଼ଖଣ୍ଡମାନଙ୍କୁ ଦାନ୍ତେଇବାକୁ ଲାଗିଲା । ଅତଥିମାନଙ୍କ ସହିତ ଆସିଥିବା ଅନ୍ୟ କୁକୁରମାନେ ମଧ୍ୟ ସେଇଠି ଜମାହୋଇ ହାଡ଼ ଦାନ୍ତେଇବାରେ ବ୍ୟସ୍ତ ଥାଆନ୍ତି ।

ସେମାନେ ପୁଣି କାମ ଆରମ୍ଭ କରିବାକୁ ଯାଉଚନ୍ତି, ଏହି ସମୟରେ ଡ୍ରାଲଫଙ୍କର ଷ୍ଟେକ୍ ମଧ୍ୟ ଆସି ସେଠାରେ ପହଞ୍ଚିଲା ଓ 'ଜୟ, ଭଗବାନ ଯୀଶୁଙ୍କର ଜୟ !' ବୋଲି ବଡ଼ପାଟିରେ କହିଲା ।

"କୋଟିକୋଟି ଜୟ !"— ସମସ୍ତେ ଏକସ୍ୱରରେ ଉତ୍ତର ଦେଇ କହିଲେ ।

"ଯେତେବେଳେ ଖାଇବାପିଇବା ସରିବ, ହାଣ୍ଡି ପୋଛା ସରିବ, ତୁ ଆସି ସେତିକବେଳେ ପହଞ୍ଚିଛୁ !"— ବୋରିନା କହିଲା ।

ସୁଜ୍‌କାକୁ କହିଦିଅ, ମୋତେ ଖଣ୍ଡେ ରୁଟି ଆଉ ଟୋପାଏ କ୍ଷୀର ଦେବ,— ମୋ' ପାଇଁ ସେତିକ ହେଲେ ଯଥେଷ୍ଟ !"

"ନାଇଁ, ଏପର୍ଯ୍ୟନ୍ତ ମଧ୍ୟ କେତେଖଣ୍ଡ ମାଉଁସ ହାଣ୍ଡିରେ ଲାଗିଚି ।"— ହାଙ୍କା କହିଲା ।

"ନାଇଁ ଆଉ, ମୁଁ ଯାବୁଆଡ ଖ ଏନାହିଁ !"

ପ୍ରଥମେ ସମସ୍ତେ ଚୁପ୍ ହୋଇ ଏକ ବନ୍ଧୁତାପୂର୍ଣ୍ଣ କୌତୁହଳର ସହିତ ତା'ଆଡ଼କୁ ଅନାଇ ଦେଖୁଥିଲେ । କିନ୍ତୁ ସେ ଖାଇବସିଲା ପରେ ପୁଣି ସମସ୍ତଙ୍କର ଖୁସିଗପ ଆଉ ହସ ଆରମ୍ଭ ହୋଇଗଲା ।

କେବଳ ସୁଭ୍‌ନା ଏହି ଫକୀରଟି ଆଡ଼କୁ ବାର୍‌ବାର ଅନାଉଥାଏ । ଯେତିକ ଅନାଉଥାଏ, ସେ ସେତିକ ଆଶ୍ଚର୍ଯ୍ୟ ହେବାରେ ଲାଗିଥାଏ । ଏଇ ଲୋକଟି ସାଧାରଣ ଲୋକଙ୍କଠାରୁ ଏକାବେଳେକେ ଅଲଗା । ଇଏ ନିଜେ ତୀର୍ଥ ଯାତ୍ରା କରି ଯୀଶୁଖ୍ରୀଷ୍ଟଙ୍କର ସମାଧି ଦେଖିଆସିଚି, ସଂସାରର ଅଧେ ଆନ ବୁଲି ଦେଖିଚି, କେତେକେତେ ଆଶ୍ଚର୍ଯ୍ୟଜନକ କଥା ଦେଖି ତା'ର ଆଖି ଧନ୍ୟ ହୋଇଚି । ସେ ଦେଖିଆସିଥିବା ସଂସାର ବିଷୟରେ ତାକୁ କେତେକଥା ପଚାରିବାଲାଗି ତା'ର ଖୁବ ମନ ହେଉଥାଏ, କିନ୍ତୁ ସାହସ

ହେଉନଥାଏ । ଏଠି ଏତେଲୋକ ଉପସ୍ଥିତ ହୋଇଛନ୍ତି, ତା'ର ପ୍ରଶ୍ନ ଶୁଣିଲେ ଖାଲି ହସିବେ ସିନା !

ତା'ପରେ ହଠାତ୍ ପିଣ୍ଡାଆଡୁ ଗୋଟିଏ କୁକୁରର ବିକଳ ଚିତ୍କାର ଶୁଣାଗଲା । ଏହି ବିକଳ ଚିତ୍କାର ଶୁଣି ଘରର ସବୁ କୋଳାହଳ ଏକାବେଳେକେ ସ୍ତମ୍ଭିତ ହୋଇଗଲା ।

"କ'ଣ ହେଲା ?"

"କିଛି ହୋଇନାହିଁ,"— ପିଣ୍ଡାକୁ ଅନାଇଦେଇ ଆନ୍ତ୍ରେକ୍ ଫେରିଆସି କହିଲା । "ବୋଧହୁଏ ଗୋଟାଏ ଟୋକା କିଏ ଗୋଟାଏ କୁକୁରର ଲାଙ୍ଗୁଳକୁ ଦୁଇକବାଟ ଭିତରେ ଯାକି ଧରିଥିଲା ।"

"ନିଶ୍ଚୟ ଭିତେକ୍‌ର କାମ, ଏଥିରେ କୌଣସି ସନ୍ଦେହ ନାହିଁ ।" — ବୋରନା କହିଲା ।

ଭିତେକ୍‌ର ପକ୍ଷ ସମର୍ଥନ କରି ସ୍ଲୁଜକା ତତ୍‌କ୍ଷଣାତ୍ ଉତ୍ତର ଦେଲା," "କ'ଣ କହିଲ ? ଭିତେକ୍ କେବେ କୁକୁରଙ୍କୁ ଏପରିଭାବରେ କଷ୍ଟ ଦେବ ? କଦାପି ନୁହେଁ ।"

ଏହି ସମୟରେ ଟ୍ରେକ୍ ଆସି ପୁଣି ଘରଭିତରେ ପ୍ରବେଶ କଲା । ବର୍ତ୍ତମାନ ମଧ୍ୟ ତାକୁ ଦେଖି ଭାରି ଉତ୍ତେଜିତ ମନେହେଉଥାଏ । ସେ ଇତି ମଧ୍ୟରେ ବାହାରକୁ ଯାଇ କୁକୁରଟାକୁ ମୁକ୍ତ କରିଦେଇଛି । ସେଇ କୁକୁରଟା ବର୍ତ୍ତମାନ ବାଡ଼ ପାଖରେ ଠିଆହୋଇ ବାହୁନିବାରେ ଲାଗିଛି ।

ସେ ସେହିପରି ଉତ୍ତେଜିତ ଭାବରେ କହିଲା, "କୁକୁର ହେଲେ କ'ଣ ହେଲା, ତାକୁ ତ ପୁଣି ସେହି ଭଗବାନ ତିଆରି କରିଛନ୍ତି ! ମଣିଷପ୍ରତି ଦୁର୍ବ୍ୟବହାର କଲେ ତାକୁ କେମିତି କଷ୍ଟ ହୁଏ, କୁକୁରପ୍ରତି ଦୁର୍ବ୍ୟବହାର କଲେ କୁକୁରକୁ ମଧ୍ୟ ଠିକ୍ ସେମିତି କଷ୍ଟ ହୁଏ । ଆମ ପ୍ରଭୁ ଯୀଶୁଙ୍କର ମଧ୍ୟ ଗୋଟିଏ କୁକୁର ଥିଲା । ତା ପ୍ରତି କେହି ଦୁର୍ବ୍ୟବହାର କଲେ ସେ ଜମାରୁ ସହି ପାରୁନଥିଲେ ।"

"କ'ଣ ହେଲା ? ମଣିଷଙ୍କ ପରି ପ୍ରଭୁ ଯୀଶୁଙ୍କର ମଧ୍ୟ ଗୋଟାଏ କୁକୁର ଥିଲା ?" — ପରିଚେ ନଯାଇ ସ୍ତ୍ରବୁର୍ଷ୍କିଙ୍କା ପଚାରିଲା ।

"ହଁ, ଥିଲା । ତା'ର ନାଆଁ ହେଉଚ ବୁରେକ୍ ।"

ଏକଥା ଶୁଣି ସମସ୍ତେ ଭାରି ଆଶ୍ଚର୍ଯ୍ୟ ହୋଇଗଲେ ।

ରେକ୍ କଛିସମୟ ସକାଶେ ଚୁପ୍ ହୋଇ ବସିରହିଲା । ସେଇଠି ପାଚିଲା ବାଳରେ ଝୋଟହୋଇ ଯାଇଥିବା ମୁଣ୍ଡଟିକୁ ଉପରକୁ ଉଠାଇଲା, ଲୁହ ଗଡ଼ଗଡ଼ ବିବର୍ଣ୍ଣ ହୋଇ ଯାଇଥିବା ଆଖିରେ ନଆଁ ଆଡ଼କୁ ଅନାଇଲା, ହାତରେ ମାଳା ଗଡ଼ାଉ ଗଡ଼ାଉ ଧୀରେଧୀରେ କହିବାକୁ ଆରମ୍ଭ କଲା :

"ସେ ଅନେକ ଯୁଗ ତଳର କଥା । ସେତେବେଳେ ଆମର ପ୍ରଭୁ ଯୀଶୁ ଏହି ଧରାଧାମରେ ମନୁଷ୍ୟଶରୀରରେ ବିଚରଣ କରୁଥିଲେ ଓ ନିଜେ ରାଜାହୋଇ ସଂସାରସାକ ମଣିଷଙ୍କ ଉପରେ ଶାସନ କରୁଥିଲେ ।

"ସେତିକବେଳେ ଥରେ ପାଖରେ ଥିବା ସସ୍ଥୋଭ ମଠକୁ ସେ ଦିନେ କୌଣସି ଉତ୍ସବରେ ଯୋଗଦେବାକୁ ଯାଉଥିଲେ । ସେତେବେଳେ ରାସ୍ତାଘାଟ କଛି ନଥିଲା, କେବଳ ଜନଶୂନ୍ୟ ମରୁଭୂମି ମଧଦେଇ ଯିବାକୁ ପଡ଼ୁଥିଲା । ଉପରେ ମୁଣ୍ଡଫଟା ଖରା, କେତେବେଳେ ଯେ ଆଖିପିଛୁଳାକେ ବାଲିର ଝଡ଼ ମାଡ଼ିଆସିବ, ପବନରୁ ସବଦା ସେହିପରି ଏକ ଭୟଙ୍କର ସୂଚନା ମିଳୁଥିଲା ।

"ବାଟରେ କୋଉଠି ଗଛଗୁଳ୍ମ କି ଅନ୍ୟ କୌଣସି ଆଶ୍ରୟ ମିଳିବା ଆଦୌ ସମ୍ଭବ ନଥିଲା ।

"ପ୍ରଭୁ ଅସୀମ ଧୈର୍ଯ୍ୟ ସହକାରେ ଗୋଟିଏ ଗୋଟିଏ ପାଦୁଣ୍ଡ ପକାଇ ଯାଉଥାନ୍ତି । ଏପର୍ଯ୍ୟନ୍ତ ଅରଣ୍ୟର ସମୀପବର୍ତ୍ତୀ ହୋଇନଥିଲେ ମଧ୍ୟ ଏତେ ବାଟ ଚାଲିଚାଲି ତାଙ୍କର ପାଦ ବଡ଼ କ୍ଳାନ୍ତ ଓ ଅବଶ ହୋଇପଡ଼ିଲା ଏବଂ ସେ ଦାରୁଣ ତୃଷାରେ ସନ୍ତପ୍ତ ହେବାକୁ ଲାଗିଲେ । ତେଣୁ ବାଟରେ ଏଠିସେଠି ଗ୍ରେଟ ପାହାଡ଼ ବା ମୁଣ୍ଡିଆ ପଡ଼ୁଥିବାବେଳେ ସେ ଦଣ୍ଡେ ବସିଯାଇ ସେଠି ବିଶ୍ରାମ ନେଉଥିଲେ ।

"କିନ୍ତୁ ମାଟି ଉପରେ ବସିପଡ଼ିବା ମାତ୍ରକେ ପବନ ଅଭାବରେ ସେ ଅଣନିଶ୍ୱାସୀ ପ୍ରାୟ ହୋଇ ଯାଉଥିଲେ । ସେତିକବେଳେ ଶଇତାନ ତାଙ୍କୁ

ଭସ୍ମ ଦେଖାଇବାକୁ ଗୋଟିଏ ଚଢ଼େଇର ରୂପ ଧରି ଯେଉଁଠି ଆସି ପହଞ୍ଚି ଯାଉଥିଲା, ଗୋଡ଼ଖୁରାରେ ଧୂଳି ଉଡ଼ାଇବାରେ ଲାଗୁଥିଲା । ସେଥିରୁ ପ୍ରବଳ ଧୂଳି ଉଠି ମେଘସମାନ ଚତୁର୍ଦ୍ଦିଗକୁ ଆଚ୍ଛନ୍ନ କରି ରଖୁଥିଲା, କୁଆଡ଼େହେଲେ କିଛି ଦୃଷ୍ଟିଗୋଚର ହେଉନଥିଲା ।

"ଶଇତାନର ଏସବୁ ଖେଳ-ଆୟୋଜନ ଦେଖି ପ୍ରଭୁ ଭୂଇଁରୁ ଉଠି ପୁଣି ଚାଲିବାକୁ ଆରମ୍ଭ କରୁଥିଲେ । ସେ ବେଶ୍ ବୁଝିପାରୁଥିଲେ ଯେ ସଇତାନ ତାଙ୍କୁ ବାଟବଣା କରିଦେବା ପାଇଁ ଏପରି ଚକ୍ରାନ୍ତମାନ କରିବାକୁ ବସିଛି । ଏହି ମରୁଭୂଇଁରେ ବାଟବଣା ହୋଇଗଲେ ପ୍ରଭୁ ଆଉ ଉଦ୍ଦିଷ୍ଟସ୍ଥାନରେ ପହଞ୍ଚି ପାରିବେନାହିଁ ଓ ତେଣୁ ସେଠାର ଲୋକମାନେ ଆଉ ପାପରୁ ଉଦ୍ଧାର ପାଇ ପାରିବେନାହିଁ ।

"ଏହିପରି ଚାଲିଚାଲି ପ୍ରଭୁ ଯୀଶୁ ଅରଣ୍ୟପାଖରେ ଆସି ପହଞ୍ଚିଲେ ।

"ସେଠି ସେ ଗଛଛାଇରେ ବିଶ୍ରାମ କଲେ, ଝରଣାର ଜଳ ପାନକରି ତୃଷାନିବାରଣ କଲେ । ତା'ପରେ ଗଛରୁ ଗୋଟିଏ ଡାଳ ଭାଙ୍ଗିଆଣି ବାଡ଼ି-ପରି ହାତରେ ଧରିଲେ ଓ ଶୂନ୍ୟରେ କ୍ରସଚିହ୍ନ ଅଙ୍କିତ କରି ଅରଣ୍ୟ ଭିତରେ ପ୍ରବେଶ କଲେ ।

"ଅନେକ ଦିନର ପୁରାତନ ଗହନ ଅରଣ୍ୟ, ପକ୍ଷୀମାନଙ୍କ ପାଇଁ ମଧ୍ୟ ଦୁର୍ଗମ ହୋଇ ରହିଛି ! ସେଇଠି ହେଉଛି ଶଇତାନର ନିବାସ । ତଥାପି ପ୍ରଭୁ ସେହି ଅରଣ୍ୟଭିତରକୁ ପ୍ରବେଶ କଲେ ।

"ଶଇତାନ ତାଙ୍କୁ କେଉଁପ୍ରକାରେ କି ହଇରାଣ ନକଲା ? ଗଛର ଡାଳମାନ ହଲାଇବାକୁ ଲାଗିଲା, ପଶୁପରି ବିକଟ ସ୍ୱରରେ ବୋବାଳି ଛାଡ଼ିଲା, ଝଡ଼ତୋଫାନ ଆଣି ଡାଳଗୁଡ଼ାକୁ ଖଣ୍ଡଖଣ୍ଡ କରି ଭାଙ୍ଗିପକାଇଲା । ଅରଣ୍ୟ-ତମାମ ଯେପରି କେଉଁ ପାଗଳ ଦୈତ୍ୟ ଗର୍ଜନ କରିବାରେ ଲାଗିଥାଏ !

"ଏଣେ କଟି କଟି ଅନ୍ଧାର ମଧ୍ୟ ମାଡ଼ିଆସିଲାଣି । ଚାରିପାଖରୁ ନାନା ପ୍ରକାର ବିକଟ ଶବ୍ଦ କାନକୁ ବଧିରା କରିଦେଉଥାଏ । ପ୍ରଭୁଙ୍କୁ ଘେରି ତାଙ୍କର ଚାରିପାଖରେ କେତେ ଡାଆଣୀ ଚିରଗୁଣୀ ନାଚନାଚି ଡେଇଁ ଡେଇଁ ଚିତ୍କାରିବାରେ ଲାଗିଥାନ୍ତି, ଲମ୍ବାଲମ୍ବା ଦାନ୍ତମାନ ବାହାରକରି ବୋବାଳି ଛାଡ଼ୁଥାନ୍ତି,

ନଖ ବାହାର କରି ପ୍ରଭୁଙ୍କୁ ଭୟ ଦେଖାଇବାକୁ ଆସୁଥାନ୍ତି । ଅବଶ୍ୟ ପ୍ରଭୁଙ୍କର ପବିତ୍ର ଶରୀରରେ ହାତ ଲଗାଇବାକୁ ସେମାନେ ଆଦୌ ସାହାସ କରି ପାରୁନଥାନ୍ତି ।

"କିନ୍ତୁ ଏମାନଙ୍କର ଅତ୍ୟାଚାରରେ ପ୍ରଭୁ ବଡ଼ ହନ୍ତସନ୍ତ ହୋଇ-ପଡ଼ିଲେ । ଉତ୍ସବସ୍ଥାନରେ ଯାଇ ପହଞ୍ଚିବାକୁ ମଧ୍ୟ ସେ ଭାରି ତରତର ହେଉଥାଆନ୍ତି । ଏହି ସମୟରେ ସେ ସେହି ପ୍ରେତମାନଙ୍କ ଉପରେ କ୍ରୁସଚିହ୍ନ ଅଙ୍କନ କରିଦେଲେ । ମୁହୂର୍ତ୍ତକ ମଧ୍ୟରେ ସେମାନେ ଦଳବଳଙ୍କ ସହିତ ସେହି ଜଙ୍ଗଲ ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲେ ।'

"ସମସ୍ତେ ସିନା ଗଲେ, କିନ୍ତୁ କେବଳ ଗୋଟିଏ ବଣୁଆକୁକୁର ସେଠାରେ ବାକୀ ରହିଗଲା । ହଁ, ବଣୁଆକୁକୁର, କାରଣ ସେତେବେଳେ କୁକୁରଜାତି ମଣିଷର ପୋଷ ମାନିନଥାନ୍ତି ।

"କୁକୁରଟି ପଳାଇ ନଯାଇ ପ୍ରଭୁଙ୍କ ପଛେ ପଛେ ଗୋଡ଼ାଇ ଭୁକିବାକୁ ଆରମ୍ଭ କଲା । ପ୍ରଭୁଙ୍କର ଅଙ୍ଗବସନକୁ ଚିରିଦେଲା ଏବଂ ତାଙ୍କର ମୁଣିକୁ ଝାମ୍ପିଆଣି ସେଥିରେ ଥିବା ମାଂସକୁ ଖାଇବାକୁ ମନ ବଳାଉଥିଲା । କିନ୍ତୁ ପ୍ରଭୁଙ୍କର ଅସୀମ କରୁଣା, ସେ ତାଙ୍କର କୌଣସି ପ୍ରାଣୀର କେବେହେଲେ କୌଣସି ଅନିଷ୍ଟ କରନ୍ତିନାହିଁ । ତେଣୁ ସେ କୁକୁରଟିକୁ କହିଲେ :

"ବୋକାକୁକୁର, କ'ଣ ଭାରି ଖେଳ କରୁଚ ? ନେ,— ଏଥିରେ ମାଉଁସ ଅଛି, ନେ ।— ଆପଣା ମୁଣିଭିତରୁ କିଛି ମାଉଁସ ବାହାରକରି ସେ କୁକୁରଆଡ଼କୁ ଫୋପାଡ଼ିଦେଲେ ।

କିନ୍ତୁ ଏଥିରେ କୁକୁରର କ୍ରୋଧ ଆହୁରି ବଢ଼ିଗଲା, ଏବଂ ଦାନ୍ତ ବାହାରକରି ସେ ପ୍ରଭୁଙ୍କ ଉପରେ ଆକ୍ରମଣ କଲା ଏବଂ ତାଙ୍କର ପରିହିତ ବସନକୁ ଖଣ୍ଡଖଣ୍ଡ କରି ଚିରି ପକାଇଲା ।

"ମୁଁ ତୋତେ ଖାଇବାକୁ ଦେଲି । ମୁଁ ତୋ'ର କୌଣସି କ୍ଷତି କରିନାହିଁ । ତଥାପି ତୁ ମୋର ଲୁଗାପଟା ଚିରିଦେଇ ମିଛଟାରେ ଭୁକିବାରେ ଲାଗିଚୁ ? ଏଡ଼ିକି ବୋକା କୁକୁରଟାଏ ତୁ,— ଆପଣାର ପ୍ରଭୁକୁ ମଧ୍ୟ ତୁ ଚିହ୍ନି ପାରୁନାହୁଁ ? ତୋ'ର ଏହି ଦୁଷ୍କୃତ ସକାଶେ ତୋତେ ଆଜିଠାରୁ ମନୁଷ୍ୟର

ଆଜ୍ଞାବହ ହୋଇ ରହିବାକୁ ପଡ଼ିବ, ମଣିଷ ହିଁ ତୋ'ର ଏକମାତ୍ର ସହାୟ ହୋଇ ରହିବ !

"ପ୍ରଭୁଙ୍କର ଏହି ବାକ୍ୟଗୁଡ଼ିକ ଶୁଣିସାରିବା ପରେ କୁକୁରଟି ପ୍ରଥମେ ପଛ ଦୁଇଗୋଡ଼ ଉପରେ କିଛିସମୟ ପର୍ଯ୍ୟନ୍ତ ବସିରହିଲା ଏବଂ ତା'ପରେ ଦୁଇଗୋଡ଼ ଭିତରେ ଲାଙ୍ଗୁଡ଼ ଜାକିଧରି ସଂସାର ଭିତରକୁ ଆସିଲା ।

"ଉତ୍ସବରେ କେତେକେତେ ମଣିଷ ଯେ ଉପସ୍ଥିତ ଥିଲେ, ସେକଥା କେହି ସୁମାରି କରି କହି ପାରିବନାହିଁ । ଠିକ୍ ଘାସପଡ଼ିଆର ଘାସ ପରି ଅସୁମାରି !

"କେବଳ ଗୀର୍ଜାଘରଟି ଖାଲି ପଡ଼ିଥାଏ । ଲୋକମାନେ ଯାଇ ଦୋକାନମାନଙ୍କରେ ଭିଡ଼ି ହୋଇ ରହିଥାନ୍ତି । ଗୀର୍ଜାପାଖକୁ ଲାଗିକରି ଥିବା ମଠଭିତରେ ଯାତ୍ରା ବସିଥାଏ । ମଦପିଆ ହେଉଥାଏ, ସବୁ ପ୍ରକାରର ଭ୍ରଷ୍ଟା-ଚାରରେ ପ୍ରଭୁଙ୍କର ଆନନ୍ଦ ଦୂଷିତ ହୋଇ ରହିଥାଏ । ଏହିସବୁ ପାପ ଏବେମଧ୍ଯ କ'ଣ ହେଉନାହିଁ ?

"ପ୍ରଭୁ ସେଠାରେ ଯାଇ ପହଞ୍ଚିଲା ବେଳକୁ ପ୍ରାର୍ଥନା ଶେଷହୋଇ ଗଲାଣି । ଲୋକମାନେ ସଚେଅବା ଘରି ଖିତତ୍ରସ୍ତ ହୋଇପରି ଏଣେତେଣେ ଦଉଡ଼ିବାରେ ଲାଗିଚନ୍ତି । କିଏ ହାତରେ ପାଞ୍ଚଣଟାଏ ଧରି ସଜହେଉଚି, କିଏ ଟେକାପଥର ଗୋଟାଇ ହାତରେ ଧରୁଚି । ସ୍ତ୍ରୀଲୋକମାନେ ଆକୁଳ ସ୍ୱରରେ ଗାଡ଼ୀଭିତରକୁ ଗୁଳିଯାଇ ଲୁଚିବାକୁ ଚେଷ୍ଟା କରୁଚନ୍ତି, ପିଲାମାନେ ଭେଁ ଭେଁ ହୋଇ କାନ୍ଦୁଚନ୍ତି ।

"ସମସ୍ତେ ଚିତ୍କାର କରି କହୁଚନ୍ତି : 'ସାବଧାନ, ପାଗଳା କୁକୁର ଯାଉଚି, ସାବଧାନ !'

"ମଣିଷଭିଡ଼ ଭିତରେ ବାଟ ଚିରି କୁକୁର ଆଗକୁ ଯିବାରେ ଲାଗିଚି । ତା'ଲାଗି ସମସ୍ତେ ବାଟ ଛାଡ଼ି ଦେଉଚନ୍ତି ଏବଂ ଜିଭଟାକୁ ଲହଲହ କରି କୁକୁରଟା ପ୍ରଭୁଙ୍କ ଉଦ୍ଦେଶ୍ୟରେ ଯିବାରେ ଲାଗିଚି ।

"ପ୍ରଭୁଙ୍କର ମନରେ କୌଣସି ଭୟ ଜାତ ହେଉନଥାଏ । ସେ ଭଲକରି ଜାଣିଥାନ୍ତି ଯେ ଜଙ୍ଗଲର ସେହି କୁକୁରଟି ବର୍ତ୍ତମାନ ଏଠାରେ

ଆସି ପହଞ୍ଚିତ । ଆପଣାର ଅଙ୍ଗବସ୍ତ୍ର କାଢ଼ି ପ୍ରଭୁ ମାଟିଉପରକୁ ପକାଇଦେଲେ ଓ କୁକୁରଟି ସେଇଠି ଅଟକେ ଠିଆହୋଇ ରହିଲା । ପ୍ରଭୁ କହିଲେ, 'ଢୁରେକ, ଆ, ଏଠିକି ମୋ'ପାଖକୁ ଆ' ! ମୋ' ପାଖରେ ଥିଲାପର୍ଯ୍ୟନ୍ତ ତୁ ଜଙ୍ଗଲ ଅପେକ୍ଷା ଅଧିକ ନିରାପଦ ହୋଇ ରହିପାରିବୁ ।

"ଆପଣା ବସନଦେଇ ପ୍ରଭୁ କୁକୁରଟିକୁ ଘୋଡ଼ାଇଦେଲେ ଏବଂ ତା'ଉପରେ ଆପଣାର ହାତ ରଖି ଲୋକମାନଙ୍କୁ କହିଲେ : 'ଏହାକୁ ତୁମେମାନେ କେହି ମାରିବନାହିଁ । କାରଣ ଏହାକୁ ମଧ୍ଯ ଭଗବାନ ତିଆରି କରିଚନ୍ତି, ବିଚରା ଭୋକରେ ଇଏ ଏଣେତେଣେ ବୁଲୁଚି, ଏହାର ମାଲିକ କେହି ନାହାନ୍ତି ।'

"ଏହି ଦୃଶ୍ୟ ଦେଖି ସେଠାରେ ଉପସ୍ଥିତ ଥିବା କୃଷକମାନେ କହିଲେ: 'ଆଜିଯାଏ ଏହି କୁକୁର ବଣରେ ଥିଲା, ହିଂସ୍ର ଜନ୍ତୁ ପରି ଆଚରଣ କରୁଥିଲା । କେତେ ବତକ ଆଉ ମେଣ୍ଢାଛୁଆ ଧରି ଏହା ଜଙ୍ଗଲକୁ ପଳାଉଥିଲା, କେତେ-କେତେ ଦୁଷ୍କର୍ମ କରୁଥିଲା । ମଣିଷ ପ୍ରତି ଏହାର କୌଣସି ଭୟ ବା ସମ୍ମାନ ନଥିଲା । ଏହାର ଭୟରେ ହାତରେ ବାଡ଼ି ନଧରି ବାହାରକୁ ବାହାରିବା ଆଦୌ ସମ୍ଭବ ହେଉନଥିଲା । ତେଣୁ ଏହାକୁ ପ୍ରାଣରେ ନମାରି ଛାଡ଼ିଦେଲେ ଭାରି ବିପତ୍ତି ହେବ ।'

"କିନ୍ତୁ ପ୍ରଭୁ ସମସ୍ତଙ୍କୁ ସାବଧାନ କରିଦେଇ କହିଲେ, 'ହସିଆର, କେହିଯେପରି ପାଦେହେଲେ ଅଗ୍ରସର ନହୁଅନ୍ତି ! ତୁମେମାନେ ମଦ ପିଇଚ କି ? ଛାର କୁକୁରଟାକୁ ଏତେ ଭୟ କରୁଚ, ଅଥଚ ତୁମର ଭଗବାନ ପ୍ରଭୁଙ୍କ ପ୍ରତି ତୁମର ଏତେଟିକିଏ ଭୟ ହେଉନାହିଁ ?'

"ତାଙ୍କର ଅତ୍ୟନ୍ତ ଶକ୍ତିଶାଳୀ ବାକ୍ୟମାନ ଶୁଣି ଲୋକମାନେ ଶଙ୍କି ରହିଲେ । ସେଇଠୁ ପ୍ରଭୁ ସେମାନଙ୍କୁ ଭର୍ତ୍ସନା କରି କହିଲେ ଯେ ସେମାନେ ହେଉଚନ୍ତି ପାପୀ । ସେମାନଙ୍କ ଜୀବନରେ କୌଣସି ସଂଯମ ନାହିଁ । କେବଳ ମଦଘଟିରେ ବସି ସେମାନେ ମଦ ପିଇବାରେ ଲାଗିଚନ୍ତି, ଭଗ-ବାନଙ୍କର ଅବମାନନା କରୁଚନ୍ତି ଓ ତଥାପି ପଶ୍ଚାତ୍ତାପ କରୁନାହାନ୍ତି । କିନ୍ତୁ ତଥାପି ସେମାନେ ଭଗବାନଙ୍କର ବିଚାର ସମ୍ମୁଖରୁ କଦାପି ଉଦ୍ଧାର ପାଇ ପାରିବେନାହିଁ ।

''ଏତକ କହି ପ୍ରଭୁ ଆପଣାର ବାଡ଼ିଟି ଧରି ଯିବାକୁ ଯିବାକୁ ବସିଲେ।

''କିନ୍ତୁ ଇତ୍ୟବସରେ ଲୋକମାନେ ପ୍ରଭୁଙ୍କର ପରିଚୟ ପାଇ ତାଙ୍କର ସମ୍ମୁଖରେ ନତଜାନୁହୋଇ ବସି ବିକଳଭାବରେ ରୋଦନ କରିବାକୁ ଆରମ୍ଭ କଲେ ଓ କହିଲେ : 'ହେ ପ୍ରଭୁ ଯୀଶୁ, ତୁମେ ଆମକୁ ଛାଡି ଚାଲିଯାଅନାହିଁ, ଆମକୁ ପ୍ରସନ୍ନ ହୁଅ ! ଆମେ ମଦ୍ୟପ, ଆମେ ପାପୀ, ଆମେ ପଥଭ୍ରଷ୍ଟ ! — ଆମେ ଅବଶ୍ୟ ତୁମପ୍ରତି ବିଶ୍ୱସ୍ତ ରହିବୁ । ତୁମେ ଆମକୁ ଛାଡ଼ି ଚାଲିଯାଅନାହିଁ । ଆମକୁ ଦଣ୍ଡଦିଅ ପଛେ, ଆମଉପରେ ପ୍ରହାରକର ପଛେ, କିନ୍ତୁ ଆମକୁ ଛାଡ଼ି ଚାଲିଯାଅ ନାହିଁ । ତୁମବିନା ଆମେ ଅନାଥ ହୋଇରହିବୁ, ପ୍ରଭୁହୀନ ହୋଇ ରହିବୁ ।'— ଯୀଶୁଙ୍କର ପବିତ୍ର ହସ୍ତ ଓ ପାଦକୁ ବାରବାର ଚୁମ୍ବନ କରି ସେମାନେ ଏହିପରି ଘୋର ଅନୁନୟ କରିବାରୁ ପ୍ରଭୁଙ୍କର ହୃଦୟ କରୁଣାରେ ବିଗଳିତ ହୋଇ ପଡ଼ିଲା ଏବଂ ସେ ସେଠାରେ କିଛିକାଳ ଅବସ୍ଥାନ କଲେ, ସେମାନଙ୍କୁ ଉପଦେଶ ପ୍ରଦାନ କଲେ ଓ ଆଶୀର୍ବାଦ ଦେଲେ ।

''ଏବଂ ଗଲାବେଳେ ସେମାନଙ୍କୁ କହିକରି ଗଲେ,— 'ଏହି କୁକୁରଟି କ'ଣ ତୁମର କୌଣସି ଅନିଷ୍ଟ କରିଚି ? ଆଜିଠାରୁ ଏ ତୁମମାନଙ୍କର ବୋଲି ମାନିବ, ବିଡ଼ାଳ ଓ ମେଣ୍ଢାପଲ ଜଗିବ,— ପୁଣି ଅତ୍ୟଧିକ ମଦ ପିଇ ତୁମମାନଙ୍କ ଭିତରୁ କେହି ଶୋଇପଡ଼ିଲେ ଏହି କୁକୁର ଜଗୁଆଳି ହୋଇ ତୁମର ଘରକୁ ଜଗିବ ଓ ତୁମର ବନ୍ଧୁ ହୋଇ ରହିବ ।

''ଏହାପ୍ରତି ତୁମେମାନେ ସର୍ବଦା ସଦୟ ବ୍ୟବହାର କରିବ, ଏହା-ଉପରେ କୌଣସି ଅତ୍ୟାଚାର କରିବ ନାହିଁ ।'

''ଏହିପରି କହି ପ୍ରଭୁ ଯୀଶୁ ସେଠାରୁ ପ୍ରସ୍ଥାନ କଲେ । ଆପଣା ପାଖରେ କୁକୁରଟିକୁ ବସିଥିବାର ଦେଖି ସେ କହିଲେ,— 'ଟୁରେକ୍, ତୁ ମୋ'ସାଙ୍ଗରେ ଯିବୁ ନା ଏଠି ରହିବୁ ?'

''କୁକୁରଟି ଆପଣାର ବସିବାଥାନରୁ ଉଠି ଠିଆହେଲା ଓ ସେହିଦିନ-ଠାରୁ ସେ ସର୍ବଦା ପ୍ରଭୁଙ୍କର ଅନୁସରଣ କରିବାକୁ ଲାଗିଲା, ଠିକ୍ ଜଣେ ଅନୁଗତ ଭୃତ୍ୟପରି ଯୀଶୁଙ୍କର ବିଶ୍ୱାସଭାଜନ ହୋଇ ରହିଲା । ଏବଂ ସେହିଦିନଠାରୁ ସେ ଦୁହେଁ ଯୁଆଡ଼େ ଗଲେ ସାଙ୍ଗହୋଇ ଗଲେ ।

"ଯଦି କୌଣସି ଦେଶରେ କେତେବେଳେ ଦୁର୍ଭିକ୍ଷ ପଡୁଥିଲା, ତେବେ କୁକୁର ଦନ୍ତଦ୍ୱାରା ଗୋଟାଏ ଚଢ଼େଇ ବା ମେଣ୍ଢାଛୁଆ ଧରି ଆଣୁଥିଲା ଓ ଯେଉଁଥିରେ ଦୁହିଁଙ୍କର ବେଶ୍ ଚଳିଯାଉଥିଲା ।

"ଯେବେଳେବେଳେ ପ୍ରଭୁ ପଥକ୍ଲାନ୍ତ ହୋଇ ଶୋଇପଡ଼ିଲେ ବ୍ରୁରେକ୍ ସେଠାରେ ପହରା ଦେଉଥିଲା, ଦୁଷ୍ଟଲୋକ ଓ ବଣଜନ୍ତୁମାନଙ୍କୁ ଘଉଡ଼ାଇ ରଖୁଥିଲା ।

"କିନ୍ତୁ ଯେତେବେଳେ ଖଳ ଇହୁଦୀ ଓ ନିଷ୍ଠୁର ପଣ୍ଡିତମାନେ ପ୍ରଭୁଙ୍କର ପ୍ରାଣନାଶ କରିବାପାଇଁ ତାଙ୍କୁ ବନ୍ଦୀ କରି ଆଣିଲେ, ସେତେବେଳେ ମଧ୍ୟ ଏହି କୁକୁରଟି ସେମାନଙ୍କୁ କାମୁଡ଼ିବାକୁ ଗୋଡ଼ାଇଥିଲା ଏବଂ ଆପଣାର ସମସ୍ତ ଶକ୍ତିଦେଇ ପ୍ରଭୁଙ୍କୁ ରକ୍ଷା କରିବାକୁ ଚେଷ୍ଟା କରିଥିଲା ।

"କିନ୍ତୁ ପ୍ରଭୁ କୁକୁରଟିକୁ ଉଦ୍ଦେଶ୍ୟ କରି କହିଲେ, 'ବର୍ତ୍ତମାନ ତୁ ମୋର କୌଣସି ସାହାଯ୍ୟ କରି ପାରିବୁନାହିଁ । ତୋ'ର ଦାନ୍ତ ଅପେକ୍ଷା ସେମାନଙ୍କର ଆପଣା ବିବେକ ହିଁ ପରିଶେଷରେ ସେମାନଙ୍କୁ ଅଧିକ ଗଭୀରହୋଇ ବିଦ୍ଧ କରିବ ।'

"ପୁଣି ସେମାନେ ଯେତେବେଳେ ପ୍ରଭୁଙ୍କୁ ନେଇ କ୍ରୁଶବିଦ୍ଧ କଲେ ଓ ତାଙ୍କୁ ହତ୍ୟାକଲେ, ସେତେବେଳେ ମଧ୍ୟ ଏହି କୁକୁର ସେଠାରେ ବସିରହି ଭେଁ'ଭେଁ' ହୋଇ ଭୁକୁଥିଲା ।

"ପରଦିନ ସେଠାରୁ ସମସ୍ତେ ଚାଲିଯିବା ପରେ, ଯେତେବେଳେ ପ୍ରଭୁଙ୍କର ମାଆ ଓ ପବିତ୍ର ଶିଷ୍ୟବର୍ଗ ମଧ୍ୟ ସେଠାରେ ନଥିଲେ, କେବଳ ଏହି ବ୍ରୁରେକ୍ ହିଁ ସେଠାରେ ଏକାକୀ ବସିରହିଥିଲା ଏବଂ ପ୍ରଭୁଙ୍କର କଣ୍ଟକବିଦ୍ଧ ପବିତ୍ର ପାଦଦୁଇଟିକୁ ଚାଟିବାରେ ଲାଗିଥିଲା । ଏବଂ ବଡ଼ ବିକଳଭାବରେ ଅବିରତ ଖାଲି ବାହୁନିବାରେ ଲାଗିଥିଲା ।

"ତିନିଦିନ ଗତ ହୋଇଯିବା ପରେ ଯୀଶୁ କବରରୁ ଉଠିବାପରି ଉଠି ଚାରିଆଡ଼କୁ ଅନାଇଲେ, କ୍ରୁଶ ପାଖରେ ସେ କେବଳ ବ୍ରୁରେକକୁ ଛାଡ଼ି-ଦେଲେ ଆଉ କାହାରକୁ ଦେଖିବାକୁ ପାଇଲେ ନାହିଁ ।

"ଏଥିରେ ଅତଣସ୍ତ ପ୍ରୀତ ହୋଇ ଆମର ପରମ ପବିତ୍ର ଭଗବାନ ଯୀଶୁଖ୍ରୀଷ୍ଟ କରୁଣାପୂର୍ଣ୍ଣ ନୟନରେ କୁକୁରଟି ଆଡ଼କୁ ଅନାଇ ରହିଲେ ଓ ଆପଣାର ଶେଷ ନିଶ୍ୱାସ ତ୍ୟାଗ କରୁକରୁ କହିଲେ,— 'ଆ' ବୁରେକ୍ , ତୁ ମୋ' ସାଙ୍ଗରେ ଫିରୁ ଆ !'

"ଠିକ୍ ସେହି ମୁହୂର୍ତ୍ତିରେ ମଧ୍ୟ କୁକୁରଟାର ପିଣ୍ଡରୁ ପ୍ରାଣ ବାହାରି-ଗଲା ଓ ସେ ପ୍ରଭୁଙ୍କର ଅନୁଗମନ କଲା । ଆମେନ୍ !

"ମୁଁ ଯେପରି ଭାବରେ ଏହିସବୁ କଥା କହିଲି, ଘଟଣାଗୁଡ଼ିକ ଅବିକଳ ସେହିପରି ଭାବରେ ଘଟିଥିଲା"— ଭାବ ଗଦ୍‌ଗଦ୍ ହୋଇପରି ଗ୍ରେକ୍ କାହାଣୀଟିକୁ ଶେଷକରି କହିଲା ଏବଂ ଶୂନ୍ୟରେ କ୍ରୁସଚିହ୍ନ ଅଙ୍କିତ କରି ସେ ଆରଘରକୁ ବାହାରିଗଲା । ସେଠି ତା'ର ଶୋଇବାଲାଗି ହାଙ୍କା ବିଛଣା ପାରିଦେଇଥିଲି । ଦିନସାରା ବୁଲିବୁଲି ହାଲିଆ ହୋଇ ପଡ଼ିଥିବାରୁ ସେ ସେଇଠି ଯାଇ ଶୋଇପଡ଼ିଲା ।

କିଛିସମୟ ପାଇଁ ଘରେ ସମସ୍ତେ ନୀରବ ସ୍ତମ୍ଭିତ ହୋଇ ରହିଲେ । ଏହି ଅଦ୍ଭୁତ କଳ୍ପନାତୀତ କାହାଣୀଟି ବିଷୟରେ ସମସ୍ତେ ଭାବିବାରେ ଲାଗିଥାନ୍ତି । ସ୍ୱର୍ଣ୍ଣଲତା, ସ୍ନେହଲତା ଓ ଆଉ କେତେଜଣ ଝିଅ ଏକାନ୍ତରେ ଆଖିରୁ ଲୁହ ପୋଛି ଦେଉଥାନ୍ତି । ପ୍ରଭୁ ଯୀଶୁଙ୍କର ନିଧନ ଓ ସେଥିରେ ଗ୍ରୀର କୁକୁର ବୁରେକ୍ ଅଭିନୟ କରିଥିବା ଭୂମିକାର କାହାଣୀ ଶ୍ରବଣ କରି ସେମାନେ ପ୍ରକୃତରେ ବଡ଼ ଅଧୀର ହୋଇ ପଡ଼ିଥାନ୍ତି । ସ୍ୱର୍ଣ୍ଣଲତାଙ୍କ ମଧ୍ୟ କାନକୁ ଡେରି ଏକଧ୍ୟାନରେ ଏହିସବୁ କଥା ଶୁଣୁଥିଲି ଫକୀର ଗ୍ରୀକ୍‌ଟି ଚାଲିଯିବା ପରେ ସେ ମୁଣ୍ଡଟାକୁ ଉପରକୁ ଟେକି ନାକଟାକୁ ବଙ୍କାଇ କହିବାକୁ ଲାଗିଲା :

"ଏମିତି ମନଗଢ଼ା କଥା ମୁଁ ଗଣ୍ଡାଗଣ୍ଡା ଶୁଣିଚି ! ତୁମମାନଙ୍କର ଯଦି କଥା ଶୁଣି ମନବୋଧ ହୋଇନାହିଁ, ତେବେ ମୋ'ଠାରୁ ତା' ଅପେକ୍ଷା ଆହୁରି ବଢ଼ିଆ ଗୋଟାଏ କଥା ଶୁଣିବ ଆସ !"

—କହି ସେ ତା'ର କାହାଣୀ କହିବା ଆରମ୍ଭ କରିଦେଲା ଓ ଖିକିଖିକି କରି ହସିବାକୁ ଲାଗିଲା । ତା'ର କାହାଣୀ ଶୁଣୁଥିବା ଆଉମାନେ

ମଧ୍ୟ ହସିବାରେ ଲାଗିଥାନ୍ତି । କେତେ ପ୍ରକାର ଥଟ୍ଟା ତାମସା ଓ ରଙ୍ଗ ରହସ୍ୟରେ ଘର ଟାୟାକ ଫାଟି ପଡୁଥାଏ ।

କାମ ସାରି ସେମାନେ ଆପଣା ଆପଣାର ଘରକୁ ଯିବେ ବୋଲି ବାହାରୁଛନ୍ତି । ଏହି ସମୟରେ ମୋହରିରଙ୍କ ସାଙ୍ଗରେ ଧରି ପଧାନେ ଆସି ସେଠାରେ ପହଞ୍ଚିଲେ । ସେ ଆଦେଶ ଦେଲେ ଯେ କାଲି ଚାଷୀମାନେ ଏକାଠି ମିଶି ପେଷାଘର ବାଟ ଦେଇ ଯାଇଥିବା ରାସ୍ତାଟିକୁ ମରାମତି କରିବାକୁ ଯିବେ । ଏତେଦିନ୍ଧରିଏ ପାଣି ବରଷିବା ଫଳରେ ରାସ୍ତାଟା ଏକାବେଳକେ ଭାଙ୍ଗିଭୁଙ୍ଗି ଯାଇଛି । ଘର ଭିତରକୁ ପଶି ଆସି ପଧାନେ ପାଟିଟାଏ କରି କହିଲେ :

"ବୁଢ଼ା ଆଜି ଗାଆଁ ଯାକର ସବୁ ସୁନ୍ଦରୀ ଝିଅଙ୍କୁ ଏଠିକି ଡାକି ଆଣିଥିବା ପରି ମନେହେଉଛି !"

ବୋରିନା ସହିତ ପଧାନେ କ'ଣ ସବୁ ବ୍ୟକ୍ତିଗତ କଥାବାର୍ତ୍ତା ମଧ୍ୟ ହେଲେ । କିନ୍ତୁ ସେମାନଙ୍କର କହିବା କଥା ଆଉ କେହି ଶୁଣି ପାରିଲେ ନାହିଁ । ଝିଅମାନଙ୍କୁ ଦୁ'ପଦ ଟାପରା କରି ଦେଇ ସେ ତତ୍‌କ୍ଷଣାତ୍ ସେଠାରୁ ଚାଲିଗଲେ । ପଧାନେ ଯିବାପରେ ଅନ୍ୟମାନେ ମଧ୍ୟ ଯେଝା ଯେଝା ଘରକୁ ପ୍ରସ୍ଥାନ କଲେ ।

ବୋରିନା ଜଣ ଜଣ କରି ସମସ୍ତଙ୍କୁ ବିଦାୟ ଦେଲା, ବସ୍ତୁସ୍ଥାମାନଙ୍କୁ ଫାଟକଯାଏ ପାଛୋଟି ଦେଇ ଆସିଲା ।

ଗଲାବେଳେ ସ୍ମଗ୍ଲିଙ୍କା ତୁଣ୍ଡ ବଜାଇ କହିଲା :

"ଆଜିକାର ଆନନ୍ଦ ସଭାରେ ଭଗବାନ ତୁମର ମଙ୍ଗଳ କରିଥାନ୍ତୁ । କିନ୍ତୁ ଯେତେ ମଜା ହେବାର ଉଚିତ ଥିଲା, ସେତେଦୂର ହୋଇ ପାରିଲା ନାହିଁ ।"

"ସତେ ?"

"ମାଥିଆସ୍, ଘରକୁ ଘରଣୀ ନ ଥିଲେ କୋଉ କଥା ଘଟଣ କରି ହୋଇ ପାରେ ନାହିଁ । ତୁମେ ଚଞ୍ଚଳ ଘରକୁ ଗୋଟିଏ ଘରଣୀ ଆଣ !"

"ମୁଁ ଆଉ କ'ଣ କରିବ, ମୋର ଆଉ କ'ଣ କର୍ତ୍ତବ୍ୟ ଅଛି ? ·· ଯେ ତ ମରିଗଲା, ତାକୁ ଭଗବାନ ମୋ' ପାଖରୁ ଛଡ଼ାଇ ନେଲେ···"

"ଆଉ କ'ଣ ଗାଆଁ ଗୋଟାକରେ ଝିଅ ନାହାନ୍ତି ? ତୁମର ଇସାରା ପାଇଁ କେତେ ଝିଅ ବାଟ ଗୁହିଁ ବସିଥିବେ !"—ତା' ମୁହଁରୁ କଥା ବାହାର କରିବା ପାଇଁ ସ୍ୱର୍ଣ୍ଣକାଙ୍କା ଭାରି ଚତୁର ଭାବରେ ଏହି କଥା କହିଲା । କିନ୍ତୁ ବୋରିନା କେବଳ ଆଙ୍ଗୁଠି ଅଗରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ମୁରୁକି ମୁରୁକି ହସିବାକୁ ଲାଗିଲା ଏବଂ ଘରୁ ବାହାର ଚାଲିଯାଉଥିବା ଯ୍ୱଗ୍‌ନା ଆଡ଼କୁ ଉତ୍ତେଜିତ ଦୃଷ୍ଟିରେ ଅନାଇ ରହିଲା ।

ଯ୍ୱଗ୍‌ନା କେତେବେଳେ ବାହାରିବ, ସେଇଥିପାଇଁ ଆନ୍ତେକ୍ ଟାଙ୍କି କରି ରହିଥିଲା । ବର୍ତ୍ତମାନ ସେ ଝିଅଟି ପୋଷାକ ପିନ୍ଧି ଆଗ ବାହାରକୁ ବାହାରିଗଲା ।

ଯ୍ୱଗ୍‌ନାକୁ ଏକାକୀ ଘରଯାଏ ଫିରିବାକୁ ପଡ଼ିବ । ଅନ୍ୟ ଝିଅମାନେ ଆଗରୁ ଯାଇ ଆସିଥିଲେ ।

"ଯ୍ୱଗ୍‌ନା !" - ବାଡ଼ ଭିତରୁ ବାହାରି ପଡ଼ି ଆନ୍ତେକ୍ ଡାକିଲା ।

ଆନ୍ତେକ୍‌ର ଠିକ୍ ବାଗପାଖ ଯ୍ୱଗ୍‌ନା ଠିଆ ହୋଇଗଲା ଏବଂ ତା'ର ଭିତରେ ଏକ ପ୍ରବଳ ଭାବର ଉଦ୍ରେକ ହେବାକୁ ଲାଗିଲା । ସେ ଆପଣାକୁ ସଂଯତ କରି ରଖି ପାରିଲା ନାହିଁ ।

"ଯ୍ୱଗ୍‌ନା, ଚାଲ ମୁଁ ତୋତେ ଘରଠି ଛାଡ଼ିଦେଇ ଆସିବ ।"—ଆନ୍ତେକ୍ ଡରିକି ଡରିକି ଚାରିଆଡ଼କୁ ଅନାଇଲା । ଚାରିଆଡ଼ ଅନ୍ଧାର କଟିକଟି, ଆକାଶରେ ଗୋଟିଏ ତୋରା ବି ଦିଶୁ ନାହିଁ । ଉପରେ ପବନ ସାଇଁ ସାଇଁ ଗର୍ଜନ କରିବାରେ ଲାଗିଛି । ଗଛର ଅଗଗୁଡ଼ାକୁ ଦୋହଲାଇ ଦେଉଛି ।

ଯ୍ୱଗ୍‌ନାର ଅଣ୍ଟା ଚାରିପାଖରେ ଆନ୍ତେକ ହାତ ବେଢ଼ାଇ ଦେଇ ତାକୁ ପାଖକୁ ଟାଣି ଆଣିଲା । ଦୁହେଁଯାକ ଯେତେ ଅବା ଗୋଟିଏ ଶରୀର ହୋଇ-ଗଲା ପରି ଅନ୍ଧାର ଭିତରେ ଅନ୍ତର୍ହିତ ହୋଇଗଲେ ।

# ଆଠ

ତହିଁ ଆରଦିନ ଲପ୍‌କା ଗାଆଁରେ ବ୍ୟକ୍ତ ହୋଇଗଲା ଯେ ବୋଉନା ଆଉ ସୁଗନାଙ୍କଭିତରେ ବିବାହସମ୍ବନ୍ଧ ସ୍ଥିର ହୋଇଯାଇଛି ।

ନକେ ପଧାନେ ସୁଗନାପାଖକୁ ବିବାହର ପ୍ରସ୍ତାବ ନେଇ ଯାଇଥିଲେ । ସବୁକଥା ପକ୍‌କାକରି ଘରକୁ ଫେରିଆସିବା ପର୍ଯ୍ୟନ୍ତ ଏହି ପ୍ରସ୍ତାବଟି ବିଷୟରେ କାହାରି ଆଗରେ କିଛି ନକହିବାଲାଗି ସେ ତାଙ୍କ ଗୃହିଣୀକୁ ତାଗିଦା କରିଦେଇ ଯାଇଥିଲେ । ପଡ଼ଶାଘରୁ ପୋଷେ ଲୁଣ ମାଗିଯିବା ବାହାନାରେ ବାହାରକୁ ବାହାରିବେ ବୋଲି ତଥାପି ତାଗିଦା ମାନି ଗୃହିଣୀ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କଲେ । ଶେଷକୁ ସମ୍ଭାଳି ନପାରି ଆପଣାର ଜଣେ ପରିଚିତ ସହୀର କାନରେ ଫୁସ୍‌ଫୁସ୍‌ କରି କହିଲେ :

"ଜାଣିଚୁ ଲୋ ସହୀ ? ବୋଉନା ଆଜ ତୋମିନକଟ୍ଟର ଝିଅ ସୁଗନା ପାଖକୁ ଚଟୋଉ ପଠାଇଚି । କିନ୍ତୁ ତୋତେ ମୋ'ରାଣ, ଏକଥା ଯେପରି କାନରୁ ଦି'କାନ ନହୁଏ । ମୋ' ଗେରସ୍ତ ପରା ମତେ ଏକଥାଟିକୁ ଗୁପ୍ତ ରଖିବାକୁ ତାଗିଦା କରି ଯାଇଚନ୍ତି !"

"କେବେ ନୁହେଁ ।"— ପଡ଼ଶାର ସହୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ । "ମୋ'ର ଜିଭ କଦାପି ଏକଥା ଆଉ କାହା ଆଗରେ କହିବାକୁ ଉଗଉଗ ହେବନାହିଁ । କିନ୍ତୁ ସେ ତ ଆସି ବୁଢ଼ା ହେଲଣି, ଦୁଇଟା ଘଷି ଖାଇ ମନବୋଧ ହୋଇନାହିଁ ଯେ ପୁଣି ଆଉଗୋଟାଏ ନେବାକୁ ବାହାରିଚି ? ଆଉ ତା'ର ପିଲାମାନେ ଏଥିରେ ତାକୁ କ'ଣ କହିବେ କହିଲ ?— ଏ ସଂସାରଟା ପୁଣି ଏତିକି ବଡ଼ମଣ ହେଲା ?"

ମୁଣ୍ଡଉପରକୁ ଝାଡ଼ଣଟାକୁ ଉଠାଇଦେଇ ପଧାନଘରଣୀ ହେଉ ଗୋଡ଼ କାଟି ଯାଇଚି କି ନ ଯାଇଚି, ସେ ତରବର କରି ବାଉଡ଼ିଦେଇ କ୍ଳେମ୍ବାଙ୍କ ଘରକୁ ଦଉଡ଼ିଗଲା, 'କେବଳ ଛୁଞ୍ଚିକନାଟା ମାଗିବାଲାଗି ଗଲା ।'

'ଶୁଣିଲଣି ଗୋ ! ବୋଉନା ପୁଣି ଡୋମନକଙ୍କର ଝିଅ ସୁଗନାକୁ ବାହାହେବାକୁ ଯାଉଚି ! ସେ କୁଆଡ଼େ ଆଜି ବିବାହର ପ୍ରସ୍ତାବ ସହିତ ତା'ଘରକୁ ମଣିଷ ପଠାଇଚି !''

''ଅସମ୍ଭବ କଥା । ତୁମକୁ ଭାରି ଲଗାଇକରି କହିଆସେ । ତା'ର ଏଡ଼େଏଡ଼େ ପିଲା,—ଏଣେ ବୟସ ପିବାକୁ ବସିଲାଣି !—''

''ଆଗୋ, ବୟସ ପିନା ନାହିଁ, କିନ୍ତୁ ସେଥିପାଇଁ କ'ଣ ସେମାନେ ନାହିଁ କରି ପଠାଇବେ ?... ଏଡ଼େ ବଡ଼ ଗୃହସ୍ଥୀ, ଘରଆଡ଼େ ନାଆଁ ଡାକ,—ହାତରେ ସମ୍ପତ୍ତି ରହିଚି !''

''କିନ୍ତୁ ବିଚାରି ସୁଗନା ! ତା'ର ତ କେତେଜଣଙ୍କ ସାଙ୍ଗରେ ଖିଅ ଲଗିଚି ଲେ ! ସେ ପୁଣି ଏ' ଗାଆଁର ସବୁଠାରୁ ବଡ଼ ଗୃହୀର ଘରକୁ ଘରଣୀ ହୋଇପିବ ? ସଂସାରରୁ କ'ଣ ନ୍ୟାୟଧର୍ମ କୁଆଡ଼େ ଗୁଡ଼ି ପଳାଇ ଲଣି ? କେତେକେତେ ଝିଅ ଆଜିଯାଏ ବାଢ଼ୁଅ ରହିଚନ୍ତି ନା ସେ ଏକା ?''

''ମୋ' ମନକୁ ବି ଏହି ପ୍ରସ୍ତାବଟା ଜମାରୁ ପାଉନାହିଁ । ତୁମେ କ'ଣ କହୁଚ ?''

''ପିଏତ ଏଣିକି କେତେ ଫୁଲିବ ଲେ ! ମୟୂରପରି କେତେ ଫକ-ଫକ ହୋଇ ବୁଲିବ !''

''କିନ୍ତୁ ଏଇଟା ଭାରି ଅଧର୍ମ ହେବ ଏକା ! ମୋ' କଥା ମନେ ରଖିଥାଆ ଯେ କମାରପୁଅ ବା ବୋଉନାର ପିଲମାନେ କେବେହେଲେ ତାହାକୁ ସାବତମାଆ ବୋଲି ଆଦରିବେ ନାହିଁ ।

''କିନ୍ତୁ ନ ଆଦରି ଆଉ କି ଗତି ଅଛି କହିଲୁ ? ସବୁ ଜମି ତ ତାହାର ହାତରେ ରହିଚି । ତେଣୁ ସେ ଯାହା ଇଚ୍ଛା କରିବ ତାହାହିଁ ହେବ !''

''ଆଲୋ, ଖାଲି ଆଇନ୍‌ରେ ସିନା ଜମିଗୁଡ଼ାକ ତା'ର, କିନ୍ତୁ ନ୍ୟାୟ କରି ବସିଲେ ତ ସେ ଜମିରେ ସମସ୍ତଙ୍କର ଭାଗ ରହିଚି ।''

''ନ୍ୟାୟ ପୁଣି ଗୋଟାଏ କ'ଣ ? ନ୍ୟାୟ କିଣିବାକୁ ଯାହାପାଖରେ ଧନ ଅଛି, ନ୍ୟାୟ ତ ତାହାର !''

ଏହିପରି ଭାବରେ ସେମାନଙ୍କର କଥାବାର୍ତ୍ତା ଗଡ଼ିଚାଲିଥାଏ । ମନ୍ଦ ସଂସାରର ଯାବତୀୟ ମନ୍ଦଜାତିକୁ ଉଦ୍ଦେଶ୍ୟକରି ସେମାନେ କେତେ ଅଭିଯୋଗ କରୁଥାନ୍ତି, କେତେ ଗାଳି ଦେଉଥାନ୍ତି । ଏହିପରି ଘଣ୍ଟାକପରେ ସେମାନେ ଆପଣା ଆପଣା ଧନ୍ଦାରେ ଚାଲିଗଲେ ଓ ସେହିମାନଙ୍କ ସହାୟତାରେ ସଂବାଦଟି ମଧ୍ୟ ଗାଆଁ ସାରା ବ୍ୟାପ୍ତ ହୋଇଗଲା ।

ବର୍ତ୍ତମାନ ଏବେ କୋଉ କାମ ମୁଣ୍ଡଉପରେ ମଣ୍ଡପକ୍ତୁ ଚ, ବୃଷ୍ଟାଘାଟ ମଧ୍ୟ ଦଣ୍ଡଲରେ ପୂରି ରହିଚ, ତେଣୁ ଗାଆଁର ଅଧିକାଂଶ ଲୋକ ଆପଣାର ଘରେ ହିଁ ଅଛନ୍ତି । ତେଣୁ ଘଣ୍ଟାକଭିତରେ ଏହି ସମ୍ଭାବ୍ୟ ଖବାହକଟି ପ୍ରତ୍ୟେକ ଘରର ଚର୍ଚ୍ଚାବସ୍ତୁରେ ପରିଣତ ହୋଇଗଲା । ପ୍ରକୃତ ଘଟଣାରେ କ'ଣ ଘଟିବ, ଏହା ଜାଣିବାଲାଗି ସମସ୍ତେ ଝାଙ୍କକରି ରହିଥାନ୍ତି । ବୋଉନା ଯେଉଁ ଏକ ବାଗିଆ ମଣିଷ ସେକଥା ବା କାହାକୁ ଅଛପା ରହିଚ ? ଥରେ— ସେ ଯେଉଁ କଥା ଠିକ୍ କରିଥାଏ, ସେଥିରୁ ସେ କଦାପି ହିଁପେହେଲେ ହଟିବନାହିଁ । ପାଦ୍ରୀ ଆସନ୍ତୁ ଆଉଜିଏ ଆସନ୍ତୁ, ସେ କାହାରି କଥା ଶୁଣିବନାହିଁ । ଆନ୍ଦ୍ରେକ୍‌ର ଜିଦ୍ ମଧ୍ୟ ବାପର ଜିଦ୍ ତୁଳନାରେ କୌଣସି ଗୁଣରେ ଊଣା ନୁହେଁ ।

ସେଦିନ ଦି'ପହରଯାକ ଗାଆଁରେ ସମସ୍ତେ ଏହି ବିଷୟରେ ନାନାପ୍ରକାରେ ଟୁପ୍‌ଟାପ ହେବାକୁ ଲାଗିଲେ । କିନ୍ତୁ ବୋଉନାର ପିଲାମାନଙ୍କ କାନରେ ନେଇ ଏହି ସମ୍ବାଦଟିକୁ ପହଞ୍ଚାଇବାକୁ କାହାରି ସାହସ ହେଲାନାହିଁ । ଏକଥା କହିଲାମାତ୍ରକେ ବୋଉନାର ଘରେ ଏପରି କନ୍ଦଲ ଆରମ୍ଭ ହୋଇଯିବ ଯେ କହିଲାଲୋକର ପିଠିରେ ମାଡ଼ ବସିବା ବ୍ୟତୀତ ଆଉ ଅନ୍ୟଗତି ନଥିବ ।

ତେଣୁ ବୋଉନାଘରେ ସବୁ ସେହିପରି ଥିର ହୋଇ ରହିଥିଲା । ଅନ୍ୟ ସାଧାରଣ ଦିନ ଅପେକ୍ଷା ଆଜି ଅଧିକ ଥିର ଥିଲାପରି ମନେ ହେଉଥିଲା । ସକାଳୁ ବରଷା ଛାଡ଼ିଯାଇଚ, ଆକାଶ ପରିଷ୍କାର ଅଛି । ସକାଳ ଜଳଖିଆ ଖିଆସରିବା ପରେ ଆନ୍ଦ୍ରେକ୍ ଲୁବା ଓ ଘରର ସ୍ତ୍ରୀଲୋକମାନଙ୍କୁ ସାଙ୍ଗରେ

ନେଇ ଶୁଖିଲକାଠ ଆଣିବାକୁ ଜଙ୍ଗଲକୁ ଯାଉଛି । ଶୁଖିଲକାଠ ସହିତ କଞ୍ଚା ପିଜୁଳି ଗୋଟାଇ ମଧ୍ୟ ଆଣିବାକୁ ହେବ ।

ବୋଉନା ସକାଳ ପହରୁ ଘରେ ଅଛି, କୁଆଡ଼େ ଯାଇନାହିଁ । ଆଜି ସକାଳୁ ତାକୁ କାହିଁକି ସବୁକଥା ଖାଲି ଚଡ଼ଚଡ଼ ଲାଗୁଛି, ତାକୁ କାବୁ କରି ବସିଥିବା ଅଧୀରତା ଓ କାତରତାରେ ସହାୟ ହେବାକୁ ସତେଯେପରି ସେ ଆଉଜଣେ କାହାର ଆଶ୍ରା ଖୋଜିବାରେ ଲାଗିଛି । ଗୋରୁ ଗୁହାଳରେ କୁଣ୍ଡା ପକାଇଲାନାହିଁ ବୋଲି ସେ ଭିକେଇକୁ ପରସ୍ତେ ମାଡ଼ ମାରି ସାରିଲାଣି । ରାତିସାରା ଗୋରୁଗୁଡ଼ାଙ୍କୁ ସେଇ ଗୋବର ଉପରେ ଶୋଇବାକୁ ପଡ଼ୁଛି, ଏକଥା ଏବେ ସେ ସହିପାରନ୍ତା କିପରି ? ହଁ, ସେ ଆକ୍ଷେପ୍ ସହିତ ମଧ୍ୟ କଳିଆ କରିଛି; ହାଙ୍କାକୁ ଗାଳିଦେଇଛି । ଦାଣ୍ଡରେ ତା'ର ଛୁଆଁପୁଅଟା ଯାଇ କାଦୁଅରେ ବାଟୁବାଟୁ ହେଉଥିଲା, ଏକଥା କ'ଣ ମାଆର ଦେଖିବା କଥା ନୁହେଁ ? ସୁଜଳା ମଧ୍ୟ ଆଜି ବୋଉନାଠାରୁ ବେଶ୍ କେତେପଦ କର୍କଶ କଥା ଶୁଣିବାକୁ ପାଇଛି ।

ବଡ଼ ଆଶ୍ୱସ୍ତଭାବରେ ଆଜି ବୋଉନା କେବଳ ଏପାଖ ସେପାଖ ହେବାରେ ଲାଗିଛି । ଆଜି ତା'ର ମନ କୋଉଥିରେ ହେଲେ ଲାଗୁନାହିଁ । କେତେବେଳେ ସେ ଝରକାବାଟେ ବାହାରକୁ ଅନାଉଛି, ପୋଖରୀ ସେ ପାଖରେ ଥିବା ସୁରେନ୍ଦ୍ରନାଙ୍କ ଘରଆଡ଼େ ଅନାଇ ଦେଖୁଛି; ଏବଂ ଠିକ୍ କୌଣସି ଭିକାରୀ ଭିକପାଇଁ ଅପେକ୍ଷା କରି ରହିଥିବା ପରି ସେ ଗାଡ଼ି ପାଇଁ ଅପେକ୍ଷା କରି ରହିଛି ।

ସେ କେତେଥର ଭାବିସାରିଲାଣି ଯେ ତତ୍‌କ୍ଷଣାତ୍ ପଧାନଘରକୁ ଦଉଡ଼ିଯାଇ ତାଙ୍କୁ ସବୁକଥା ଟିକିଏ ଧିଅସି ଧିଅସି କରିବାକୁ କହିଦେଇ ଆସିବ । କିନ୍ତୁ ସେ ବାଧହୋଇ ଆଜି ଏହି ଘରଟା ଭିତରେ ବନ୍ଦହୋଇ ରହିଛି, ସୁବୁଦ୍ଧିଙ୍କର ଆଖିକୁ ଅନାଇ ଯେ ଆପଣାକୁ ସଂଯତ କରି ରଖୁଛି । ସୁବୁଦ୍ଧିଙ୍କ ଆପଣାର ଆଖିଭିତରେ ଏକ ବ୍ୟଙ୍ଗପୂର୍ଣ୍ଣ ତାଚ୍ଛଲ୍ୟ ଭରିକରି ରଖି ତା'ଆଡ଼କୁ ବାରବାର କଟମଟ କରି ଅନାଇବାରେ ଲାଗିଛି ।

"ଗାଈର ଆଖି ଦି'ଟା ସତେ ଯେମିତି କଟାସର ଆଖି !"

କଛି ସମୟ ପରେ ସ୍ବଗୁଷ୍ଟିଙ୍କା ହଠାତ୍ ବୋଉନାକୁ ପଗ୍ଭରଲ—"ଆଜ ତୁମର ମନ କାହିଁକ କୋଉ କାମରେ ନଲାଗୁଥିଲ ପର ମନେ ହେଉଚ !"

"ନାଁ—ନାଁ—ମୋ' ମନ ବଲକୁଲ ଠିକ୍ ଅଛ ତ !"

ନାଁ ତୁମେ ମିଛ କହୁଚ । ତୁମ ମନରେ ନିଶ୍ଚୟ କୌଣସି ଗୋଟାଏ କଥା ତୁମକୁ ଭରି ବ୍ୟସ୍ତ କର ପକାଉଚ ।"

"ହଁ, ତୋ'ର ଅନୁମାନ ପ୍ରକୃତରେ ସତ ।"

"କନ୍ତୁ ତୁମର ଧୂର୍ତ୍ତି ଚନ୍ତା କରିବାକୁ କ'ଣ ଅଛ କହିଲ ?"

"ତୋତେ ତ ଅନେକ କଥା ଜଣା ଅଛ !"

ସ୍ବଗୁଷ୍ଟିଙ୍କା ଆସି କାଛକଟକୁ ବସି ପଡ଼ିଲ ଓ ଲମ୍ବା ସୂତାଖିଅଟାକୁ ତାକୁଡ଼ିରେ ବୁଡ଼ାଇ ଦେଉ ଦେଉ କହିଲ :

"ତୁମେ ଏତେ ଭୟ କାହିଁକ କରୁଚ, କହିଲ ? ତୋମିନକଭ ଯାହା କରିବ, ତୁହିଁ ବିଗ୍ଭର କରିବ । ସ୍ବଗ୍ନାର ତ ପୁଣି ଅକଲ ଅଛ ନା ନାହିଁ ?"

"ତୁ ସତ କହୁଚୁ ସ୍ବଗୁଷ୍ଟିଙ୍କା ?"- ବୋଉନା ଭରି ଖୁସୀ ହୋଇ ତା'ପାଖରେ ବସି ପଡ଼ିଲ ।"

ମଲ, ମୋ'ର କ'ଣ ଆଖି ନାହିଁ ଯେ ମୁଁ ଦେଖି ପାରିବନାହିଁ ?"

ଦୁହେଁ ନୀରବ ହୋଇ ପରସ୍ପରର କଥା ଶୁଣିବାକୁ ଅପେକ୍ଷା କରି ରହିଲେ ।

"ତୁମ ବାହାଘରକୁ ଏକା ମତେ ଡାକିବଟି ? ମୁଁ ଆସିଲେ ଏମିତ ବାହାଘରଗୀତମାନ ଗାଇବ ଯେ ନଅମାସ ଯାଏ ତୁମଘରେ କୌଣସି ଅଶୁଭକଥା ଘଟିବନାହିଁ ।"—ସ୍ବଗୁଷ୍ଟିଙ୍କା କହିବାକୁ ଆରମ୍ଭ କଲ, କନ୍ତୁ ହଠାତ୍ ବୋଉନାକୁ ଚନ୍ତିତ ଥିବାର ଦେଖି ସେ ମଧ୍ୟ କଥାର ସ୍ବର ବଦଳାଇଦେଲ ।

"ମାଥିଆସ୍, ତୁମର ଯାହା କର୍ତ୍ତବ୍ୟ, ତୁମେ ତ ଠିକ୍ ସେଇଆ କରିବାକୁ ଯାଉଚ । ମୋ' ଘଇତା ମଲପରେ ମୁଁ ଯଦ ଆଉଗୋଟାଏ ବାହା

ହୋଇଥାନ୍ତି, ତେବେ କ’ଣ ଆଜ ମୁଁ ପରପିଣ୍ଡାକୁ ଆଶ୍ରା କରି ପଡ଼ିଥାଆନ୍ତି ? କିନ୍ତୁ ମୁଁ ପରି ଓଲମୀ, ପିଲାଙ୍କ ଉପରେ ଭରସା କରି ରହିଲି । କହିଲି, ମୋ’ପିଲାଏ ବଳେ ମୋ’ ଖବର ବୁଝିବେନାହିଁ କି ? ଏମିତି ଭାବି ମୋର ସବୁ ସମ୍ପତ୍ତି ପିଲାଙ୍କ ହାତକୁ ଟେକିଦେଲି । ଆଉ ବର୍ତ୍ତମାନ ଫଳ କ’ଣ ହେଉଚି କହିଲ ?’’

‘‘କିନ୍ତୁ ମୁଁ ମୋ’ଜମିରୁ ଟିପେହେଲେ ଭୂଇଁ ଆଉକାହାକୁ ଦେବିନାହିଁ ।’’— ବୋଉନା ବଡ଼ କର୍କଶ ସ୍ୱରରେ ଉତ୍ତର ଦେଲା ।

‘‘ଠିକ୍ କହୁଚ ! ମୁଁ କେତେଥର କଚେରୀକୁ ଦଉଡ଼ି ଦଉଡ଼ି ସର୍ବସ୍ୱାନ୍ତ ହେଲି । ଯେତକ ପଇସା ପାଖରେ ଥିଲା, ସେତକ ମଧ୍ୟ ଗଲା । କିନ୍ତୁ ନ୍ୟାୟ୍ୟ ହୋଇ ପାରିଲାନାହିଁ । ଆଉ ଏ ବୁଢ଼ାଦିନେ ମୋତେ ପେଟପାଇଁ ଯାବତ କାମ କରିବାକୁ ପଡ଼ୁଚି । ଏଇ ରବିବାରଦିନ ମୁଁ ସେମାନଙ୍କୁ ଦେଖିଯାଇଥିଲି । ମୋର ପୁରୁଣା ଘର, ହାତରେ ଲଗାଇଥିବା ଫଳବଗିଚ୍ଛକୁ ଆଉଥରେ ଦେଖିଆସିବାକୁ ଯାଇଥିଲି । ମୋ’ଉପରେ ଆଖି ପଡ଼ିବା ମାତ୍ରକେ ମୋର ବୋହୂ ଖିଙ୍କାରି ଉଠିଲା, କହିଲା, ‘କ’ଣ ଠାବ କରିବାକୁ ଆସିଚୁ କି?’ ହାସ୍ୟରେ ବଧାତା, ମୁଁ କୁଆଡ଼େ ଠାବ କରିବାକୁ ଯାଇଥିଲି ! ମୁଁ ଭାବିଲି, ମତେ ମରଣ ହୋଇଯାଆନ୍ତା ହେଲେ ! ମୁଁ ସିଧା ସେଠୁ ପାଦ୍ରୀଙ୍କ ପାଖକୁ ଗଲି, ଭାବିଲି, ପାଦ୍ରୀଙ୍କୁ ସବୁକଥା ବୁଝାଇ କହିଦେଲେ ସେ ରବିବାର ଗୀର୍ଜାପ୍ରାର୍ଥନାରେ କହିଲାବେଳେ ସେମାନଙ୍କୁ ଭଲକରି ଗାଳିଦେଇ କହିବେ । କିନ୍ତୁ ପାଦ୍ରୀ କହିଲେ, ସେମାନେ ମୋତେ ଯେଉଁ ସବୁ ଗାଳି ଦେଇଚନ୍ତି । ଆମ ଭଗବାନ ବଳେବଳେ ସେସବୁର କ୍ଷତିପୂରଣ କରିଦେବେ । ଯାହାର ସଂସାରରେ କିଛି ନାହିଁ, ସେହି ସିନା କେବଳ ଭଗବାନଙ୍କର କରୁଣାରେ ସନ୍ତୁଷ୍ଟ ହୋଇ ରହିବ ? କିନ୍ତୁ ମୁଁ ତ ଗୃହସ୍ଥ, ମୋ’ର ଆଗ ସମ୍ପତ୍ତି ଦରକାର, ଜମିବାଡ଼ୀ ଦରକାର, ଟିକିଏ ନିଶ୍ଚିନ୍ତ ହୋଇ ଶୋଇବାକୁ ଭଲ ପାଣିଶୁଆ ଆଉ ଉଷୁମ ଘର ଦରକାର, ପେଟକୁ ଭଲକରି ଖାଇବାକୁ ଦୁଧଘିଅ ଦରକାର, ଟିକିଏ ଖୁସୀ କରିବାକୁ ସମ୍ବଳ ଦରକାର !’

ସଂସାରର ଯାବତ କଥାଉପରେ ସେ ତା'ର ସ୍ବର ଶାନ୍ତକରିବାରେ ଲାଗିଥାଏ ଓ ଅନର୍ଗଳ ବକ୍ତୃତା ଦେଇ ଚାଲିଥାଏ । ଶେଷକୁ ଭାଇ ଚଢ଼ମାଡ଼ିବାରୁ ବୋଉନା ସେଠୁ ଚାଲିଯାଇ ସଙ୍ଗେସଙ୍ଗେ ସିଧା ପଧାନଘରକୁ ବାହାରିଗଲା । ବର୍ତ୍ତମାନ ବ ମୁହଁ ସଞ୍ଜ ହୋଇ ଆସିଲାଣି ।

"ଆଉ କେତେବେଳେ ଯିବ ମ ପଧାନେ ?"

"ଏଇ ବାହାରିଲି ବୋଲି ଜାଣ । ସିମନ୍‌ ଆସି ପହଞ୍ଚିବାମାତ୍ରକେ ମୁଁ ବାହାରିଯିବି ।"

ଏହି ସମୟରେ ସିମନ୍‌ ମଧ୍ଯ ଆସି ପହଞ୍ଚିଗଲା । ସେଇଠୁ ତିନହେଁ ଏକାଠି ହୋଇ ଟୋପାଏ ପିଇଆସିବା ପାଇଁ ମଦଖଟିକୁ ଗଲେ । ବିବାହ-ପ୍ରସ୍ତାବ ସହିତ ମଧ୍ଯ ବୋତଲେ ମଦ ପଠାଇବାର ବିଧି ରହିଚି । ···ଆମ୍ବ୍ରୋଜ ମଧ୍ଯ ଆଗରୁ ଖଟିଘରେ ବସିଥିଲା, ବର୍ତ୍ତମାନ ଏମାନଙ୍କର ଜମାୟତରେ ଆସି ଯୋଗଦେଲା । କିନ୍ତୁ ମାଥିଆସ୍‌ ସମସ୍ତଙ୍କୁ ଏପରି ତରବର କରୁଥାଏ ଯେ ସେଦିନ ଆଉ ଅଧିକସମୟ ବସି ମଦ ପିଇବା ସମ୍ଭବହୋଇ ପାରିଲାନାହିଁ ।

"ଏଇଠି ମୁଁ ତୁମପାଇଁ ଅପେକ୍ଷା କରିଥିବି । ସେମାନେ ଯଦି ପ୍ରସ୍ତାବରେ ରାଜି ହୋଇଯାଆନ୍ତି, ତେବେ ତୁମେ ସେମାନଙ୍କୁ ସାଙ୍ଗରେ ,ନେଇ ଏଠାକୁ ଆସିବ । କିନ୍ତୁ ଚଞ୍ଚଳ ଆସିବ, ବୁଝିଲ ?"— ସେମାନେ ବାହାରିଗଲା ପରେ ବୋଉନା ପଛରୁ ଡାକି କହିଲା ।

କାଦୁଅଭିତରେ ପଚରପଚର ଶବ୍ଦ କରି ସେମାନେ ଆଗକୁ ଚାଲିଥାଆନ୍ତି । କ୍ରମେ ସଞ୍ଜ ହୋଇ ଆସିଲାଣି, ଧରଣୀଉପରକୁ ଏକଧୂସର କୁହୁଡ଼ିଆଣୀଜାଲ ଘୋଡ଼ାଇହୋଇ ଆସିଲାପରି ମନେହେଉଚି । କିଛିସମୟ ପରେ କେବଳ ଘରମାନଙ୍କ ଭିତରୁ ଦେଖାଯାଉଥିବା ଆଲୁଅକୁ ଛାଡ଼ିଦେଲେ ସମସ୍ତ ଗାଆଁଟି ଅନ୍ଧାର ଭିତରେ ଅଦୃଶ୍ୟ ହୋଇଗଲା । ଚାଷୀଘର ଦୁଆରମାନଙ୍କରୁ କୁକୁରମାନଙ୍କର ଭୁକିବାଶବ୍ଦ ଶୁଣାଯାଉଥାଏ ।

"ଶୁଭୁଚି, ସିମନ୍‌ !"– ପଧାନେ ସିମନ୍‌କୁ ଡାକି କହିଲେ ।

"କ'ଣ କହୁନା !"

"ବୋଉନାର ଏଇ ବାହାଘରଟା ଭାରି ଜାକଜମକରେ ହେବବୋଲି ମୋର ମନେ ହେଉଛି !"

"ଯାହା ହେବାର କଥା ତାହା ନିଶ୍ଚୟ ହେବ "! — କଥାଟାକୁ ଛଡ଼ାଇଦେଲି ପରି ଅପରଜଣକ ଜବାବ ଦେଲା । ସେ ସବୁବେଳେ ଠିକ୍ ଏହି ସ୍ୱଭାବର ।

"ମୋ'କଥା ତୁ ବିଶ୍ୱାସ କର । ଆମେ ଏମିତି ଘଟଣା ପକାଇଦେବା ଯେ ଯେପରି—"

"କିନ୍ତୁ ଘୋଡ଼ାପକ୍ଷ ମନକୁ ନପାଇଲେ ଘୋଡ଼ୀ ପଘା ଛଡ଼ାଇ ପଳାଇବନ୍ତି !"

"ସେ ତାଙ୍କର ଯାହା ହେଉଥାନ୍ତୁ, ସେଥିରେ ଆମର ଭାବିବାକୁ କ'ଣ ଅଛି ?"

"କିନ୍ତୁ ତା'ର ପିଲାମାନେ ଆମକୁ ନିଶ୍ଚୟ ଅଭିଶାପ ଦେବେ ।"

"ସବୁ ଠିକ୍ ହୋଇଯିବ ! ତୁ ପଧାନର କଥାରେ ବିଶ୍ୱାସ କର ।"

ଏହିପରି ଭାବରେ ସେମାନେ ଡୋମିନିକଙ୍କର ଓଳିତଳ ଦେଇ ଘରଭିତରକୁ ଗଲେ ।

ଘରଭିତରେ ଆଲୁଅ ଜଳୁଥାଏ, ଓଳିଆହୋଇ ଚକଣ ଦିଶୁଥାଏ । ସେମାନେ ଆସିବେବୋଲି ଘରେ ସମସ୍ତଙ୍କୁ ଜଣାଥିଲା ।

ଭଦ୍ରଲୋକ ଦୁଇଜଣ 'ନମସ୍କାର' ଜଣାଇଲେ, ତା'ପରେ ଉଦ୍ଦେଇକୁ ଲାଗିକରି ପଡ଼ିଥିବା ଆସନ ମାନଙ୍କରେ ଯାଇ ବସିଲେ ଏବଂ କଥାବାର୍ତ୍ତା ଆରମ୍ଭ କଲେ ।

"ଆଜି ପାଗଟା ଭାରି କାଲୁଆ ହୋଇଛି, ହିମ ପଡ଼ିବାକୁ ଆଉ ଡେରି ହେବ ବୋଲି ମନେ ହେଉନାହିଁ ।"

"ହଁ, ଅସମ୍ଭବ କ'ଣ ? ବସନ୍ତକାଳ ତ ଆହୁରି ଅନେକ ଦିନ ବାକି ଅଛି !"

"ତୁମର କୋବି ଉପୁଡ଼ା ସରିଲାଣି ?"

"ପ୍ରାସ୍ତ ସରଗଲାଣି । ଆଉଯୋଉ ଅଳ୍ପ ବାକି ଅଛି, ସେ ବର୍ତ୍ତମାନ ହୋଇପାରବ ନାହିଁ ।" ସ୍ବର୍ଣ୍ଣନାଉପରେ ଥରେ ଆଖି ବୁଲାଇନେଇ ବୃଦ୍ଧୀ ଉତ୍ତର ଦେଲା । ସ୍ବର୍ଣ୍ଣନା ଝରକାପାଖରେ ବସି ସୂତାରେ ବଣ୍ଡୁଲା ବାନ୍ଧୁଥାଏ । ଆଜି ସେ ଏପରି ସୁନ୍ଦର ଦେଖାଯାଉଥାଏ ଯେ ପଧାନେ ଲହଲହ ଦୃଷ୍ଟିରେ ବାରବାର ତା'ଆଡ଼କୁ ଅନାଇ ପକାଉଥାନ୍ତି । ତାଙ୍କର ବା କୋଉ ବୟସ ଗ୍ଲଲଗଲାଣି ? ସେ କହିଲେ,—

"ବାଟଟା ଭାରି ଦଖଲ ହୋଇଚି, ବାହାର କାଳୁଆ ପବନ ଆସି ଦେହ ଭିତରେ ଶରମାଣ ଯାଉଚି । ଆମେ ଭାବିଲୁ ତୁମ ଘରେ ଘଡ଼ିକପାଇଁ ଅଟକିଗଲେ ଆଦୌ ମନ୍ଦ ହେବନାହିଁ । କିନ୍ତୁ ତୁମେ ମଧ୍ୟ ଭାରି ସ୍ନେହ ଓ ଆଦର ଦେଖାଇ ଆମର ଅଭ୍ୟର୍ଥନା କଲ । ତେଣୁ ଆମେ ଭାବୁଚୁ, ଗୋଟାଏ ପ୍ରସ୍ତାବ ମଧ୍ୟ ତୁମ ଆଗରେ ଆଣି ରଖିଲେ ଅନୁଚିତ ହୁଅନ୍ତା ନାହିଁ ।"

"କିନ୍ତୁ କି ପ୍ରସ୍ତାବ, କାହାଲାଗି ପ୍ରସ୍ତାବ, ଆଗ ଏସବୁ ଜାଣିଲେ ସିନା ହୁଅନ୍ତା !"

"ତୁମେ ସତକଥା କହୁଚ, ମାଆ ! ଆମେ ତୁମ ଘରୁ ଗୋରୁଗାଈ ଦେଖିବାକୁ ଆସିଚୁ !"

"ତେବେ କ'ଣ ନେବ କହ !"

"କିଛି ନାହିଁ, ଆମେ ତୁମଘରୁ ଗୋଟାଏ ଛଡ଼ା ନେବାକୁ ଆସିଚୁ ।"

"ସେ କିନ୍ତୁ ସହଜ କଥା ନୁହେଁ ବାପ ! ଖାଲି ମନ କରିବ ବୋଲି ତୁମେ ତାକୁ କଦାପି ଖାଲି ପଘା ପକାଇ ବାନ୍ଧିନେଇ ପାରିବନାହିଁ ।"

"ଆମ ପାଖରେ ରୁପାତାରର ଦଉଡ଼ି ରହିଚି । ତା'ଭଳି ଦଉଡ଼ିଟା ହେଲେ ମଧ୍ୟ ଛିଣ୍ଡାଇ ପାରିବେ ନାହିଁ । ତେବେ ଦରଦାମ୍ ବିଷୟରେ ତୁମେ କ'ଣ କହୁଚ, ମାଆ ?" — କହି ପଧାନେ ପକେଟ ଭିତରୁ ମଦ ବୋତଲଟା ବାହାର କରି ବସିଲେ ।

"ଦରଦାମ ଛିଣ୍ଡାଇବା କ'ଣ ସହଜ କଥା ହୋଇଚି ? ପିଲାଟା, ଫଗୁଣ ମାସକୁ ତ୍‍ଲେଇଶି ପୂରିବ । ଦେଖିବାକୁ ଡଉଲ ଡାଉଲ, କାମ କରିବାକୁ

ବାଘ । ମନକଲେ ସେ ଆହୁରି ବରଷେ କି ଦି’ବରଷ ତା’ ମାଆପାଖରେ ରହିପାରିବ ।”

ପଧାନେ ଠୋ’ ଠୋ’ ହୋଇ ହସିଉଠିଲେ । ବୁଢ଼ୀର ଆଖିଦୁଇଟା ରାଗରେ ଦପଦପ ହୋଇ ଜଳିଉଠିଲା ଏବଂ ସେ ତତ୍‌କ୍ଷଣାତ୍ ଜବାବ ଦେଇ କହିଲା,—

‘ତେବେ ତୁମେ ଆଉ କୋଉଠି ଯାଅ ଦେଖିବ । ମୋ’ଛଜ ମୋ’ ଘରେ ଥାଉ !”

ହଁ, ଘରେ ଥିବ ଯେ, କିନ୍ତୁ ଏମିତି ସୁନ୍ଦରିଆ ଆଉ ବଢ଼ିଆ ଛୁଆଟିଏ ଆମକୁ ଆଉ କୋଉଠି ମିଳିବ କହିଲ ?”

“ତେବେ ତୁମେ କ’ଣ କହୁଚ କହୁନ !”

“ମୁଁ ଗାଆଁ ପଧାନ କହୁଚି । ତେଣୁ ମୋ’ କଥାରେ ବିଶ୍ୱାସ କର” – ପଧ ନେ ଗିଲସଟିଏ ହାତକୁ ନେଇ ଆଗ ଆପଣା କୁରୁତା କାନିରେ ସେଇଟିକୁ ପୋଛି ପରିଷ୍କାର କରିଦେଲେ ଓ ତା’ପରେ ସେଥିରେ ବୋତଲରୁ ମଦ ଢାଳିଦେଇ ଗମ୍ଭୀର ଭାବରେ କହିଲେ, — “ମୁଁ ଯାହା କହିବାକୁ ଯାଉଚି, ତୁମେ ଟିକିଏ ମନଦେଇ ଶୁଣ ଡୋମିନିକଭା ! ମୁଁ ସରକାରର ଚାକିରି କରିଚି । ଗଛଡାଳରେ ବୋବାଉଥିବା ଚଢ଼େଇର କଥା ଏଇନା ଅଛି, ପୁଣି କ୍ଷଣକପରେ ନାହିଁ । କିନ୍ତୁ ମୋ’ କଥାକୁ ତୁମେ ସେଭଳି ଭାବିବନାହିଁ । ସିମନ୍ ମଧ୍ୟ ଯିଏସିଏ ମଣିଷ ନୁହେଁ । ଏ ଗାଆଁରେ ତାକୁ ସମସ୍ତେ ଭଲକରି ଜାଣନ୍ତି । ତା’ର ଘର ଅଛି, ପିଲାଛୁଆ ଅଛନ୍ତି, ସେ ଆମ ଗାଆଁର ମୋହରିର । ଆମେ ଦୁହେଁ ଆଜି ତୁମ ପାଖକୁ ଯେଉଁ ମତଲବରେ ଆସିଚୁ, ସେହି ମତଲବଟିକୁ ତୁମେ ଭଲକରି ବୁଝିବାକୁ ଚେଷ୍ଟା କର !”

“ହଁ ଭଲକରି ବୁଝୁଚି ।”

“ତୁମେ କ’ଣ ନବୁଝିବା ମଣିଷ ହୋଇଚ ? ତୁମେ ତ ଭଲକରି ଜାଣିଚ ଯେ ସ୍ୱଗ୍ନା ଦିନେନା ଦିନେ ତୁମର ଘରଛାଡ଼ି ତା’ର ନିଜ ଘର କରିବାକୁ ଚାଲିଯିବ । ଇଏ ତ ଭଗବାନଙ୍କର ବିଧାନ, ଏଥିରେ ମଣିଷର କୋଉ ହାତ ରହିଚି ? ବାପମାଆ ଛୁଆ ଜନମ କରିବେ, କିନ୍ତୁ ଛୁଆମାନେ

କେବଳ ସେହିମାନଙ୍କର ହୋଇ ରହିଲେ ପୁଣି ସଂସାର ଚଳିବ କିପରି ? ଆମେ କ'ଣ ଆଉ ସଂସାରର ଖାତିରୁ ବାହାର ହୋଇଯିବା ? ଆଚ୍ଛା, ଏକାଠି ମିଶି ଟୋପାଏ ପିଇଲେ ହୁଅନ୍ତା ନାହିଁ ?''

''ସେକଥା ମୁଁ କିପରି କହିବ ? ମୁଁ କ'ଣ ତାକୁ ଜବରଦସ୍ତି କରିଚି ? ତୁ ପିଇବୁ, ସ୍ୱପ୍ନା ?''

''ମୁଁ...କେଜାଣି ?''— କଅଁଳ କଣ୍ଠରେ ସ୍ୱପ୍ନା ଉତ୍ତରଦେଇ କହିଲା ଓ ଆପଣାର ରଙ୍ଗା ମୁହଁଟାକୁ ଝରକାଆଡ଼କୁ ବୁଲାଇଦେଲା ।

''ଝିଅଟି ଭାରି ଶାନ୍ତ, ଭାରି ଧୀର'' — ଗମ୍ଭୀର ହୋଇ ମୋହନର ମନ୍ତବ୍ୟ ପ୍ରକାଶ କଲା । ''ଛୁଆ ଧୀର ଆଉ ହୋସିଆର ହୋଇଥିଲେ ଅନେକଦିନ ରହେ, ଭଲ ଦୁଧ ଦିଏ ଆଉ ମଜବୁତ ବି ରହେ ।''

''ଏଇ ଗିଲାସରେ ତୁମପାଇଁ ମଦଟାଏ ଦିଏଁ ?''

''ହଁ, ଦିଅ । କିନ୍ତୁ କିଏ ଏହି ପ୍ରସ୍ତାବ ଦେଇ ପଠାଇଚି, ସେକଥା ତ ଆମେ ଜାଣି ପାରିଲୁନାହିଁ !'' — ଡୋମିନିକାଶ୍ଵ ପଚାରିବସିଲା । ଭଲଲୋକମାନେ ଆଗ ନକହିବା ପର୍ଯ୍ୟନ୍ତ ସେ ସବୁକଥା ଜାଣିଚି ବୋଲି ଦେଖାଇଲେ ଭଦ୍ରତାର ଖାତିରରେ ଅସଜଣା ଦେଖାଯାଆନ୍ତା ନାହିଁ ?

''କିଏ ? ବୋରନା ବ୍ୟକ୍ତିତ ଆଉ କିଏ ଏହି ପ୍ରସ୍ତାବ ପଠାନ୍ତା ?''— କହି ପଧାନେ ଆପଣାର ଗିଲାସଟିକୁ ହାତରେ ଉଠାଇ ଧରିଲେ ।

''କ'ଣ ହେଲା ? ସେ ତ ଆସି ବୁଢ଼ା ହେଲାଣି । ପୁଣି ଏବେ ମାଇପ ମରିଚି''—ସାଧାରଣ ଖାତି ମାନି ଡୋମିନିକାଶ୍ଵ ଆପତ୍ତି କରି କହିଲା ।

''ତାକୁ ବୁଢ଼ା ବୋଲି କହିଲେ ଭାରି ଅନ୍ୟାୟ ହେବ । ବୋରନା ବୁଢ଼ା ହୋଇଗଲାଣି ? ଏବେ ପରା ତା'ନାଆଁରେ କଚେରୀରେ ଦାଆବା ହୋଇଥିଲା !''

''ମୁଁ ଜାଣିଚି । କିନ୍ତୁ ପିଲାଟା ତ ତା'ଆଡ଼ୁ ହୋଇନଥିଲା !''

''କିପରି ହୁଅନ୍ତା କହିଲ ? ସେ ଏପରି ଜଣେ ଜଣାଶୁଣା ଲୋକ, ସେ ଅଞ୍ଚଳକୁ ଛାଡ଼ି ଏଣେତେଣେ ଛନ୍ଦିହେବ କାହିଁକି ? ତୁମ ଗିଲାସଟା ଧର, ମାଆ !''

"ହଁ, ମୁଁ ପିଇବ ଯେ, — କିନ୍ତୁ ତା'ର ପରି ମାଇପ ମରିଚି । ଆଉ ଧନ କେଇଟାରେ ଯିଏ ମଶାଣି ଭୂଇଁକୁ ନଯିବ ବୋଲି କିଏ କହିପାରିବ ? ପୁଣି ତା'ର ପିଲାଙ୍କୁ ଆମାନେ ମୋ' ଝିଅକୁ ଘରୁ ବାଡେଇ ବାହାର କରି ଦେବେନାହିଁ ?"

ଏହିଠାରେ ମୋହରିର ଆଗଭର ହୋଇ କହିଲ, "ବୋଉନା କହିଚି ଯେ ଏ ବିଷୟରେ ନିଶ୍ଚୟ ଗୋଟାଏ କିଛି ବୁଝାମଣା ହୋଇଯିବ । ପଛକୁ ଆଉ କୌଣସି ମଇଲା ରହିବନାହିଁ ।"

"ହଁ, ଦାହାଘର ପୂର୍ବରୁ ଅବଶ୍ୟ ହୋଇଯିବ ।"

ଆଉ ଗୋଟିଏ ଗିଲାସରେ ମଦ ଢାଳିଦେଇ ପଧାନେ ସୁଗ୍ନା ଆଡ଼କୁ ମୁହଁ ବୁଲାଇ ଡାକି କହିଲେ, — "ନେ' ମାଆ ! ଆମ ହାତ ମଦାଏ ପିଇଲୁ ଆ' । ଆମେ ଯୋଉ ପାନର ବିଷୟ ପକାଇଚୁ, ସେ ଶାଳଗଛ ପରି ମଜବୁତ ହେବ । ତୁ ତା'ର ଘରକୁ ଘରଣୀ ହୋଇ ରହିବୁ, ତା'ର ଘରର ହାଣ୍ଡିଶାଳ ସବୁ ବୁଝିବୁ, ଏ ଗାଆଁରେ ସବୁଠାରୁ ବଡ଼ ଗୃହୀର ଗୃହିଣୀପଣ ତୋ'ର ହାତରେ ରହିବ । ଆଚ୍ଛା, ମୁଁ ତୋ'ର କଲ୍ୟାଣ ମନାସି ପିଇବାକୁ ଯାଉଚି, ତୁ ଆଉ ଲାଜ କରନା !"

ସୁଗ୍ନାର ମୁହଁ ରଙ୍ଗା ପଡ଼ି ଯାଇଥାଏ । ପ୍ରଥମେ ସେ ଅନିଚ୍ଛା ପ୍ରକାଶ କରି ମୁହଁଟାକୁ ଟିକିଏ ବୁଲାଇ ନେଲା, କିନ୍ତୁ ଶେଷକୁ ମୁଣ୍ଡଉପରକୁ ଝାଡ଼ଣଟାକୁ ଟାଣିଆଣି ସେ ଗ୍ଲାସଟି ପଛରେ ଟିକିଏ ମଦ ପାଟି ଭିତରକୁ ନେଲା ଓ ବାକିତକ ତଳେ ଢାଳି ଦେଲା ।

ତା'ପରେ ମଦଗିଲାସଟି ସମସ୍ତଙ୍କ ପାଖରେ ଘେରିବୁଲିବାକୁ ଲାଗିଲା । ବୁଢ଼ୀ ମଦପାଗଙ୍କୁ ରୁଟି ଆଉ ଲୁଣ ଆଣି ଦେଲା, ତା'ପରେ ପାଟିସୁଆଦ ପାଇଁ ଧୂଆଁ ଦିଆହୋଇଥିବା ମାଉଁସ ମଧ୍ୟ ବାଢ଼ିଦେଲା ।

ସେମାନେ ଜଣକପରେ ଜଣେ ହୋଇ ମଦ ପିଇବାରେ ଲାଗିଥାନ୍ତି । କ୍ରମେ ସେମାନଙ୍କର ପାଟିଟା ମଧ୍ୟ ଖର ହୋଇ ଆସିଲାପରି ମନେହେଲା । କିନ୍ତୁ ସେତେବେଳକୁ ସୁଗ୍ନା ସେହି ଘରଭିତରୁ ଶୋଇବାଘରର ଭିତରକୁ ଚାଲି ଯାଇଥାଏ । କଅଣ ପାଇଁ କେଜାଣି ତା'ର ଆଖି ଦୁଇଟାରୁ ଗୁହାଳୁଗୁହା

ଲୁହ ଅସର ଅଜାଡ଼ି ହୋଇ ପଡ଼ୁଥାଏ, ମନ୍ଦିରେ ଥିବା ଅପକାନ୍ତି ତେଇଁ ତା'ର କାନ୍ଦଣା ଏଘରକୁ ମଧ୍ଯ ଶୁଣା ଯାଉଥାଏ । ବୁଢ଼ୀ କଥା କଅଣ ବୋଲି ଦେଖିବାକୁ ଯାଉଥିଲି, କିନ୍ତୁ ପଧାନେ ତାକୁ ଅଟକାଇ ରଖିଲେ ।

"ଗାଇଗୁଣ୍ଡ ହୋଇଗଲେ ସଂସାରରେ ବାହୁଙ୍କ ଆଖିରୁ ମଧ୍ଯ ଲୁହ ବୁହେ ଏଇଟା ତ ଅତି ସାଧାରଣ କଥା । ଝିଅ ତ ଏଇ ଗାଆଁରେ ରହିବ । ଜୋଉ ଏବେ ଦୂରକୁ ଗୃଲି ଯାଉଚ ଯେ ତା'ପାଇଁ ତୁମେ ଏତେ ଚିନ୍ତା କରୁଚ ! ଯେତେବେଳେ ମନ କରିବ, ସେ ଯେତେବେଳେ ତୁମପାଖକୁ ଆସିବ । ମୁଁ ଗାଆଁର ପଧାନ, ମୋ'କଥାରେ ବିଶ୍ୱାସ କର, ଏଥିରେ କୌଣସି ଖରାପ ହେବ ନାହିଁ, ସବୁ ଭଲ ହେବ ।"

"କିନ୍ତୁ ନାତ ନାତୁଣୀ ଦେଖିବାପାଇଁ ମୋର ମନଭିତରଟା ସବୁବେଳେ ଖୁବ ଚଞ୍ଚଳ ହେଉଥିଲା !"

ସେଥିପାଇଁ ତୁମେ କୌଣସି ଚିନ୍ତା କରନାହିଁ । ଆରବର୍ଷ ଫସଲକଟା ଆରମ୍ଭହେବା ଆଗରୁ ତୁମେ ଝିଅକୋଡ଼ରେ ପହିଲି ପିଲା ଦେଖିବ !"

"ସବୁ ସିନା ସେଇ ଭଗବାନ ଜାଣନ୍ତି, ଆମେ ମଣିଷପାପୀ କ'ଣ କହିପାରିବା ? ବିବାହପ୍ରସ୍ତାବର ସମର୍ଥନ କରି ଆମେ ମଦ ପିଇଲେ ସିନା, କିନ୍ତୁ ମୋ'ର ହୃଦସ୍ଥ ଭିତରଟା କାହିଁକି ବଡ଼ ଖରଖର ମନେହେଉଚ, ହଟେତଯେମିତ କାହାର କବର ଦିଆହେବ ବୋଲି ଯୋଗାଡ଼ ହେଉଚ !"

"ଖରଖର ଲାଗିବନାହିଁ କେମିତି କହିଲ ? ଗୋଟିଏ ବୋଲି ଝିଅ, ସେଥିରେ ମାଆର ମନରେ ଦୁଃଖ ହେବନାହିଁ ?···ଆଚ୍ଛା, ଆଉମନ୍ଦା ଏ ହେଉ. ତୁମ ମନର ସବୁ ଦୁଃଖ କୁଆଡ଼େ ଭୁଲିହୋଇ ଯିବ । ଗୃଲ, ସମସ୍ତେ ମିଶି ଦୋକାନଆଡ଼େ ଯିବା । ଯ୍ବର୍ନାର ଭାବୀ ଶେରସ୍ତ ସେଠି ଆମ ଆସିବାକୁ ଅନାଇ ବସିଥିବ । ଆମର ବାଟ ଗୃହିଁ ଅସ୍ଥିର ହୋଇ ପଡ଼ୁଥିବ !"

"ଏଡ଼େବଡ଼ ଭଲ ଦିନଟାରେ ଆମେ ମଦଦୋକାନକୁ ଯିବା ?"

"ସବୁଦିନେ ସେଇଆ ହୋଇଆସୁଥିଲା ନା, ଆଜି କ'ଣ ନୂଆ ? ମୁଁ ଗାଆଁ ପଧାନ କହୁଚ, ମୋ'କଥା ବିଶ୍ୱାସ କର ।"

ସେଇଠୁ ସୁଗ୍‌ନା ଆଉ ଡୋମିନନ୍‌କଭ୍ ଆପଣାର ସବୁଠାରୁ ଭଲ ପୋଷାକମାନ ବାହାର କରି ପିନ୍ଧିଲେ ଓ ତା'ପରେ ସମସ୍ତେ ମିଶି ମଦ ଦୋକାନକୁ ଗଲେ । ସୁଗ୍‌ନାର ସାଇ ଦୁହିଁଙ୍କର ଶୁଖିଲ ମୁହଁକୁ ଗୃହିଁ ପଧାନେ କହିଲେ, "ସମସ୍ତେ ଯିବେ, ଆଉ ଏଇ ଟୋକାଦୁଇଟା କ'ଣ ଘରେ ରହିବେ ? ଆଜି ଭଉଣୀର ନବଦ୍ଧ ହେବ, ଆଉ ସେମାନେ କ'ଣ ସେହି ଖୁସିରେ କୌଣସି ଭାଗ ନେବେ ନାହିଁ ?"

"କିନ୍ତୁ ଘରେ କେହି ଜଣେ ନ ରହିଲେ ହେବ କେମିତି ?"

"ସାଇରୁ ଆଉ ବୋଉ ଝିଅକୁ ଡାକିଅଣ, ସିଏ ଘର ଜଗିଥିବ ।"

"ହଉ ! ହଇରେ ସିମନ ଆଉ ଆନ୍ଦ୍ରୁ, ତୁମେଦୁହେଁ ମଧ୍ୟ ଗୃଲ । କିନ୍ତୁ ଜାମା ପିନ୍ଧିକରି ଆସିବ, ବୁଝିଲ ? ସବୁଦିନର ମଇଳା ଲୁଗାପଟା ପିନ୍ଧି ସେଠାକୁ କଗରି ଯିବ କହିଲ ? କିନ୍ତୁ ସେଠି ଯେପରି ମଦ ପିଇ ମାତାଲ ହୋଇ ନ ଯାଅ । ଏଣେ ଘରେ କେତେ କାମ ବାକି ରହିଛି । ଗୋରୁଗାଈଙ୍କ ଖବରବୁଟାହୋଇନାହିଁ, ଘୁଷୁରିଙ୍କ ପାଇଁ ଆଳୁ ମଧ୍ୟ ବାଛିବାକୁ ଅଛି । ଏସବୁ କାମ ହେବ ନା ନାହିଁ ?"

"ହଁ, ସବୁ ହେବ, ବୋଉ, ସବୁ ହେବ !"—ଦୁହେଁ ଯାକ ଉତ୍ତର ଦେଲେ । ଏଡ଼େଏଡ଼େ ଟୋକାଦୁଇଟା, ତଥାପି ଭୟରେ ଯେପରି ସେମାନଙ୍କର ମଞ୍ଜ କମ୍ପି ଯାଉଥାଏ !

ଏହିପରି ଭାବରେ ସମସ୍ତେ ଏକାଠି ମିଶି ମଦଦୋକାନକୁ ଗଲେ ।

ରାତିର କଳା କିଟିକିଟି ଅନ୍ଧାର ଗୃରିଆଡ଼ ଆଚ୍ଛନ୍ନ କରି ରଖିଥାଏ । ଶରତଋତୁରେ ବର୍ଷାପାଗ କଲେ ଯେପରି ଅନ୍ଧାର ହେବା କଥା, ଆଜି ଠିକ୍ ସେହିପରି ହୋଇଛି । ଉପରେ ବତାସ ପବନ ସୁଁସୁଁ ଗର୍ଜନ ଗୃଡ଼ିଛି । ଗଛର ଡାଳଗୁଡ଼ାକ ଏହି ପବନର ମାଡ଼ରେ ବାଡ଼ ଉପରେ ଆସି ଲାଗିଗଲା-ପରି ମନେହେଉଛି ।

ମଦଦୋକାନ ଭିତରଟା ମଧ୍ୟ ବେଶ୍ ଅନ୍ଧାରୁଆ ଦେଖାଯାଉଛି । କୋଉଠି ଝରକାରୁ ଗୋଟାଏ କାଚ ଭାଙ୍ଗିଯାଇଥିଲା । ସେହିବାଟେ ବାହାରର ହାଲୁସା ପବନ ଘରଭିତରକୁ ପଶିଆସି ଦଉଡ଼ରେ ଟଙ୍ଗା-

ହୋଇଥିବା ବର୍ତ୍ତିଟିକୁ ଏପାଖ ସେପାଖ ଦୋହଲାଇ ଦେଉଛି । ଠିକ୍ ଗୋଟିଏ ସୁନାଫୁଲ୍ ପରି ବର୍ତ୍ତିଟି ଏପାଖ ସେପାଖ ହେବାରେ ଲାଗିଛି ।

ସେମାନଙ୍କୁ ଦେଖି ବୋରନା ଖୁବ ଆହ୍ଲାଦରେ ସେମାନଙ୍କର ସ୍ୱାଗତ କରିବାକୁ ଉଠିଆସିଲା । ଆମ୍ବ୍ରୋଜ ମଧ୍ୟ ସେଠାରେ ବସିଥିଲା । ପ୍ରାୟ ଘଣ୍ଟାଏ ହେଲା ସେହିଠାରେ ବସି ସେ ମଦ ପିଉଥିଲା ।

ମଦଦୋକାନର ଇହୁଦୀ ମାଲିକ ତତ୍‌କ୍ଷଣାତ୍ ସେମାନଙ୍କ ସମ୍ମୁଖରେ ଆଣି ନାନା ଖାଦ୍ୟ ଓ ପାନୀୟ ବାଢ଼ି ଦେଇଗଲା ।

"ଖାଅ, ପିଅ, ମଜାକର, ଭାଇମାନେ !" — ଅତିଥିମାନଙ୍କୁ ଆମନ୍ତ୍ରଣ କରିବାର ଭାର ନିଜ ଉପରକୁ ନେଇ ଆମ୍ବ୍ରୋଜ ଏତେ ପାଟିକରି କହିଲା ।

"ବନ୍ଧୁମାନେ, ଆଜି ତୁମେମାନେ ଯାହା ଖୁସୀ ତାହା ପିଅ, କୌଣସି ସଙ୍କୋଚ କର ନାହିଁ ।" — କହି ବୋରନା ଆଉଗୋଟାଏ ସୁଉକାର ଚକମିଠାଇ କିଣି ସ୍ୱଗନାର ହାତରେ ନେଇ ଗୁଞ୍ଜିଦେଲା : "ନେ ସ୍ୱଗନା, ଏତକ କେବଳ ତୋହରି ପାଇଁ । ଖାଇ ମିଠା ଏଇ ମିଠାଇ !"

ମିଠାଇତକ ନେବାଲାଗି ସତେଅବା ଅନିଚ୍ଛା ପ୍ରକାଶ କରୁଥିଲାପରି ସ୍ୱଗନା ଉତ୍ତର ଦେଲା : "ଉହୁଁ ! ଏଗୁଡ଼ାକ ଏତେ ପଇସା ଦେଇ କାହିଁକି ଆଣିଲ ?"

"ସେଥିପାଇଁ ତୁ କିଛି ଭୟ କରନା । ଭଗବାନଙ୍କ କୃପାରୁ ମୋର ସେହି ଶକ୍ତି ଅଛି । ତୁ ପଚ୍ଛକୁ ବଲେ ଦେଖିବୁନାହିଁ ଯେ ! ଯଦି ତୋ ପାଇଁ ପାରିବତର କ୍ଷୀର ଆଣିବା ଦରକାର ହୁଏ, ତେବେ ଯେତେ ପଇସା ଲାଗିଲେ ମଧ୍ୟ ମୁଁ ତୋ' ଲାଗି ତାହା ଅବଶ୍ୟ କିଣିଆଣି ଦେବି । ମୋ' ଘରେ ତୁ ପ୍ରକୃତରେ ଖୁବ ସୁଖରେ ରହିବୁ !" — ସ୍ୱଗନାର ଅଣ୍ଟା ଚାରିପାଖରେ ଆପଣାର ହାତ ବେଢ଼ାଇ ନେଇ ବୋରନା ତାକୁ ବଢ଼ା ହୋଇ ଥୁଆ ହୋଇଥିବା ଖାଇବା ଚିଜଗୁଡ଼ିକରେ ହାତ ମାରିବାକୁ ଖୁବ ଅଳି କରି କହିଲା । ଅବଶ୍ୟ ସ୍ୱଗନା ବୋରନାର କୌଣସି ଅନୁରୋଧରେ ଅମଙ୍ଗ ହେଲା ନାହିଁ । ତଥାପି ସେ ବଡ଼ ଉଦାସ ଭାବରେ ସବୁକଥା ଗ୍ରହଣ କରୁ-

ଆଏ, ସତେଅବା ଆଜି ତାର ନବଜନ୍ମ ଦିନ ନୁହେଁ, ଆଉ କାହାର ନବଜନ୍ମର ଦିନ ! ସେ କେବଳ ଭାବୁଥାଏ, "ଯାତ୍ରା ସମୟରେ ବୁଢ଼ା ମୋତେ ଯେଉଁ ଫୋହଲାମାଳ କିଣିଦେବ ବୋଲି କହିଥିଲା, ତାହାଘର ଆଗରୁ ସେଇଟା କିଣି ଦେବ କି ନାହିଁ କେଜାଣି ?"

ଏଥର ଘମାଘୋଟ ମଦପିଆ ଚାଲିଲା । ଗୋଟାକ ପରେ ଗୋଟାଏ ବୋତଲ ମଦ ପିଆ ହେଉଥାଏ । ଏଣେ କଥାରେ ଆଉ କାହାର ପାଟିରେ ବାଟୁଳି ମଧ୍ୟ ବାଜୁ ନ ଥାଏ । ଏପରିକି ଡୋମିନିକଙ୍କର ମନରେ ମଧ୍ୟ ଆଜି ଏତେଟିକିଏ ସଙ୍କୋଚ ଥିଲାପରି ମନେ ହେଉନାହିଁ । ସଂସାରଯାକର ସବୁ କଥାରେ ସେ ଗଲଗଲ ଆପଣାର ମତବ୍ୟକ୍ତ କରିବାରେ ଲାଗିଛି । ପଧାନେ ତା'ର ବୁଦ୍ଧି ଦେଖି ତାଟକା ହୋଇ ଯାଉଛନ୍ତି ।

ପୁଅ ଦୁହେଁ ମଧ୍ୟ ଗିଲାସ ପରେ ଗିଲାସ ମଦ ଚଳୁ କରିବାରେ ଲାଗିଛନ୍ତି । ଉତ୍ସାହବାଣୀ ଶୁଣାଇବାକୁ କେତେବେଳେ ଆମ୍ବ୍ରୋଜ ବାହାର ପଡ଼ୁଛି ତ ଆଉ କେତେବେଳେ ପଧାନେ ମଧ୍ୟ ବାହାରି ପଡ଼ୁଛନ୍ତି । "ଆରେ ପିଲାଏ, ଆଜି ଆଉ ହଁ ନାହିଁ କିଛି ଚିନ୍ତା ନ କରି ପିଇଯାଅ । ଆଜି ପରା ସୁଗ୍‌ନାର ନବଜନ୍ମ ଦିନ !"

ଏହି ସମୟରେ ଡୋମିନିକଙ୍କ ବୋରିନାର ହାତ ଧରି ତାକୁ ଆଉ ଗୋଟାଏ ପାଖକୁ ଡାକି ନେଲା । ତା'ସହିତ ଏଇଠି ସବୁ କଥା ପକ୍‌କା ହୋଇଯିବା ଉଚିତ ।

"ତେବେ ସୁଗ୍‌ନାକୁ ଆଜି ମୁଁ ତୁମ ହାତରେ ଟେକିଦେଲି !"

"ଅନେକ ଧନ୍ୟବାଦ, ମାଆ ! ମୁଁ ତୁମ ପାଖରେ ଚିରଦିନପାଇଁ ଋଣୀ ହୋଇ ରହିବ ।" — ଆପଣା ହାତକୁ ବୋରିନା ଡୋମିନିକଙ୍କର ବେକ ଚାରିପାଖରେ ବେଷ୍ଟନକରି ଧରିଲା ।

"ତୁମେ ତା' ସହିତ ସବୁ ବିଷୟରେ ସବୁ ନିଷ୍ପତ୍ତି କରିଦେବାକୁ କହିଥିଲ ନା ?"

"ନିଷ୍ପତ୍ତି ପୁଣି ଗୋଟାଏ କ'ଣ ? ମୋ'ର ସବୁ ସମ୍ପତ୍ତି ତ ତା'ରି !"

"ନାହିଁ — ସବୁକଥା ନିଷ୍ପତ୍ତି ହୋଇ ନଗଲେ ସାବଡ଼ ପୁଅଝିଅଙ୍କ ମୁହଁକୁ ସେ ଅନାଇ ପାରିବ କିପରି କହିଲ ? ସେମାନଙ୍କର ଗାଳିଫଜିତକୁ କିପରି ସହିପାରିବ କହିଲ ?"

"ସେମାନେ ଯଦି ମଝିରେ ଆସି ପଡ଼ନ୍ତି, ତେବେ ତା'ର ପରିଭବ ସେମାନେ ପାଇବେ । ଘରର ସବୁ ସମ୍ପତ୍ତି ହେଉଛି ମୋ'ର, ତେଣୁ ସୁଗନାର ମଧ୍ୟ !"

"ମୁଁ ସବୁକଥା ବୁଝିଲି ଯେ, କିନ୍ତୁ ଆଉଗୋଟାଏ କଥା ମଧ୍ୟ ଚିନ୍ତା କରିବା ଉଚିତ । ତୁମର ଆସି ବୟସ ହୋଇଗଲାଣି । ଆମେ ସବୁ ମଣିଷ, କିଏ କୋଉଦିନ ଟଳିପଡ଼ିବ ସେକଥା କିଏ ଜାଣିଚି ?"

"ନାହିଁ, ମୁଁ ଆହୁରି କୋଡ଼ିଏ ବର୍ଷଯାଏ ଅଛି । ତୁମେ କିଛି ଚିନ୍ତା କରନାହିଁ ।"

"ଆରେ, ଚିନ୍ତା ନ କରିବ କେମିତି କହିଲ ?"

"ଆଚ୍ଛା, ବୁଝିଲି । ସୁଗନା ନାମରେ ମୁଁ ଜମିମାଣଜମି ଅଲଗା ଲେଖିଦିଏ ବୋଲି ତୁମେ ଇଚ୍ଛା କରୁଚ, ନୁହେଁ ?"

"ଆମେ କ'ଣ କାଙ୍ଗାଳି ହୋଇଚୁ ଯେ ଜମିପାଇଁ ହାଇଁପାଇଁ ହେବୁ ? ସୁଗନା ତା' ବାପଆଡ଼ୁ ପାଞ୍ଚମାଣ ଜମି ପାଇବ, ଅଧିଏ ଜଙ୍ଗଲ ମଧ୍ୟ ପାଇବ । ତା' ନାଆଁରେ ତୁମେ ଆଉ ଛଅମାଣ ଲେଖିଦିଅ । ଯୋଉ ଛଅମାଣରେ ତୁମେ ଗଲାବର୍ଷ ଆଳୁ ଲଗାଇଥିଲ, ସେଇ ଛଅମାଣ, — ସେଇ ରାସ୍ତାପାଖରେ ଲାଗିକରି ରହିଥିବା ଛଅମାଣ !"

"ମୋ'ର ଅଚଳ ଜମିତକ ?"

"ସୁଗନା ତ ଏଇ ଗାଆଁର ଅଚଳ ଝିଅ ! ତା'ଭଳି ଏ ଗାଆଁରେ ଆଉ କିଏ ସୁନ୍ଦର ଅଛି କହିଲ ?"

"ହଁ, ମୁଁ ମାନୁଚି । ସେଇଥି ପାଇଁ ତ ମୁଁ ତା'ପାଖକୁ ଭଲଲୋକ ପଠାଇଥିଲି । କିନ୍ତୁ ଛଅମାଣ ଜମି କ'ଣ ପାଖର କଥା ହୋଇଚି ?"— ବଡ଼ ଅଡୁଆରେ ପଡ଼ି ବୋରନା ଆପଣା ଆଙ୍ଗୁଠିରେ ମୁଣ୍ଡର ବାଳକୁ କୁଣ୍ଡାଇବାକୁ ଆରମ୍ଭ କଲା । ତା'ର ବଡ଼ିଆ ଜମିତକ ହାତରୁ ଛାଡ଼ିଦେବାକୁ

ହେବ ବୋଲି ଭାବିଲାବେଳେ ତା'ର ହୃଦୟ ଭିତରଟା କ'ଣ ହୋଇ-
ଯାଉଥାଏ ।

"ତୁମେ ଏଡ଼େ ବୁଦ୍ଧିଆ ମଣିଷ ଜଣେ, ମୋର ଏତକ କଥା ବୁଝି-
ପାରୁନାହଁ ? ମୋର ଝିଅ ଯେପରି ପଛକୁ କୌଣସି ହଇରାଣ ନହେବ,
ସେଇଥିପାଇଁ ସିନା ମୁଁ ଏତକବେଳୁ ଜମିବାଡ଼ୀ ବିଷୟରେ ସବୁ ନିଷ୍ପତ୍ତି
ହେଉ ବୋଲି ଜୋର କରି କହୁଚି । ତୁମେ ବସିଥିଲା ପର୍ଯ୍ୟନ୍ତ ତୁମର ସବୁ
ଜମି ତୁମରି ହାତରେ ରହିବ । ଏଣେ ବାହାଘରଟା ହୋଇଗଲେ ସ୍ୱପ୍ନା
ବାପଠାରୁ ପାଇଥିବା ସମ୍ପତ୍ତି ମଧ୍ୟ ତୁମର ହୋଇଯିବ । ଶୀତଦିନଟା ଗତ
ହୋଇଗଲେ ମୁଁ ଅମିନ ଡକାଇ ପଠାଇବି । ତେଣୁ ବୁଣାବୁଣି ବେଳକୁ ଜମି
ମପାକାମ ସରିଯାଇଥିବ । ତେଣୁ ଏହି ନିଷ୍ପତ୍ତି ଦ୍ୱାରା ଯେତେବେଳେ ତୁମର
କୌଣସି କ୍ଷତି ନହେଉଚି, ସେତେବେଳେ ମୋର ଝିଅ ନାଆଁରେ ଛଅମାଣ
ଜମି ଲେଖିଦେବାକୁ ତୁମେ ରାଜି ହୋଇଯାଉନା କାହିଁକି ?"

"ବେଶ୍ ଭଲ କଥା, ମୁଁ ରାଜି ହୋଇଯାଉଚି ।"

"ତେବେ କେବକୁ ଏସବୁ ହେବ ?"

"ତୁମେ ଯଦି ଇଚ୍ଛା କରିବ, ତେବେ କାଲି ମଧ୍ୟ ହୋଇଯିବ । ନାଇଁ,
— ଶନିବାରଦିନ । ଆମେ ଦୁହେଁ ସହରକୁ ଯାଇ ସବୁ ଲେଖାପଢ଼ି
କରିଦେଇ ଆସିବା ।

ତେଣେ ପଧାନେ ସ୍ୱପ୍ନାସହିତ ରଙ୍ଗରସ ଲଗାଇବାରେ ଲାଗି-
ଥାଆନ୍ତି । କ'ଣ ଗୋଟାଏ କଥାରେ ସ୍ୱପ୍ନା ମଧ୍ୟ ଝରଝର ହୋଇ ହସି-
ବାରେ ଲାଗିଥାଏ । ଏହିସମୟରେ ତ୍ରୋମିନକଜ୍ଞା ଡାକ କହିଲା ! "ସ୍ୱପ୍ନା,
ଏଠିକି ଆସିଲୁ ମୋ ଝିଅ !"

ସ୍ୱପ୍ନା ପାଖକୁ ଆସିଲା । ତାକୁ ଉଦ୍ଦେଶ୍ୟ କରି ବୁଢ଼ୀ କହିଲା,
"ବୁଝିଲୁ ଝିଅ, ସେଇ ରାସ୍ତାକାନ୍ଥକୁ ଲାଗିକରି ଥିବା ଛଅମାଣ ଜମିକୁ
ମାଥିଆସ୍ ତୋ'ନାଆଁରେ ଲେଖିଦେବାକୁ ରାଜି ହୋଇଚନ୍ତି ।"

"ଧନ୍ୟବାଦ !" — କହି ସ୍ୱପ୍ନା ବୋରନା ଆଡ଼କୁ ହାତ ବଢ଼ାଇ-
ଦେଲା ।

"ପୁଣି ପିଇବା ଆରମ୍ଭ ହେଉ, ସ୍ଥଗ୍‌ନାର ମଙ୍ଗଳ କାମନା କରି ପିଇବା ଆରମ୍ଭହେଉ !"

ସମସ୍ତେ ପୁଣି ପିଇବା ଆରମ୍ଭ କରିଦେଲେ । ସ୍ଥଗ୍‌ନାର ଅଣ୍ଟା ଗୃହ-ପାଖରେ ଆପଣାର ହାତକୁ ବେଢ଼ାଇ ଦେଇ ବୋରନା ତାକୁ ଅନ୍ୟ ଅତଥି-ମାନଙ୍କ ପାଖକୁ ନେଇଗଲ । କିନ୍ତୁ ଲଜରେ ସ୍ଥଗ୍‌ନା ତା'ର ବେଢ଼ଭିତରୁ ଖସି ଆପଣା ଭାଇମାନଙ୍କ ପାଖକୁ ଚାଲିଗଲା । ଭାଇଦୁହେଁ ଆମ୍ବ୍ରୋଜ୍ ସହିତ ଏକାଠି ବସି ମଦ ପିଉଥାନ୍ତି ଆଉ କଥାବାର୍ତ୍ତା କରୁଥାନ୍ତି ।

କ୍ରମେ ଅଧିକରୁ ଅଧିକ ଲୋକ ଦୋକାନ ଭିତରକୁ ଆସିବାକୁ ଲାଗିଲେ ଓ ଦୋକାନର କୋଳାହଳ କ୍ରମେ ଅଧିକରୁ ଅଧିକ ବଢ଼ିବାକୁ ଲାଗିଲା । ଘଟଣା କ'ଣ ବୋଲି ଜାଣିବାକୁ କୁତୂହଳୀ ହୋଇ ଅନେକେ ଆସିଥିଲେ, ପୁଣି ଆଉକେହି ମାଗଣାରେ ଟୋପାଏ ମଦ ପିଇବାର ସୁଯୋଗ ପାଇବେ ବୋଲି ଆଶାକରି ଆସିଥିଲେ । ଏପରିକି ସେହି ଅନ୍ଧ ବୁଢ଼ାଟା ମଧ୍ୟ ଆପଣାର କୁକୁରଟିକୁ ସାଙ୍ଗରେ ଧରି ସେଠାରେ ଆସି ଉପସ୍ଥିତ ହୋଇଥିଲା ଏବଂ ଏତେବଡ଼ ପାଟିକରି ଭଗବାନଙ୍କର ଉପାସନାମନ୍ତ୍ରମାନ ଉଚ୍ଚାରଣ କରିବାରେ ଲାଗିଥିଲା । ତା'ର ତୁଣ୍ଡ ଶୁଣି ଡୋମିନିକକଣ୍ଠ ତାକୁ ଟୋପାଏ ମଦ ପିଇବାକୁ ଦେଇଆସିଲା, କିଛି ଖାଇବାକୁ ଦେଲା ଓ ତାହା ସହିତ କିଛି ପଇସା ମଧ୍ୟ ଦେଇ ଆସିଲା ।

ଏହିପରି ଭାବରେ ସଭାର କୋଳାହଳ ବଢ଼ିବାରେ ଲାଗିଥାଏ । ସାଧାରଣ ଏସବୁ ସ୍ଥାନରେ ମଣିଷ ମଣିଷ ଭିତରେ ଆତ୍ମୀୟତା ସ୍ଥାପିତ ହେବାକୁ ଆଦୌ ବେଶୀ ସମୟ ଲାଗେନାହିଁ ।

ଖାଲି ଦୋକାନର ମାଲିକ ଇହୁଦୀ କାହାରି ସହିତ କୌଣସି କଥା ହେଉନଥାଏ, ଚୁପ୍ କରି ସେ ଏଣେତେଣେ ଧାଇଁବାରେ ଲାଗିଥାଏ ଓ ଅତିଥିମାନଙ୍କ ଆଗରେ ଗୋଟିକପରେ ଗୋଟିଏ କରି ମଦବୋତଲ ନେଇ ରଖିଦେଉଥାଏ । ସଙ୍ଗେସଙ୍ଗେ ହାତରେ ଚକଖଡ଼ି ଧରି କବାଟର ପଛପଟେ ହିସାବ ଲେଖିରଖୁଥାଏ ।

ବୋତଲନାର ଆନନ୍ଦ ଆଜ ମଦେଥିବା କୌଣସି ସୀମା ମାନିବାକୁ ରାଜି ନୁହେଁ । ନଳେ ଗିଲାସ ପରେ ଗିଲାସ ପିଇବା ସଙ୍ଗେସଙ୍ଗେ ସେ ଅତିଥିମାନଙ୍କୁ ମଧ୍ୟ ପିଇବାଲାଗି ଉତ୍ସାହ ଦେବାରେ ଲାଗିଥାଏ । ଆଉ କେଉଁଦିନ କେହି ତା' ମୁହଁରୁ ଏତେଗୁଡ଼ାଏ କଥାବାର୍ତ୍ତା କେବେହେଲେ ଶୁଣିନଥିଲେ । ବାରବାର ସେ ଯୁଗ୍‌ନା ଆଡ଼କୁ ଆଗଭର ହୋଇ ଆସୁଥାଏ, ତା'ହାତରେ ଏଥିରୁ ଗୋଟାଏ ବା ସେଥିରୁ ଗୋଟାଏ ଗୁଞ୍ଜିଦେଉଥାଏ ଓ ଆପଣାର ହାତଦ୍ୱାରା ତା'ର ଅଣ୍ଟାକୁ ବେଢ଼ାଇଧରି ତାକୁ କକ୍ଷର କୌଣସି ଅଳ୍ପ ଆଲୁଅ ପଡ଼ୁଥିବା କଣକୁ ନେଇ ଯାଉଥାଏ ।

ରାତି ଅନେକ ହୋଇଗଲାଣି, ଏଥର ଘରକୁ ଫେରିବାକୁ ହେବ ବୋଲି ହଠାତ୍ ଡୋମିନିକଙ୍କ ଚିନ୍ତା କରିବାକୁ ଲାଗିଲା । ପୁଅ ଦୁହିଁଙ୍କୁ ସେ ଆପଣା ସାଙ୍ଗରେ ଯିବାପାଇଁ ଡାକିଲା ।

ସିମନ୍‌ର ମିଜାଜ ସେତେବେଳେ ମଦର ମାଦକରେ ଗରମ ହୋଇ ରହିଥିଲା । ମାଆର ଡାକଶୁଣି କମରପଟିଟାକୁ ଭିଡ଼ଦେଇ ଟେବୁଲ୍ ଉପରେ ହାତ ବାଡ଼େଇ ସେ ଗର୍ଜନ କରି କହିଲା !

"ନହିଁ ଜାସେଙ୍ଗେ ! ମୁଁ ବି ଜଣେ ଗୃଷୀ । ଯାହାର ଖୁସୀ, ସେଇ ଯାଉ । ଏଠି ଯଦି ରାତିସାକ ବସି ମୁଁ ମଦ ପିଇବାକୁ ମନ କରିବି, ତେବେ ମୋତେ ମନା କରିବାକୁ କିଏ ଅଛୁ ? ହେ ଇହୁଦୀ, ଏଠି ଆହୁରି ମଦ ଦେଇଯା !"

"ତୁ ଚୁପ୍ ହୋଇଯା ସିମନ ! ନହେଲେ ସେ ଆସି ପିଠିଉପରେ ବାଧା ବସାଇଦେବ ଟି !" – ସିମନ୍‌ର କୋଟ୍‌ଟାକୁ ଟାଣିଦେଇ ଆଣ୍ଡ୍ରେ ସାବଧାନ କରିଦେଇ କହିଲା । ତା'ର ବି ଆଉ ହୋସ ଥିଲା ବୋଲି କୁହା-ଯାଇ ପାରିବ ନାହିଁ ।

ଧମକାଇଲା ପରି କର୍କଶ ସ୍ୱରରେ ଡୋମିନିକଙ୍କ ଡାକିଲା, "ହେ ପିଲାଏ, ତୁମେମାନେ ପୁଣି ଘରକୁ ଯିବ ନା ନାହିଁ ?"

"ମୁଁ ପରା କହିଲି ଯେ ମୁଁ ହେଉଛି ଜଣେ ଗୃଷୀ । ମୋ'ର ଖୁସୀ ହେଲେ ମୁଁ ଏଠି ରହିବି, ମୋର ମନଇଚ୍ଛା ମଦ ପିଇବି । ମୋ'ଉପରେ

ଆଉ . ମାଆର ଶାସନ ଚଳି ପାରିବନାହିଁ । ତୁ ଯାଆ, ଏଠୁ ଗୁଲି ଯାଆ ।
ମୁଁ କିଚ୍ଛ ପରୁଆ କରେନାହିଁ !"

ଠିକ୍ ଏହି ସମୟରେ ବୁଢ଼ୀ ମାଡ଼ଆଯି ତା'ର ଗ୍ଲାଉପରେ ଏମିତି ଗୋଟାଏ ଖୁନ୍ଦା ବସାଇଦେଲେ ଯେ ତତ୍‌କ୍ଷଣାତ୍ ସିମନ୍‌ର ସବୁ ନିଶା କୁଆଡ଼େ ଛୁଡ଼ି ପଳାଇଲା । ତା'ର ମୁଣ୍ଡରେ ଟୋପି ପିନ୍ଧାଇଦେଇ ଆଣ୍ଡ୍ରି ତାକୁ ଧରିଧରି ରାସ୍ତାଉପରକୁ ନେଇଗଲା । କିନ୍ତୁ ବାହାରର ଶୀତଳ ପବନ ଦେହରେ ବାଜି ସିମନ୍‌କୁ ପୁଣି ନିଶା ଲାଗିଆସିଲା ପରି ମନେହେଲା । ଆଗକୁ ଦୁଇତିନି ପାହୁଣ୍ଡ ପକାଇବାପରେ ସେ ରାସ୍ତାକଡ଼ରେ ଥିବା ବାଡ଼-ଉପରେ ଯାଇ ହାମୁଡ଼େଇ ପଡ଼ିଲା ଓ ଚିତ୍କାର କରି ଗଅଁ ଗଅଁ ହେବାକୁ ଲାଗିଲା ।

"ଯାଆ ଶଳା ! ମୁଁ ଗୋଟାଏ ଗୃହୀ । ମୋର ଏତେବଡ଼ାଏ ଜମି-ବାଡ଼ୀ । ମୋର ଖୁସି ହେଲେ ମୁଁ ମଦ ପିଇବି, ଖୁସିହେଲେ କାମ କରିବି । ହେ ଇହୁଦୀ, ଦେ, ଆଉରି ମଦ ଦେ !"

ଏସବୁ କାଣ୍ଡ ଦେଖି ଆଣ୍ଡ୍ରି ଭେଁ ଭେଁ ହୋଇ କାନ୍ଦିବାରେ ଲାଗି-ଥାଏ ଓ କହୁଥାଏ : "ହେ ସିମନ୍, ତୋତେ ଠାକୁରଙ୍କ ଦେଇ, ଘରକୁ ଗୁଲ ! ମାଆ ପରି ତେଣେ ପଛରେ ଆସୁଚି !"

ସତକୁ ସତ ତତ୍‌କ୍ଷଣାତ୍ ଯ୍ୱଗ୍‌ନାକୁ ସାଙ୍ଗରେ ଧରି ତ୍ରୋମ୍ପିନକଭା ଆସି ସେଠାରେ ପହଞ୍ଚିଗଲେ । ବାଡ଼ କଡ଼ରେ ଦୁଇଭାଇ ସେତେବେଳକୁ ଧରାପରା ହେବାରେ ଲାଗିଥାନ୍ତି । ମାଆଝିଅ ଦୁହେଁ ମିଶି ସେମାନଙ୍କୁ ସେଠାରୁ ଉଠାଇ ଆଣିଲେ ।

ସେମାନେ ଗ୍ଲଲିଗଲା ଉତ୍ତାରୁ ଅନ୍ୟମାନେ ମଧ୍ୟ ଦୋକାନଘରୁ ବିଦା-ହୋଇ ଗଲେ । ଦୋକାନ ଘରର କୋଳାହଳ କିଞ୍ଚିତ୍ ଊଣା ହୋଇ ଆସିଲା । ଶେଷରେ ବୋରନା ଓ ତା' ଭାରଙ୍କର ଲୋକମାନଙ୍କ ବ୍ୟତୀତ ସେଠାରେ ଆଉ କେହି ରହିଲେନାହିଁ । ଆମ୍ବ୍ରୋଜ୍ ଆଉ ସେହି ଅନ୍ଧ ଗାୟକଟି ମଧ୍ୟ ଯାଇନଥାନ୍ତି । ବର୍ତ୍ତମାନ ସମସ୍ତେ ଗୋଟିଏ ଟେବୁଲ ଗ୍ଲରିପାଖରେ ବସି ମଦ ପିଇବାରେ ଲାଗିଥାନ୍ତି ।

# ନଅ

ନିର୍ବାଚନଦିନର ମାତ୍ର କେଇଟା ଦିନ ପରେ ପର୍ବଦିନ ଆସି ପହଞ୍ଚିଲା ।

ସକାଳପହରୁ ଲମ୍ପଟା ଗାଁର ଗୀର୍ଜାଘଣ୍ଟା ଠନ୍‌ଠନ୍ କରି ବାଜିବାରେ ଲାଗିଛି । ତାହାର ବିରସତାପୂର୍ଣ୍ଣ ଉଦାସ ଶବ୍ଦ ଶୂନ୍ୟ ବାଲି-ଗର୍ଭର ଭେଦକରି ବହୁଦୂରକୁ ପ୍ରସାରିତ ହୋଇଯାଉଛି ଏବଂ ଲୋକମାନଙ୍କୁ ସମବେତ ହେବାଲାଗି ଆହ୍ୱାନ ଜଣାଇ ଯାଉଛି । ଆଜି ସକାଳପହରୁ ଚତୁର୍ଦ୍ଦିଗରେ କୁହୁଡ଼ି ଘୋଟିରହିଛି, ଦିନଟି ଯତେିଯେପରି ଏକ ଦୁଃଖପୂର୍ଣ୍ଣ ଗୃହିଣୀରେ ପୃଥିବୀ ଆଉ ଆକାଶ ମିଶିଯାଇଥିବା ସୁଦୂର ଦିଗ୍‌ବଳୟ ଭିତରୁ ଉଙ୍କିମାରି ଉଠିଆସୁଛି ।

ପୂର୍ବଦିଗରୁ ସୂର୍ଯ୍ୟ ଉଠିଆସିଲା, ପୂର୍ବଆକାଶଟା ଏପର୍ଯ୍ୟନ୍ତ ଡମ୍ବାରଙ୍ଗରେ ନାଲିଟହଟହ ହୋଇ ଜଳୁଥାଏ । ସେଇଆଡ଼ୁ ମେଘ ପାହାଡ଼ରୁ ପଲପଲ ହୋଇ କାଉ ଉଡ଼ିଆସୁଥାନ୍ତି ।

ସେହି କାଉଗୁଡ଼ାକ ଏଡ଼େ ଉଚ୍ଚରେ ଉଡ଼ି ଯାଉଥାନ୍ତି ଯେ ଆଖିକୁ ଭଲକରି ଦେଖାଯାଉ ନ ଥାନ୍ତି ବା ସେମାନଙ୍କର ଦୁଃଖପୂର୍ଣ୍ଣ ରାଉରାଉ ଶବ୍ଦ କାନକୁ ମଧ୍ୟ ଶୁଣାଯାଉ ନ ଥାଏ । ମନେହେଉଥାଏ, ଯତେିଅବା ଶତ ଶତ-ବାଟରେ କିଏ କେତେଦୂରରେ ବସି କୋଉଠି କାନ୍ଦିବାରେ ଲାଗିଛି !

ଗୀର୍ଜାଘଣ୍ଟାରୁ ଠନ୍‌ଠନ୍ ଶବ୍ଦ ଆସି କାନଉପରେ ଅକାଡ଼ିହୋଇ ପଡ଼ୁଥାଏ ।

ଉଡ଼େଇମାନଙ୍କର ଦଳ କ୍ରମେ ବଢ଼ିବାରେ ଲାଗିଛି । ସେମାନେ ଦଳଦଳ ହୋଇ ବର୍ତ୍ତମାନ ଅନେକ ତଳକୁ ଖସିଆସି ଉଡ଼ିବାକୁ ଆରମ୍ଭ କଲେଣି, ଆକାଶ ଆଡ଼କୁ ଅନାଇଲେ ମନେହେଉଛି ଯେପରି କଳା ଅଳନ୍ଧୁଗୁଡ଼ାକ ଫୁଲାଫୁଲା ହୋଇ ଉଡ଼ି କୁଆଡ଼େ ଚାଲିଯାଉଛି । ସେମାନଙ୍କର କର୍କଶ କଣ୍ଠଶବ୍ଦ ମଧ୍ୟ ବେଶ୍ କାନପାଖରେ ଆସି ଶୁଭିବାକୁ ଆରମ୍ଭ କଲାଣି, ଯତେିଯେପରି କୋଉଠୁ ଧୂମାଳପବନ ମାଡ଼ିଆସୁଛି, ଠିକ୍ ସେହିପରି ଶୁଣା-ଯାଉଛି । ସେମାନେ କ୍ରମେ ମଣ୍ଡଳାକାର ହୋଇ ଗାଁ ଉପରେ ଉଡ଼ିବାକୁ

ଆରମ୍ଭ କଲେ, ତା'ପରେ ପବନ ଉଡ଼ାଇ ନେଉଥିବା ମେଞ୍ଚାଏ ପାଚିଲା ପତ୍ରପରି ଏବେ ଗାର ପଡ଼ିଥିବା ବିଲଉପରେ ଚକା ବୁଲି ଉଡ଼ିଗଲେ, ତା'ପରେ ଜଙ୍ଗଲ ଆଡ଼କୁ ଉଡ଼ିଯାଇ ଥୁଣ୍ଟା ପପ୍‌ଲର ଗଛଗୁଡ଼ିକ ଉପରେ ବସିଲେ ।

"ଏବର୍ଷ ଭାରି ହାଡ଼ଭଙ୍ଗା ଶୀତ ପଡ଼ିବ,"— ଲୋକମାନେ କୁହାକୁହି ହେଉଥାନ୍ତି ।

"ବରଫ ବରଷିବାକୁ ଆଉ ବେଶୀ ଡେରି ନାହିଁ । ଦେଖନ୍ତୁ, ଯେଉଁଗୁଡ଼ାକ କପରି ଜଙ୍ଗଲଆଡ଼କୁ ଉଡ଼ିବାରେ ଲାଗିଲେଣି !"

ଚଢ଼େଇମାନେ କ୍ରମେ ଅଧିକତର ସଂଖ୍ୟାରେ ବସ୍ତି ଆଡ଼କୁ ଉଡ଼ି-ଆସିଲେ । କୋଡ଼ିବର୍ଷ ତ ଏମାନଙ୍କର ଏତେସଂଖ୍ୟାରେ କେବେ ଦେଖା ନଥିଲା ! ଗୋଟାଏ ଅଶୁଭର ସୂଚନା ପାଇଲାପରି ଲୋକମାନେ ଦୀର୍ଘଶ୍ୱାସ ପକାଇ ସେମାନଙ୍କ ଆଡ଼କୁ ଅନାଉଥାନ୍ତି, କେହିକେହି ଆଖିପତା ଉପରେ ଶୂନ୍ୟରେ କ୍ରସ୍‌ଚିହ୍ନ କାଟି ଦେଉଥାନ୍ତି । ଆସନ୍ନ ହୋଇଆସୁଥିବା ବିପଦରୁ ଭଗବାନ ହୁଏତ ବଞ୍ଚାଇ ରଖିବେ ! ତା'ପରେ ସମସ୍ତେ ଲୁଗାପଟା ପିନ୍ଧି ଗୀର୍ଜାକୁ ଯିବାଲାଗି ସଜହେବାକୁ ଲାଗିଲେ । ଏପର୍ଯ୍ୟନ୍ତ ମଧ୍ୟ ଗୀର୍ଜାର ଘଣ୍ଟାଟା ସେହିପରି ଅପରିବର୍ତ୍ତିତ ଠଂ ଠଂ ଶବ୍ଦ କରିବାରେ ଲାଗିଥାଏ । ଅନ୍ୟଗାଆଁର ଲୋକମାନେ ମଧ୍ୟ ଗୀର୍ଜା-ଉପାସନାଲାଗି ଆସି ପହଞ୍ଚି-ବାରେ ଲାଗିଲେଣି ।

ସମସ୍ତଙ୍କର ହୃଦସ୍ପନ୍ଦନଟା ଆଜି ଯେପରି ଭାରି ନିକାଞ୍ଚନ ବୋଧ ହେଉଛି, ଭାରି ଏକାଏକା ଲାଗୁଛି । ସବୁରି ହୃଦୟରେ ଏକପ୍ରକାର ଅଦ୍ଭୁତ ନୈରାଶ୍ୟପୂର୍ଣ୍ଣ ନୀରବତା ବିରାଜିତ କରୁଛି । ଆଜି କେତେଦିନର କେତେ ଦୁଃଖପୂର୍ଣ୍ଣ ସ୍ମୃତି ମନ ଭିତରେ ଉଦୟ ହୋଇ ଭିତରଟାକୁ ନୀରବ କରି ପକାଇଛି । ଯୋଉମାନେ ଆଗରୁ ଛାଡ଼ି ଚାଲିଯାଇଛନ୍ତି, ବର୍ତ୍ତମାନ ସେହି-ମାନଙ୍କର କଥା ମନେପଡ଼ୁଛି । ସେମାନଙ୍କର ଶରୀର ଆଜି ଭୂର୍ଜଗଛ ଗୁଡ଼ିକର ଆଲୁଳାୟିତ ଶାଖାତଳେ ସମାଧିସ୍ଥ ହୋଇ ରହିଛି, — ସାକ୍ଷୀରୂପେ ଠିଆହୋଇ ରହିଥିବା କ୍ରସ୍‌ଗୁଡ଼ିକ ସେମାନଙ୍କର ସୂଚନା ଦେଇ ଯାଉଛି ।

ହେ ଯୀଶୁ, ହେ ଖ୍ରିଷ୍ଟ ପ୍ରଭୁ ଯୀଶୁ" — ନୀରବରେ ଏମିତି ଜପକରି ସେମାନେ ଧୂସର ମୁହଁ ଗୁଡ଼ିକୁ ଉପରକୁ ଉଠାଇ ଅନାଉଛନ୍ତି ଓ ଭବିଷ୍ୟତର ଗର୍ଭଭିତରେ କ'ଣସବୁ ସନ୍ଧାନ କରିବାରେ ଲାଗିଛନ୍ତି । ଯୀଶୁଙ୍କର ନାମ ନେବା ସଙ୍ଗେସଙ୍ଗେ ସେମାନଙ୍କର ମନରୁ ସକଳ ଭୟ ବିଦୂରିତ ହୋଇ-ଯାଉଛି ଏବଂ ସେମାନେ ଅତି ଧୀର ଓ ଶାନ୍ତଭାବରେ ମୃତବ୍ୟକ୍ତିମାନଙ୍କର ଉଦ୍ଦେଶ୍ୟରେ ପୂଜା ଦେବାକୁ ଓ ପ୍ରାର୍ଥନା କରିବାକୁ ଆଗକୁ ଯିବାରେ ଲାଗିଛନ୍ତି ।

ଦେଖି ମନେହେଉଛି, ଯେପରି ଆଜି ସମଗ୍ର ଗାଆଁଟି ଏକ ଗମ୍ଭୀର ଓ ହୃଦୟସ୍ପର୍ଶୀ ଶାନ୍ତମୟତାର ସମୁଦ୍ରଭିତରେ ନିମଗ୍ନ ହୋଇ ରହିଛି । କେବଳ ଗୀର୍ଜା ଦୁଆରେ ଠିଆହୋଇ ଗୀତଗାଉଥିବା ଫକୀରମାନେ ହିଁ ମଝିରେ ମଝିରେ ଏହି ଶାନ୍ତିକୁ ଭଗ୍ନ କରୁଛନ୍ତି ।

ବୋଉନାଘରେ ଏହି ନୀରବତା ଅଧିକ ଗମ୍ଭୀର ଭାବରେ ରାଜକ୍ତି କଲପରି ମନେହେଉଥାଏ । ଅବଶ୍ୟ ଏହି ଶାନ୍ତି ହେଉଛି ନରକର ଶାନ୍ତି । ଘରେ ସମସ୍ତଙ୍କୁ ଦେଖି ମନେହେଉଥାଏ, ଯେପରି ଏମାନେ ହଠାତ୍ କ'ଣ ଗୋଟାଏ ଦୁଃସମ୍ବାଦରେ ସ୍ତମ୍ଭିତପ୍ରାୟ ହୋଇ ରହିଛନ୍ତି, କିନ୍ତୁ ଏହି ନିସ୍ତବ୍ଧତା ଠୋ'କରି ଫାଟିବାକୁ ଯେପରି ଆଉ ଅଧିକ ବେଳ ନାହିଁ ।

ସେତେବେଳକୁ ତା'ର ପିଲଙ୍କ କାନରେ ଆସି ସବୁକଥା ପଡ଼ିସାରିଲାଣି ।

କାଲି ରବିବାର ଥିଲା, ତେଣୁ କାଲି ଗୀର୍ଜାପ୍ରାର୍ଥନା ପରେ ଏହି ବିବାହପ୍ରସ୍ତାବଟି ସମସ୍ତଙ୍କୁ ଶୁଣାଇ ଦିଆଯାଇଥିଲା । ଶନିବାରଦିନ ବୋଉନା ସ୍ତେପ୍‌ନାକୁ ନେଇ ସହରକୁ ଯାଇଥିଲା, ସେଇଦିନ ସେ ସାକ୍ଷୀଗୁଡ଼ା ରଖି ତା'ନାଆଁରେ ଛଅମାଣ ଜମି ଲେଖିଦେଇ ଆସିଛି । ସେଦିନ ଘରକୁ ଫେରୁଫେରୁ ତା'ର ଅନେକ ଡେରି ହୋଇଗଲା । ଏଣେ ମୁହଁରେ ମଧ କେତେଟା ଜାଗାରେ ନଖ ଦାନ୍ତ ଗାରପଡ଼ି ଯାଇଥାଏ । ମଦପିଇ ସେଦିନ ସେ ଏପରି ମାତାଲ ହୋଇ ଯାଇଥିଲା ଯେ ସ୍ତେପ୍‌ନାସହିତ ବ୍ୟବହାର କଲାବେଳେ ତା'ର ଆଉ କୌଣସି ବାଡ଼ବତା ରହିଲାନାହିଁ । କିନ୍ତୁ ସ୍ତେପ୍‌ନା

କ'ଣ ଗିଏଗିଏ ହୋଇଚ ? ତା'ର ବଲୁଆ ବାହାଦୁଇଟା ଆଉ ମୁନିଆଁ ନଖବୁଡ଼ାକର ଘରଚାପ୍ସ ସେଦିନ ବୋଉକାକୁ ଦେଖ୍ ମିଲଗଲା ।

ଘରକୁ ଲେଉଟି ସେ କାହାରକୁ ପଦେହେଲେ କୌଣସି କଥା କହିଲାନାହିଁ । ଜୋତା ନ କାଢ଼ି ଓ ଦେହରୁ ପୋଷାକ ନ ଓହ୍ଲାଇ ସେ ସିଧା ଶୋଇବାକୁ ଗୁଲଗଲା । ଆଉଦିନ ସକାଳେ ଚଡ଼ଣାଟା ଯାକ କାଦୁଅରେ ବୁଡ଼ିଚ ବୋଲି ମୁଜ୍କା ଆସି ଅଭିଯୋଗ କରିବସିଲା ।

"ଆରେ ସେଥିରେ କଛୁ ଯାଏଆସେ ନାହିଁ, କଛୁ ଯାଏଆସେ ନାହିଁ,"— ହସିହସି ବୋଉନା ଝିଅକୁ କହିବାକୁ ଲଗିଲା । ମଦ ପିଇନଥିବା ଲୋକର ମଧ୍ୟ ବେଳେବେଳେ ଏପରି ହୋଇଯାଏ ।

ସକାଳୁ ଉଠି ସେ ସ୍ବଗନା ପାଖକୁ ଯାଇଥିଲା, ଦିନଯାକ ସେଇଆଡ଼େ ରହିଲା । ଘରେ ତା'ପାଇଁ ଦିନ ଓ ରାତିର ଖାଇବା ସେମିତ ବଡ଼ାହୋଇ ରହି ଶୁଖିବାରେ ଲଗିଥାଏ ।

ଆଜମଧ୍ୟ ସେ ଚଡ଼ଣାରୁ ଉଠିବାବେଳକୁ ସକାଳ ହୋଇସାରିଲାଣି । ଉଠି ବୋଉନା ଆପଣାର ଟବୁଠାରୁ ଭଲ କୁରୁତାଟି ବାହାର କରି ପିନ୍ଧିଲା, ଭଡେକୁ ଆପଣାର ଜୋତାହଳଟା ପାଲିସ୍ କରି ତା'ର ଦାଗରେ ସଜ କଟାହୋଇଥିବା ଲୁଟା ବସାଇ ଜମ କରିଦେବାକୁ କହିଲା, କୁନା ହାତରେ ଖିଅରହୋଇ ଅସିଲା, ତା'ପରେ ଅଣ୍ଟାରେ କମରପଟି ପିନ୍ଧି ଓ ମୁଣ୍ଡରେ ଟୋପି ଲଗାଇ ବାଡ଼ବାଟରେ ଗଲା ବାହାରକୁ ବାହାରିଗଲା, ସେଦିନ ଦିନମାନ ଆଉ ତାକୁ ଘରେ ଦେଖିବାକୁ ମିଳିଲାନାହିଁ ।

ମୁଜ୍କା କେବଳ କାନ୍ଦିବାରେ ଲଗିଥାଏ । ଆଲେକ୍ସର ଛାତିଭିତରେ କିଏ ଯେପରି ଛୁରି ମାରିଦେଇ ଯାଉଥାଏ, ମନର ଦାରୁଣ ଉଦ୍‌ବେଜିତ ଯନ୍ତ୍ରଣାରେ ଆଜ ସେ ଖାଇ ପାରିଲାନାହିଁ, ଶୋଇ ପାରିଲାନାହିଁ ବା ମନଲଗାଇ କୌଣସି କାମରେ ହାତ ଦେଇ ପାରିଲାନାହିଁ, ଏପର୍ଯ୍ୟନ୍ତ ମଧ୍ୟ ତାକୁ ସବୁକିଛି କଡ଼ ଅସମ୍ଭବ ମନେହେଉଥାଏ । ଘଟଣାଗୁଡ଼ିକୁ ସେ ସମ୍ପୂର୍ଣ୍ଣଭାବରେ ହୃଦୟଙ୍ଗମ କରି ପାରୁନଥାଏ । ତା'ର ମୁହଁଟା ଶୁଖି ଯେଟିଆ ଦିଶୁଥାଏ, କିନ୍ତୁ ଆଖିଦୁଇଟା ଏଡ଼େ ବଡ଼ବଡ଼ ଆକାର ଧାରଣ

କରି ଜଳିବାରେ ଲାଗିଥାଏ । କାଳେ ମୁହଁରୁ କ'ଣସବୁ ବଦକଥା ବାହାରିଯିବ, ସେଥିପାଇଁ ପାଟିଭିତରେ ସେ ଦାନ୍ତଗୁଡ଼ାକୁ ଯାବିକରି ରଖିଥାଏ । ବଡ଼ ଅସ୍ଥିର ଭାବରେ ସେ ଘରୁ ବାହାରକୁ ଓ ବାହାରୁ ଘରଭିତରକୁ ପଦଚାରଣା କରିବାରେ ଲାଗିଥାଏ । କେତେବେଳେ ରାସ୍ତାଉପରକୁ ଯାଉଥାଏ, ପୁଣି ଫେରିଆସି ପିଣ୍ଡାରେ ପଡ଼ିଥିବା ଗୋଟାଏ ବେଞ୍ଚ୍ ଉପରେ ଘଡ଼ିଏ ସ୍ଥିରହୋଇ ବସିରହୁଥାଏ । ତା'ର ହୃଦୟଭିତରର ପୀଡ଼ନ କ୍ରମେ ଅଧିକ ଯନ୍ତ୍ରଣାଦାୟକ ଓ ଅସହ୍ୟ ହୋଇ ଉଠୁଥାଏ ।

ଘରଟାଯାକ ଆଜି ଭାରି ଶୁଖିଲା ଖାଆଁ ଖାଆଁ ଲାଗୁଛି । ଘରେ ପଶିଗଲା ମାତ୍ରକେ ଖାଲି ସ୍ତ୍ରୀଆଡ଼ କଇଁକଇଁ କାନ୍ଦ ଓ ଦୀର୍ଘନିଶ୍ୱାସର ଶବ୍ଦ ଶୁଣିବାକୁ ମିଳୁଛି । ଯତେଯେପରି ଘରଭିତରେ ମୁର୍ଦ୍ଦାର ପଡ଼ିଚି ! ଗୁହାଳ ଆଉ ଖଳା-ଘରର କବାଟ ଠିଆମେଲା ପଡ଼ିଚି, ଗାଈଗୋରୁ ଓ ଘୁଷୁରିଗୁଡ଼ାକ ଫିଟି ଆଜି ଭାରି ସ୍ୱାଧୀନ ଭାବରେ ଫଳଦଗିଚା ଭିତରେ ବୁଲିବାରେ ଲାଗିଚନ୍ତି । କେହିକେହି ଝରକା ସେପାଖରେ ବାହାରେ ଠିଆହୋଇ ଘରଭିତରକୁ ଅନାଉଚନ୍ତି । କେବଳ ବୁଢ଼ାକୁକୁର ଲପାକୁ ଛାଡ଼ିଦେଲେ ସେମାନଙ୍କର ଗତିବିଧିରେ ଆଜି ଆଉ କେହି କୌଣସି ବାଧା ଦେଉନାହାନ୍ତି । ଲପା ଭୋ'ଭୋ' ଭୁକିବାରେ ଲାଗିଚି ଓ ସେମାନଙ୍କୁ ଗୁହାଳ ଭିତରକୁ ଫେରାଇ ଆଣିବାକୁ ଭାରି ଚେଷ୍ଟା କରୁଚି, କିନ୍ତୁ ପାରୁନାହିଁ ।

ଗୁହାଳଘରେ ଆପଣାର ଖଟିଆଁଟି ଉପରେ ବସି ଲୁବା ବନ୍ଧୁକ ସଫା କରିବାରେ ବ୍ୟସ୍ତ ଅଛି । ଭିଭେକ୍ ନବାକ୍ ବିସ୍ମୟରେ ତା'ରିଆଡ଼କୁ ଚାହିଁ ଦେଖୁଚି ଓ କାଳେ କିଏ ହଠାତ୍ ଆସି ପହଞ୍ଚିଯିବ ବୋଲି ଗୋଟାଏ ଆଖିରେ ଦୁଆରଆଡ଼କୁ ମଧ୍ୟ ଅନାଇ ରହିଚି ।

ଲୁବା କାଲିରାତିର ଶିକାରଗପ କହିଯାଉଚି ଓ ଭିଭେକ୍ ଭାରି ଉତ୍ସାହିତ ହୋଇ ଏକକର୍ଣ୍ଣହୋଇ ସେହିସବୁ ବର୍ଣ୍ଣନା ଶୁଣୁଚି ।

"କିନ୍ତୁ ମନେରଖିଥା, ଏସବୁ କଥା ଯେପରି କାନରୁ ଦୁଇକାନ ନହୁଏ । ହେଲେ ଏଇ ବନ୍ଧୁକକୁ ମନେ ରଖିଥିବୁ !"

"ନାହିଁ, ମୁଁ କଦାପି କାହାକୁ କହିବନାହିଁ । କିନ୍ତୁ ସୁଜକାକୁ ମଧ୍ୟ କ'ଣ କହିବାକୁ ମନା ?"

"ସୁଜକା ଶୁଣିଲେ ସେ ଢଙ୍ଗକେ ଗାଆଁ ଝାଯାକ ରାଷ୍ଟ୍ର କରଦେବ । ଆଚ୍ଛା, ନେ, ଏଇ ପଇସା ଡକ ନେ"— କ'ଣ ସବୁ କିଣିବୁ !"

"ପଇସା ଥାଉ । ମୁଁ କାହାର ଆଗରେ କହିବନାହିଁ, ତୁ ମୋତେ ବିଶ୍ୱାସ କର !" କିନ୍ତୁ କୁବା, ତୁ ଥରେ ମୋତେ ସାଙ୍ଗରେ ନେଇ ଯାଆନ୍ତୁନାହିଁ ?"

"ଖାଇବାକୁ ଆସ,"— ଘରପିଣ୍ଡାରେ ଠିଆହୋଇ ସୁଜକା ସେମାନଙ୍କୁ ଡାକିଲ ।

"ସେମିତ ଅସ୍ଥିର କାହିଁକି ହେଉଚୁ ? ତୋତେ ମଧ୍ୟ ଦିନେ ମୁଁ ସାଙ୍ଗରେ ନେଇଯିବି ।"

"ଆଉ ମତେ ତୁ ବନ୍ଧୁକ ମାରିବାକୁ ଦେବୁ ନା ? ବେଶୀ ନୁହେଁ, କେବଳ ଥରେ ।"

"ଆରେ, ବାରୁଦଗୁଡ଼ାକ କ'ଣ ମୋଫତ ପଡ଼ୁଚ ନା କ'ଣ ?"

"କିନ୍ତୁ କୁବା, ମୋ'ପାଖରେ ମଧ୍ୟ କିଛି ପଇସା ଅଛି । ଏଥର ଯାଡ଼ାଦେଖି ଯିବାପାଇଁ ମୋତେ ସାଆନ୍ତେ ଦ'ସୁଉକା ପଇସା ଦେଇଥିଲେ । ମୁଁ ତାକୁ ଗୀର୍ଜାରେ ଦିଅଁ ଲଗେ କରିବାପାଇଁ ସଞ୍ଚିକରି ରଖିଚ । କିନ୍ତୁ —"

"ଆଚ୍ଛା ହେଉ, ମୁଁ ତୋତେ ବନ୍ଧୁକମାରି ଶିଖାଇଦେବି ।" — ଭଟେକ୍‌ର ମୁଣ୍ଡଉପରେ ହାତ ଆପଡ଼େଇ ଦେଉଦେଉ କୁବା ବୋଧଦେଇ କହିଲ ।

ସକାଳର ଖାଇବା ଖାଇସାରିବାପରେ ଦୁହେଁ ଗୀର୍ଜାକୁ ବାହାରିଗଲେ । କୁବା ତରତରହୋଇ ଆପଣାର ଗ୍ରେଟ୍ଟାଗୋଡ଼ରେ ନପରପପର ହୋଇ ଧାଇଁଥାଏ, ଭଟେକ୍ ବାରବାର ପଛରେ ପଡ଼ିଯାଉଥାଏ । ତା'ର ତ ଆପଣାର ବୁଟ୍‌ଜୋତା ନାହିଁ, ତେଣୁ ଆଜ ଖାଲିଗୋଡ଼ରେ ଗୀର୍ଜାକୁ ଯାଉଥିବାରୁ ତାକୁ ଭାରି ଲଜ ମାଡୁଥାଏ ।

"ଖାଲିଗୋଡ଼ରେ ଗୀର୍ଜାଘର ଭିତରକୁ ଯିବାଟା କ'ଣ ଉଚିତ ହେବ ?" — ସେ ଥରକଣ୍ଠରେ ପଚାରିଲା ।

"ତୁ ବଡ଼ ବୋକା, ଭିକ୍ଟେ ! ଆମ ଭଗବାନ୍ କ'ଣ ଏଡ଼େ ନୀଚମନା ହୋଇଚନ୍ତି ଯେ ମଣିଷର ପ୍ରାର୍ଥନା ନ ଶୁଣି ସେ ତା'ର ଜୋତା ଅଛି କି ନାହିଁ ଦେଖିବାକୁ ଯିବେ ?"

"ହଁ, ବୁଝିଲି । କିନ୍ତୁ ଗୋଡ଼ରେ ଜୋତା ଥିଲେ ଟିକିଏ ଅଧିକ ସମ୍ମାନ ମିଳେ ତ !"

"ତୁ ଚିନ୍ତା କରନା, ଆଉ ଅଳପଦିନରେ ତୋତେ ମଧ୍ୟ ବୁଟ୍‌ଜୋତା ମିଳିଯିବ ।"

"ହଁ, ନିଶ୍ଚୟ, ନିଶ୍ଚୟ ! ମୁଁ ଆଉଟିକିଏ ବଡ଼ ହୋଇଯାଏ, ଶୃଷକାମରେ କୋଠିଆ ହୋଇ ଶିଖେ । ଦେଖିବୁ, ମୁଁ ସିଧା ଓ୍ୱାର୍‌ସ ଯାଇ ସେଇଠି କୋଉ ଅସ୍ତାବଲରେ କାମ କରିବି । ସହରରେ ସମସ୍ତେ ଜୋତାମାନ୍ଡ଼ ବାଟ ଚାଲନ୍ତି, ନୁହେଁ କୁବା ?"

"ହଁ, ଓ୍ୱାର୍‌ସ ବିଷୟରେ ତୋ'ର କିଛି ମନେଅଛି, ଭିକ୍ଟେ ?"

"ନିଶ୍ଚୟ, ନିଶ୍ଚୟ । ଏଠିକି ମୁଁ ପାଞ୍ଚବର୍ଷ ବୟସ ହେଲାପରେ ଓ୍ୱାର୍‌ସରୁ ଆସିଚି । ତେଣୁ ମୋର ସେହି ସହରର ସବୁକଥା ମନେଅଛି । ଆମେ ଚାଲିଚାଲି ଷ୍ଟେସନକୁ ଆସିଲୁ, ସେଠାରେ କେତେରକମର ଆଲୁଅ ମାଳମାଳ ହୋଇ ଜଳୁଥିଲା । ଘରଗୁଡ଼ାକ ଖାଲି ଲାଗିଲାଗିକରି ରହିଥିବାପରି ଦେଖାଯାଉଥାନ୍ତି । ଗୋଟାଏ ଗୋଟାଏ ଘର ଠିକ୍ ଗୋଟାଏ ଗୋଟାଏ ଗୀର୍ଜାପରି !"

"ଏଗୁଡ଼ାକ ସବୁ ଖାଲି ବାଜେକଥା !" — ନାପସନ୍ଦ କରି କୁବା କହିଲା,

"ନାଁ ମ, ମୁଁ ସତ କହୁଚି ! ଘରଗୁଡ଼ାକ ଏତେ ଉଚ୍ଚ ହୋଇ ଠିଆହୋଇ ରହିଥିଲା ଯେ ଘରର ଛାତକୁ ମୋର ଆଖି ପାଉନଥିଲା । ମାଟିଉପରୁ ଝରକା ବସିବା ଆରମ୍ଭ ହୋଇଥିଲା । କାନ୍ଥଗୁଡ଼ାକରେ ଖାଲି ଝରକା ଭର୍ତ୍ତି ! ଗୃହଆଡ଼ୁ ଖାଲି ଠଣଠଣ ହୋଇ ଘଣ୍ଟି ବାଜୁଥାଏ ।"

"ଅସମ୍ଭବ ନୁହେଁ । ସହରରେ ତ କେତେ ଗୀର୍ଜା ଅଛି !"

"ହଁ, ଗୀର୍ଜାନଥିଲେ ଏହି ଘଣ୍ଟାଶବ୍ଦ ଆଉ କୁଆଡୁ ଶୁଭୁଥାଆନ୍ତା ?"

ଗୀର୍ଜାର ହତାଭିତରକୁ ଆସି ସେମାନେ ବର୍ତ୍ତମାନ ଚୁପ୍‌ହେଲେ । ଆଜି ଗୀର୍ଜାଭିତରେ ଭାରି ଭିଡ଼, ଠେଲାପେଲି ଯେକୌଣସି ପ୍ରକାରେ ଆଗକୁ ଯିବାକୁ ହେଲା ।

ରାସ୍ତାରୁ ଗୀର୍ଜାଘରର ଦୁଆରଯାଏ ଫକୀରମାନେ ଧାଡ଼ିକରି ଠିଆହୋଇଥାନ୍ତି; ଗୀତଗାଇ, ଡାକଭୁଡ଼ି ଭିକ ମାଗିବାରେ ଲାଗିଥାନ୍ତି । କିଏ ଆପଣାର କେନ୍ଦରାଟି ବଜାଇ ଗୁଣ୍‌ଗୁଣ୍‌ ହୋଇ ଗୀତ ଗାଉଥାଏ । ଆଉକିଏ ଏତେବଡ଼ ପାଟି ବାହାରକରି କାନଅତଡ଼ା ପକାଉଥାଏ ।

ଗୀର୍ଜାଘର ଭିତରେ ମଧ ଆଜି ମଣିଷଭିଡ଼ରେ ସୋଲଷ ପଡ଼ିବାକୁ ଜାଗାନାହିଁ ! ଅର୍‌ଗାନ୍‌ ବଜାଇବାକୁ ନିଯୁକ୍ତ ହୋଇଥିବା କର୍ମଚାରୀ ଓ ତା'ର ପୁଅ ସେହି ଭିଡ଼ଭିତରେ ବୁଲି ବାଅଁଲଗି ପାଇଁ ନାମତାଲିକା ସଂଗ୍ରହ କରୁଥାନ୍ତି । ଜୁବା ଦଉଡ଼ିଯାଇ କେତେଜଣଙ୍କର ନାଆଁ ଲେଖାଇଦେଇ ଆସିଲା । ଗୋଟିଏ ନାଆଁ ପାଇଁ ତନପଇସା କରି ଦେବାକୁ ପଡ଼ୁଥାଏ, ପଇସା ନ ଥିଲେ ତନଟା ଅଣ୍ଡାଲଗି ପ୍ରତିଶ୍ରୁତି ଦେବାକୁ ପଡ଼ୁଥାଏ ।

ଭିଡ଼େଲ୍‌ ପକ୍ଷରେ ଏହି ଭିଡ଼କୁ ଠେଲି ଆଗକୁ ଯିବା କାଠିକର ଘାଠ ହୋଇପଡ଼ୁଥାଏ । ତା'ର ଗୋଡ଼ରେ ତ ଜୋତା ନ ଥାଏ, ତେଣୁ କେତେ ଲୋକଙ୍କର ପାଦପଡ଼ି ତା'ର ପାଦଦୁଇଟା ମାଡ଼ିଦଳି ହୋଇ ଯାଉଥାଏ । ତଥାପି ହାତଭିତରେ ପଇସାତକ ଜାବୁଡ଼ି କରି ଧରି ସେ ପ୍ରାଣପଣେ ଆଗକୁ ବାଟ କାଢ଼ି ଯାଉଥାଏ । ଶେଷକୁ ଅର୍‌ଗାନ୍‌ ପାଖରେ ଆସି ପହଞ୍ଚିବାପରେ ସେ ଗୃହପାଖକୁ ଅନାଇ ଅନାଇ ସ୍ତବ୍ଧ ହୋଇ ଠିଆହୋଇ ରହିଲା । ତା'ଗୃହପାଖରେ ଗୃଷୀ ଆଉ ଗୃଷୀଘରଣୀମାନେ ଭର୍ତ୍ତି ହୋଇ ରହିଚନ୍ତି । ପ୍ରାୟ ସମସ୍ତେ ହେଉଚନ୍ତି ଏଇ ଗାଆଁର ବାସିନ୍ଦା । ପେଡଣିଆ ଘରର ଘରଣୀ ମୁଣ୍ଡରେ ଟୋପିଲଗାଇ ଠିକ୍‌ ଗୋଟାଏ ଜମିଦାରଆଣୀ ପରି ବସିଚ । ସେପାଖକୁ କମାରପୁଅ ଆଉ ପଧାନ ଆପଣାର ଘରଯାମାନଙ୍କୁ ସାଙ୍ଗରେ ନେଇ ବସିଚନ୍ତି । ସମସ୍ତେ ବାଅଁଲଗି କରିବାପାଇଁ ତାଲିକାରେ

ନାଆଁ ଲେଖାଇ ଆସୁଚନ୍ତି । ଆଜି ପ୍ରାର୍ଥନାବେଳେ ସେମାନଙ୍କର ଆତ୍ମାର ମୁକ୍ତିଲାଗି ପ୍ରାର୍ଥନା କରାଯିବ, ସେମାନଙ୍କୁ ସ୍ମରଣ କରାଯିବ । କିନ୍ତୁ ସେ ? ସେ ପୁଣି କାହାର ନାଆଁ ଦେବ ? ତା'ର ଆପଣା ବାପ, ଆପଣାର ଜନମକଲା ମାଆ, — କିନ୍ତୁ ସେମାନଙ୍କର ନାଆଁ କଅଣ ? ସେ ଠିକ୍ ଠିକ୍ ନାଆଁ ଗୁଡ଼ାକୁ କହି ପାରିବ ତ ? ତେବେ ସେ ଆଉ କାହାଲଗି ଦଅଁ ଲଗି କରିବ ?......"ହେ ଭଗବାନ, ହେ ଯୀଶୁ !"— ଆପଣାର ଆତ୍ମା ଭିତରେ ସେ ଆକୁଳ ହୋଇ କହିଉଠିଲା । ତା'ର ପାଟିଟା ସେହିପରି ଆଁ ହୋଇ ରହିଥାଏ ଓ ସେ କାବାହୋଇ ଠିଆ ହୋଇଥାଏ । ତା'ର ଅନ୍ତର-ଭିତରେ ଯେପରି କେଉଁ ଦୁଃଖର କରୁଣ ମୂର୍ଚ୍ଛନା ବାଜି ଉଠୁଥାଏ, ନିଶ୍ୱାସ ବନ୍ଦହୋଇ ଆସିଲାପରି ମନେହେଉଥାଏ । ସତେଯେପରି ସେ ଏହିକ୍ଷଣି ତଳେ ପଡ଼ିଯିବ, ତାକୁ ଠିକ୍ ସେହିପରି ବୋଧ ହେଉଥାଏ । କିନ୍ତୁ ଠିଆ-ହୋଇ ରହିବାକୁ ତା'ର ଜୁ' କାହିଁ ? ମଣିଷଭିଡ଼ର ଠେଲାପେଲାରେ ସେ ଏକପାଖିଆ ହୋଇ ଗୋଟାଏ କଣଆଡ଼କୁ ଠେଲିହୋଇ ଚାଲିଗଲା, ତଳେ ପଡ଼ିଯିବା ଭୟରେ ସେ ଆପଣା ମୁଣ୍ଡକୁନେଇ ସେଠି ରଖାହୋଇ-ଥିବା ଟିଣର ଜଳପାତ୍ର ଦେହରେ ଭିଡ଼ିଦେଇ ଠିଆହୋଇ ରହିଲା । ତା'ର ଆଖିରୁ ଟୋପାଟୋପା ହୋଇ ଲୁହ ବୋହିଯାଉଥାଏ, ମନେହେଉଥାଏ ସତେ ଯେପରି କେଉଁ ମନ୍ତ୍ରସ୍ତ ପ୍ରାଣର ଜପାମାଳାରୁ ଗୋଟିଗୋଟି ହୋଇ ମାଳି ଗଡ଼ଗଡ଼ ଚାଲିଯାଉଛି । ସେ ଯେତେ ଚେଷ୍ଟାକଲେ ମଧ୍ୟ ଲୁହକୁ ସମ୍ଭାଳିକରି ରଖିପାରୁନଥାଏ । ଭିତରେ ସେ ଏପରି ଭାବରେ କାତର ଓ କାକୁସ୍ଥ ହୋଇ ପଡ଼ୁଥାଏ ଯେ ଦାନ୍ତକୁ ଯାକି ଧରି ଠିଆହୋଇ ପାରିବାକୁ ମଧ୍ୟ ତା'ର ଆଉ ବଳ ପାଉନଥାଏ । ଶେଷକୁ ଅନ୍ୟ ଉପାୟ ନଦେଖି ସେ ଗୀର୍ଜାଘରର ଗୋଟିଏ କଣ ଜାଗାକୁ ଚାଲିଗଲା ଓ ସେଇଠାରେ ହୃଦୟର ସମସ୍ତ ଦୁଃଖକୁ ମୁକୁଳା କରିଦେଇ କାନ୍ଦିବାକୁ ଲାଗିଲା, — ବାପ କି ମାଆ ନଥିବା କୌଣସି ବାଳକ ଯେପରି ବିକଳ ଅଶ୍ରୁପାତ କରି କାନ୍ଦେ, ଠିକ୍ ସେହିପରି ।

"ବୋଉ, ମୋ' ବୋଉ କୁଆଡ଼େ ଗଲା ଲୋ !"—ହୃଦୟ ଭିତରଟାକୁ ଟିକିଟିକି କରି ଚିରଦେଇ ସତେ ଯେପରି ତା'ଭିତରେ ଥାଇ କିଏ ରୋଦନ କରିବାକୁ ଲାଗିଲା । ସଂସାରରେ ଏତେ ପିଲା ଅଛନ୍ତି, ସମସ୍ତଙ୍କର ବାପମାଆ ଅଛନ୍ତି, ଖାଲି ତାହାର କପାଳକୁ କାହିଁକି କେହି ନାହାନ୍ତି, ସେ ଏକଥା କଳ୍ପନା ମଧ୍ୟ କରି ପାରିଲାନାହିଁ । ସତେ ଏ ସଂସାରରେ ତା'ର ଭାଗ୍ୟଟା କେଡ଼େ ଶ୍ରେଷ୍ଠ !

ଏହି ସମୟରେ କୁବା ସେଠାକୁ ଆସି ତାକୁ ପଚାରିଲା :

"ଭିନ୍ସେକ୍, ଧର୍ମଲାଗି ପାଇଁ ତୁ ପଇସା ଦେଇଚୁ ତ ?"

"ଉହୁଁ, କେତେବେଳେ ଦେଲି ?"— ତରତର କରି ଆଖିଦୁଇଟା ପୋଛିପକାଇ ଭିନ୍ସେକ୍ ଉତ୍ତର ଦେଲା ଏବଂ ପୁଣି ଆଗକୁ ଯିବାକୁ ବାହାରିଲା । ହଁ, ସେ ନିଶ୍ଚୟ ନାଆଁ ଦେଇଆସିବ । ତା'ର ଜାଣିବାରେ ଯେ ତା'ର ବାପା ନାହିଁ କି ମାଆ ନାହିଁ, ଏକଥା କିଏ କାହିଁକି ଜାଣି-ବାକୁ ଯିବ ? ନାହାନ୍ତି ତ ନାହାନ୍ତି, ସେଇଟା ତ ତା'ର ନିଜର କଥା, ସେଥିରେ ଆଉ କାହାର କାହିଁକି କଅଣ ଯିବ ? ସେ ଅରକ୍ଷିତ ଛୁଆ ହେଲେ ହେଲା ପଛକେ ! ଏହିପରି ଭାବରେ ଆପଣାକୁ ଦମ୍ଭ ଦେଇ ସେ ଆଖିରୁ ଲୁହ ପୋଛି ପକାଇଲା ଓ ଯେଉଁ ନାଆଁଗୁଡ଼ାକ ଆଗ ତା'ର ମନକୁ ଆସିଲା, ସେଗୁଡ଼ିକୁ ଧର୍ମଲାଗିର ତାଲିକାରେ ଲେଖିଦେଇ ଆସିଲା ।

ଧର୍ମଲାଗିର ପାଉଣାତକ ଦେଇସାରିବା ପରେ ସେ କୁବା ସାଙ୍ଗରେ ଉପାସନା କରିବାକୁ ଗଲା । ଆଉଟିକିଏ ଗଲେ ନିଜେ ପାଦ୍ରୀ ତା'ର ଦେଇଥିବା ଲୋକମାନଙ୍କର ନାଆଁକୁ ଗୀର୍ଜାଭିତରେ ଉଚ୍ଚାରଣ କରିବେ, ସେ ଅବଶ୍ୟ ଶୁଣିବାକୁ ପାଇବ ।

ପାଦ୍ରୀ ଗୋଟିଏପରେ ଗୋଟିଏ କରି ନାଆଁ ପଢ଼ି ଯାଉଥାନ୍ତି । ଭିନ୍ସେକ୍ କୁବା ପାଖରେ ନତଜାନୁ ହୋଇ ରହିଥାଏ । କୁବା ହାତରେ ଗୋଟିଏ ଜପାମାଳି ଧରି ପାଦ୍ରୀ ତାକୁ ସୁପାରିଶ କରିଦେଇଥିବା ମନ୍ତ୍ର-ଗୁଡ଼ିକୁ ଜପିବାରେ ଲାଗିଥାଏ । ଭିନ୍ସେକ୍ ମଧ୍ୟ ଆଗ କେତୋଟି ପ୍ରାର୍ଥନା ଆବୃତ୍ତି କଲା, କିନ୍ତୁ ପରିଆଡୁ ଖାଲି ପ୍ରାର୍ଥନାମନ୍ତ୍ରର ଶବ୍ଦଗୁଡ଼ାକ ଶୁଣିଶୁଣି

ତାକୁ ଭାରି ଘୋଡ଼ିଆ ଲାଗିଲା ଓ ନଦ ମାଡ଼ିଲାପରି ମନେହେଲା । ହଠାତ୍ ଭାରି କ୍ଳାନ୍ତ ଅନୁଭବ କରି ସେ କୁବାର ଦେହଉପରକୁ ଆଉଜି ଶୋଇ-ପଡ଼ିଲା ।

× × × ×

## ଦଶ

"ଉପାସନାର ବେଦୀଉପରେ ଠିଆହୋଇ ପ୍ରତ୍ୟେକ ମଣିଷକୁ ମୁଁ ଏହିକଥା କହିବାକୁ ଇଚ୍ଛା କରୁଚି.... .", — ହଠାତ୍ ପାଦ୍ରୀଙ୍କର କଣ୍ଠ-ଭିତରେ ପବନ ଅଟକିଯିବାରୁ ସେ ବାକ୍ୟଟିକୁ ପୂରଣ କରି କହି ପାରିଲେ-ନାହିଁ । ସେ ଖଁ ଖଁ ହୋଇ ଭାରି ଜୋରରେ କାଶିବାକୁ ଲାଗିଲେ । ଆନ୍ନେକ୍ ନୀରବ ରହିଥାଏ ।

ପବନର ପ୍ରକୋପ କ୍ରମେ ବଢ଼ିବାରେ ଲାଗିଚି, ରାସ୍ତାରୁ ଧୂଳି ଉଡ଼ାଇ ନେଇ ପବନ ସିଧା ଯାଇ ପପ୍ଲାର ଗଛଗୁଡ଼ିକରେ ପିଟିହୋଇ ଯାଉଚି,— ପବନର ପରାକ୍ରମରେ ଗଛଗୁଡ଼ାକ ନଇଁପଡ଼ୁଚନ୍ତି ଓ ବଳରେ ଚିତ୍କାର କରି ଉଠୁଚନ୍ତି ।

ପାଦ୍ରୀ ପୁଣି କହିବାକୁ ଆରମ୍ଭ କଲେ : "ଶୁଣ, ମୁଁ ତୋତେ କହିପାରେଚି, ଯେ ମୁଁ ନିଜେ ଘୋଡ଼ୀଟିକୁ ପୋଖରୀକୁ ପାଣି ପିଆଇବାକୁ ନେଇଥିଲି । ଘୋଡ଼ୀଟିର ତ ଆଖିନାହିଁ, ତେଣୁ ସେ ଦେଖିପାରିବ କୁଆଡୁ ? ତେଣୁ ବାଟବଣା ହୋଇ ଯେ ସେ ଆଉକୁଆଡ଼େ ଚାଲିଯିବ ବା ହୁଏତ କୋଉଠି ପଡ଼ିଯାଇ ଗୋଡ଼ ଭାଙ୍ଗିଦେବ ସେ କଥାରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? — କଥାଟି କହୁକହୁ ପାଦ୍ରୀଙ୍କର ମୁହଁ ହଠାତ୍ ବିବର୍ଣ୍ଣ ହୋଇପଡ଼ିଲା ଏବଂ ସେ ସମ୍ମୁଖରେ ଥିବା ପ୍ରତ୍ୟେକଟି ଗଛ ଓ ପ୍ରତ୍ୟେକଟି ବିଲ ଉପରେ ଦୃଷ୍ଟିପାତ କରିବାକୁ ଲାଗିଲେ ।

"କିନ୍ତୁ ସିଏ ସବୁଦିନେ ତ ସେମିତି ଏକାଏକା ଯାଉଥିଲା, ସମ୍ପୂର୍ଣ୍ଣ ସ୍ୱାଧୀନ ଭାବରେ ଯାଉ ଥିଲା!"

"ହଁ, ପୋଖରୀକୁ ଯିବାଲାଗି ବାଟଟା ତାକୁ ଭଲକରି ମାଲୁମ ଅଛି ! କିନ୍ତୁ କୋଉଠି କିଏ ଶୁଲଖି କରି ତା'ପାଇଁ ଗୋଟାଏ କୁଣ୍ଡରେ ପାଣି ମୋହିଁ ଦେବ ଏବଂ ସେଇଠାରୁ ତାକୁ ଲେଉଟାଇ ଆଣିବ । କିନ୍ତୁ ଏପରି ନ ହୋଇଥିଲେ ତ ସେ ଆପଣାଗୁଏଁ ଘରକୁ ଲେଉଟି ଆସିଥାନ୍ତା । ··· ହେ ହେ ଷ୍ଟାଲେକ୍‌ !"— ପଡ଼ିଆର ଗଛଗୁଡ଼ିକର ଉହାଡ଼ରେ କାହାକୁ ଯାଉଥିବାର ଅନୁମାନ କରି ସେ ଡାକ ଛାଡ଼ିଲେ ।

"ସଞ୍ଜ ବୁଡ଼ିବା ଆଗରୁ ମୁଁ ଷ୍ଟାଲେକ୍‌କୁ ଆମ ବଡ଼ ପୋଖରୀହୁଡ଼ାରେ ଦେଖିଥିଲି ।"

"ଖୁବ୍‌ ସମ୍ଭବ ସିଏ ତାହାର ସନ୍ଧାନରେ ଯାଇଚି ; କିନ୍ତୁ ଟିକିଏ ଅଧିକ ବିଳମ୍ବ ହୋଇଗଲା ! ······ଘୋଡ଼ୀଟିକୁ ଆସି କୋଡ଼ିଏ ବରଷ ହେଲାଣି ! ମୁଁ ଆସିବା ପରେପରେ ସେ ଫଳ ଯାଇଥିଲା । ତେଣୁ ବର୍ତ୍ତମାନ କେହି ଦୟାକରି ସେହି ଘୋଡ଼ୀଟିକୁ ଖାଇବାକୁ ଦେଲେ ସେ ବଞ୍ଚିଯିବ । ······"

"ଜଥାଟା ସତେ ଓଲଟା ହେଲା ନା କ'ଣ ?"—ଆଲେକ୍‌ ବଡ଼ ଅପ୍ରସନ୍ନ ଭାବରେ ଗଣଗଣହୋଇ କହିଲା । ଗୋଟାଏ ଅଭିଯୋଗ ଜଣାଇ ସେ ବିଷୟରେ କୌଣସି ପରାମର୍ଶ ନେବାକୁ ସେ ପାଦ୍ରୀଙ୍କ ପାଖକୁ ଆସି-ଥିଲା । କିନ୍ତୁ ଓଲଟି ତାକୁ ଗାଳି ଶୁଣିବାକୁ ପଡ଼ିଲା, ହଜିଯାଇଥିବା ଘୋଡ଼ୀ-ଟିକୁ ଖୋଜିଆଣି ଦେବାକୁ ପୁଣି ପାଦ୍ରୀ ତାକୁ କହୁଛନ୍ତି ! ହଁ, ଘୋଡ଼ୀଟାର ବୟସ ହୋଇଗଲାଣି, ଏଣେ ଆଖି ନାହିଁ, ତେଣୁ ତା'ପ୍ରତି ଦୟା ଦେଖାଇବା ଅବଶ୍ୟ ଉଚିତ । କିନ୍ତୁ ତା'ର ଆପଣା ଲୋକମାନେ କ'ଣ ଆଗ ସାହାଯ୍ୟ କରିବାକୁ ବାହାରି ଆସନ୍ତେ ନାହିଁ ?

"ତୋତେ ମୁଁ ସାବଧାନ କରିଦେଉଚି, ତୁ ଆପଣାକୁ ଅନ୍ଧାରରେ ରଖିବାକୁ ଚେଷ୍ଟାକର । ମୋ'କଥା ଶୁଣିଲୁ ତ ? ଆଉ ତାକୁ କୌଣସି ଅଭିଶାପ ବା ଗାଳିଗୁଲଜ ଦେବା ଉଚିତ ହେବନାହିଁ । ସେ ହେଉଚି ତୋ'ର ବାପା !"

"ସେକଥା ମୋତେ ଭଲକରି ଜଣାଅଛି !" — ଭାରି ତିକ୍ତସ୍ୱରରେ ଆନ୍ଦ୍ରେଇ୍‌ ଉତ୍ତର ଦେଲା ।

"ଏପରି କଲେ ତୁ ଭଗବାନଙ୍କ ବିରୁଦ୍ଧରେ ଏକ ଗୁରୁତର ଅପରାଧ ଓ ପାପ କରି ବସିବୁ । କ୍ରୋଧପରବଶ ହୋଇ ଯିଏ ଆପଣା ବାପଉପରକୁ ହାତ ଉଠାଏ ଓ ଏହିପରି କରିବାଦ୍ୱାରା ଭଗବାନଙ୍କର ଆଜ୍ଞାକୁ ଲଙ୍ଘନ କରେ, ତାକୁ ଭଗବାନ କଦାପି କ୍ଷମା କରିବେନାହିଁ ।"

"କିନ୍ତୁ ମୁଁ କିଛି ଚାହୁଁନାହିଁ, କେବଳ ନ୍ୟାୟବିଚାର ଚାହୁଁଛି ।"

"ନା — ତୁ ପ୍ରତିଶୋଧ ନେବାକୁ ଚାହୁଁଚୁ ...... ମୋ'କଥା ସତ ନା ମିଛ ?"

କ'ଣ ଉତ୍ତର ଦେବ ବୋଲି ଆନ୍ଦ୍ରେଇ୍‌ କିଛି ଠିକ୍‌ କରି ପାରିଲାନାହିଁ ।

"ହଁ, ଆଉଗୋଟାଏ କଥା ମନେରଖିଥା, — 'ଥିର ବାଛୁରୀ ବେଶୀ-ଦିନ ବଞ୍ଚେ, ବେଶୀ ଦୁଧ ପିଏ ଓ ବଳୁଆ ହୋଇ ବଢ଼େ ।"

"ଥିର ! ଥିର ହେବାର ତେର ଫଳ ମୁଁ ପାଇଲିଣି ! ସଂସାରରେ ଯାବତ ଅନ୍ୟାୟ କରିବାଲଗି ମୁଁ ଗୋଟାଏ ଲୋକଙ୍କୁ ପ୍ରଶ୍ରୟ ଦେବାରେ ଲାଗିଥିବି, ସେ ଖାଲି ମୋର ବାପ ବୋଲି ମୁଁ ସବୁ ସହିଯାଉଥିବି, ନା ? ବାପ ଅପରାଧ କଲେ ପିଲାମାନଙ୍କର କ'ଣ ନ୍ୟାୟ ଦାବୀ କରିବାକୁ କୌଣସି ଅଧିକାର ନାହିଁ ? — ଭଲରେ ବିଧାତା ! ଯଦି ଏହାହିଁ ତୋ'ର ବିଚାର ହୁଏ, ତେବେ ମୋର ଏହିବିଚାର ଆଦୌ ଲୋଡ଼ା ନାହିଁ, ମୋର ଆଉ-କୋଉଠିକି ବାହାରି ଚାଲିଯିବା ଭଲ ।"

"ଯାଉନୁ ! କିଏ ତୋତେ ମନା କରି ରଖିଚି ?" — ରାଗରେ ଜଳି ଉଠିବା ପରି ହୋଇ ପାଦ୍ରୀ ଉତ୍ତର ଦେଲେ ।

"ଯିବି ନାହିଁ ତ ଆଉ କ'ଣ କରିବି ? ଏଠି ମୋ' ପାଇଁ କ'ଣ ଅଛି ଯେ ଏଠାରେ ପଡ଼ି ରହିଥିବି ?" — ଆନ୍ଦ୍ରେଇ୍‌ କାନ୍ଦକାନ୍ଦ ହୋଇ କହିଲା ।

"ତୋ'କଥାର କୌଣସି ଅର୍ଥ ନାହିଁ । ଆଉମାନଙ୍କର ନଖେ ହେଲେ ଜମି ନାହିଁ; ତଥାପି ସେମାନେ ପଡ଼ିରହିଛନ୍ତି, କାମକରୁଚନ୍ତି, ଭଗବାନଙ୍କର ଅଶେଷ କୃପାରୁ ସେମାନଙ୍କୁ କାମ ବି ମିଳିଯାଉଚି । ତେଣୁ

ତୋ'ର ମଧ୍ୟ ସେହିପରି କୌଣସି କାମ ଆଦରିନେଇ ଆପଣା ପେଟ ପୋଷିବା ଉଚିତ । ସ୍ତ୍ରୀଲୋକଙ୍କ ପରି ଏହି ଅଭିଯୋଗ କରିବା ବଡ଼ ଅସୁନ୍ଦର ଦିଶୁଚି । ତୋ'ଦେହରେ ବଳ ରହିଚି, ସାମର୍ଥ୍ୟ ରହିଚି, — ହାତରେ ନାନାପ୍ରକାର କାମଧନ୍ଦା ମଧ୍ୟ ରହିଚି । କିଛି ଜମି ମଧ୍ୟ ରହିଚି ।"

"ହଁ, ଜମି ନାହିଁ କ'ଣ ! ଏକ, ଦୁଇ, ତିନି ଏକର ଅଛି !" ଆନ୍ତୋକ୍ ବ୍ୟଙ୍ଗ କଲପରି ଉତ୍ତରଦେଲା ।

"ତା' ସହିତ ଘରେ ତୋ'ର ମାଇପ ଅଛି, ପିଲାମାନେ ଅଛନ୍ତି । ସେ କଥା କାହିଁକି ଭୁଲିଯାଉଚୁ ?"

ସେତେବେଳକୁ ଦୁହେଁ ଯାଇ ସରାଇଘର ପାଖରେ ଖେଞ୍ଚି ସାରି-ଥିଲେ । ଘରଭିତରୁ ଝରକାବାଟେ ଆଲୁଅ ଦେଖାଯାଉଥାଏ, ରାସ୍ତା ଉପରି-ଯାଏ ଲୋକମାନଙ୍କର କୋଳାହଳ ମଧ୍ୟ ଶୁଭୁଥାଏ ।

"କ'ଣ ହେଲା, ଏଠି ପୁଣି ମାତଲାମି ଚାଲିଛି ?"

"ଗଲା ଖରାଦିନେ ଯେଉଁମାନଙ୍କୁ ଫଉଜରେ ଯିବାପାଇଁ ବଛାଯାଇଥିଲା, ସେଇମାନେ । ଆସନ୍ତା ରବିବାରଦିନ ରୁମ୍ ସରକାର ଏମାନଙ୍କୁ କୁଆଡ଼କୁ କେତେଦୂରକୁ ନେଇଯିବ ବୋଲି ଆଦେଶ ଆସିଚି । ତେଣୁ ସେମାନେ ଟିକିଏ ସୁଖ କରି ନେଉଚନ୍ତି ।"

ପପ୍‌ଲର ଗଛଗୁଡ଼ିକ ପାଖରେ ଠିଆହୋଇ ପାଦ୍ରୀ ଝରକାବାଟେ ଘରଭିତରେ ଚାଲିଥିବା ଯାବତୀୟ ବ୍ୟାପାରକୁ ବେଶ୍ ସ୍ପଷ୍ଟଭାବରେ ଦେଖି ପାରୁଥିଲେ । ମଣିଷଭିଡ଼ରେ ଘରଗୋଟାକଯାକ ପୂରିଚି । ସେ ଆଶ୍ଚର୍ଯ୍ୟ ହୋଇ କହିଲେ, "ଆରେ ଏହି ଘରଟା ଭିତରେ ତ ଅନେକଲୋକ ଆସି ରୁଣ୍ଡ ହୋଇଚନ୍ତି !"

"ଆଜି ସେମାନେ ଗୋଟାଏ ସଭା ଡାକିଚନ୍ତି । ଜମିଦାର ଇହୁଦୀମାନଙ୍କୁ ଯେଉଁ ଜଙ୍ଗଲ-ଜମିମାନ ବିକିଦେଇଚି, ସେହି ବିଷୟରେ ପରାମର୍ଶ କରିବାକୁ ଏହି ସଭା ଡକାଯାଇଚି ।"

"କିନ୍ତୁ ଜମିଦାର ତ ମୋଟେ ଅଧେ ଜମି ବିକିଚି ।"

କିନ୍ତୁ ଆମେ ଗ୍ରାମବାସୀ ରାଜି ନ ହେଲା ପର୍ଯ୍ୟନ୍ତ ଗୋଟାଏ କଣ୍ଟାବୁଦା ବିକିବାକୁ ମଧ୍ୟ ତା'ର କ୍ଷମତା ନାହିଁ !"

"ତୁ କ'ଣ କହୁଛୁ" — ବଡ଼ ଉଦ୍‌ବେଗ ପ୍ରକାଶ କରି ପାଦ୍ରୀ ପଚାରିଲେ ।

"ଆମେ ଛାଡ଼ିବୁ ନାହିଁ ! ଇଏ ହେଉଛି ଏକାବେଳକେ ସିଧାକଥା । ଗାଁ ଯାକ ଲୋକ ଠିକ୍ କରିଛନ୍ତି ଯେ ସେମାନେ ଗୋଟାଏହେଲେ ଗଛ ମଧ୍ୟ କାଟିବାକୁ ଦେବେନାହିଁ । ଆଉ ଯଦି ମେଳି କରିବାକୁ ଦରକାର ପଡ଼ିବ, ତେବେ ଗାଁ ଗୋଟାକଯାକ ଟାଙ୍ଗିଆ ଆଉ କୁରାଢ଼ି ଧରି ଠିଆ ହୋଇଯିବେ । ଯେଉଁ ସମ୍ପତ୍ତି ଉପରେ ସେମାନଙ୍କର ପୂରା ହକ୍ ରହିଛି, ସେମାନେ ସେହି ସମ୍ପତ୍ତିକୁ କଦାପି ଅନ୍ୟ ହାତକୁ ଛାଡ଼ି ଦେବେନାହିଁ !

'ହେ ଭଗବାନ, ତୁମର ଇଚ୍ଛା ! ଭଗବାନଙ୍କର କୃପାରୁ କେବଳ କୌଣସି ହିଂସା ବା ଗଣ୍ଡଗୋଳ ନହେଲେ ହେଲା !"

"ନାଇଁ, ନାଇଁ, — ବେଶୀ ହେବନାହିଁ । ଖାଲି ଗୋଟାଏ ଦୁଇଟାଙ୍କର ମୁଣ୍ଡ ଫାଟିବ । ତେବେ ଯାଇ ନ୍ୟାୟବିଚାର ହେବ !"

"ଆନ୍ତୋନ୍, ତୋ' ମୁଣ୍ଡକୁ କ'ଣ ପିତ୍ତ ଚଢ଼ିଯାଇଛି କି ? ତୁ ପାଗଳଙ୍କ ପରି କ'ଣ ସବୁ କହିବାରେ ଲାଗିଛୁ ?"

ଆନ୍ତୋନ୍ ଏ କଥାକୁ କାନକୁ ନେଲାନାହିଁ, ଚୁଲିପାଖୁ ସେଠାରୁ ଚାଲିଗଲା ଓ ଅନ୍ଧାରଭିତରେ ଅଦୃଶ୍ୟ ହୋଇଗଲା । ପାଦ୍ରୀ ମଧ୍ୟ ତରତର ହୋଇ ଆପଣା ଗୃହକୁ ଫେରିବାକୁ ଲାଗିଲେ ।

ଆନ୍ତୋନ୍ ପେଷାଘର ବାଟେ ବାଟ କାଟିଗଲା । ଯେପରିକି ତାକୁ ଯୁଗ୍‌ନାଙ୍କ ଘରବାଟ ଦେଇ ଯିବାକୁ ନ ହୁଏ, ସେ ସେହି ଚେଷ୍ଟା କରୁ-ଥିଲା ।

ତାର ଛାତିଭିତରେ ଯୁଗ୍‌ନାର ସ୍ମୃତି ତାକୁ ଘାରି ପକାଉଥାଏ, ଗୋଟାଏ ପୁରୁଣା ଘାଆ ପରି ତାକୁ କଷ୍ଟ ଦେବାରେ ଲାଗିଥାଏ ।

ସେ ଦୂରରୁ ଅନାଇ ଦେଖିଲା, ଯୁଗ୍‌ନାର ଶୋଇବାଘରେ ଆଲୁଅ ଜଳୁଛି । ସେଠି ଯେପରି ସମସ୍ତେ ମହୋତ୍ସବରେ ମାତି ରହିଛନ୍ତି । ଦଣ୍ଡେ

ଅଟକିଯାଇ ସେ ପୁଣି ଥରେ ଅନାଇ ଦେଖିଲା । ଯୁଗ୍‌ନାର ଉଦ୍ଦେଶ୍ୟରେ ତା'ର ହୃଦୟଭିତରୁ କର୍କଶ ବାକ୍ୟବାଣମାନ, ଛୁଟିଗଲା ପରି ମନେହେଉଥାଏ । କିନ୍ତୁ ହଠାତ୍‌ ତା' ଉପରେ ଯେପରି କ'ଣ, ଗୋଟାଏ ଆସି ଡ଼ିଆଁ କରି ପଡ଼ିଲା ଓ ସେ ଡରଡର ହୋଇ ସେଠାରୁ ବାହାରିଗଲା ।

"ବର୍ତ୍ତମାନ ସେ ମୋ' ବାପର, — ମୋ' ବାପର !"

ସେଇଠୁ ଆନ୍ଦ୍ରେଇ ଆପଣାର ଭଉଣୀଇ କମାରପୁଅ ପାଖକୁ ଗଲା । ଅବଶ୍ୟ ତା'ଠାରୁ କୌଣସି ପରାମର୍ଶ ମିଳିବ ବୋଲି ଆଶା କରି ସେ ସେଠାକୁ ଯାଇ ନ ଥିଲା । କିନ୍ତୁ ନ ହେଉ ପଛକେ, ବାପର ଘରଠାରୁ ତ ଆଉ ଦଣ୍ଡେ ବାହାରେ ରହିବା ସମ୍ଭବ ହୋଇ ପାରିବ ! ଅନ୍ୟମାନଙ୍କ ସହିତ ଗପସପ କଲେ ମନର ଦହନଟା ମଧ୍ୟ ଆଉ ସେତେ କଷ୍ଟ ଦେବନାହିଁ । ଓଃ, ପାଦ୍ରୀ ପୁଣି ତାକୁ କାମ କରିବାକୁ ଉପଦେଶ ଦେଉଛନ୍ତି ! ଯାହାର ନିଜର କୌଣସି ଚିନ୍ତା ନାହିଁ, ତା'ପକ୍ଷରେ ଅନ୍ୟକୁ ଉପଦେଶ ଦେବା ଭାରି ସହଜ ! — "ତୋର ମଇପ ଆଉ ପିଲାଙ୍କ କଥା ତୁ ଭାବୁଚୁ ତ ?" — ସତେ ଯେମିତି ସେ ସେମାନଙ୍କ କଥା ପାସୋରି ପକାଇଚି ! ପୁଣି ମାଇପଟାକୁ ସେ ଭୁଲିବ କିପରି ? ନାକ କାନ୍ଦୁଣି, — ସବୁବେଳେ ଖାଲି ଡାଆଣୀଙ୍କ ପରି ବଲବଲ କରି ଏଣେତେଣେ ଅନାଉଥିବ ! ହେ ଭଗବାନ୍‌, ବାହା ନ ହୋଇଥିଲେ ସତେ ସେ କେଡ଼େ ନିଶ୍ଚିନ୍ତରେ ଥାଆନ୍ତା ! ତା'ର ହୃଦୟଭିତରଟା ହଠାତ୍‌ ଅଥୟ ହୋଇ ପଡ଼ିଲା । ଶରୀରଟାଯାକ ଯେପରି ରାଗରେ ଜଳିଉଠିବାକୁ ଲାଗିଲା । ମନେହେଲା, କାହାକୁ ହାତପାଆନ୍ତାରେ ପାଇଲେ ସେ ଏହିକ୍ଷଣି ତାର ତଣ୍ଟି ଚିପି ମାରିପକାନ୍ତା, ତା'ର ଅନ୍ତନାଡ଼ୀସବୁ ବୁହିଁ ବାହାର କରିଦିଅନ୍ତା !

କିନ୍ତୁ କାହାକୁ ? ସେ କଥା ସେ ଠିକ୍‌ କରି ଜାଣି ନ ଥିଲା । ଏହି ପ୍ରଚଣ୍ଡ ରାଗଟା ଯେତିକି ବେଗରେ ଆସିଥିଲା, ପୁଣି ସେତିକି ବେଗରେ ଅନ୍ତର୍ହିତ ହୋଇଗଲା । ଶୂନ୍ୟମନରେ ସେ ଅନ୍ଧାରଭିତରକୁ ଦୃଷ୍ଟି ଭେଦ କରାଇବାକୁ ଚେଷ୍ଟା କଲା, ଗରଜି ଉଠୁଥିବା ବତାଶର ଶବ୍ଦକୁ କାନଡେରି ଶୁଣିବାର ଚେଷ୍ଟା କଲା । ତା'ପରେ ପ୍ରାୟ ଅଚଳନ୍ତ ହୋଇପଡ଼ିଥିବା

ଗୋଡ଼ ଦୁଇଟାକୁ ଘୋଷାରିଘୋଷାରି ସେ ଆଗକୁ ଯିବାକୁ ଲାଗିଲା । ସେ ଅନୁଭବ କଲା, ଯେପରି ତା'ର ମନର ଦୁଃଖ ପର୍ବତ ସମାନ ହୋଇ ତାକୁ ମାଡ଼ିବସିଛି । ଏକପ୍ରକାର ନିଦାରୁଣ ଉଦାସୀନତା ତାକୁ କାମୁଡ଼ି ଧରିଥିବା-ପରି ମନେହେଲା । ସେ ବର୍ତ୍ତମାନ କୁଆଡେ ଯାଉଛି, କାହିଁକି ଯାଉଛି, ସେ ବିଷୟରେ ତା'ର କୌଣସି ହୋସ ରହିଲା ନାହିଁ ।

"ଯନ୍ତ୍ରଣା ହେଉଛି ମୋ' ବାପର,—ମୋ' ବାପର ! – ଏକ କ୍ଷମତାହୀନ କଣ୍ଠରେ ସେ ବାରବାର ଏହି କେତେପଦ କଥା କହିବାକୁ ଲାଗିଲା ।

ଆନ୍ତ୍ରେକ୍‌କୁ ଦେଖି କମାରପୁଅ ପଚାରିଲା : "କ'ଣ ଖବର ?"

ଗୋଟାଏ ଗାଡ଼ିର ତାଟ ଉପରକୁ ଆଉଜିପଡ଼ି ଆନ୍ତ୍ରେକ୍ ଉତ୍ତର ଦେଲା, "ଖବର ଆଉ କ'ଣ ?" ସେଠାରେ ମରାମତିପାଇଁ ଅନେକଗାଡ଼ି ଥୁଆ ହୋଇଥିଲା । ଆନ୍ତ୍ରେକ୍ ଜଳୁଥିବା ଚୂଲୀ ଆଡ଼କୁ ଅନାଇ ରହିଲା ।

କମାରପୁଅ ପୁଣି କାମରେ ଲାଗିଗଲା ଓ ନିହାଣରେ ଲୁହାକୁ ପିଟିବାରେ ଲାଗିଲା । ମଝିରେ ମଝିରେ ଯେ ଆଖିବୁଲାଇ ଆନ୍ତ୍ରେକ୍ ଆଡ଼କୁ ଅନାଇ ଦେଉଥାଏ, ତା'ର ନାଲିଆନିଆଁର ପରିତଳୁ ଏକ ହିଂସ୍ର ହାସ୍ୟ ଉକୁଟି ଉଠିବା ପରି ମନେ ହେଉଥାଏ ।

"ତୁ ପାଦ୍ରୀ ପାଖକୁ ଯାଇଥିଲୁ ନା ? ସେ କ'ଣ କହିଲେ ?"

"କ'ଣ ଆଉ କହିବେ ? କିଛି ନାହିଁ ! ଗୀର୍ଜାରେ ଯାହା କହୁଥାନ୍ତି, ଠିକ୍ ସେଇଆ କହିଲେ ।"

"ତୁ ଆଉଗୁଡ଼ାଏ କ'ଣ ଆଶାକରି ଯାଇଥିଲୁ କହିଲୁ ?"

"କାହିଁକି, ତାଙ୍କୁ କୋଉ ବିଷୟ ଜଣାନାହିଁ, ସେ କ'ଣ ନ ଜାଣିଚନ୍ତି କହିଲ ?"

"କ'ଣ ଜଣାଅଛି ? 'ହଁ' ବଚନ ଆଦାୟ କରିନେବେ, ଆଉ ନାହିଁ ବଚନ ଶୁଣାଇବେ ।"

ତା'ର କଥା କାଟିବାକୁ ଆଉ ଆନ୍ତ୍ରେକ୍‌ର ମନ ହେଲା ନାହିଁ ।

ମୁଁ ବର୍ତ୍ତମାନ ତୁମର ଘରକୁ ଯାଉଥିଲି ।" — ଦଣ୍ଡେ ଚୁପ୍ ରହିବା ପରେ ସେ କହିଲା ।

"ଆଚ୍ଛା, ତୁ ଆଗେଆଗେ ଯାଆ । ମୁଁ ପଛେପଛେ ଯାଇ ପହଞ୍ଚୁଚି । କାରଣ ପଧାନଙ୍କର ମଧ୍ୟ ଆଜ ଆସିବାର ଅଛି । ଖଡ଼ଉପରେ ଧୂଆଁ ପଡ଼ର ଅଛି, ଜାଣିଲୁ ?"

କମାରପୁଅର କଥା ଶୁଣିବାକୁ ଆଉ ଆନ୍ତ୍ରେକ୍‌ର ବେଳ ନ ଥିଲା । ସେ ରାସ୍ତାର ଆରପାଖରେ ଥିବା ଘରଆଡ଼କୁ ଯିବାକୁ ଲାଗିଲା ।

ସେତେବେଳକୁ ଭଉଣୀ ଚୁହ୍ଲୀରେ କାଠ ପକାଉଥାଏ, ତା'ର ବଡ଼ପୁଅ ଟେବୁଲପାଖରେ ବସି ବର୍ଣ୍ଣବୋଧ ପଢ଼ୁଥାଏ ।

"ସିଏ ସତରେ ପଢ଼ୁଚି ନା ଆଉ କଣ କରୁଚି ?" — ଆନ୍ତ୍ରେକ୍ ପଚାରିଲା, ଗୋଟିଏ ବାଡ଼ି ଧରି ଗୋଟିଗୋଟି ଅକ୍ଷର ଛୁଇଁ ପିଲାଟି ବନାନ ଶିଖିବାରେ ଲାଗିଥାଏ ।

"ହଁ, ଅଁଲୁ ଖୋଲା ଆରମ୍ଭ ହେବା ଦିନଠାରୁ ତା'ର ପାଠ ଆରମ୍ଭ ହୋଇଚି । ତା' ବାପାର ତ ଫୁରସତ ନାହିଁ, ତେଣୁ ପେଷାକଳରେ କାମ କରୁଥିବା ଜଣେ ସ୍ତ୍ରୀଲୋକ ପିଲାଟାର ପାଠ ଦେଖିଯାଉଚି ।"

"କାହିଁକି, ଆମଘର ପାଖରେ ଗ୍ରେକ୍ କାଲିଠାରୁ ଚଟ୍ଶାଳୀ ବସାଇଚି । ସେଠାକୁ ପଠାଇଲେ ହୁଅନ୍ତା ନାହିଁ ?"

"ହଁ, ମୁଁ ବି ସେଇକଥା ଭାବୁଥିଲି । କିନ୍ତୁ ମାଇକେଲ ମନାକଲା । କହିଲା, ଏଇ ସ୍ତ୍ରୀଲୋକଟି ବେଶୀ ଜାଣିଚି, କାରଣ ସେ ଓ୍ୱାରସ ସହରରେ ପାଠ ପଢ଼ିଚି !"

"ହଁ, ହଁ, —" 'ଆନ୍ତ୍ରେକ୍' ଉତ୍ତର ଦେଲା ।

"ଆମ ପୁଅ ଏମିତି ତଡ଼ତଡ଼କରି ବର୍ଣ୍ଣବୋଧ ପଢ଼ିଯାଉଚି ଯେ ମାଷ୍ଟରାଣୀ କାବା ହୋଇଯାଉଚି !"

"ନିଶ୍ଚୟ, ନିଶ୍ଚୟ ! ଯେତେହେଲେ ଆମ କମାରପୁଅର ରକତ ତ ! ବାପ ଏଡ଼େ ବୁଦ୍ଧିଆ, ପୁଣି ପୁଅ ବୁଦ୍ଧିଆ ନ ହେବ କପରି ?"

"ତୁ ବୋଧହୁଏ ଥଟ୍ଟା କରୁଚୁ, ନାହିଁ ? କିନ୍ତୁ ସିଏ ତ ତୋତେ ଆଗରୁ ସାବଧାନ କରାଇ ଦେଇଥିଲା ବଞ୍ଚିଥିଲାତକ ବାପକୁ ଆଦୌ ବିଶ୍ୱାସ

କରିଯାଇ ପାରିବନାହିଁ । ସେ ଆଜି ଯୋଉ ରାଜିନାମା କରିଥିବ, ମନକଲେ କାଲିକି ପୁଣି ସେଇଟା ଭାଙ୍ଗିଦେବ !"

"ହଁ, ସେ ଗୋଟାଏ ହେଣ୍ଟା, ତା' ମୁହଁରୁ କିଏ କ'ଣ ଛଡ଼ାଇ ନେଇ ପାରିବ ? ଛଅମାଣ ଜମି ତ ପରର କଥା ! ମୋ' ଭରସା ଆଉ ମୁଁ ତା'ଘରେ ଚାକର ରହିଚି । ଆଉ କଥାକୁ ଦେଖିଲ, ଆଖିଆଗରେ ଯେଉ ମାଇକିନିଆ ଆଗ ପଡ଼ିଲା, ସେ ଯାଇ ତା'ସହିତ ସମ୍ବନ୍ଧ କରିବ ବୋଲି ବସିଚି !"

"ତୁ ତା'ସହିତ କଜିଆ ଲଗାଇବୁ, ତାକୁ ଗାଳିଗୁଲଜ କରି କହିବୁ,—ତା' ବିରୁଦ୍ଧରେ ଅନ୍ୟମାନଙ୍କ ପାଖରୁ ବଳ ମାଗିବୁ । ପରିଶେଷରେ ଫଳ ହେବ ଯେ ସେ ତୋତେ ଘରୁ ତଡ଼ି ବାହାର କରିଦେବ !"— କବାଟ ଆଡ଼କୁ ଅନାଇ ସେ ଆନ୍ତ୍ରେକ୍‌କୁ କହିଲା !

"ଏକଥା ତୋତେ କିଏ କହିଚି କହିଲୁ ?"

"ଲୋକମାନେ ସମସ୍ତେ ଏଇକଥା କହୁଚନ୍ତି !"

"କଦାପି ତଡ଼ିଦେଇ ପାରିବନାହିଁ ! ଯଦି ତଡ଼ିଦେବ ତେବେ ମୋ ବଳାତ୍କାର କରି ତଡ଼ିଦେବାକୁ ଆସୁ ! ମୁଁ କଚେରୀକୁ ଯିବାକୁ ମଧ୍ୟ ପ୍ରସ୍ତୁତ ଅଛି । କିନ୍ତୁ ତା'ପାଖରେ କଦାପି ମୁଣ୍ଡ ନୁଆଁଇବି ନାହିଁ !"

ଏତିକିବେଳେ କମାରପୁଅ ଘରଭିତରକୁ ପଶିଆସିଲା ଓ କହିଲା : "ହଁ, ହଁ, ଖାଲି ମେଣ୍ଢାପରି ମୁଣ୍ଡଟାକୁ ନେଇ ପଥର କାନ୍ଥରେ ଢୁଲ୍‌ଢୁଲ୍ ବାଡ଼େଇବୁ, ଫଟାଇଦେବୁ ନାହିଁକି ?"

"ତେବେ ଆଉ କ'ଣ କରିବି କହୁନ ? ତୁମେ ଏତେଲୋକଙ୍କୁ ବୁଦ୍ଧି ବତାଉଚ । ମୋତେ ଗୋଟାଏ ବୁଦ୍ଧି ବତାଇଲ ଦେଖି !"

"ବୃଥାକଥାରୁ ବାହାର ହେଲେ କିଛି ଫଳ ହେବନାହିଁ ।" —କମାରପୁଅ ଆପଣାର ପିକାରେ ନିଆଁ ଲଗାଇଲା ଓ ସବୁକଥା ବୁଝାଇ କହିବାକୁ ଚେଷ୍ଟା କଲା । ବୋଉନାର କୌଣସି ଦୋଷନାହିଁ ବୋଲି ଦେଖାଇ ସେ ସବୁ କଜିଆ ମେଣ୍ଟାଇଦେବାକୁ ଚେଷ୍ଟା କରୁଥାଏ । ହଠାତ୍

କଥାମଝିରେ ତା'ର ମତଲବଟା ଠଉରାଇ ନେଇ ଆଲେକ୍ ବଡ ପାଟିରେ କହିଲା :

"ଆଉ ଆଉ, ତୁମେ ମଧ୍ୟ ତା'ପକ୍ଷର ହୋଇଗଲଣି ।"

"ନାହିଁରେ ବାବୁ, ମୁଁ ଫାଲତୁ କଥା ହିଁ କହୁଚ !"

"ବୁଢ଼ା କଷ୍ଟସ୍ତ ତୁମ ହାତରେ କଛୁଦେଇ ତୁମର ମୁହଁ ବନ୍ଦ କରଦେଇଚ !"

"ଦେଲେ ଦେଲା ପନ୍ଦରକେ, ତୋ' ପକେଟ୍‌ରୁ ତ ଦେଇନାହିଁ ?"

"ନାଇଁ— ମୋ'ସମ୍ପତ୍ତିରୁ କାହିଁକ ଦେବ ? କଷ୍ଟସ୍ତ ତୁମ ହାତରେ ବେଶ୍ ଗୁଡ଼ାଏ ଧନ ପଡ଼ଯାଇଚ, ତେଣୁ ଆଉ ଅଧିକପାଇଁ ତୁମର କୌଣସି ତୃଷା ନାହିଁ !"

"ତୁ ଯେତକ ପାଇଚୁ, ମୁଁ ମଧ୍ୟ ସେତକ ପାଇଚ !"

"ସେତକ ପାଇଚ ? ଗାଈଟା ପୁଣି କୋଉଠୁ ଆସିଲା ? ତା'ପରେ ଲୁଗାପଟା, ଏଇଟା ସେଇଟା,— ମୋ'ବାପଠାରୁ କୋଉକଥା ନନେଇ ତୁମେ ବାକୀ ରଖିଚ କହିଲ ? ହଁ, ବତକ, ଘୁଘୁରୁଛୁଆ, ମୋ'ମନରୁ କଛୁ ପାସୋର ଯାଇନାହିଁ । ହଁ, ପୁଣି ସେଦନ ସେ ତୁମକୁ ଆଉଗୋଟାଏ ବାଛୁର ବ ଦେଇଚ । ଏସବୁ ଅଧିକ ନୁହେଁ, ନାହିଁ ?"

"ତୁ ବ ଏସବୁ ନପାଇଥିବୁ ବୋଲି କୋଉ ପ୍ରମାଣ ଅଛି ?"

"ମୁଁ କ'ଣ ଛତରଖିଆ ହୋଇଚ ନା ଡକାଇତ ହୋଇଚ ?"

"ଡକାଇତ ? ତୁ ମୋତେ ଡକାଇତ ବୋଲି କହୁଚୁ ?"

ଦୁହେଁ ମାଡ଼ମାରବେ ବୋଲି ଦୁହିଁଙ୍କ ଆଡକୁ ଚମକ ଆସିଲେ । କନ୍ତୁ ଏହି ପର୍ବଟା ଏତକିରେ ରହିଗଲା । କାରଣ ଆଲେକ୍ ପୁଣି ସ୍ୱର ଅଣ୍ଡା ମିଜାଜରେ କହିଲା :

"ମୁଁ ତ ତୁମକଥା କହୁନଥିଲି । କିନ୍ତୁ ମୁଁ କୌଣସି ପ୍ରକାରେ ମୋର ହକ୍ ପାଉଣା ଛାଡ଼ଦେବନାହିଁ !"

ଅଟ୍ଟା କର କମାରପୁଅ ଉତ୍ତର ଦେଲା, "କିନ୍ତୁ ଜମି ପାଇବା ବା ନପାଇବା ଅସଲକଥା ନୁହେଁ, ତୋ'ମନ କୋଉଥିପାଇଁ ହାଇଁପାଇଁ ହେଉଚ, ସେକଥା ମୁଁ ଭଲକର ଜାଣିଚ !"

' କୋଉଥିପାଇଁ ?''

''ଯନ୍ତ୍ରଣାପାଇଁ । ଯନ୍ତ୍ରଣା ତୋ'ହାତରୁ ଖସିଯିବାକୁ ବସିଚ, ସେଇଥିପାଇଁ !''

''ତୁମେ କୋଉଦିନ ଦେଖିଚ ?...'' — ସେ ଚିତ୍କାର କରି କହିଲା । ମାତ୍ରଟା ଠିକ୍ ତାର ମର୍ମରେ ଯାଇ ବାଜିଥିଲା ।

''ଆରେ କ'ଣ ଥରେ ? କେତେଲୋକ କେତେଥର ଦେଖିଥିବେ !''

''ସେମାନଙ୍କର ଆଖିରୁ ତୋଳା ଖସି ପଡ଼ିବନାହିଁ !'' – କିନ୍ତୁ କହୁକହୁ ତା'ର କଣ୍ଠସ୍ୱର କ୍ରମେ ନରମ ହୋଇ ଆସିଲା, କାରଣ ସେତିକି-ବେଳକୁ ପଧାନେ ଘରଭିତରେ ପ୍ରବେଶ କଲେ । ଏ ଦୁହେଁ କାହିଁକି ଏପରି କଜିଆ କରୁଚନ୍ତି, ଖୁବ୍ ସମ୍ଭବ ପଧାନେ ସେହିକଥା ଜାଣିଥିଲେ, କାରଣ ସେ ମଧ୍ୟ କମାରପୁଅର କଥାସହିତ ତାଳଦେଇ ବୁଢ଼ାର ପକ୍ଷ ସମର୍ଥନ କରିବାକୁ ଆରମ୍ଭ କରିଦେଲେ ।

''ତୁମେ ତା'ପକ୍ଷରୁ କହିବନାହିଁ ତ ଆଉ କିଏ କହିବ ? ତା' ପଇସାରେ ଯୋଉ ମଦମାଉଁସ ତୁମର ପେଟରେ ପଡ଼ୁଚ, ସେ କ'ଣ ଖାଲି ମୋଫତରେ ?''

''ସେମିତି ଚଗଲାମି କଥା କହନାହିଁ । ମୁଁ ହେଉଚି ଗାଆଁର ପଧାନ । ତୁ ମୁହଁ ସମ୍ଭାଳି କଥା କହ !''

''ତୁମ ପଧାନପଣକୁ ଖାତିରି କରିବାକୁ ମୋର ଭେକ ସରୁନାହିଁ !''

''କ'ଣ କହିଲୁ, — ଏ ଲୋକଟା କ'ଣ କହିଲା ?''

''କ'ଣ ଶୁଭିଲା ନାହିଁ କି ? ଆଉଥରେ ଶୁଣିବାକୁ ମନ ହେଉଚି ନା କ'ଣ ?''

''କହିଲୁ ଦେଖି ?''

କହିବି ନାହିଁ କ'ଣ ଡରିବି ? ତୁମେ ଗୋଟାଏ ଅସଲ ମଦୁଆ, ବିଶ୍ୱାସ-ଘାତକ, ଶଠ ଲୋକ ! ଗାଆଁର ସବୁପଇସାକୁ ତୁମେ ଖାଲି ଉଡ଼ାଇବାରେ ଲାଗିଚ । ଆଉଥରେ କହିବି ?'' — ହାତବଢ଼ାଇ ସେ ଗୋଟାଏ ବାଡ଼ି ଅଣ୍ଡାଳିବାକୁ ଲାଗିଲା । ''କିନ୍ତୁ ଏଥର ମୁହଁରେ କହିବି ନାହିଁ, ବାଡ଼ିରେ !''

"ହୁସିଆର ହୋଇ କାମ କର, ଯେପରି ପଛକୁ ଅନୁତାପ କରିବାକୁ ନପଡ଼େ ! ଆନ୍ତ୍ରେକ୍, ତୁ ଜାଣିଚୁ ତ ମୁଁ ଜଣେ ସରକାରୀ ଲୋକ ।"

"ଆରେ ମୋ'ଘରେ କାହିଁକି ଧରପଡ଼ ହେବାକୁ ବସିଚ ? ଏଇଟା କ'ଣ ମଦଖଟି ହୋଇଚ ?" — ପଧାନଙ୍କ ଆଗରେ ଠିଆହୋଇପଡ଼ି କମାରପୁଅ କହିବାକୁ ଲଗିଲା । କିନ୍ତୁ ସେତେବେଳକୁ ଆନ୍ତ୍ରେକ୍ ଆପଣା ଅକ୍ତିଆରରୁ ବାହାର ହୋଇଯାଇଥିଲା । ସେ ଦୁହିଁଙ୍କ ଉପରେ ମନଇଚ୍ଛା ଗାଳିବର୍ଷଣ କଲା, ଧଡ଼୍‌କରି କବାଟଟାକୁ ବାଡ଼େଇଦେଇ ସେଠାରୁ ପ୍ରସ୍ଥାନ କଲା ।

ତହିଁଆରଦିନ ସକାଳେ ଖାଇ ବସିଥିବାବେଳେ ସେ ମନେମନେ କହୁଥିଲା, "ଏଥର ସେମାନେ ସମସ୍ତେ ମୋ'ର ବିରୁଦ୍ଧରେ ଠିଆହେବେ !" —କିନ୍ତୁ ହଠାତ୍ କମାରପୁଅକୁ ଘର ଭିତରକୁ ଆସିବାଦେଖି ସେ ଭାରି ତାଟକା ହୋଇଗଲା । ଦୁହେଁ ଭଦ୍ର ଓ ସାଧାରଣ ଭାବରେ ଦୁହିଁଙ୍କୁ ସମ୍ଭୋଧିଲବାକୁ ଲଗିଲେ ।

ତା'ପରେ ଯେତେବେଳେ କୁଟା କାଟିବାଲାଗି ଆନ୍ତ୍ରେକ୍ ଖଳାଘରକୁ ଗଲା, ସେତେବେଳେ କମାରପୁଅ ମଧ୍ୟ ତା'ସହିତ ଗଲା ଓ ଭାରି ବିଶ୍ୱାସର ସହିତ କହିଲା :

"ମୁଁ ସତ କହୁଚି, କାଲି କଳିଆ କଲାବେଳେ ମୋର କୌଣସି ହୋସ୍ ରହିଲାନାହିଁ । ମୋ' ମୁହଁରୁ ଅନେକ ଅନେକ ଖରାପ କଥା ବାହାରି ଗଲା । ଆଜି ସେଥିପାଇଁ ମୁଁ ଗୋଟାଏ ମେଣ୍ଟାମେଣ୍ଟି କରି ଦେବା-ପାଇଁ ଆସିଚି, — ତୋ ସହିତ ହାତ ମିଳାଇ ନେବାକୁ ଆସିଚି !"

ହାତ ବଢ଼ାଇ ଆନ୍ତ୍ରେକ୍ ଅବଶ୍ୟ ହାତ ମିଳାଇଲା, କିନ୍ତୁ ଏସବୁ ହାବଭାବରେ ତାର ଆଦୌ ପରତେ ହେଉନଥାଏ । ସେ କହିଲା :

"ହଁ, କାଲି ଆମେ ଦୁହେଁ ମୁହଁ ହୁଡ଼ି ଯାଇଥିଲୁ । କିନ୍ତୁ ସେଥି-ପାଇଁ ତୁମ ଉପରେ ମୁଁ କୌଣସି ରାଗ ରଖିନାହିଁ । ସେ ପଧାନଟା ଆସି ମୋର ମୁଣ୍ଡକୁ ଏକାବେଳେକେ ବିଗାଡ଼ିଦେଇ ଗଲା । ... ଆରେ ତା'ଘରେ ସିଏ, ମୋ'ଘରେ ମୁଁ ! ସେ କାହିଁକି ଉପରେ ପଡ଼ିବାକୁ ଆସିବ ?"

"ମୁଁ ମଧ୍ୟ ତାକୁ କାଲି ସେଇକଥା କହିଲି ।"

"ପୁଣି ମୋ'ସହିତ ମୁହିଁବବୋଲି ଆସୁଥିଲା ! ତା' ଭାଇକୁ ସେଦିନ ଯେମିତ ମାଡ଼ ଦେଇଥିଲି, କାଲି ତାକୁ ମଧ୍ୟ ସେହିପରି ଚେଙ୍ଗେ ଦେଇଥାନ୍ତି !"

"ସେବିଷୟରେ ମଧ୍ୟ ମୁଁ ତାକୁ ଚେତାଇ ଦେଇଛି ।" — କମାରପୁଅ ଉତ୍ତର ଦେଲା । ଖୁଡ଼ ଧୂର୍ତ୍ତ ଦୃଷ୍ଟିରେ ଏପାଖ ସେପାଖ ଅନାଇ ସେ ସତେଅବା ଆପଣାର ମତଲବକୁ ଗୋପନ ରଖିବାକୁ ଚେଷ୍ଟା କରୁଥାଏ ।

"ରଇଥା, ମୁଁ କ'ଣ ତାକୁ ସହଜରେ ଛାଡ଼ିଦେଉଛି ? କୁଆଡ଼େ ସେ ଗୋଟାଏ ବଡ଼ ସରକାରୀ ହାକିମ ବୋଲିଉଚି ! ଭଲକରି ଘଣ୍ଟାଏ ନ ଦେଲେ ତାର ମନେ ରହିବ କେମିତ ?"

"ଆରେ ସେଇ ଲୋକଟା ଉପରେ ଏତେ ଗୁରୁତ୍ୱ ଦେଇ କି ଲାଭ ହେବ ? ହଁ, ଗୋଟାଏ କଥା କହିବାଲାଗି ମୁଁ ତୋ' କତିକି ଆସି-ଥିଲି । ଆଜି ଉପରଓଳି ମୋ' ଝିଅଘର ଏଠାକୁ ଆସିବ । ତୁ ତା'ସହିତ ଚୁଲିପାଖକୁ ଯାଇ ପ୍ରତ୍ୟେକ ବିଷୟରେ ଭଲକରି କଥାବାର୍ତ୍ତା କରିନେବୁ ... ତାକୁ ସବୁକଥା ସଫାସଫା ନକହିଲେ ଅନ୍ଧ ସେ କନ୍ଧ ହେଲେ ଫଳ କ'ଣ ହେବ ? ତୋ' ମନରେ ଯେଉଁସବୁ କଥା ରହିଛି, ତୁ ସବୁ ଖୋଲିକରି କହିଦେବୁ । ହୁଏତ ତୋ'କଥା ରହିବ, ହୁଏତ ରହିବନାହିଁ । କିନ୍ତୁ ତଥାପି ଗୋଟାଏ ବଡ଼ ଅଡ଼ୁଆ ତୁଟିଯିବ, ନହିଁ ?"

"କିନ୍ତୁ ନିର୍ବନ୍ଧ ହୋଇ ସାରିଲାଣି ଯେତେବେଳେ, ବର୍ତ୍ତମାନ ଆଉ କ'ଣ କରାଯାଇ ପାରିବ ?"

"ତୁ ବିଚାରକରି ଦେଖ । କଜିଆ କରି ଆମର କାଣି କଉଡ଼ିଟାଏ ମଧ୍ୟ ଲାଭ ହେବନାହିଁ । ହଁ, ସେ ନିର୍ବନ୍ଧ କରିସାରିଲାଣି, ଏଇଟା ସତକଥା । କିନ୍ତୁ ବଞ୍ଚି ରହିଥିବା ତକ ସେ ଇଚ୍ଛାକଲେ ପୁଣି ସେହି ନିର୍ବନ୍ଧକୁ ମଧ୍ୟ ଭାଙ୍ଗି ଦେଇପାରିବ । ବୁଝିଲୁ ? ସେହି କାରଣରୁ ବର୍ତ୍ତମାନ ବୁଢାକୁ ଅଧିକ ଚଡ଼ାଇବା ଆମପକ୍ଷରେ ଆଦୌ ଉଚିତ ହେବନାହିଁ । ସିଏ ବାହା ହେବାକୁ

ମନ କରୁଚ, ବାହା ହେଉ । ତା'ର ସୁଖ କରିବାକୁ ମନ ହେଉଚି ତ ସେ ସୁଖ ନ କରିବ କାହିଁକି ?''

ବାହାଘରର ପ୍ରସଙ୍ଗଟା ପଡ଼ିବାମାତ୍ରକେ ଆନ୍ତ୍ରେକ୍‌ର ମୁହଁ ଗୋଟାସୁଦ୍ଧା ଶେତା ପଡ଼ିଗଲା । ତା'ର ଦେହଟାଯାକ ଖାଲି ଥରିବାକୁ ଲଗିଲା ।

''ସିଧା ସିଧା ବୁଢ଼ାର ବିରୋଧ କଲେ ଆଦୌ କାମ ଚଳିବନାହିଁ । ତୁ ତା'କଥାକୁ ସମର୍ଥନ କରିଯାଆ । ତାକୁ କହି ଯେ ନିବନ୍ଧ କରିବାକୁ ଯେତେବେଳେ ତା'ର ଇଚ୍ଛା ହେଲା, ସେତେବେଳେ ନିବନ୍ଧ କରି ସେ ନିଶ୍ଚୟ ଉଚିତ୍ କାମ କରିଚି । କେବଳ ବର୍ତ୍ତମାନ ବାକୀ ଜମିକୁ ଆମଦୁହିଁଙ୍କ ନାଆଁରେ କରିଦେବା ବିଷୟରେ ସାକ୍ଷୀଗୁଡ଼ା ବସି ଗୋଟାଏ ରାଜୀନାମା ହୋଇଯିବା ଦରକାର, ବୁଢ଼ାକୁ ତୁ ଏହିକଥାରେ ମଙ୍ଗାଇବାକୁ ଚେଷ୍ଟା କର ।'' — କମାରପୁଅ କହିଲା ।

''ହଁ, କିନ୍ତୁ ୟୁଜ୍‌କା ଆଉ ଗ୍ରିଗୋର ବିଷୟରେ ପୁଣି କିଛି ହେବ ନା ନାହିଁ ?'' — ଟିକିଏ କୁଣ୍ଠା ପ୍ରକାଶ କରି ଆନ୍ତ୍ରେକ୍ ପଚାରିଲା ।

''ସେମାନେ ଜମି ବଦଳରେ ଟଙ୍କା ପାଇବେ । ଗ୍ରିଗୋର ତ ଫଉଜରେ ଅଛି, ତା'ର ବା କୋଉ ଅଭାବ ଅଛି ? ହଁ, ମୋ'କଥା ଅନୁସାରେ କାମକଲେ ଆଉ ପଛକୁ ପସ୍ତାଇବାକୁ ପଡ଼ିବନାହିଁ । ଏହିପରି ଭାବରେ ଶେଷକୁ ସବୁ ଜମି ଆମର ହୋଇଯିବ; ମୁଁ ତୋ'ତେ ଜବାବ ଦେଇ କହୁଚି ।''

''କିନ୍ତୁ ମେଣ୍ଢା ବନ୍ଧି ଥାଉଥାଉ ତା'ର ଚମଡ଼ାରେ କୁରୁତା ସିଲାଇ କରିବା କଥା ତୁମେ କହୁନାହିଁ ତ ?''

''ଶୁଣ ! ଆଗ ସାକ୍ଷୀମାନଙ୍କ ସାମନାରେ ସେ ଗୋଟାଏ ଜବାବ ଦେଇଦେଉ । ତା'ପରେ କ'ଣ କରାଯିବ, ତେଣିକି ଦେଖିବା । ଶେଷକୁ କଚେରୀଘର ତ ରହିଚି ! ହଁ, ଆଉ ଗୋଟାଏ କଥା ମନେ ପଡ଼ିଲା । ତୋ' ମାଆ ଯୋଉ ଜମିତକ ଯୌତୁକ ଆଣିଥିଲା ..''

ହଁ, ତୋ' ଭାଇଯାପାଇଁ ଆଉ ମୋ' ପାଇଁ ଏକାଠି ମିଶି ଘୂରି ମାଣ !''

''କିନ୍ତୁ ଏପର୍ଯ୍ୟନ୍ତ ସେ ସେହି ଜମିକୁ କାହାରିକୁ ନଦେଇ ଆପଣା

ହାତରେ ରଖିଚ । ସେହି ଜମିକୁ ସେ ଆପେ ଚାଷ କରି ଭୋଗ କରୁଚ । ସେହି ଜମିର ଫସଲରେ ତୋ'ର ମଧ୍ୟ ଭାଗ ରହିବା ଉଚିତ । ମୁଁ ତୋତେ ଆଗଥରେ କହିରଖୁଚି ; କୌଣସି କଥାରେ ବୁଢାର ବିରୋଧ କରିବୁନାହିଁ, ବାହାଘରରେ ଯୋଗ ଦେବାକୁ ଯିବୁ । ତାକୁ ସବୁବେଳେ ଭଲରେ କଥା କହିବୁ । ତା'ହେଲେ ଦେଖିବୁ, ବୁଢା କାଇଦାକୁ ଆସିଯିବ । ଏବଂ ଯେବେ ସେ ଶେଷକୁ ଜମି ବିଷୟରେ ରାଜିନାମା କରିବାକୁ ଅମଙ୍ଗ ହୁଏ, ତେବେ ସେକଥା କଚେରୀରେ ଦେଖାଯିବ । ଯୁଗ୍‌ନା ସହିତ ତ ତୋର ଭାରି ଭଲ ପଡ଼େ, ଏଥିରେ ସିଏ ମଧ୍ୟ ତୋ'ର ଅନେକ ଉପକାର କରିପାରିବ । ତୁ ଖାଲି ତା'ଆଗରେ ଯାଇ ସବୁକଥା କହିଲେ ହେଲା ! ଯୁଗ୍‌ନାକୁ ହାତକଲେ ବୁଢା ବାଗକୁ ଆସିବାକୁ ଆଉ ବେଶୀ ବେଳ ଲାଗିବନାହିଁ । ତା' ହେଲେ ଏଇକଥା ରହିଲା ? ମୁଁ ଯାଉଚି ?''

''ହଁ, ସେଇକଥା ରହିଲା ! ତୁମେ ଶୀଘ୍ର ଏଠୁ ଚାଲିଯାଅ, ନହେଲେ ମୁଁ ତୁମର ଗାଲରେ ଥାପଡ଼ ମାରି ତୁମକୁ ନିକାଲିଦେଇ ଆସିବି ।''— ଦାନ୍ତକୁ କଟିକରି ଯାବଧରି'ଆନ୍ଦ୍ରେକ୍ ଗର୍ଜନ କରି କହିଲା ।

''ପୁଣି ତୋ'ର କ'ଣ ହେଲା ?'' — ଆନ୍ଦ୍ରେକ୍‌ର ମୁହଁଆଡ଼କୁ ଅନାଇ ବଡ଼ ବିସ୍ମିତ ଭାବରେ କମାରପୁଅ ପଚାରିଲା । ଆନ୍ଦ୍ରେକ୍ କୁଢାକାଟିବା ହିଡଆରଟାକୁ ଛାଡ଼ିଦେଇ ହଠାତ୍ ଉଠିଆସିଲା । ତା'ର ଆଖିଦୁଇଟା ବଡ଼ ଭୟଙ୍କର ଭାବରେ ଦପଦପ ହୋଇ ଜଳୁଥାଏ, ତା'ର ମୁହଁଟା ଗୋଟାସୁଦ୍ଧା ବିବର୍ଣ୍ଣ ହୋଇ ଯାଇଥାଏ ।

''ଚୋର, ବଦମାସ୍, ପାଜି !'' — ଆନ୍ଦ୍ରେକ୍ ପ୍ରଚଣ୍ଡ ଭାବରେ ଗର୍ଜନ କରି ଉଠିଲା ଓ ତୀବ୍ର ଘୃଣାଭାବ ପ୍ରକଟ କରି ଆଗକୁ ମାଡ଼ିମାଡ଼ି ଆସିଲା ।

କମାରପୁଅ ସେଠାରୁ ଖସି ବାହାରିଗଲା ।

ରାସ୍ତାଉପରକୁ ଆସି ସେ ଭାବିବାକୁ ଲାଗିଲା, — ''ଏଇଟାର ମୁଣ୍ଡ ବିଗିଡ଼ିଯାଇଚି ନା କ'ଣ ? ମୁଁ ତାକୁ ଭଲକଥା କହୁଥିଲି ଆଉ ସିଏ ବୁଝିଲା ଓଲଟା ! ତୋ' ସହିତ ଜମିରେ ଭାଗ ବସି ମୁଁ ତୋ' ପାଖକୁ ବନ୍ଧୁଭାବରେ

ଘରେ ଆସିଥିଲ, ଆଉ ତୁ ମୋତେ ବାଡ଼େଇକରି ବାହାର କରିଦେବାକୁ ବସିଲୁ ? ହଁ, ବୁଝିଲି, ସବୁ ଜମି ଆପେ ଭୋଗ କରିବା ତୋ'ର ମତଲବ, ନୁହେଁ ? ଆରେ ବାବୁ, ସେ ଭାଗ୍ୟ ଆସି ପହଞ୍ଚିବା ବେଳକୁ ତୁ ଖାଲି ବଞ୍ଚି ରହିଥିଲେ ହେଲା ! ମୋତେ ତୁ ଚହ୍ନି ନାହୁଁ, ନାହିଁ ?" — ତା'ର ରାଗ କ୍ରମେ ଉପରକୁ ଉପରକୁ ଚଢ଼ିବାରେ ଲାଗିଥାଏ । ସେ ଭାବୁଥାଏ ଯେ ଆଲ୍ଫ୍ରେକ୍‌ ନିଶ୍ଚୟ ତା'ର ମତଲବକୁ ଯାଇ ବୁଢ଼ା ବୋଉନା ଆଗରେ ପ୍ରକାଶ କରିଦେବ । ତା'ର ସବୁ ଷଡ଼ଯନ୍ତ୍ର ଧରା ପଡ଼ିଯିବ ବୋଲି ତା'ର ମନରେ ଘୋର ଭୟ ହେବାକୁ ଲାଗିଲା ।

"ନା — ଏ ବିଷୟରେ ଅବଶ୍ୟ ଗୋଟାଏ ପ୍ରତିକାର କରିବାକୁ ହେବ !" — ହଠାତ୍‌ ଗୋଟାଏ ନିଷ୍ପତ୍ତିରେ ପହଞ୍ଚି ସେ ପୁଣି ବୋଉନାର ଘରକୁ ଫେରିଆସିଲା । ଆଲ୍ଫ୍ରେକ୍‌ଠାରୁ ମାଡ଼ ଖାଇବାର ଭୟ ତଥାପି ତା'ର ମନରୁ ଦୂର ହୋଇନଥାଏ ।

"ଅରେ, ତୋ' ସାଆନ୍ତ ଘରେ ଅଛନ୍ତି ?"—ସେ ଭିତେକ୍‌କୁ ପଚାରିଲା । ବତକବୁଢ଼ାଙ୍କୁ କୂଳକୁ ଆଣିବାଲାଗି ଭିତେକ୍‌ ପୋଖରୀ ଭିତରକୁ ଟେକା ପକାଇବାରେ ଲାଗିଥାଏ ।

"ସାଆନ୍ତ ପୋଷଣିଆ ଘରକୁ ଯାଇଚନ୍ତି । ତାଙ୍କ ବାହାଘର ପାଇଁ ସମସ୍ତଙ୍କୁ ନିମନ୍ତ୍ରଣ କରିବାଲାଗି ଯାଇଚନ୍ତି ।"

"ତେବେ ମୋର ମଧ୍ୟ ସେଇଠାକୁ ଯିବା ଉଚିତ । ହୁଏତ ଭେଟ ମିଳିଯିବ !" ଏହାପରେ ଚନ୍ଦ୍ରାକର ସେ ପୋଷଣିଆ ଘରଆଡ଼େ ଯିବାକୁ ଲାଗିଲା । କିନ୍ତୁ ସେ ଆଗ ଆପଣାର ଘରକୁ ଯାଇ ଆପଣାର ସ୍ତ୍ରୀକୁ ସବୁଠାରୁ ଭଲ ଲୁଗାପଟା ପିନ୍ଧି ଓ ପିଲାମାନଙ୍କୁ ସାଙ୍ଗରେ ନେଇ ଖରାବେଳେ ଆଲ୍ଫ୍ରେକ୍‌ ପାଖକୁ ଯିବାଲାଗି କହି ଦେଇଗଲା ।

"କ'ଣ କରିବାକୁ ହେବ, ସେ ତୋତେ ସବୁ ବତାଇଦେବ । ତୁ ଆପଣା ମନକୁ କିଛି କରିବୁ ନାହିଁ ଟି ! ତୁ ତ ବାଲୁଙ୍ଗାଟାଏ, ଟିକିଏ କଥାରେ ନାକ ଶେଁ ଶେଁ କରିବୁ, ବାପର ଗୋଡ଼ଧରି ତଳେ ପଡ଼ିଯିବୁ । କିନ୍ତୁ ଆଲ୍ଫ୍ରେକ୍‌ ଯାହାସବୁ କହିବ ଓ ବାପ ଯାହାସବୁ ଉତ୍ତର ଦେବ, ତୁ

ସେସବୁ ମନୋଯୋଗ ଦେଇ ଶୁଣିବୁ, ବୁଝିଲୁ ?'' – ସେ ଭାରଯାକୁ ଏହିପରି ତାଗିଦା କରିବାରେ ଲଗିଲା ।

"ଆଚ୍ଛା, ମୁଁ ଟିକିଏ ପୋଖରୀଆ ଘରଆଡ଼େ ଯାଉଚି । ଆମର ଅଟାଭିତର ପୋଷା ସରିଲଣି କି ନାହିଁ ଦେଖିଆସିବି ।'' – ଘରଭିତରେ ଆଉ ଦଣ୍ଡେ ଅଟକି ରହିବାକୁ ମଧ୍ୟ ତା'ର ମନ ହେଉନଥାଏ । ଶେଷକୁ ଗୋଟିଏ ଗୋଟିଏ ପାଦ ପକାଇ ଓ ସବୁକଥା ଚିନ୍ତା କରିକରି ସେ ବାହାରକୁ ବାହାରିଗଲା ।

"ଆନ୍ତ୍ରେକ୍ ମୋତେ ମାରିବାପାଇଁ ସିନା ଧମକ ଦେଖାଉଥିଲା । କିନ୍ତୁ ମୋର ଯେତେଦୂର ଅନୁମାନ ହେଉଚି, ସେ ମୋହର ପରାମର୍ଶ ଅନୁସାରେ ନିଶ୍ଚୟ କାର୍ଯ୍ୟ କରିବ । ବରଂ ମୁଁ ନରହି ସେଠି ମୋର ଭାରଯା ରହିଲେ ଅଧିକ ଭଲ ହେବ । ମୋ' କଥା ନମାନି ଆଉ ତା'ର ଗତି କାହିଁ ? ନହେଲେ କଚିଆ କରି ଘରୁ ତଡ଼ାଖାଇବାହିଁ ସାର ହେବ !''

ମନଭିତରେ ତା'ର ଜିତାପଟ ହେଲାପରି ସେ ଉଲ୍ଲସିତ ହୋଇ ଉଠିଲା, ମୁଣ୍ଡର ଟୋପିଟାକୁ ସିଧା କରିଦେଲା ଓ କୁରୁତାରେ ବୋତାମ ଲଗାଇ ଦେଲା । କାରଣ ପୋଖରୀଆଡ଼ୁ ହାଲୁମାଏ ହେମାଳ ପବନ ଆସି ତା' ଦେହରେ ବାଜିବାକୁ ଲଗିଲା ।

"ନିଶ୍ଚୟ ହିମ ବରଷିବ, ନହେଲେ ଖରାପ ପାଗ କରିବ !''— ପୋଲ ଉପରେ ଠିଆହୋଇ ଆକାଶଆଡ଼କୁ ଅନାଇ ଅନାଇ ସେ ଭାବିବାକୁ ଲଗିଲା । ଆକାଶରେ କେତେଖଣ୍ଡ ବଉଦ ଭାସି ଯାଉଥାନ୍ତି, – ଅନାଇଲା ବେଳକୁ ପଚ୍ଛଲ କାଦୁଅ ଧରସର ହୋଇଥିବା ଅଗାଧୁଆ ମେଣ୍ଢା ଗୁଳିଗଲା ପରି ମନେ ହେଉଥାଏ । ପୋଖରୀର ତରଙ୍ଗଗୁଡ଼ିକ କୂଳରେ ଆସି ସଶବ୍ଦ ଆଘାତ କରି ଯାଉଥାଏ । ଏଠିସେଠି ଗଛମାନଙ୍କ ଉଢୁଆଳରେ ଥିବା ରୁଠ-ମାନଙ୍କରେ ବସି ସ୍ତ୍ରୀଲୋକମାନେ କପଡ଼ା କାଚୁଥାନ୍ତି । ସେମାନଙ୍କ ହାତର ପାହାରଗୁଡ଼ାକ ଢୁଂ ଢୁଂ ହୋଇ ଶୁଭୁଥାଏ । ରାସ୍ତାରେ ଜନପ୍ରାଣୀ କେହି ଦିଶୁ ନାହାନ୍ତି, କେବଳ କାଦୁଅ ସଡ଼ସଡ଼ ହୋଇ କେଇଟା ବତକ ନାନା-ପ୍ରକାର ଅଳିଆ ଓ ପାଚିଲା ପତ୍ରରେ ଭରିହୋଇ ରହିଥିବା ଖାଲ-

ଗୁଡ଼ାକରେ ନସରପସର ହେଉଚନ୍ତି । ଘରଦୁଆରମାନଙ୍କରୁ ପିଲମାନଙ୍କର କୋଳାହଳ ଶୁଣାଯାଉଚ । ବାଡ଼ ଉପରେ ବସି ଗଞ୍ଜାଗୁଡ଼ାକ ଡାକ ଛାଡ଼ୁଚନ୍ତି । ସେଇଥିରୁ ଜଣାପଡ଼ୁଚ ଯେ ଏହି ପାଗରେ ନିଶ୍ଚୟ ଗୋଟାଏ ବଡ଼ ପରିବର୍ତ୍ତନ ହେବ ।

"ଯାଉଚ, ସେଣ୍ଟାଘରେ ତା'ପାଇଁ ଅପେକ୍ଷା କରି ବସିବ !" — ଏହି ପରି ମନରେ ଭାବି ସେ ଢାଲୁ ରାସ୍ତାରେ ତଳକୁ ଖସିଗଲା ।

କମାରପୁଅ ଚାଲିଯିବା ପରେ ଅନ୍ଦ୍ରେକ୍ ପୁଣି କୁଣ୍ଟା କାଟିବାରେ ମନ ଦେଲା, କାମରେ ମଗ୍ନ ହୋଇ କ୍ଷଣକମଧ୍ୟରେ ସେ ସବୁକଥା ପାସୋରି ପକାଇଲା । ଏହି ସମୟରେ ଜଙ୍ଗଲରୁ ଫେରଆସି ବୁଢ଼ା ଡାକଗୁଡ଼ି କହିଲା :

"ସେତକ ଥାଉ । ଯେତକ କଟା ହେଲଣି ସେତକରେ ତ ଗୋରୁଙ୍କର ଗୋଟାଏ ହପ୍ତା ଚାଲିଯିବ !" ପୁଣି ଅନ୍ଦ୍ରେକ୍‌ର ଧ୍ୟାନ ଭାଙ୍ଗିଗଲା । ହତିଆରଟାକୁ ଫୋପାଡ଼ି ଦେଇ ସେ ଥରେ ଭଡ଼ମୋଡ଼ି ହେଲା ଓ ତା'ପରେ ଘରଭିତରକୁ ଗଲା ।

ସେ ଚିନ୍ତା କରୁଥାଏ : "ଯାହା ହେବାର ହେଉ ପଛକେ, ଆଜ ମୁଁ ନିଜେ ଯାଇ ବାପକୁ ସବୁକଥା କହିଆସିବ । ସେ କମାରପୁଅ ଗୋଟାଏ ସକତ ମିଛୁଆ, ତଥାପି ତା'ର ପରାମର୍ଶଟା ଆଦୌ ମନ୍ଦ ନୁହେଁ ।" — ଏହି ପରି ଭାବି ସେ ବାପାର ଶୋଇବା ଘର ଭିତରକୁ ଉଙ୍କି ମାରି ଅନାଇଲା ଏବଂ ତତ୍‌କ୍ଷଣାତ୍ ଶଙ୍କିଯାଇ ପଛକୁ ହଟି ଆସିଲା । ଘରଭିତରେ ପନ୍ଦର କ କୋଡ଼ିଏ ଯାଏ ଛୁଆ ବସିଚନ୍ତି । ଗ୍ରେକ୍ ସେମାନଙ୍କୁ ପାଠ ପଢ଼ାଉଚ ଓ ସେମାନଙ୍କ ଆଚରଣ ଉପରେ କଡ଼ା ନଜର ରଖିଚ । ହାତରେ ମାଳ ଧରି ସେ ସେମାନଙ୍କ ଚାରିପାଖରେ ବୁଲିଆସୁଚ । ସେମାନଙ୍କର ପାଠପଢ଼ାଟା ଶୁଣୁଚ । ସେମାନଙ୍କର ଭୁଲ ଦେଖିଲେ ଠିକ୍ କରିଦେଉଚ, ପୁଣି କେତେବେଳେ କୋଉ ପିଲାର କାନ ଧରି ମୋଡ଼ି ଦେଉଚ ବା ଆଉ କୋଉ ପିଲାର ମୁଣ୍ଡକୁ ଆପଡ଼େଇ ଦେଉଚ, କିନ୍ତୁ ଅଧିକାଂଶ ସମୟ ଗୋଟିଏ ଜାଗାରେ ବସି ବହିରୁ ପଢ଼ି ପିଲମାନଙ୍କୁ ପାଠ ବୁଝାଇ ଦେଉଚ । ପ୍ରଶ୍ନ ପଚାରୁଚ । ପିଲାଏ ଚଟ୍ କରି ଏକ ସ୍ୱରରେ ପ୍ରଶ୍ନଗୁଡ଼ାକର ଉତ୍ତର କହିଦେଉଚନ୍ତି, ସେମାନଙ୍କର

ଉତ୍କଣ୍ଠା ଓ ଚଞ୍ଚଳତା ଦେଖି ସେମାନଙ୍କୁ ଉତ୍ତେଜିତ ଭାବରେ କେଁ କଟର କରୁଥିବା ଚଢ଼େଇପଲ ପରି ମନେହେଉଚ ।

ତାଙ୍କ ରନ୍ଧାବଢ଼ାରେ ବ୍ୟସ୍ତଥାଏ ଓ ଆପଣା ବାପ ସହିତ କଥାବାର୍ତ୍ତା ହେଉଥାଏ । ତା'ର ବାପ କଦବା କେମିତ ଝିଅ ଘରକୁ ଆସି ସଙ୍କୋଳି-ଯାଏ । ସବୁବେଳେ ନାନା ବେମାରରେ ବାଧିକ ପଡ଼ଥିବାରୁ ସେ ବାରବାର ଘରୁ ଗୋଡ଼ କାଢ଼ି କୋଉଠିକି ଯାଇପାରେ ନାହିଁ ।

ଖିଆପିଆ ସରିବା ପରେ କମାର-ଘରଣୀ ପିଲପିଲଙ୍କୁ ସାଙ୍ଗରେ ନେଇ ବାପଘରେ ଆସି ପହଞ୍ଚିଲା । ତାଙ୍କର ବାପା ଝିଅ ବାନ୍ଧ ଦେଇଥିବା ଚଳ-ଖୁଡ଼କୁ ଗୋଟିଏ ପୁଡ଼ିଆ କରି ତତ୍କ୍ଷଣାତ୍ ପ୍ରସ୍ଥାନ କଲ । କନ୍ତୁ ବୋରନା ଏତେବେଳଯାଏ ମଧ୍ୟ ଘରକୁ ଫେରିନାହିଁ ।

କନ୍ତୁ କମାର-ଘରଣୀ ମନେମନେ ନିଷ୍ପତ୍ତି କରି ଅସିଥାଏ ଯେ ଆଜି ଯେତେ ଡେରି ହେଉ ପଛକେ, ସଞ୍ଜ ବୁଡ଼ିଯାଉ ପଛକେ, ବାପ ସହିତ ଆଗ କଥାବାର୍ତ୍ତା କରି ତେବେଯାଇ ସେ ଘରକୁ ଫେରିବ । ଝରକା ପାଖରେ ପଡ଼ିଥିବା ତକ୍ତରେ ବସି ତାଙ୍କ କ'ଣଗୋଟାଏ ବୁଣିବାରେ ଲଗିଥାଏ ଏବଂ ଆନ୍ଦ୍ରେକ୍ ଓ ତା' ଭଉଣୀ ଭିତରେ ଚାଲିଥିବା କଥାବାର୍ତ୍ତାକୁ ଶୁଣିବା ଲଗି ମଝିରେମଝିରେ ଇଆଡ଼କୁ କାନ ଡେରି ଦେଉଥାଏ । ଅବଶ୍ୟ ସେମାନଙ୍କର କଥାବାର୍ତ୍ତା ଶେଷ ହେବାକୁ ବେଶୀ ସମୟ ଲଗିଲ ନାହିଁ, କାରଣ ଠିକ୍ ସେହି ସମୟକୁ ସ୍ତୁଷ୍କିଙ୍କ ମଧ୍ୟ ସେଠାରେ ଆସି ପହଞ୍ଚିଲ ଓ କହିବାକୁ ଆରମ୍ଭ କଲ :

"ମାଥିଆସ ଓ ସ୍ତର୍ନାଙ୍କୁ ମୁଁ ଅଇଛା ସାହାରେ ଦେଖିଆସିଲି । ସେମାନେ ଗାଆଁର ବଡ଼ବଡ଼ ଲେକଙ୍କୁ ବାହାଘରକୁ ନିମନ୍ତ୍ରଣକରି ଯାଇଚନ୍ତି । ପାଦ୍ରୀଙ୍କୁ ମଧ୍ୟ ନିମନ୍ତ୍ରଣ କରିଚନ୍ତି ।"

"କ'ଣ ହେଲା ? ପାଦ୍ରୀଙ୍କୁ ଯାଇ ନିମନ୍ତ୍ରଣ କରିବାକୁ ମଧ୍ୟ ସେମାନଙ୍କର ସାହସ ହେଲା ?" — ବିସ୍ମିତ ହୋଇ ତାଙ୍କ ପଚାରିଲା ।

"କାହିଁକି, ସିଏ କ'ଣ ମଣିଷ ନୁହନ୍ତି, ଖାଲି ଗୋଟା ପୁଜା ଦେବତା ? ସେମାନେ ଯାଇ ତାଙ୍କୁ ନିମନ୍ତ୍ରଣ କଲେ ; ପାଦ୍ରୀ କହିଲେ : ସମ୍ଭବ ହେଲେ

ନଷ୍ଟହୁଏ ଯିବ । କାହିଁକି ନ ଆସିବେ ? ଟ୍ରୁଅ କ'ଣ ଅବର୍ଜିଆ ହୋଇଚ, ନା କ'ଣ ଭୋଜାଭାତ କ'ଣ ଖରାପ ହେବ ନା କଅଣ ? ପିଇବା ପାଇଁ କ'ଣ ଅଭାବ ରହିବ ନା କଅଣ । ପେଷଣିଆ ଘରର ଘରୁଆ, ଘରଣୀ ଆଉ ଟ୍ରୁଅ ସମସ୍ତେ ଆସିବେ ବୋଲି କହିଚନ୍ତି । ଏଇ ଲିପ୍କା ଗାଆଁରେ ଏପରି ଜାକଜମକରେ ଆଗରୁ କେବେ ବାହାଘର ହୋଇ ନ ଥିଲା । ଆନ୍ଟ୍ରୋକ୍ ବାହାଘର ଲାଗି ଗୋଟାଏ ଘୁଷୁରି ମାରିଚ, ସେମାନେ ସମସ୍ତେ ଖାଇବାସାମଗ୍ରୀ ତିଆରି କରିବାରେ ଲାଗି ପଡ଼ିଲେଣି ।''— କେହି ତାକୁ କୌଣସି ପ୍ରଶ୍ନ ପଚାରୁ ନାହାନ୍ତି ଦେଖି ସେ ହତୋତ୍ସାହ ହେଲାପରି ହଠାତ୍ ଅଟକିଗଲା ଓ ଆଖି ବୁଲାଇ ସମସ୍ତଙ୍କର ନୀରସ ମୁହଁକୁ ଅନାଇ ଦେଖିବାକୁ ଲାଗିଲା ଓ ପୁଣି କହିଲା :

''ମୋ'ର ମନେହେଉଚି ଯେପରି ଏଠି ତୁମମାନଙ୍କ ଭିତରେ କ'ଣ 'ସବୁ ମନ୍ତ୍ରଣା' ଚାଲିଥିଲା ।''

''ମନ୍ତ୍ରଣା ଚାଲୁ କି ନ ଚାଲୁ, ସେଥିରେ ତୋର କ'ଣ ଅଛି ?'' ବଡ଼ ବିରକ୍ତିକର ଭାବ ପ୍ରକାଶକରି କମାର ଘରଣୀ ଜବାବ୍ ଦେଲା । ସୁଗୁଷ୍ଟଙ୍କର ଦେହରେ ଯେପରି ଛୁଞ୍ଚି ଫୋଡ଼ି ହୋଇଗଲା । ସେ ସେଠାରୁ ଉଠି ଆଉ ଧାଉଡ଼ି ଘରଆଡ଼କୁ ସୁଜ୍କା ପାଖକୁ ବାହାରିଗଲା । ଗୃହଶାଳୀ ଭାଙ୍ଗିବା ପରେ ସୁଜ୍କା ସେତେବେଳକୁ ଚଉକୀ ଓ ବେଞ୍ଚଗୁଡ଼ାକୁ ସଜାଡ଼ି କରି ରଖୁଥାଏ ।

ମୁହଁ ଶୁଖାଇ କମାର-ଘରଣୀ କହିଲା : ''ବାପା କଦାପି କାହାକୁ ହେଲେ କିଛି ଛାଡ଼ି ଦେବେ ନାହିଁ ।''

''କାହିଁକି ଛାଡ଼ିବେ ମ ? ହାତର ସମ୍ପତ୍ତି କିଏ କେବେ ଛାଡ଼ିଲାଣି ନା ଆଜି କିଏ ଛାଡ଼ିବ ?''— ହାଙ୍କା ଉତ୍ତର ଦେଲା ଓ ଆନ୍ଟେକ୍ ତା'ଆଡ଼କୁ ଭୟଙ୍କର ଦୃଷ୍ଟିରେ ଅନାଇ ରହିଥିବାର ଦେଖି ସେ ଟିକିଏ ଶଙ୍କିଗଲା । ତା'ପରେ ସେମାନେ ସମସ୍ତେ ସେଠାରେ ଚୁପ୍ ହୋଇ ବସିରହିଲେ । ମଝିରେମଝିରେ ହୁଏତ କିଏ କ'ଣ ପଦେ କହି ଦେଉଥାଏ, ତା'ପରେ ପୁଣି ସମସ୍ତେ ଚୁପ୍ ହୋଇ ଯାଉଥାନ୍ତି ।

"ତା' ହାତରେ ବର୍ତ୍ତମାନ ଅନେକ ଟଙ୍କା ଜମା ହୋଇଥିବ । ସେ ତ ଖାଲି ବକବାରେ ଲାଗିଚି, — ଏଣେ ଖରଚ କରିବାକୁ ବା କ'ଣ ଦରକାର ଅଛୁ ?"

ଆନ୍ଦ୍ରେଇ୍ କେବଳ ହାତଟାକୁ ହଲାଇଦେଇ ଭଉଣୀ କହୁଥିବା କଥାର ଜବାବ ଦେଲି ଓ ତା'ପରେ ଦେହରେ ଟିକିଏ ଖୋଲା ପବନ ବଜାଇ ଆସିବାକୁ ବାହାରକୁ ଚାଲିଗଲା । ତା'ର ଅଶାନ୍ତି ବେଳୁଁବେଳ ବଢିବାରେ ଲାଗିଥାଏ, — କିନ୍ତୁ ଏହି ଅଶାନ୍ତିର କାରଣଟାକୁ ସେ ଆଦୌ ଠଉରାଇ ପାରୁ ନ ଥାଏ । କେତେବେଳ ହେଲା ସେ ବାପ ଆସିବ ବୋଲି ଅପେକ୍ଷା କରି ରହିଚି, ତଥାପି ବାପ ଆସିବାକୁ ନାହିଁ, ପୁଣି ଏଣେ ବାପକୁ ଭେଟିବା ପଚ୍ଛାଇ ପଚ୍ଛାଇ ଯାଉଚି ବୋଲି ତା'ର ମନରେ ସେ ଗୋଟାଏ ପ୍ରକାର ଆନନ୍ଦ ମଧ୍ୟ ଅନୁଭବ କରୁଚି । "ଜମି ସକାଶେ ତୋ'ର ରାଗ ନାହିଁ, ତୋ'ର ରାଗ ସ୍ଵର୍ଣ୍ଣା ସକାଶେ !" — କାଲି କମାରପୁଅ କହିଥିବା ଏହି କଥା କେଇପଦ ହଠାତ୍ ତା'ର ମନେ ପଡ଼ିଗଲା । "ସେ ଗୋଟାଏ ମିଛୁଆ କୁକୁର !" — ରାଗର ପ୍ରକୋପରେ ତା'ର ଓଠ ଭିତରୁ ଏହି ଉତ୍ତରଟା ବାହାରି ପଡ଼ିଲା । ତା'ପରେ ସେ ଆପଣା କାମରେ ଲାଗିଗଲା । ଭିତେକ୍ ତାକୁ ଡାଳପତ୍ର ଯୋଗାଇ ଦେଉଥାଏ । କିନ୍ତୁ କାମ କଲାବେଳକୁ ଆନ୍ଦ୍ରେଇ୍ର ହାତ ଥରିବାରେ ଲାଗି-ଥାଏ, ସେ ମଝିରେ ମଝିରେ ହଠାତ୍ ରହିଯାଉଥାଏ ଏବଂ କାନ୍ଥ ଉପରକୁ ଆଉଜିପଡ଼ି ସେ ଅଣ୍ଡା ଗଛଗୁଡ଼ାକର ଫାଙ୍କ ଦେଇ ପୋଖରୀ ସେପାଖରେ ଥିବା ସ୍ଵର୍ଣ୍ଣାର ଘର ଆଡ଼କୁ ଅନାଇ ରହୁଥାଏ । ନା, — ବର୍ତ୍ତମାନ ତା'ର ମନ ଭିତରେ ଜାଗ୍ରତ ହେଉଥିବା ଭାବକୁ କଦାପି ଭଲ ପାଇବା ବୋଲି କୁହାଯାଇ ପାରିବ ନାହିଁ, — ଏହା କେବଳ କ୍ରୋଧ କେବଳ ଘୃଣା । ସ୍ଵର୍ଣ୍ଣା ମଣିଷ ନୁହେଁ, ସେ କେବଳ ଘୃଣାର ପାତ୍ର । ସେମାନେ ସମସ୍ତେ ମିଳି ତା' ଆଡ଼କୁ ଖଣ୍ଡେ ହାଡ଼ ପକାଇ ଦେଲେ, ଆଉ ସେ ସେହି ହାଡ଼ ପଛରେ ଗୋଡ଼ାଇବାକୁ ଆରମ୍ଭ କରିଦେଲା !

ସେ ଏହିପରି ଭାବ ଭାବ ଚାଲିଥାଏ । କିନ୍ତୁ ହଠାତ୍ କେଉଁ ଅଜ୍ଞାତ ସ୍ଥାନରୁ ମାଡ଼ି ଆସିବା ପରି କେତେ ଅତୀତର ସ୍ମୃତିମାନ ଆସି ତା'ର

ହୃଦୟକୁ ଅଧିକାର କରି ବସିଲା, ସତେ ଯେପରି ସେହି ସ୍ମୃତିଗୁଡ଼ାକୁ ସେ ଆପଣାର ଆଖି ଆଗରେ ଦେଖିବାକୁ ପାଇଲା !······ତା'ର ଆଖିପତା ଦୁଇଟି ହଠାତ୍‌ ଝାଳେଇ ଆସିଲା । ଆଖି ଫକଫକ ଡେଇଁବାକୁ ଲାଗିଲା, ତା'ର ଶରୀର ଭିତରେ ଯେପରି କ'ଣ ଗୋଟାଏ ଖରି ଦ୍ରୁତ ଓ ଉତ୍ତେଜିତ ହୋଇ ପଡ଼ିଲାପରି କମ୍ପିବାକୁ ଆରମ୍ଭ କଲା । ହଁ, ସେଇ ତୋଟା ଭିତରେ । ହଁ,— ତା'ପରେ ଆଉଦିନେ ଜଙ୍ଗଲରେ ! ତା'ପରେ ପୁଣି ଆଉଥରେ,— ଯେଉଁଦିନ ଦୁହେଁ ଏକାଠି ହୋଇ ସହରରୁ ଘରକୁ ଫେରୁଥିଲେ !

ହଠାତ୍‌ ତା'ର ସମସ୍ତ ମସ୍ତିଷ୍କଟା ଭ୍ରମିଗଲା ପରି ମନେହେଲା । ସେହି ଜ୍ୱଳନ୍ତ ରୂପବନ୍ତ ମୁହଁଟି, ସେହି ଗାଢ଼ନୀଳ ଆଖିଦୁଇଟି, ସେହି ଅଦ୍ଭୁତ ଭାବରେ ଘଟଣ ହୋଇ ଖଣ୍ଡା ହୋଇଥିବା ନାଲିନାଲି ଓଠ;— ହଠାତ୍‌ ସେ ସ୍ତ୍ରୀଲୋକର ବାସନାବହ୍ନିଳ ଖର ନିଃଶ୍ୱାସକୁ ଆପଣାର କାନ ପାଖରେ ଶୁଣିବାକୁ ପାଇଲା; ପ୍ରେମ ଓ କାମନାରେ ଧୀର ଓ ଅସ୍ପଷ୍ଟ ହୋଇ ଆସୁଥିବା ତାର କଣ୍ଠ ସ୍ୱର ଶୁଣିବାକୁ ପାଇଲା । ତା'ର ମନେହେଲା ସତେ ଯେପରି ସ୍ତ୍ରୀଲୋକ ତାକୁ ଡାକକରି କହୁଛି : "ଆଣ୍ଟେକ୍‌, ଆଣ୍ଟେକ୍‌ !"— ପୁଣି ସେ କ୍ରମେ ତାହାର ଆଡ଼କୁ ଆଗତ ହୋଇ ଆସୁଛି । ତା'ର ଅତି ନିବିଡ଼ ନିକଟକୁ ଆଉଜି ଆସୁଛି,— ହଠାତ୍‌ ଆପଣାର ଶରୀର ଉପରେ ସେ ସ୍ତ୍ରୀଲୋକର ସ୍ପନ୍ଦନମୟ ଦେହର ସ୍ପର୍ଶ ଅନୁଭବ କରିବାକୁ ଲାଗିଲା ! ···କିନ୍ତୁ ଏହି ମଧୁର ମାୟା ମମତାକୁ ଘୁଞ୍ଚାଇଦେବା ଉଦ୍ଦେଶ୍ୟରେ ଆଣ୍ଟେକ୍‌ ଆପଣାର ଆଖିଦୁଇଟା ପୋଛି ପକାଇଲା । ତଥାପି ତା'ର ହୃଦୟଭିତରେ ତା'ର ବେଦନାପୀଡ଼ିତ ପ୍ରେମାଭିଳାଷ ପୁଣି ଥରେ ଆପଣାର କଣ୍ଟକକଣ୍ଟିତ ମସ୍ତକଟିକୁ ଉତ୍ତୋଳନ କରିବାକୁ ଆରମ୍ଭ କଲା । ଏହି ଅଭିଳାଷର ବେଦନା ପ୍ରକୃତରେ ବଡ଼ ବିଷମ, ବଡ଼ ମର୍ମନ୍ତୁଦ । ଯେତେ ଯୋରରେ ଚିତ୍କାର କଲେ ମଧ୍ୟ ଏହି ବେଦନାର ନିରାକରଣ କଦାପି ସମ୍ଭବ ନୁହେଁ ।

"ବଜ୍ରପାତ ହୋଇ ତା'ର ମୃତ୍ୟୁ ହୋଇଯାଉ !"— ଆଣ୍ଟେକ୍‌ ଅତ୍ୟନ୍ତ ବିକଳ ହୋଇ ଚିତ୍କାର କରି ଉଠିଲା, କିନ୍ତୁ ପରମୁହୂର୍ତ୍ତରେ ଆପଣାକୁ ସଂଯତ କରିନେଇ ସେ ତୀକ୍ଷ୍ଣ ଦୃଷ୍ଟିରେ ଚତୁର୍ଦ୍ଦିଗକୁ ଅନାଇ

ଦେଖିଲା । ତା'ର ଆଶଙ୍କା ହେଉଥିଲା, କାହାକୁ ଉଦ୍ଦେଶ୍ୟ କରି ସେ ଏପରି ଅଭିଶାପ ଦେଲା, କାଲେ ଭିଡେକ୍ ସେ ବିଷୟରେ କିଛି ବୁଝି ପାରିଥିବ !

ଥରେ ସାହସ କରି ବାପା ଆଗରେ ଠିଆ ହୋଇ ସେ କେତେଥର ଏହିକଥା କହିବ ବୋଲି ସଂକଳ୍ପ କରିଚି, "ତୁମେ ସ୍ୱପ୍ନାକୁ କଦାପି ବିବାହ କରି ପାରିବନାହିଁ, ସେ ହେଉଚି ମୋର !" କିନ୍ତୁ ଏହି କଥା ଚିନ୍ତା କଲା ମାତ୍ରକେ ଭୟରେ ତା'ର ରୋମାଞ୍ଚ ଜାତ ହୋଇଚି । ଏକଥା ଶୁଣିଲେ ତା'ର ବାପା ତାକୁ କ'ଣ କହିବ, ଗାଆଁ ଟାଯାକ ଲୋକ କ'ଣ କହିବେ ?

ତା'ହେଲେ ଏଣିକି ସେହି ସ୍ୱପ୍ନା ତା'ର ସାବତ ମାଆ ହୋଇ ଆସିବ, — ଗୋଟାଏ ପ୍ରକାରରେ ଦେଖିଲେ ତା'ର ମାଆ ହୋଇ ଆସିବ ! କିନ୍ତୁ ଏକଥା କି କେବେ ସମ୍ଭବ ହୋଇପାରେ ? ଏପରି ଘଟଣାକୁ ଏକ ନିନ୍ଦନୀୟ ପାପ ବୋଲି କହିବା ଉଚିତ ନୁହେଁ କି ? ଏ ବିଷୟରେ ଅଧିକ ଚିନ୍ତା କରିବାକୁ ମଧ୍ୟ ତାକୁ ଡର ମାଡ଼ୁଥାଏ । ଏହି ପାପ ଲାଗି ଭଗବାନ ତା'ପାଇଁ କି ଦଣ୍ଡର ବ୍ୟବସ୍ଥା କରିବେ କେଜାଣି ? — ତା'ର ହୃଦୟ ଭିତରଟା ସତେଅବା କରତହୋଇ ଯାଉଥାଏ । ଏସବୁ କଥାକୁ ସେ ମନ-ଭିତରେ ଲୁଚାଇ ରଖିବ ବା କିପରି,— ଗୁପ୍ତ ଭିତରେ ଏହି ଅଙ୍ଗାର ନିଆଁକୁ ଲୁଚାଇ ରଖିଲେ ସେ ତା'ଦେହର ହାଡ଼କୁ ମଧ୍ୟ ପୋଡ଼ି ଭସ୍ମ କରିଦେବ । କୋଉ ମଣିଷ ଏ କଷ୍ଟ ସହ୍ୟ କରିପାରିବ କହିଲ ?

ବାହାଘର ଆଉ ମୋଟେ ସାତଟାଦିନ ବାକି ରହିଲା !

"ଏଇ ସାଆନ୍ତେ ଆସିଲେଣି !" — ଭିଡେକ୍ ପାଟିକରି କହିଲା,— ଆନ୍ତ୍ରେକ୍ ଏକ ଦୁଃଖମୟ ଅଶାନ୍ତିରେ ଥରୁଥିବାପରି ଅନୁଭବ କରୁଥାଏ ।

ସେତେବେଳକୁ ସଞ୍ଜହୋଇ ଆସିଲାଣି ।

ସଞ୍ଜବୁଡ଼ିବା ସଙ୍ଗେସଙ୍ଗେ ଶୀତ ବି ମାଡ଼ିଆସୁଥାଏ । ମାଟି ହେମାଳ ହୋଇଗଲାଣି । ହିମଶୀତଳ ପବନ ଦେହରେ ଛୁଞ୍ଚି ମାରିଦେଇ ଯାଉଚି । ପାଣି-ଭିତରେ ଗୋରୁମାନଙ୍କର ଖୁରାପଡ଼ିବାର ଚବଚବ ଶବ୍ଦ ଶୁଭୁଚି, କୋଉଠି କାହା ଘରର ଫାଟକ କେଁ କେଁ ହେଉଚି, ଦୂରରୁ ପିଲାମାନଙ୍କର

କୋଳାହଳ ଓ କୁକୁର ଭୁକିବା ଶୁଣାଯାଉଛି । କାହା କାହା ଘରର ଝରକାଭିତରୁ ବତୀର ଆଲୁଅ ଦେଖାଗଲାଣି, ପାଣିଉପରେ ସେହି ଆଲୁଅର ସୁଦୀର୍ଘ ଗ୍ଧଇମାନ ଆସି ପଡ଼ୁଛି । ଜଙ୍ଗଲ ସେପଟୁ ରଙ୍ଗ ଘଷିଦିଆଏ ପରି ପୂର୍ଣ୍ଣିମାର ଜହ୍ନ ନାଲି ହୋଇ ଧୀରେଧୀରେ ଉଠିଆସୁଛି ।

ବୋରନା ଦୁଆରଭିତରକୁ ଆସି ବାଛୁରୀମାନଙ୍କୁ ଗାଈମାନଙ୍କ ଗୁହାଳକୁ ଛାଡ଼ିଦେଇ ଥିବାରୁ ଆଗ କୁବା ଓ ଭିଡେକ୍‌ଙ୍କୁ ଗାଳି ଦେଲା । ତା'ପରେ ଘରଭିତରେ ପ୍ରବେଶ କରି ଆଗନ୍ତୁକମାନେ ତା'ପାଇଁ ଅନେଖା କରି ବସି ଚନ୍ତି । ସେମାନେ କେହି କିଛି କହିଲେ ନାହିଁ, କେବଳ ଥରେ ତା' ଆଡ଼କୁ ଅନାଇ ତା'ପରେ ତଳକୁ ମୁହଁ ପୋତିଦେଲେ । ଘରମଝିକୁ ଆସି ସେମାନଙ୍କ ଆଡ଼କୁ ଅନାଇ ବୋରନା ବିରକ୍ତ କଣ୍ଠରେ ପଚାରିଲା !

"ଏଠି ଆଜି କାହିଁକି ସମସ୍ତେ ଏକଜୁଟ ହୋଇଛ ଶୁଣେ ! କ'ଣ ବିପ୍ଳବ ପଡ଼ିବବୋଲି ସଭା ବସିଛି ?"

"ନାଇଁ, କିଛିନାହିଁ," — କମାର-ଘରଣୀ ସଙ୍କୁଚିତ ଭାବରେ ଜବାବ ଦେଲା । "ଆମେ ବାପ ପାଖରେ ଗୋଟାଏ ଅରଜି ଦେବାକୁ ଆସିଛୁ !"

"କିନ୍ତୁ ତୋ'ର ଗେରସ୍ତ ଆସିନାହିଁ କାହିଁକି ?"

"ତା'ର କାମ ଥିଲା ବୋଲି ସେ ଆସି ପାରିଲାନାହିଁ ।"

"ଓଃ, କାମ ଥିଲା ? ଭାରି କାମିକା ମଣିଷଟାଏ ନା !" — ବୋରନା ଉତ୍ତର ଦେଲା ଓ ଦେହରୁ କୁରୁତାଟା କାଢ଼ି ଫୋପାଡ଼ିଦେଇ ଗୋଡ଼ରୁ ଜୋତା ଓହ୍ଲାଇବାକୁ ବସିଲା । ସମସ୍ତେ ଚୁପ୍‌ଚାପ୍ ଥାଆନ୍ତି, କଥାଟାକୁ କେମିତି ଉଠାଇବାକୁ ହେବ, ସେଥିପାଇଁ ବାଟ ପାଉନଥାନ୍ତି । ଗଳା-ଭିତରଟାକୁ ସାଫ୍ କରିନେଇ କମାର-ଘରଣୀ ଆପଣାର ପିଲାଙ୍କୁ ଆହୁରି କଡକୁ ନେଇଆସିଲା । ଦୁଆରବନ୍ଧ ଉପରେ ବସି ହାଙ୍କା କୋଳପିଲାଟାକୁ ଦୁଧ ଦେଉଥାଏ ଓ ହାଣିଲି ଭଳିଆ ଗୃହିଣୀରେ ଆଲ୍ରେକ୍ ଆଡ଼କୁ ଅନାଉ-ଥାଏ । କ'ଣ କହିବ ଠିକ୍ କରିନପାରି ଆଲ୍ରେକ୍ ଝରକା ପାଖରେ ବସି-ରହିଥାଏ ଓ ନାନାପ୍ରକାର ଭାବନାରେ ଉତ୍ତେଜିତ ହୋଇ ଗୋଟାସୁଦ୍ଧା

ଅରବାରେ ଲାଗିଥାଏ । କେବଲ ସ୍ମୂକ୍କା ଯାହା ଥିରହୋଇ ବସି ଆଳୁରୁ ଚୋପା ଛଡ଼ାଉଥାଏ ।

"କ'ଣ କହିବାକୁ ଅଛ କହୁନା କାହିଁକି ?"— ବୁଢ଼ା ତୀକ୍ଷ୍ଣ ସ୍ୱରରେ କହିଲା । ସମସ୍ତଙ୍କର ଏହି ନୀରବତା ତାକୁ ଆଦୌ ଭଲ ଲାଗୁନଥାଏ ।

"ଆଗ ଆନ୍ଦ୍ରେଇ ସେହି ନିର୍ବନ୍ଧ ବିଷୟରେ କହୁ, ତା'ପରେ ଆମେ ସମସ୍ତେ କହିବୁ,"— କହିଲାବେଳକୁ କମାରଘରଣୀର ପାଟି ଲାଗି ଯାଉଥାଏ ।

"ନିର୍ବନ୍ଧ ? ନିର୍ବନ୍ଧଟା ତ ପକ୍କା ହୋଇ ସାରିଲାଣି । ରବିବାରଦିନ ବିଭାଘର ହେବ !"

"ଆମକୁ ସେକଥା ଜଣା ଅଛି, କିନ୍ତୁ ଆମେ ଆଉଗୋଟାଏ କାରଣରୁ ଆସିଥିଲୁ ।"

"କେଉଁ କାରଣରୁ ?"

"ତୁମେ ଛଅଛଅ ମାଣ ଜମି ତା'ନାଆଁରେ ଲେଖିଦେଇଚ !"

"ମୋ'ର ଯେପରି ମନହେଲା, ମୁଁ କଲି ! ଇଚ୍ଛାକଲେ ମୁଁ ବର୍ତ୍ତ-ମାନ ମଧ୍ୟ ମୋ'ର ସବୁଜମିକୁ ତା' ନାଆଁରେ ଲେଖିଦେଇ ଆସିବି !"

"ସବୁଜମି ଯଦି ତୁମର ହୋଇଥାନ୍ତା, ତେବେ ସିନା ତୁମେ ତାହା କରିପାରନ୍ତ !"— ଆନ୍ଦ୍ରେଇ କହିଲା ।

"ସବୁ ଜମି ମୋର ନୁହେଁ ତ ଆଉ କାହାର ?"

"ତୁମ ପିଲାଙ୍କର, — ଆମର !"

"ମିଛକଥା ! ମୋ'ର ଜମି, ମୁଁ ସେ ଜମିକୁ ଯାହା କରିବି. ସେଥିରେ କାହାର କ'ଣ କହିବାର ଅଛି ?"

"ସବ ଜମି ତୁମର ନୁହେଁ, ତେଣୁ ତୁମେ ଜମିକୁ ଯାହା କରିବାକୁ ଇଚ୍ଛା କରିବ, ତାହା କରି ପାରିବନାହିଁ ।"

"ତୁ ମୋତେ ମନା କରିବୁ,— ତୁ ଅଟକାଇ ରଖିବୁ ?"

"ହଁ ରଖିବ,— ଆମେ ଅଲବତ ଅଟକାଇ ରଖିବ । ନହେଲେ କଚେରି ଆମ ଆପତ୍ତିର ଫଇସଲା କରିଦେବ ।" — ଆନ୍ଦ୍ରେଇ ଆଉ

ନିଜକୁ ସମ୍ଭାଳି ରଖି ପାରିଲା ନାହିଁ । ରାଗରେ ସେ ଗୋଟାପୁଣା ଥରି-ବାରେ ଲାଗିଥାଏ ।

"ମତେ କଚେରୀର ଧମକ ଦେଖାଇବାକୁ ଆସିଚୁ ? ଭଲରେ ଭଲରେ କହୁଚି ମୁହଁ ସମ୍ଭାଳିକରି ରଖ । ନଚେତ୍ ମୋର ରାଗ ଚଢ଼ିଗଲେ ତେଣିକି ଆଉ ମୋତେ ଦୋଷ ଦେବୁନାହିଁ !"

"କିନ୍ତୁ ତୁମେ ଆମ ଉପରେ କଦାପି ଏପରି ଅତ୍ୟାଚାର କରି ପାରିବ-ନାହିଁ !" — ବଡ଼ ପାଟିକରି ସେ କହିଲା ।

"ସେ ମାଇପିଟା ସେଠି ବସି କ'ଣ କହୁଚି କି ? ବାପଘରୁ ଆସିଲା-ବେଳେ ତିନିମାଣ ଦାଣ୍ଡିଜମି ଆଉ ଅଖାପରି ଖଣ୍ଡେ କନାନେଇ ଆସିଥିଲା ବୋଲି ସିଏ ମଧ୍ୟ ଜିଭ ନଡ଼ନଡ଼ କରିବାକୁ ଆସିଚି ?"

"ତୁମେ ତ ଆନ୍ତ୍ରେକ୍‌କୁ ତା'ଠାରୁ ମଧ୍ୟ କମ୍ ଦେଇଚ ! ତା'ମାଆ ଯୋଉ ଜମିକୁ ଯୌତୁକରେ ଆଣିଥିଲି, ସେଇ ଜମିକୁ ମଧ୍ୟ ଆପଣା ପାଖରେ ରଖିଚ । ଆମେ ତ ତୁମଘରେ କୋଠିଆପଣ କରି ରହିଚୁ !"

"କିନ୍ତୁ କାମ ଯେମିତି କରୁଚ, ମୋ'ର ତିନିମାଣ ଜମିର ଫସଲ ସେମିତି ଖାଉଚ !"

"କିନ୍ତୁ ଯାହା କାମ କରୁଚୁ, ତାହା ତ କୋଡ଼ିଏ ମାଣର ସରି ହେବ ।'

"ଯଦି ଏଠି ଭଲ ବ୍ୟବହାର ମିଳୁନାହିଁ ବୋଲି ମନେ କରୁଚ, ତେବେ ଯାଉନା ଆଉକୋଉଠି ଭଲ ବ୍ୟବହାର ପାଇବ !"

ଏକଥା ଶୁଣି ଆନ୍ତ୍ରେକ୍ ପାଟି କରି ଉଠିଲା : "ଆମେ ଆଉକୋଉଠିକି କାହିଁକି ଯିବୁ ? ଏଜମି ହେଉଚି ଆମର ଜମି, ଆମ ପୂର୍ବପୁରୁଷଙ୍କର ଜମି !"

ବୁଢ଼ା ବୋରିନା ତା'ଆଡ଼କୁ କଟମଟ କରି ଅନାଇ ରହିଲା, କିନ୍ତୁ ତା' କଥାର କୌଣସି ଜବାବ ଦେଲା ନାହିଁ ।

କିଛି ସମୟ ପର୍ଯ୍ୟନ୍ତ ସମସ୍ତେ ଚୁପ୍‌ଚାପ୍ ବସି ରହିଲେ । ସମସ୍ତଙ୍କର ଖରନିଶ୍ୱାସଗୁଡ଼ାକ ବ୍ୟତୀତ ଘରଭିତରର ନୀରବତା ଭଙ୍ଗ କରିବାକୁ ଆଉ କିଛି ଶୁଣାଯାଉ ନଥାଏ ।

"ତୁମ ବାହାଘର ବନ୍ଦୁବସ୍ତରେ ଆମର କିଛି କହିବାକୁ ନାହିଁ । ତୁମର ଇଚ୍ଛା ହେଉଚି ତ ତୁମେ ବାହା ହେବ । ସେଥିରେ ଆମେ କାହିଁକି କ'ଣ କହିବାକୁ ଯିବୁ ?"

"ତୁମେମାନେ କ'ଣ କହିଲେ ଯେପରି ମୁଁ ସେଥିପାଇଁ ଡରିବାକୁ ବସିଛି !"

"କେବଳ ଜମି ବିଷୟରେ କରିଥିବା ଚୁକ୍ତିଟାକୁ ତୁମେ ଖାରଜ କରିଦିଅ"— ଲୁହ ଛଳ ଛଳ ଆଖିରେ ହାଙ୍କା କହିଲା ।

"ସେ କୁକୁରଜନମକାଙ୍କ୍ଷୀ ସେଠି କାହିଁକି ବାଲୁଙ୍ଗଙ୍କ ପରି ତୁଣ୍ଡ ବଜର ବଜର କରୁଚି ?" — କହି ବୋରିନା ଏପରି ଜୋରରେ ଉତ୍ତେଜିତ ହୋଇ ଫୁଙ୍କି-ବାକୁ ଲାଗିଲା ଯେ ଅଗ୍ନିକଣା ଘୁଡ଼ାକ ଘରଭିତର ଯାକ ଉଡ଼ିବାକୁ ଆରମ୍ଭ କଲା ।

"ହୁସିଆର ହୋଇ କଥା କହ । ସେ ତୁମର ପୋଇଲି ହୋଇନାହିଁ ଯେ ତୁମେ ତାକୁ ଏପରି ଖରାପ କଥାମାନ କହିବ !"

"ତା'ହେଲେ ସେ କାହିଁକି ଉପରେପଡ଼ି କଥା କହୁଚି ?"

"ତା'ର କହିବାକୁ ହକ୍ ଅଛି ବୋଲି ସେ କହୁଚି !" — ଅନ୍ତେକ୍ ଜବାବ ଦେଲା । "ସେ ଆମର ଉଆଜିବ୍ ପାଉଣା ଦାବୀ କରୁଚି !"

କମାର ଘରଣୀ ମଝିରେ ଥାଇ କହିବାକୁ ଲାଗିଲା, "ଯଦି ତୁମର ମନ ମାନୁନାହିଁ, ତେବେ ସେହି ଚୁକ୍ତି ପଛେ ସେମିତି ଥାଉ । କିନ୍ତୁ ବାକୀ ଜମିତକ ଆମ ନାଆଁରେ କରିଦିଅ ।"

"ଶୁଣ ସେ ଅଲସେଇଟାର କଥାକୁ ! ସେ ମୋର ଜମିରେ ବାଣ୍ଟ ବସାଇବାକୁ ଆସିଛି ! ନାଇଁ, — ଏଣିକି ମୁଁ ଆଉ ତୁମମାନଙ୍କ ହାଣ୍ଡିରେ ଖାଇବ ନାହିଁ କି ତୁମମାନଙ୍କ ଘରେ ରହିବ ନାହିଁ, — ଆଜି ସାଫସାଫ୍ କହିଦେଲି !"

"କିନ୍ତୁ ଆମେ କଦାପି ଛାଡ଼ିଦେବୁନାହିଁ । ଆମକୁ ନ୍ୟାଯ୍ୟ ମିଳିବା ଦରକାର !"

"ପିଠିରେ ପାହାର ବସିଲେ ନ୍ୟାଯ୍ୟ ମିଳିଯିବ ଯେ !"

"ପାହାର ବସିବ ? ବସାଇଲ ଦେଖି, ! ଥରେ ଛୁଇଁଲେ ବାହାରିଥିବାଏ ମଧ୍ୟ ବଞ୍ଚିକରି ରହି ପାରିବନାହିଁ !"

ଏଇଠାରୁ ସ୍ୱାଭମତ କଳହ ପର୍ବ ଆରମ୍ଭ ହୋଇଗଲା । ପରସ୍ପରକୁ ଧମକ ଦେଖାଇ ସେମାନେ କ୍ରମେ ଅଗକୁ ଆଗକୁ ଘୁଞ୍ଚି ଆସୁଥାନ୍ତି, ହାତମୁଠାରେ ଟେବୁଲ୍‌କୁ ବାଡ଼େଇବାରେ ଲଗିଥାନ୍ତି । ଆପଣାର ଅଭିଯୋଗଗୁଡ଼ାକୁ ଚିତ୍କାର କରି କହିବାରେ ଲଗିଥାନ୍ତି । ଆନ୍ରେକ୍‌ର ଆଉ ହୋସ୍ ରହିଲନାହିଁ । ପ୍ରଚଣ୍ଡ ରାଗରେ ସେ କେତେବେଳେ ବୁଢ଼ାବାପର କାନ୍ଧକୁ ଆସି ଧରି ପକାଉଥାଏ, ପୁଣି କେତେବେଳେ ତଣ୍ଟି ପାଖରେ ହାତ-ଲଗାଇ ଦେଉଥାଏ ତଥାପି ବୁଢ଼ା ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣଭାବେ ଆପଣା କାବୁରେ ରହିଥାଏ । ଏଠି ପୁଅସାଥିରେ ଯୁଦ୍ଧ କରିବାଲଗି ତା'ର ଆଦୌ ମନ ନଥାଏ, ତେଣୁ ସେ ବାରବାର ପୁଅକୁ ପାଖରୁ ହଟେଇ ଦେଉଥାଏ, ପୁଅ କରୁଥିବା ଅପମାନର କ୍ୱଚିତ୍ ଜବାବ ଦେଉଥାଏ । ତା'ର ବ୍ୟକ୍ତିଗତ ମାମଲାରେ ଗାଆଁଲୋକେ ଆସି ଭଲମନ୍ଦ କହୁଅନ୍ତୁ, ଏଥିପ୍ରତି ତା'ର କୌଣସି ଆଗ୍ରହ ନଥାଏ । କିନ୍ତୁ ଅବସ୍ଥା କ୍ରମେ ଗୁରୁତର ହେବାକୁ ଲଗିଲା, ଘରଭିତରର କୋଳାହଳ କ୍ରମେ ବଢ଼ିବାକୁ ଲଗିଲା । କାରଣ ବୋଉନାର ଝିଅ ଓ ବୋହୂ ଶେଷକୁ ବାହୁନା ଆରମ୍ଭ କରିଦେଲେ ଏବଂ ତୁହାତୁହା କରି ସମ୍ମାର୍ଜନୀ ବରଷିବାକୁ ଲଗିଲେ । ପିଲାଗୁଡ଼ାକ ମଧ୍ୟ ଆତଙ୍କିତ ହୋଇ ଭେଁ ଭେଁ ଡକା ପାରିବାକୁ ଆରମ୍ଭ କଲେ । ଖବର କ'ଣ ଦେଖିବାଲଗି କୁବା ଆଉ ଭଡେକ୍ ଗୁହାଳଦୁଆରୁ ଆସି ଝରକାବାଟେ ଉଙ୍କି ମାରିବାକୁ ଲଗିଲେ ।

ତେମଣି ଖୁଣ୍ଟ ଉପରେ ଆଉଜି ପଡ଼ି ହାଙ୍କା ଅନର୍ଗଳ କେତେକ'ଣ କହିଯାଉଥାଏ । ତା'ର ଆଖିରୁ ଅନର୍ଗଳ ଧାର ବୋହିବାରେ ଲଗିଥାଏ :

"ଯୀଶୁଙ୍କ କଥାକୁ ଶୁଣ ଗୋ ! ଆମେ କୁଆଡ଼େ ଏ ଘରୁ ବାହାରିଯିବୁ ଆଉ ବାରଦୁଆରେ ଭିକ ମାଗି ବୁଲିବୁ ? ହାୟରେ ଭଗବାନ୍ — ଯୀଶୁଙ୍କ ଜମିରେ ବଳଦଙ୍କପରି ଖଟିବାର ଫଳ ପୁଣି ଏଇଆ ହେବାକୁ ଥିଲା ? ଭଗବାନ କ'ଣ ହନେ ଏହି ଅନ୍ୟାୟର ପ୍ରତିଶୋଧ ନେବେନାହିଁ ! ତାଙ୍କର ଅଭିଶାପ କ'ଣ ହନେ ଏ ବୁଢ଼ା ଉପରେ ପଡ଼ିବନାହିଁ ! ଛୁଅଛୁଅ ମାଣ

ଜମିକୁ ସେ ଯାଇ ତା'ନାଆଁରେ କରଦେଇ ଆସିଲା, ମାଆର ଯେତେ ଲୁଗାପଟା ଆଉ ଗହଣାଗାଣ୍ଠି ଥିଲା, ସବୁ ନେଇ ତା'ର ଘରେ ପୂରାଇଲା ! ସବୁ ଲେ ମାଆ ସବୁ ! ପୁଣି କାହାଘରେ କହିଲ ? ସେହି ଘୁଷୁରିଟା ଘରେ ! ମଲ୍ଲନାହିଁ ବେଧେଇ ଛୁଣ୍ଡାଳୀ ବାରଘଇତା କଣ୍ଢ ! ଆମକୁ ତୁ ଯୋଉ ନରଖର କରୁଚୁ, ଯଦି ସେଥିପାଇଁ ଦିନେ ତୋତେ ତା'ର ପଣ୍ଟାପଡ ଖୋଗି ୀାକୁ ନପଡ଼ିବ, ତେବେ ମୋତେ କହିବୁ !"

"କ'ଣ କହିଲୁ ! ତୁ କ'ଣ କହିଲୁ !"— ଚକ୍ରାର କରୁକରୁ ବୁଢ଼ା ତା'ଆଡ଼କୁ ଚମକି ଆସିଲା ।

"କ'ଣ କହିଲି ? ମୁଁ କ'ଣ ଏକା କହୁଚି କି ? ଗାଆଁଟାଯାକ ସମସ୍ତେ ତାକୁ ବେଧେଇ ଛୁଣ୍ଡାଳୀ ବୋଲି କହୁଚନ୍ତି ନା ମୁଁ କ'ଣ ଏକା ?"

"ତୋ' ମୁହଁରେ ନିଆଁ ! ତୋ'ମୁହଁକୁ ଯେତେବେଳେ ଛଉ କରଦେବି, ସେତେବେଳେ ତୁ ଜାଣିବୁ !"— ସେ ହାଙ୍କାକୁ ଧରି ଜୋର କରି ଦୋହଲାଇ ଦେବାକୁ ଲାଗିଲା । କିନ୍ତୁ ତାକୁ ରକ୍ଷା କରିବାପାଇଁ ଆନ୍ତ୍ରେକ୍ ଫକ୍‌କରି ତେଲି ଆଗକୁ ବାହାରିଆସିଲି ଓ ପାଟିକରି କହିବାକୁ ଲାଗିଲା :

"ମୁଁ ବି ଠିକ୍ ସେଇଆ କହୁଚି ! ସେ ହେଉଚି ବେଧେଇ, ଛୁଣ୍ଡାଳୀ । ଯେ ତାକୁ ଚହ୍ନିଥିବ, ସେ ଅବଶ୍ୟ ଜାଣିଥିବ ।"— ହଠାତ୍ ସେ ଆଉ ଅଧିକ କିଛି କହିବାରୁ ଆପଣାକୁ ନିବୃତ୍ତ କରି ରଖିଲା । ବୁଢ଼ା ବୋଉଳା ରାଗରେ ଅନ୍ଧପରି ହୋଇ ତା' ମୁହଁରେ ଏପରି ଗୋଟିଏ ମୁଥ ବସାଇ-ଦେଲା ଯେ ଆନ୍ତ୍ରେକ୍ ଢୁଲ୍‌କରି ଯାଇ ଝରକା ଉପରେ ପଡ଼ିଲା । ତା'ର ମୁଣ୍ଡ ଯାଇ ଝରକାର କାଚ ଉପରେ ବାଡେଇ ହୋଇଗଲା । ତା' ମୁହଁରୁ ଧାରଧାର ଲହୁ ବୋହିଯାଉଥାଏ । ସେ ପାଗଳଙ୍କ ପରି ହୋଇ ବାପାକୁ ଆକ୍ରମଣ କରିବାକୁ ଚମକି ଆସିଲା ।

ଦୁଇଟା ପାଗଳା କୁକୁରଙ୍କ ପରି ବାପପୁଅ ଘରଭିତରେ ପରାପରି ଲଗାଇଲେ । ଇଏ କେତେବେଳେ ତାକୁ ଖଣ୍ଡେଦୂର ଠେଲି ନେଇଯାଉ-ଥାଏ ତ ପୁଣି କେତେବେଳେ ସିଏ ଏହାକୁ ବହେ ଠେଲି ନେଇଆସୁଥାଏ ।

ଏମିତ ବଚ୍ଛଣାଉପରୁ ବାକ୍ସ ଉପରକୁ ଓ ବାକ୍ସ ଉପରୁ କାନ୍ଥଉପରକୁ ଠେଲପେଲ ଲଗାଉ ଲଗାଉ ହଠାତ୍ ଦୁହିଁଙ୍କର ମୁଣ୍ଡ ଆସି ପରସ୍ପର ସହିତ ଜୋ'ରରେ ବାଡ଼େଇ ହୋଇଗଲା । ସମସ୍ତେ ଭୟରେ ଚତ୍କାର କରି ଉଠିଲେ, ସ୍ତ୍ରୀଲୋକମାନେ ଦୁହିଁଙ୍କୁ ଛଡ଼ାଇଦେବାକୁ ଚେଷ୍ଟା କଲେ, କିନ୍ତୁ ସେତେବେଳକୁ ଦୁହେଁ ଆସି ଘରକୋଠାରେ ଗଡ଼ାଗଡ଼ି ହେଲେଣି । ଇଏ ତା' ଉପରେ ଚଢ଼ି ବସୁଚ ତ ପୁଣି ପରମୁହୂର୍ତ୍ତରେ ସିଏ ସ୍ତା' ଉପରେ ଚଢ଼ିବସୁଚ, ପରସ୍ପରକୁ କାବୁ ଭିତରକୁ ଆଣି ତଣ୍ଟି ପାଖରୁ ଚପିଦେବାକୁ ଦୁହେଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଚନ୍ତି ।

ଭାଗ୍ୟବଶତଃ ଏହି ସମୟରେ ପଡ଼ଶାଘରୁ ଲୋକମାନେ ଦଉଡ଼ିଆସିଲେ ଓ ଅଧିକ କିଛି ଘଟିବା ଆଗରୁ ସେମାନଙ୍କୁ ଅଲଗା କରିଦେଲେ ।

ସେମାନେ ଆନ୍ତୋନ୍‌କୁ ଧରି ଆଉଜଣକ ଘରକୁ ନେଇଗଲେ ଓ ତା'ଉପରେ ପାଣି ଢାଳିଦେଲେ । ମୁଣ୍ଡରୁ ଏତେଗୁଡ଼ାଏ ରକ୍ତ ବୋହିଯିବା ହେତୁ ସେ ପ୍ରାୟ ଅଚେତନ ହୋଇ ପଡ଼ିଥାଏ । ଝରକାର କାଚ ତା'ର ମୁହଁରେ ଅନେକ ଭିତରକୁ ପଶିଯାଇଥିଲା ।

ବୁଢ଼ାର କୌଣସି ଜାଗାରେ କୌଣସି ଆଘାତ ଲାଗିନଥିଲା । ଖାଲି ପିନ୍ଧିଥିବା ଜାମାଟା ଯାହା ଟିକିଏ ଚିରିଯାଇଥାଏ, ସେତିକି । ମୁହଁ ଉପରେ କେତେଟା ଥାନରେ ଟିକିଏ ଟିକିଏ ଆଞ୍ଚୁଡ଼ି ହୋଇଯାଇଥାଏ ଓ ଲାଲ ଦେଖାଯାଉଥାଏ । ବାହାରୁ ଆସିଥିବା ଲୋକମାନଙ୍କୁ ଗାଳି ଦେଇ ସେ ସେମାନଙ୍କୁ ଘରୁ ବାହାର କରିଦେଲା ଓ ତା'ପରେ ନିଆଁ ପାଖରେ ଯାଇ ବସିଲା ।

କିନ୍ତୁ ତା'ର ମନଭିତରଟା ଏପର୍ଯ୍ୟନ୍ତ ବଡ଼ ଉତ୍ତ୍ୟକ୍ତ ହୋଇ ରହିଥାଏ ।

ସୁଜନା ସମ୍ବନ୍ଧରେ ସେ ଯେଉଁସବୁ ଶବ୍ଦ ଶୁଣିବାକୁ ପାଇଥିଲା, ସେହିଗୁଡ଼ାକ ତା'ର ମୁଣ୍ଡଭିତରେ ପଶି ତାକୁ ଉଖାରିବାକୁ ଲାଗିଲା, ଛୁଞ୍ଚି ପରି ତାକୁ ଭୁଷି ଦେବା ପରି ମନେହେଲା ।

"ସେ କହିଥିବା କଥାକୁ ମୁଁ କେବେହେଲେ ଭୁଲିବନାହିଁ !

ମୋ' ସୁଗନା ନାଆଁରେ ପୁଣି ଅପବାଦ ଦେବାକୁ ସାହସ ?''— କିନ୍ତୁ ଆଗରୁ ମଧ୍ୟ ସେ ଏହି କଥା ଆଉ କେତେଜଣଙ୍କ ମୁହଁରୁ ଶୁଣିଥିଲା, ମାତ୍ର ସେଥିପ୍ରତି କୌଣସି କାନ ଦେଇନଥିଲା । ବର୍ତ୍ତମାନ ପୁଣି ସେହିସବୁ ବିଷୟ ମନେପଡ଼ି ତାକୁ ଅଧିକ ଉତ୍ତ୍ୟକ୍ତ କରିଦେବାକୁ ଲାଗିଲା । ସତେ ଅବା ତା'ର ନିଃଶ୍ୱାସ ବନ୍ଦ ହୋଇ ଆସୁଥିବା ପରି ବୋଧ ହେଲା । ହଠାତ୍ ଏକ ଶୋଚନୀୟ ମର୍ମବେଦନା ଆସି ବାକ୍ ଅବରୋଧ୍ୟ କରିଦେଲା । ତା'ର ଆପଣା ପୁଅ ଯେତେବେଳେ ଏପରି ଅପବାଦ ଦେବାକୁ ସାହସ କରୁଚି, ତେବେ ସେ ସାଇ-ପଡ଼ିଶାଙ୍କର ମୁହଁ ବନ୍ଦ କରିବ କିପରି ? ପୁଅ ନୁହେଁ ଯେ ଶଇତାନ ! ସେହି ଶବ୍ଦଗୁଡ଼ାକ ପୁଣି ମନେ ପଡ଼ିଯିବା ମାତ୍ରକେ ତା'ର ହାଡ଼ର ନିଆଁ ଲାଗିଯିବାପରି ମନେହେଲା ।

ପୁଣି ଘରଟିକୁ ସଜାଡ଼ି ଦେଇ ସୁଜ୍‌କା ବାପପାଇଁ ଖାଇବାକୁ ଆଣିଲା । ସେତେବେଳକୁ ବେଳ ଅନେକ ହୋଇଗଲାଣି । ବୋଉନା ଖାଇବବୋଲି ଅନେକ ଚେଷ୍ଟା କଲା, ତଥାପି ପାରିଲାନାହିଁ ଏବଂ ହାତର ଗ୍ରାସଟାକୁ ଥାଳି ଉପରେ ନେଇ ରଖିଦେଲା । "ଘୋଡ଼ାମାନଙ୍କୁ ଖାଇବାକୁ ଦେଇସାରିଲୁଣି ?''
— ସେ କୁବାକୁ ପଚାରିଲା ।

"ହଁ ।''

"ଭଡେକ୍ ଗଲା କୁଆଡ଼େ ?''

"ଆନ୍ତୋନକୁ ଡାକିଆଣିବାକୁ ଯାଇଚି । ସେ ଆସିଲେ ଆନ୍ତେକ୍‌ର ମୁଣ୍ଡ ଦେଖିଯିବ । ତା'ର ମୁହଁଟା ଗୋଟାଏ ହାଣ୍ଡିପରି ଫୁଲିକରି ରହିଚି ।''
—କହି ସେ ବାହାରକୁ ଚାଲିଗଲା । ଆଜି ଖରା ତୋରାହୋଇ ଜଳୁ ପଡ଼ୁଚି । କୁବା ଶିକାର୍ କରି ଯିବବୋଲି ସ୍ଥିର କରି ରଖିଥିଲା ।

"ଖାଇବା ବେଶୀ ହେଲେ କୁକୁରମାନେ ଠିକ୍ ଏହିପରି ହୁଅନ୍ତି !''
— ଗଲାବେଳେ ସେ କହି କହି ଗଲା ।

ବୁଢ଼ା ଘରୁ ବାହାରି ଗାଆଁ ଆଡ଼କୁ ଗଲା । କିନ୍ତୁ ସୁଗନଙ୍କ ଘରକୁ ଯିବାରୁ ଆପଣାକୁ ନିବୃତ୍ତ କରି ରଖିଲା । ସୁଗନା ଘର ଝରକା ଭିତରୁ ପଦାକୁ ଆଲୁଅ ବିଛୁରିହୋଇ ପଡ଼ୁଥାଏ । ହେମାଲି ରାତିର ମେଘମୁକ୍ତ

ଆକାଶରେ ତାରାମାନେ ଫୁଟି ଉଠିଥାନ୍ତି, ରାସ୍ତା କଡ଼ର ପୋଖରୀଟି ଖଣ୍ଡେ କଂସାଫାଳ ପରି ଚକଚକ ହୋଇ ଉଠୁଥାଏ । ଜନଶୂନ୍ୟ ଦାଣ୍ଡରେ ଗଛ-ମାନଙ୍କର ଲମ୍ବାଲମ୍ବା ଛାଇ ପଡ଼ୁଥାଏ । ରାତ ଅନେକ ହୋଇଗଲାଣି, କାହା କାହା ଘରେ ଲୋକମାନେ ଆଲୁଅ ଲିଭାଇ ଦେବାକୁ ଯାଉଚନ୍ତି । ସେହିସବୁ ଘରର ଝରକାଗୁଡ଼ିକ ଫଳବଗିଚାର କଙ୍କାଳପରି ପଛକୁ ଧୋବ ଫରଫର ହୋଇ ଦିଶିଯାଉଥାଏ । ଆଜି ଏହି ଅନ୍ଧକାର ଓ ଏହି ନୀରବତା ଯେପରି ଗାଆଁଟାକୁ ଗ୍ରାସକରି ରହିଚି । କେବଳ ପାଣିର କହିଯିବା ଓ ପେଖାକଲର ଘୁରିବା ଶବ୍ଦ କାନଭିତରେ ସେହି ନୀରସ ଅତଡ଼ା ପକାଇବାରେ ଲାଗିଚି । ପୋଲ ପାରହୋଇ ମାଥିଆସ୍ ଆହୁରି ଆଗକୁ ଯିବାକୁ ଲାଗିଲା । ଅଗ୍ରସର ହେବା ସଙ୍ଗେ ତାର କ୍ରୋଧ ଓ ଘୃଣା ମଧ୍ୟ ପ୍ରବଳତର ହେବାକୁ ଲାଗିଲା । ମଦଦୋକାନରେ ପହଞ୍ଚି ସେ ପଧାନଙ୍କୁ ଖବରଦେଇ ଡକାଇ ଆଣିଲା ଓ ଦୁହେଁ ଅଧରାତଯାଏ ସେଠାରେ ବସି ମଦ ପିଇବାରେ ଲାଗିଲେ । ତଥାପି ତା'ର ହୃଦୟକୁ ବିଦାରି ଦେଉଥିବା ଯନ୍ତ୍ରଣାର ଉପଶମ ହେଲାନାହିଁ । ଠିକ୍ ସେତିକବେଳେ ସେ ମନେମନେ ଗୋଟାଏ ସଂକଳ୍ପ କରି ବସିଲା ।

ତହିଁଆରଦିନ ବଡ଼ସକାଳୁ ବିଛଣାରୁ ଉଠି ସେ ଖବର ଅନ୍ୟ ଧାଉଡ଼ିଅଡ଼େ ଚାଲିଗଲା । ଆନ୍ନେକ୍ ସେତେବେଳକୁ ବିଛଣାରେ ଥାଏ, ତା'ର ମୁହଁଉପରେ ବନ୍ଧାହୋଇଥିବା ପଟିଟାରେ ରକ୍ତ ଭେଦ ବାହାରକୁ ଦେଖାଯାଉଥାଏ ।

ସେ ପଚିକରି କହିବାକୁ ଲାଗିଲା : "ବାହାର ମୋ' ଘରୁ, ଏହି ମୁହୂର୍ତ୍ତିରେ ବାହାରିଯାଅ । ମୁଁ ତୁମମାନଙ୍କର ମୁହଁ ସୁଦ୍ଧା ଦେଖିବାକୁ ଚାହେଁନାହିଁ । ଯଦି ମୋ'ସହିତ ଲଢ଼ିବାକୁ ଇଚ୍ଛା କରୁଚ, ଯଦି କଚେରୀକୁ ଯିବାକୁ ମନ ହେଉଚି, ତେବେ ଯାଅ, ସେଇଆ କରିବ । ଏବର୍ଷ ଜମିରେ ନିଜ ତରଫରୁ ଯେଉଁ ମଞ୍ଜି ବୁଣିଚ, ଖରାଦିନ ଆସିଲେ ସେହି ଫସଲ ଆସି କାଟି ନେଇଯିବ । କିନ୍ତୁ ବର୍ତ୍ତମାନ ମୋ'ଘରୁ ବାହାରି ଚାଲିଯାଅ, ମୁଁ ଆଉ କାହାରି ମୁହଁ ଦେଖିବାକୁ ଚାହେଁନାହିଁ ! ଆରେ, ତୁମକୁ ସବୁ ଶୁଭିଲା ନା

ନାହିଁ ?"— ସେ ଗର୍ଜନ କରି କହିଲା । ଆନ୍ତ୍ରେକ୍ ଧୀରେ ଧୀରେ ଉଠି ଲୁଗାପଟା ପିନ୍ଧୁଥାଏ ।

"ଖରାବେଳ ଆଗରୁ ଏହି ଘରଗୁଡ଼ା ଛାଡ଼ିଦିବା ଗୃହ" — ବୋଉନା ପିଣ୍ଡାଉପରେ ଥାଇ କହିଲା । ଶୁଣି ମଧ୍ୟ ଆନ୍ତ୍ରେକ୍ ତଥାପି ନଶୁଣିଲା ପରି ଧାଲେଇ ରହିଗଲା ।

"ସ୍ଲୁଜ୍କା, ତୁ ଯାଆ କୁବାକୁ ଡାକଦେ । ସେ ଗାଡ଼ୀ ସଜାଡ଼ି କରୁ । ଏମାନେ ଯୋଉଠିକି ଯିବେବୋଲି କହିବେ, ସେଠାରେ ନେଇ ଛାଡ଼ିଦେଇ ଆସୁ !"

"କିନ୍ତୁ କୁବାର ଦେହ କ'ଣ ହେଉଛି । ସେ ବିଛଣାରେ ପଡ଼ି ଗଇଁ-ଗଇଁ ହେଉଛି । ଉଠି ପାରିବନାହିଁ ବୋଲି କହୁଛି । ତା'ର ଗ୍ରେଟା ଗୋଡ଼ଟା ଆଜି ଭାରି ବିନ୍ଧୁଛି ।"

"ଶଳା ଅଳସୁଆ, ଶୋଇ ରହିବାକୁ ପେଖନା କାଢ଼ୁଛି !"— କହି ବୋଉନା ଘୁଡ଼ିଆଳଆଡ଼କୁ ବାହାରିଗଲା ।

କୁବାର ଦେହ ପ୍ରକୃତରେ ଆଜି ଭାରି ଖରାପ । କିନ୍ତୁ ସାଆନ୍ତ ଯେତେ ପଚାରିଲେ ମଧ୍ୟ ତା'ର କୋଉଠି କ'ଣ ହେଲା ବୋଲି କହିବାକୁ ସେ କୌଣସିମତେ ରାଜି ହେଲାନାହିଁ । ସେ ବିଛଣାରେ ପଡ଼ିପଡ଼ି ଏପରି ବିକଳ ଭାବରେ ଚିତ୍କାର କରୁଥାଏ ଯେ ଘୋଡ଼ାମାନେ ଆସି ତା'ର ମୁହଁ ଉପରେ ନାକ ଲଗାଇ ଶୁଂଘି ଯାଉଥାନ୍ତି ଓ ତା'ର ଦେହକୁ ଚାଟିଦେଉଥାନ୍ତି । ଗୋଟାଏ ପଲମରେ ପାଣି ଆଣି ଭିତେକ୍ ତାକୁ ଦେଲା ଓ ନଈକୁ ଯାଇ ଅତି ଗୁପ୍ତଭାବରେ ରକ୍ତ ଲାଗିଥିବା କେତେକ ଲୁଗାପଟାକୁ ଧୋଇ ନେଇ ଆସିଲା ।

ଆନ୍ତ୍ରେକ୍ ଆଉ ତା'ର ପରିବାରକୁ ଆଜି ଘରୁ ନିକାଲିବାରେ ବୋଉନା ଏତେଦୂର ବ୍ୟସ୍ତ ରହିଥିଲା ଯେ, ଏସବୁ କଥା ଉପରେ ଆଉ ତା'ର ଆଖି ପଡ଼ି ପାରିଲାନାହିଁ ।

ସେମାନେ ଘରଗୁଡ଼ା ବାହାରିଲେ ।

କୌଣସି ପ୍ରତିବାଦ ନାହିଁ କି କୋଳାହଳ ନାହିଁ । ସେମାନେ ଆପଣାର ଯାବତୀୟ ସାମଗ୍ରୀ ଏକାଠି ବାନ୍ଧି ବୁନ୍ଦୁଲାଟିଏମାନ ଧରି ବାଣ୍ଡରେ ନେଇ ରଖିଲେ । ଦୁଃଖରେ ତାଙ୍କର ମର୍ମଭିତର ଦହିହୋଇ ଯାଉଥାଏ । ଆନ୍ନେକ୍‌ ତାକୁ ବାରବାର ପାଣି ନେଇ ପିଇବାକୁ ଦେଉଥାଏ ଓ ଧଅପି ବାହାରିଯିବାକୁ କହୁଥାଏ । ଯେତେଶୀଘ୍ର ସମ୍ଭବ ବାପର ଘରୁ ବାହାରି-ଗଲେ ହେଲା !

ବାପଠାରୁ ଘୋଡ଼ା ମାଗିବାକୁ ତା'ର ମନ ହେଲାନାହିଁ । ତାଙ୍କର ବାପଘର ହେଉଚି ଗାଆଁ ମୁଣ୍ଡକୁ, ମଦଦୋକାନ ପାରିହୋଇ ଆଉଟିକିଏ ଆଗକୁ । ସାଇପଡ଼ୁଶାରୁ ଗୋଟାଏ ଘୋଡ଼ା ମାଗିଆଣି ସେ ତାହାର ଉପରେ ସବୁ ଜିନିଷ ଲଦି ସେଇଠାକୁ ବାହାରିଗଲା ।

ଗାଆଁ ର ଆଉ କେତେଗୁଡ଼ାଏ ବାପପୁଅଙ୍କ ଭିତରେ ଗୋଟାଏ ମିଳା-ମିଶା କରିଦେବେ ବୋଲି ଆସିଥିଲେ । ସେକ୍‌ ସେମାନଙ୍କର ନେତା ହୋଇ ଆସିଥିଲା । କିନ୍ତୁ ବାପ୍‌ କି ପୁଅ କେହିହେଲେ ଏଥିପାଇଁ ରାଜି ହେଲେନାହିଁ ।

ବାପା ଆଉ ସେକ୍‌ ପାଇଁ ଖାଇବା ବାଢ଼ି ଦେଉ ଦେଉ ମୁଜ୍‌କାର ଦୁଇ ଆଖିରୁ ଲୁହଧାର ବୋହିଯାଉଥାଏ । ସେତେବେଳକୁ ତା'ର ଭାଇ ଆପଣା ପରିବାର ସହିତ ସବୁ ଜିନିଷପତ୍ର ନେଇ ଘରୁ ବାହାରିଯାଇ ସାରିଲାଣି । ଗଲାବେଳେ ଆନ୍ନେକ୍‌ ମୁହଁ ବୁଲାଇ ଥରେ ଘର ଆଡ଼କୁ ଅନାଇଲା ମଧ୍ୟ ନାହିଁ, କେବଳ ଗୋଟାଏ ଦୀର୍ଘଶ୍ୱାସ ପକାଇ ଶୂନ୍ୟରେ କ୍ରସଚିହ୍ନ ଆଙ୍କି ସେ ଘୋଡ଼ାର ପିଠି ଉପରେ ପାହାରେ ପିଟିଲା ଓ ଗାଡ଼ିରେ ନେଇ ଆପଣାର କାନ୍ଧକୁ ଲଗାଇ ଦେଲା । ଗାଡ଼ି ଭରି ଜୋଟାଇ ହୋଇଥାଏ । ମନଟାକୁ ଏକାବେଳେକେ ମାରିଦେଇ ତାଙ୍କ ଗାଡ଼ି କଡ଼େ କଡ଼େ ଯାଉଥାଏ, ତା'ର ବଡ଼ ପୁଅ ତା'ର କାନ ଧରି ଢକା ପାରିବାରେ ଲାଗିଥାଏ, ସାନଟି କାଖରେ ଥାଏ । ଆଗରେ ଗୋଟିଏ ଗାଈ, ପଛେ ହଂସ ଆଉ ଦୁଇଟା ଘୁଷୁରି । ତା'ର ବଳକା କନ୍ଦନ ଶବ୍ଦ ଶୁଣି ଗାଆଁ ଲୋକ ଘର ଭିତରୁ ବାହାରି ଦାଣ୍ଡକୁ ଆସୁଥାନ୍ତି । ଶୋଭାଯାତ୍ରାରେ ଗଲାପରି ତା' ପଛେ ପଛେ ଯାଉଥାନ୍ତି ।

ଏଣେ ବୋଉଜନା ଘରେ ସମସ୍ତେ ପୂର୍ଣ୍ଣ ସନ୍ତର୍ପଣରେ ନୀରବରେ ଖାଇବାରେ ଲାଗିଥାନ୍ତି ।

ଘରର ପୁରୁଣା କୁକୁର ଲପା ଆଗ ଦୁଆର ମଝିରେ ଠିଆହୋଇ କିଛି ସମସ୍ତ ଭୋ' ଭୋ' ହୋଇ ଭୁକିଲା, ତା'ପରେ ଗାଡ଼ି ପଛରେ ଖଣ୍ଡେ ଦୂର ଯାଇ ପୁଣି ଫେରି ଆସିଲା ଓ ଭୁକିବାକୁ ଲାଗିଲା । ଭଡେକ୍ ତାକୁ ତୁ' ତୁ' ବୋଲି ଡାକୁଥାଏ, କିନ୍ତୁ ସେ ଶୁଣୁ ନ ଥାଏ । ତା'ପରେ ସେ ଦୁଆରଯାକ ଏପାଖସେପାଖ ବୁଲି କ'ଣ ସବୁ ଶୁଂଘିବାରେ ଲାଗିଲା, ଆନ୍ଦ୍ରେଇର ଖାଲି ପଡ଼ିଥିବା ଘର ଭିତରେ ଯେଉଁଏ ବୁଲି ଆସିଲା, ତା'ପରେ ପିଣ୍ଡାରେ ଆସି ସ୍ଯୁଜ୍‍କା ଆଡ଼କୁ ଅନାଇ ଭୁକିବାକୁ ଲାଗିଲା । ତା'ପରେ ଅନନ୍ୟୋପାୟ ହେଲାପରି ଲାଙ୍ଗୁଡ଼ ମାରି ପଡ଼ିଏ ବସି ରହିଲା ଓ ତା'ପରେ ପୁଣି ପଛ ଦୁଇଗୋଡ଼ ଭିତରେ ଲାଙ୍ଗୁଡ଼ଟାକୁ ପୂରାଇ ଦେଇ ଅନ୍ଦ୍ରେଇ ଯାଇଥିବା ବାଟରେ ଦଉଡ଼ି ପଳାଇଲା ।

"ଶେଷକୁ ଲପା ମଧ୍ୟ ସେଇମାନଙ୍କୁ ଖୋଜି ଖୋଜି ଚାଲିଗଲା ।"

"ତୁ କିଛି ଭୟ କରନା, ସ୍ଯୁଜ୍‍କା !"—ଥରି କଣ୍ଠରେ ବାପ ତାକୁ ବୁଝାଇ କହିବାକୁ ଲାଗିଲା । "ଲପା ଆଉ କିଛିଏ ଗଲେ ବଳେ ଲେଉଟି ଆସିବ । ସେମାନଙ୍କ ପାଖରେ କ'ଣ ଅଛି ଯେ ସେମାନେ କୁକୁରକୁ ଖାଇବାକୁ ଦେବେ ? ଆ, ସେ ସବୁ ବିଷୟରେ ବୃଥା ଚିନ୍ତା କରି କିଛି ଫଳ ନାହିଁ । ସେପାଖ ଘରଗୁଡ଼ାକୁ ସଜାଡ଼ି ରଖିବାକୁ ହେବ । ଏଣିକି ଭେକ୍ ସେ ଘରେ ରହିବ । ତୋତେ ସାହାଯ୍ୟ କରିବାକୁ ଯାଆ ସ୍ତ୍ରୁଷ୍ଟିଙ୍କାକୁ ଡାକି ଆଣ । ଏଣିକି ତୁ ଘରର ସବୁ ଖବର ବୁଝିବୁ । ତୋ'ର ମୁଣ୍ଡ ଉପରେ ସବୁ ଦାୟିତ୍ୱ ରହିଲା । ନାଇଁମ, ମୋ' ଝିଅ, ତୁ ସେମିତି ଅଧୀର ହେଲେ ଚଳିବ ନାହିଁ !"—ଆପଣାର ଦୁଇ ହାତରେ ତା'ର ମୁଣ୍ଡଟିକୁ ଧରି ବୋଉଜନା ସ୍ଯୁଜ୍‍କାକୁ ଧୀରେ ଧୀରେ ଆପଡ଼େଇ ଦେବାକୁ ଲାଗିଲା ଓ ଆଲିଙ୍ଗନ କଲାପରି ତାକୁ ଆପଣାର ଛାତି ପାଖକୁ ଟାଣିନେଲା ।

"ଏଥର ସହରକୁ ଗଲେ ମୁଁ ତୋ'ପାଇଁ ହଳେ ଜୋତା କିଣି ନେଇଆସିବି ।"

"ସତ କହୁଚ, ବାପା, ସତ କହୁଚ ?"

"ହଁ, ସତ କହୁଚ । ଆହୁରି ଅନେକ ଚିଜ ଆଣିବି । ତୁ ଖାଲି ଭଲ ପିଲା ହୋଇ ଘରର ସବୁ କଥା ବୁଝିଲେ ହେଲା !"

"ଆଉ ମୋ' ପାଇଁ ଗୋଟାଏ ସେମିଜ କିଣି ଦେବ ନାହିଁ ? ନାଷ୍ଟି ପିଆର ଯେମିତି ଅଛି, ଠିକ୍ ସେମିତି ଗୋଟାଏ ?"

"ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ କିଣିଦେବି ।"

"ଆଉ ମୁଣ୍ଡ ଫିତା ? କିନ୍ତୁ ଭଲ ଫିତା କିଣିଦେବ ବାପା, ଠିକ୍ ତୁମ ବାହାଘରଦିନ ଯେପରି ମୁଁ ତାକୁ ମୁଣ୍ଡରେ ବାନ୍ଧି ପାରିବି !"

"ତୋ'ର ଯାହା ଦରକାର, ମୁଁ ତୋତେ ସବୁ ଆଣିଦେବି, ଝିଅ ! ଯାହା ଦରକାର, ସବୁ !"

## ଏଗାର

"ତୁ କ'ଣ ଶୋଇଚୁ କି ମୃଗନା ?"

"ନାଇଁମ ? ଶୋଇବି କିପରି ? ଆଜି ପରା ମୋ'ର ବାହାଘର ? ସେଇଥିପାଇଁ ଆଜି ବଡ଼ିସକାଳୁ ନିଦ ଭାଙ୍ଗିଯାଇଚି !"

"ତୋ'ର ମନ ଭଲନାହିଁ, ନୁହେଁ ଲୋ ଝିଅ ?"— ଅଧା ଆଶା ଓ ଅଧା ଭୟମିଶ୍ରିତ ହୃଦୟରେ ସେ ପଚାରିଲା ।

"ଭଲ କାହିଁକି ନ ହେବ ମ ? ତୋ'ଘର ଛାଡ଼ି ମୋ'ର ଆପଣାର ଘର କରିବାକୁ ଯାଉଚି ବୋଲି କ'ଣ ମୁଁ ମନରେ ଦୁଃଖ କରିବି ?"

ଏହିକଥା ଶୁଣି ଡୋମିନିକଭର ହୃଦୟରେ କଣ୍ଟା ବିନ୍ଧି ହୋଇଗଲା । କିନ୍ତୁ ଆପଣାର ଯନ୍ତ୍ରଣାକୁ ଆପଣା ଭିତରେ ଚାପିରଖି ଡୋମିନିକଭୀ ଏହି କଥାର କୌଣସି ଜବାବ ଦେଲାନାହିଁ । ବିଛଣାରୁ ଉଠି ସେ ଲୁଗାପଟା ପିନ୍ଧିଲା, ତା'ପରେ ପୁଅ ବୁଢ୍ଦୀଙ୍କୁ ଡାକିଦେବାକୁ ରୁହାଳ ଘରକୁ ଗଲା ।

କାଲି ରାତରେ ଘର ଭିତରେ ବେଣୀଫିଟା * ହୋଇଥିଲା, ସେଥିଲାଗି ପୁଅ ଦୁହେଁ ଆଜ ଏତେବେଲଯାଏ ଶୋଇଚନ୍ତି । ଦୁଆରେ ଫରଚ୍ଚ ହୋଇଗଲଣି, ହିମ ବୃଷ୍ଟିର ଉତ୍ତରୀ ପକାଇ ଆଜର ସକାଳଟି ରଜତ ମହିମାରେ ସାରା ସଂସାରକୁ ମଣ୍ଡି ଦେବାକୁ ଆସିଚ ।

ପଣ୍ଡାକୁ ଯାଇ ଡୋମିନିକଖି ଆପଣାର ମୁହଁ ଧୋଇଆସିଲା । ଗଲାବେଳେ ସେ ଅତି ଧୀର ଭାବରେ ବାରବାର ସ୍ବଗ୍ନା ଆଡ଼କୁ ଅନାଉଥାଏ ! ଶୋଇବା-ଘରଟା ଏପର୍ଯ୍ୟନ୍ତ ଅନ୍ଧାର ଥିବାରୁ ସ୍ବଗ୍ନାର ମୁହଁ ବାହାରକୁ ଭଲକରି ଦେଖାଯାଉ ନଥାଏ ।

"ଆଉଟିକିଏ ଶୋଇଥା, ଝିଅ, ଆଉଟିକିଏ ଶୋଇଥା । ମାଆଘରେ ଆଜି ଶେଷଥରପାଇଁ ଆଉଟିକିଏ ଶୋଇଥା !"— ଡୋମିନିକଖି ବଡ଼ ଆବେଗପୂର୍ଣ୍ଣ ଭାବରେ କହିଲା । ତାହାର ହୃଦୟଭିତରେ ସ୍ନେହ ଆଉ ବେଦନାର ତୀବ୍ର ପ୍ରତଦ୍ୱନ୍ଦ୍ୱିତା ଚାଲିଥାଏ । ତା'ମନରେ ଯେଉଁ ଅଭିଳାଷ ରହିଥିଲା, ଆଜି ସେହି ଅଭିଳାଷ ପୂର୍ଣ୍ଣ ହେବାକୁ ଯାଉଚି । କିନ୍ତୁ ସେକଥା ଭାବିଲାବେଳକୁ ମଧ୍ୟ ତା'ର ହୃଦୟ ଦୁଃଖରେ ବିଦୀର୍ଣ୍ଣହୋଇ ଯାଉଚି । ବଡ଼ ଉଦାସ ଭାବରେ ସେ ଯାଇ ପୁଣି ଖଟ ଉପରେ ବସିପଡ଼ିଲା । ବୋରନାର ହୃଦୟଟା ଆଦୌ ନିର୍ଦ୍ଦୟ ନୁହେଁ, ସେ ତା'ର ଝିଅକୁ ନିଶ୍ଚୟ ଭଲରେ ରଖିବ······ସ୍ବଗ୍ନା ଯେପରି ଇଚ୍ଛା କରିବ, ବୁଢ଼ାକୁ ଠିକ୍ ସେହିପରି ଚଳାଇବ । ବୁଢ଼ାକୁତ ବର୍ତ୍ତମାନ ଖାଲି ତାହାର ଛଡ଼ା ସଂସାରରେ ଆଉ କିଛି ଦେଖାଯାଉନାହିଁ !

ନାଇଁ—ବୁଢ଼ାପାଇଁ ତା'ର କୌଣସି ଚିନ୍ତା ନାହିଁ,— ତାର ଭୟ ତା'ର ପିଲାମାନଙ୍କ । ଆହା, କାହିଁକି ଜ ସେ ଅନ୍ତେକ୍ ଆଉ ତା'ର ପିଲା-ପିଲାଙ୍କୁ ଘରୁ ବାହାର କରିଦେଲାଟି ! ବର୍ତ୍ତମାନ ସେମାନେ ଅଧିକ ଅନିଷ୍ଟ

---

* ବାହାଘର ପରେ ପୋଲଣ୍ଡର ଗୃଷୀଝିଅର ବାଳକୁ କାଟିଦିଆଯାଏ । ସେଥିପାଇଁ ବାହାଘର ପୂର୍ବଦିନ ଘରେ ଗୋଟିଏ ଗ୍ରେଟିଆ ଉତ୍ସବ ଅନୁଷ୍ଠିତ ହୁଏ । ସେଥିକୁ କେବଳ ବାଡ଼ୁଅ ଝିଅମାନେ ନିମନ୍ତ୍ରିତ ହୋଇ ଆସନ୍ତି । ସେହି ଉତ୍ସବରେ ଝିଅର ବେଣୀକୁ ଫିଟାଇ ଦିଆଯାଏ ।

କରିବାକୁ ଆସିବେ ଓ ପ୍ରତିଶୋଧ ନେବାକୁ ବସିବେ । କିନ୍ତୁ ଯଦି ସେ ସେମାନଙ୍କୁ ଘରୁ ବାହାର କରିଦେଇ ନଥାନ୍ତା ?... ତେବେ ସ୍ୱଗ୍‌ନାର ଗୋଡ଼େଗୋଡ଼େ ଆନ୍ଥେନ୍ ରହିଥାନ୍ତା ! ଭଗବାନଙ୍କ ବିରୁଦ୍ଧରେ ହୁଏତ କେତେକେତେ ବଡ଼ ଅନ୍ୟାୟର ହୋଇଥାନ୍ତା ! ନାଇଁ – ଯାହା ହୋଇଚି ସବୁଠାରୁ ଭଲ ହୋଇଚି । ବାହାଘର ବିଷୟରେ ଗୀର୍ଜାରେ ଘୋଷଣା କରି ଦିଆଯାଇଚି, ଘୁଷୁରି ମରିସରିଲାଣି, ନିର୍ବନ୍ଧ ପକ୍‌କା ହୋଇସାରିଲାଣି । ନା–ନା– ଯାହା ଭଗବାନଙ୍କର ବିଧି ଥିଲା, ତାହାହିଁ ଘଟିଲା । ଏଥିରେ ଆଉ ମଣିଷର ହାତ କ'ଣ ଅଛି ? ସେ ବଞ୍ଚିଥିବାଯାଏ ତା' ଝିଅପ୍ରତି କୌଣସି ଅନ୍ୟାୟ ହେବାକୁ ସେ କଦାପି ସହ୍ୟକରି ପାରିବନାହିଁ । ମନେମନେ ଏହି ଭଳି ସ୍ଥିର କରି ସେ ଅଳସୁଆ ପୁଅଦୁଇଟାକୁ ଆକଟିଦେବାକୁ ଗଲା ।

ଫେରିଆସିବା ପରେ ସେ ଭାବିଲା, ଏଥର ଝିଅକୁ ମଧ୍ୟ ଡାକି ଉଠାଇଦେବା ଉଚିତ । କିନ୍ତୁ ସ୍ୱଗ୍‌ନାକୁ ପୁଣି ନିଦଲାଗି ଗଲାଣି ଓ ତା'ର ନିଘୋଡ଼ ନିଦର ନିଶ୍ଚିନ୍ତ ନିଃଶ୍ୱାସଗୁଡ଼ାକ ବେଶ୍ ପରିଷ୍କାର ଭାବରେ ଶୁଣାଯାଉଚି । ମାଆ ମନରେ ପୁଣି ନାନା ପ୍ରକାର ଦୁଶ୍ଚିନ୍ତା ଓ ଅନିଶ୍ଚୟତାର ଉଦୟ ହେବାକୁ ଲାଗିଲା, ଯେତେ ଯେପରି କେତେକେତେ ଛୋଟ କୁଆଁଡ଼ ଉଡ଼ିଆସି ଆପଣାର ତୀକ୍ଷ୍ଣ ଚଞ୍ଚୁରେ ତା'ର ହୃଦୟର ତନ୍ତୁଗୁଡ଼ାକୁ ଉଖାରି-ବାକୁ ଆରମ୍ଭ କଲେ । ଯେପରି କୌଣସି ଆସନ୍ନ ଅମଙ୍ଗଳର ଆଶଙ୍କାରେ ସେ ବଡ଼ ଶଙ୍କିତ ହୋଇ ଉଠିଲା । କିନ୍ତୁ ସେ ଅଧୀର ହୃଦୟରେ ଝରକା ପାଖରେ ଆଣ୍ଠୁମାଡ଼ି ବସିପଡ଼ିଲା ଏବଂ ଆପଣାର ଅଶ୍ରୁଛଳଛଳ ଲାଲଲାଲ ଆଖିରେ ନବୋଦିତ ପ୍ରଭାତ ଆଡ଼କୁ ଅନାଇ ଅନେକସମୟ ପର୍ଯ୍ୟନ୍ତ ପ୍ରାର୍ଥନା କରିବାକୁ ଲାଗିଲା । ଶେଷକୁ ପ୍ରାର୍ଥନାରୁ ଉଠିଲାବେଳକୁ ସେ ଆପଣାଭିତରେ ଅନେକ ଦମ୍ଭ ଅନୁଭବ କରିବାକୁ ଲାଗିଲା । ଏଥର ଯାହା ଆସୁ, ଯାହା ହେଉ ପଛକେ, ତା'ର ଆଉ କୌଣସି ଭୟନାହିଁ !

"ସ୍ୱଗ୍‌ନା, ମୋ'ମାଆ ! ଏଥର ନିଦ ଭାଙ୍ଗିପକା, ଉଠ, ବେଳ ଅନେକ ହୋଇଗଲାଣି ! ଇଭ୍ ରୋଷେଇ କରିବାଲାଗି ଏଇଲାଗେ ଆସି ପହଞ୍ଚିସିବ । ଆଜି ଆହୁରି କେତେ କାମ ବାକୀ ଅଛି ପରା !"

"ଆଜି ଭଲ ପାଗ କରିଚ ନା ?"— ବିଛଣା ଉପରୁ ମୁଣ୍ଡ ଟେକି ସ୍ୱର୍ଗ୍‌ନା ପଚାରିଲା ।

"ଭାରି ଭଲପାଗ କରିଚ । ଦଶଦଶ ଦ୍ରୁମ କୁହୁଡ଼ିରେ ଝଟକିଉଠୁଚି । ଆଉଟିକିଏ ଗଲେ ମାହାପୁରୁ ଉଠିଆସିବେ !"

ସ୍ୱର୍ଗ୍‌ନା ଉଠି ଲୁଗାପଟା ପିନ୍ଧିଲା । ତା'ପରେ ମାଆ କହିବାକୁ ଆରମ୍ଭ କଲା :

"ମୁଁ ତୋତେ ଆଗରୁ ଯାହା କହିଚି, ବର୍ତ୍ତମାନ ପୁଣି ସେହିକଥା କହିବାକୁ ଯାଉଚି । ବୋଉଜାର ହୃଦୟରେ ଭାରି ଦୟା, ଭାରି ଭଲ ମଣିଷ ସେ ! କିନ୍ତୁ ତୁ ହୁସିଆର ହୋଇ ଚଳିବୁ ଝିଅ ! ହଠାତ୍ କାହାରି ସହିତ ଚହ୍ଲା ହୋଇଗଲା ମାତ୍ରକେ ଗୁଡ଼ାଏ ଭାବ କରିବସିବୁ ନାହିଁ । ଯେପରି ଅପରଲୋକଙ୍କର ଆଉ ଜିଭ ନଡ଼ବଡ଼ କରି କିଛି କହିବାକୁ ନଥିବ । ମଣିଷଗୁଡ଼ାକ ତ କୁକୁରଠାରୁ ବଳନ୍ତି, କୋଉଠି ବାଗ ପାଇଲେ ଦାନ୍ତ ବସାଇଦେବାକୁ ଟାଙ୍କ ବସିଥାନ୍ତି । ମନେ ରହିଲା ଝିଅ ?"

"ହଁ, ରହିଲା ! କିନ୍ତୁ ମୁଁ କ'ଣ ସାନ ପିଲା ହୋଇଚି ? ମୋ'ର କ'ଣ ନିଜର ବୁଦ୍ଧି ନାହିଁ ?"

"ତଥାପି ମୁଁ ଦି'ପଦ ତୋ' ଭଲପାଇଁ କହିଦେଉଚି । ଶୁଣ,— ବୋଉଜା କଥାରୁ କେବେହେଲେ ବାହାର ହେବୁନାହିଁ । ତାକୁ ଖାତିରି ଦେଖାଇବୁ । ସେ ବୁଢ଼ାଲୋକ, ଏହିସବୁ କଥାକୁ ସେ ବେଶୀ ନଜର ରଖି ଚଳିବ ! ......ଦିନେ ତା'ର ସବୁ ଜମିକୁ ଯେ ସେ ତୋ'ନାମରେ ଲେଖି-ନଦେବ, ସେକଥା କିଏ ନାହିଁ କରିପାରିବ ? ବା କିଛି ନଗଦ ଟଙ୍କା ମଧ୍ୟ ଆଣି ତୋ'ହାତରେ ଦେଇପିବ !"

"ମୋ'ର ସେଥିଲାଗି ଭେକ ପଡୁନାହିଁ"—ସ୍ୱର୍ଗ୍‌ନା ଅଧୀରହୋଇ ମଝିରେ କହିପକାଇଲା ।

"ଆଲୋ ଝିଅ ! ତୋ'ର ବୟସ ଅଳପ, ଅଭିଜ୍ଞତା ମଧ୍ୟ କମ୍ । ତୁ ଭାବି କରି ଦେଖିଲୁ, ଏଇ ମଣିଷଗୁଡ଼ାକ କୋଉଥିପାଇଁ କଳିକଥା କରନ୍ତି, କୋଉଥିପାଇଁ ଏତେ ମେହେନତ କରନ୍ତି, କ'ଣ ପାଇବାଲାଗି ସବୁପ୍ରକାରର

ଚେଷ୍ଟା କରିବାରେ ଲାଗିଥାନ୍ତି ? ହଁ, — ଖାଲି ସମ୍ପତ୍ତି ପାଇଁ । ଭଗବାନ ତୋତେ କାମ ଖଟିବାକୁ କି ଦୁଃଖ ଭୋଗିବାକୁ କଦାପି ଏ ସଂସାରକୁ ପଠାଇ ନାହାନ୍ତି । ମୋ’ ସୁଗନ୍ଧା ସକାଶେ ସିନା ମୁଁ ମୋ’ ଜୀବନଟାସାକ ଏତେ ମିହନ୍ତ କଲି ! ଆଉ ଆଜିଠାରୁ ଏଇ ଘରେ ମୁଁ ଏକା ରହିବ, ଖାଲି ଏକା !”

“କିନ୍ତୁ ତୋ’ ପୁଅମାନେ ତ ତୋତେ ଛାଡ଼ି ଚାଲି ଯାଉନାହାନ୍ତି, ସେମାନେ ତ ସବୁଦିନେ ତୋ’ ପାଖରେ ରହିଥିବେ !”

“ତାଙ୍କ ଉପରେ ମୁଁ ବେଶୀ ଭରସା ରଖିନାହିଁ ଲୋ ମୋ’ ମାଆ !” କହୁକହୁ ସେ କାନ୍ଧ ପକାଇଲା । ତା’ପରେ ଆଖି ଘୋଳୁଘୋଳୁ କହିଲା, “ତୋ’ ଶେରପୁର ପିଲମାନଙ୍କ ସହିତ ତୁ ଭଲରେ ଚଳିବୁ, କନ୍ଦାଳ ଲଗାଇବ ନାହିଁ !”

“ମୁଁ ଜଣା ପିଲଟି ଭାରି ଭଲ । ଗ୍ରିଗୋରି ମଧ୍ୟ ବର୍ତ୍ତମାନ ଅନେକ ବର୍ଷଲାଗି ଫଉଜରୁ ଫେରିବନାହିଁ । ଆଉ··ଆଉ··”

“କମାର ପୁଅ ପ୍ରଭୁ ହୁସିଆର ରହିଥିବୁ !”

“କାହିଁକି, ତା’ର ତ ମାଥିଆସ୍ ସହିତ ଭାରି ଭଲ ସମ୍ପର୍କ ରହିଛି !”

“ଯଦି ଭଲ ସମ୍ପର୍କ ଥାଏ, ତେବେ ସେ ଆପଣାର କୌଣସି ମତଲବ ସକାଶେ । ତୁ କଦାପି ଭୁଲିଯିବୁ ନାହିଁ । ଆଉ ଆଲେକ୍ ଓ ତା’ର ପିଲପିଲି ହେଉଚନ୍ତି ସବୁଠାରୁ ବଡ ଶତ୍ରୁ, ସେମାନେ କେବେହେଲେ ବଦଳିବେ ନାହିଁ ...କାଲି ଗୋଟାଏ ମେଣ୍ଟାମେଣ୍ଟି କରିଦେବାପାଇଁ ପାଦ୍ରୀ କେତେପ୍ରକାର ଚେଷ୍ଟା କଲେ, କିନ୍ତୁ ତାଙ୍କ କଥା ମଧ୍ୟ ସେମାନେ ଶୁଣିଲେ-ନାହିଁ !”

“କିନ୍ତୁ ବୁଢ଼ା ମାଥିଆସ୍ ମଧ୍ୟ ବଡ଼ ଖଳ ଆଚରଣ କରି ସେମାନଙ୍କୁ ଆପଣ ଘରୁ ବାହାର କରିଦେଲ ! ”— ସୁଗନ୍ଧା ବଡ଼ ଆବେଗପୂର୍ଣ୍ଣ ଭାବରେ କହିପକାଇଲା ।

"ଚୁପ୍ ସ୍ବଗ୍ନା, ତୁ ଏ ଗୁଡ଼ାକ କ'ଣ କହୁଚୁ ? ଏମିତ କହନ୍ତି ? ତୁ ଜାଣୁ ଆନ୍ତ୍ରେଜ୍ ଆମ ନାଆଁରେ ଲେଖି ଦିଆଯାଇଥିବା ଜମିକୁ ଫେରାଇ ନେବାକୁ ଜିଦ୍ କରୁଥିଲା ? ତୋତେ କେତେପ୍ରକାର ଖରାପ କରି କହିଲା,- ତୋତେ ଯୋଉସବୁ ଗାଳି ଦେଲା, ତାହା ଏଠାରେ ଆଉଥରେ କହିବା ମଧ୍ୟ ସମ୍ଭବ ନୁହେଁ !"

"ଆନ୍ତ୍ରେଜ୍ ମୋତେ ଗାଳି ଦେଲା ? ଆନ୍ତ୍ରେଜ୍ ? କେବେ ନୁହେଁ । ଯୋଉମାନେ ତୋତେ ଏପରି କହିଚନ୍ତି, ସେମାନେ ତୁଚ୍ଛା ମିଛକଥା କହିଚନ୍ତି । ସେମାନଙ୍କର ଖର ଜିଭ ଯଦି ମୂଳ୍‌ନାରୁ ଛିଡ଼ି ନପଡ଼ିଚି !"

"କିନ୍ତୁ ତୁ କୋଉଥି ପାଇଁ ଶେ ତା' ପକ୍ଷଧରି ଏମିତି ଲଢ଼ିବାକୁ ବାହାରୁଚୁ ? ମୁଁ ଟିକିଏ ଏହାର କାରଣ କ'ଣ ଶୁଣେ !"— ସେ ଧମ-କାଇଲାପରି ମୁଖଭାବ ଦେଖାଇ ପଚାରିଲା ।

"ସେମାନେ ସମସ୍ତେ ମିଶି ଆନ୍ତ୍ରେଜ୍‌ର ବିରୁଦ୍ଧରେ ମେଳ କରିଚନ୍ତି । ମୁଁ କ'ଣ ମାଗିଖିଆ କୁକୁର ହୋଇଚି ଯେ ଯିଏ ମତେ ଖଣ୍ଡେ ରୁଟି ଦେଖାଇ ଡାକିବ, ମୁଁ ତା'ଆଡ଼କୁ ଅନାଇ ଲାଙ୍ଗୁଡ଼ ହଲାଇବାକୁ ଯିବି ? ଆନ୍ତ୍ରେଜ୍‌କୁ ସେମାନେ ଘର ନଚଖର କରିଚନ୍ତି, ମୁଁ ସବୁକଥା ଭଲକରି ଜାଣିଚି !"

"ତା'ହେଲେ ଯୋଉ ଜମିତକ ବୋଉନା ଆମ ନାଆଁରେ ଲେଖି-ଦେଇଚି, ତୁ ସେଇ ଜମିକୁ ପୁଣି ଆନ୍ତ୍ରେଜ୍‌କୁ ଫେରାଇଦେବାକୁ କହୁଚୁ, ନୁହେଁ ?"

ସ୍ବଗ୍ନା ଆଉ କିଛି ଉତ୍ତର ଦେଇ ପାରିଲାନାହିଁ । ତା'ର ଆଖି-ଭିତରୁ ଲୁହଧାର ଉଚ୍ଛୁଳି ଆସିଲା । ସେ ସେଠାରୁ ଘରଭିତରକୁ ଦଉଡ଼ିଯାଇ କବାଟ କିଳିଦେଲା ଓ ଅନେକସମୟ ପର୍ଯ୍ୟନ୍ତ ସେଇଠାରେ ପଡ଼ି କାନ୍ଦିବାକୁ ଲାଗିଲା ।

ଡୋମିନିକଙ୍କର ସ୍ବ୍ରାଙ୍କୁ କୌଣସି ପ୍ରକାରେ ବାଧା ଦେବାକୁ ଇଚ୍ଛା କଲାନାହିଁ । ସ୍ବ୍ରୀର ଏପରି ଆଚରଣ ଦେଖି ତା'ର ମନରେ ନାନାପ୍ରକାର ସଂଶୟର ଉଦ୍ରେକ ହେଲା । କିନ୍ତୁ ସେଇସବୁରୁ ଶିଘ୍ର କାଟିବାକୁ ଆଜି

ତା'ର ସମୟ ନାହିଁ ? ବିବାହ ପାଇଁ ବର୍ତ୍ତମାନ ସବୁକଥା ପ୍ରସ୍ତୁତ କରି ରଖିବାକୁ ହେବ ।

ସୂର୍ଯ୍ୟ ଉଠି ସାରିଲେଣି, ସକାଳର ଖରା ମାଡ଼ିମାଡ଼ି ଆସୁଚି ।

କାଲି ରାତିରେ ଖୁବ୍ ହିମ ପଡ଼ିଥିଲା । ଆଜି ବେଶ୍ ଉଷୁମ ମାଲୁମ ହେଉଚି । ତଥାପି ଗଛ ଛାଇ ତଳେ ଓ ବାଡ଼ କଡ଼ରେ ହିମ ଜମିକରି ରହିଚି । ଘରଚାଳ ମାନଙ୍କରୁ ବିଗଳିତ ହିମ ବିନ୍ଦୁମାନ ଟପଟପ ହୋଇ ତଳକୁ ପଡ଼ିଯାଉଚି, ସନ୍ତସନ୍ତିଆ ଜାଗାମାନଙ୍କରୁ ବାଷ୍ପକୁଣ୍ଡଳମାନ ଉଠିବାରେ ଲଗିଚି ।

ସୁନୀଳ ଆକାଶର ବକ୍ଷରେ ଆଜି ମେଘର କୌଣସି ଚିହ୍ନବର୍ଣ୍ଣ ମଧ୍ୟ ଦେଖାଯାଉନାହିଁ ।

ତଥାପି କାଉଗୁଡ଼ାକ ପଲପଲ ହୋଇ ଏଣେତେଣେ ବୁଲିବାରେ ଲଗିଚନ୍ତି, ଗଞ୍ଜାଗୁଡ଼ାକ ଖୁବ ଡୁହାକୁଡୁହା ଡ଼ାକ ଛାଡ଼ିଚନ୍ତି । ପାଗ ଖରାପ ହେବାର ସୂଚନା ମିଳୁଚି ।

ଆଜି ରବିବାର । ଗୀର୍ଜାର ଘଣ୍ଟା ବାଜିବା ଏପର୍ଯ୍ୟନ୍ତ ଆରମ୍ଭ ହୋଇନାହିଁ । ତଥାପି ସମସ୍ତ ଗ୍ରାମଟି ମହୁମାଛି ଫେଣା ପରି ସଚଳ ଓ ତତ୍ପର ହୋଇ ଉଠିଲଣି । ଆଜି ଗୀର୍ଜାଘରେ ବୋରିନା ଆଉ ୟୁଗନାଙ୍କର ବାହାଘର ହେବ, ସେଥିପାଇଁ ଗାଆଁର ପ୍ରାୟ ଅଧେଲୋକ ବେଶଭୂଷା ପିନ୍ଧି ସଜହେବାରେ ଲଗିଚନ୍ତି ।

ଡୋମିନିକଙ୍କର ଘରଦୁଆରେ ଆଜି ସବୁଠାରୁ ଅଧିକ ତତ୍ପରତା । ସବୁ ତରବର ଲଗିଚି, ନାନା କର୍ମ ଓ କୋଲାହଳରେ ସବୁ କମ୍ପି ଉଠୁଚି ।

ଅଳ୍ପଦିନ ହେଲା ଚୂନଧଉଳା ହୋଇଥିବା ଘରଟି ଅନେକ ଦୂରରୁ ତୋରା ଚକଚକ ଦେଖାଯାଉଚି । ଘର ଦୁଆରେ ସବୁଜ ରଙ୍ଗର କେତେ ଡାଳପତ୍ର ବନ୍ଧାହୋଇଚି । କାଲି ଗାଆଁର ପିଲାମାନେ ଆସି ଘରର ଚାଳଯାକ ପାଇନ୍ ଗଛର ଡାଳମାନ ଖଞ୍ଜିଦେଇ ଯାଇଚନ୍ତି ।

ଘର ଭିତରେ ମଧ୍ୟ କିଛି କମ୍ ସଜବାଜ ହୋଇନାହିଁ !

ଖଞ୍ଜାର ଶେଷମୁଣ୍ଡକୁ ଭଣ୍ଡାର-ଘର ଫାଖରେ ଗୋଟାଏ ବଡ଼ ଖନ୍ଦା ଜଳୁଚ । ସେଠାରେ ଇଭ୍ଭ ତା'ର ରନ୍ଧାବଢ଼ା ଆରମ୍ଭ କରଦେଇଚ । ସାହିର ଆଉ କେତେଜଣ ସ୍ତ୍ରୀଲୋକ ଓ ସ୍ୱଗ୍ନଷ୍ଟିଙ୍କା ମଧ୍ୟ ତାକୁ ସାହାଯ୍ୟ କରବାକୁ ଆସିଚନ୍ତ ।

ଘର ଭିତରୁ ସବୁ ଆସବାବ ବାହାର କର ଧୂଆଯାଇ ଭଲକର ଚୂନ ଧଉଳାଇ ଦଆ ଯାଇଚ । ତେମଣି ଖୁଣ୍ଟଟାକୁ ନୀଳବର୍ଣ୍ଣ କପଡ଼ାରେ ଘୋଡ଼ାଇ ଦଆଯାଇଚ । କାନ୍ଥରେ ରଖା ହୋଇଥିବା ଦ୍ୱଅଁମାନଙ୍କର ମୂର୍ତ୍ତି କେତୋଟି ବ୍ୟତୀତ ଏ ଘରେ ଆଉ କୌଣସି ସାମଗ୍ରୀ ନାହିଁ । ପିଲମାନେ ଏହି ଘର ଭିତରେ ବଡ଼ ବଡ଼ ବେଞ୍ଚ୍ ଓ ଟେବୁଲ୍ ଆଣି ପକାଇ ଦେଇଚନ୍ତ । କୋଉକାଳର ଅଳନ୍ଧୁ ଲାଗି କଳା ପଡ଼ିଯାଇଥିବା ଆଟୁଟାକୁ ନାନାପ୍ରକାର କାଗଜଫୁଲରେ ମଣ୍ଡନ କରାଯାଇଚ । ନଜେ ସ୍ୱଗ୍ନା ଆପଣା ହାତରେ ଏହିସବୁ କାଗଜ-ଫୁଲକୁ କାଟିଦେଇଚ । 'ମାଥିଆସ୍ ତା'ପାଇଁ ସହରରୁ ରଙ୍ଗିନ୍ କାଗଜ କଣିଆଣି ଦେଇଚ,— ସ୍ୱଗ୍ନା ସେହି କାଗଜରୁ କେତେ କସମର ଫୁଲ, ପଶୁ ଓ ପକ୍ଷୀ କାଟିଦେଇଚ । ତା'ର ଏହି ନପୁଣ ହାତର କାମ ଦେଖି କାଲ ସମସ୍ତେ ଭାର ପ୍ରଶଂସା କର ଯାଇଚନ୍ତ !

ଆଂଶିକ ଭାବରେ ଆପଣାର ପରଧାନ ପିନ୍ଧି ସ୍ୱଗନା ତା'ର କଟା କାଗଜଫୁଲଗୁଡ଼ିକୁ ଦ୍ୱଅଁଙ୍କ ତଳେ ଥିବା କାନ୍ଥରେ ସଜାଇଦେବାକୁ ଏ ଘରକୁ ଆସିଲ ।

"ସ୍ୱଗ୍ନା, ଏସବୁ କାମ ପାଇଁ ତୋ'ର ଆଉ ସମସ୍ତ କୋଉଠି ଅଛୁ କହିଲୁ ? ଲୋକମାନେ ଆସି ରୁଣ୍ଡ ହେଲେଣି, ତେଣେ ଗାଆଁ ଦାଣ୍ଡରେ ବାଜା ଶୋଭାଯାତ୍ରା ବାହାର ସାରଲଣି । ଆଉ ଏଠି ବସି ତୁ ଏଇ କାମ କରୁଚୁ ?"

"ଅନେକ ସମସ୍ତ ଅଛୁ ଗୋ ଅନେକ ସମସ୍ତ ଅଛୁ !"— ସେ ସଂକ୍ଷେପରେ ଉତ୍ତର ଦେଲା । ଘରର ଚଟାଣକୁ ସେ ପାଇନ ପିରୁଲ୍ (ପାଇନ ଗଛର ପତର କଣ୍ଟା) ବାଣ୍ଟି ସଜାଇ ଦେଲା, ଟେବୁଲ ଉପରେ ଧଳା କପଡ଼ା ବିଛାଇ ଦେଲା । କିନ୍ତୁ ଏସବୁ କାମ ତାକୁ ଆଦୌ ଭଲ

ଲାଗୁନଥାଏ । ଆଜ ତାକୁ ନାଚିବାକୁ ପଡ଼ିବ, ବାଜା ଦଳର ବାଜା ତାକୁ ଶୁଣିବାକୁ ପଡ଼ିବ । ଚିରଦିନ ସେ ସଙ୍ଗୀତ ଓ ନାଚକୁ ଭାରି ଭଲପାଇ ଆସିଛି । ଆଜିର ଏହି ଶାରଦ ଦିନଟିର ଗମ୍ଭୀରତା ପରି ତା'ର ମାନସପଟରେ ଆଜ କୌଣସି ମେଘର କୌଣସି ଚିହ୍ନ ନାହିଁ, ଗୃହଆଡ଼ୁ ପଡୁଥିବା କେତେ କିରଣ ଉଜ୍ଜ୍ୱଳ ପଡ଼ୁଛି । କିନ୍ତୁ ସେଥିରେ ଆଜ କୌଣସି ଜୀବନ ନାହିଁ । ଏହିସବୁ ସାଜସଜ୍ଜା ଯଦି ତାକୁ ସେ ବିଷୟରେ ସ୍ମରଣ କରାଇ ଦେଉ ନ-ଥାନ୍ତେ, ତେବେ ଆଜ ତା'ର ବାହାଘର ବୋଲି ହୁଏତ ତା'ର ମନେ ମଧ୍ୟ ନଥାନ୍ତା । କାଲି ବେଣୀ ଫିଟା ହେଲାବେଳେ ବୋଉନା ତା'ର ହାତ ଭିତରେ ଆଠମାଳ ସୋହଲା ଆଣି ଗୁଞ୍ଜି ଦେଲା । ଏହି ମାଳଗୁଡ଼ାକ ତା'ର ପ୍ରଥମ ଭଉଣୀ ମଲାବେଳେ ରଖିଯାଇଥିଲା । ବର୍ତ୍ତମାନ ସେଗୁଡ଼ାକ ତା'ର ଟଙ୍କ ଭିତରେ ପଡ଼ିଛି, ସେ ଥରେହେଲେ ସେଗୁଡ଼ାକୁ ବାହାର କରି ପିନ୍ଧିବାକୁ ମନ କରୁନାହିଁ । ଆଜ କୌଣସିଥିରେ ତା'ର ଏତେଟିକିଏ ହେଲେ ଆଗ୍ରହ ନାହିଁ । ମନେହେଉଛି, ସେ ଇଚ୍ଛାକଲା ମାତ୍ରକେ ଆଉ କୋଉଠିକି ଉଡ଼ି ପଳାଇ ଯାଆନ୍ତା କି ? କିନ୍ତୁ ଠିକ୍ କୋଉଠିକି ପଳାଇ ଯାଆନ୍ତା, ସେ ବିଷୟରେ ତା'ର କୌଣସି ଧାରଣା ନାହିଁ । ଆଜ ସବୁକଥା ତାକୁ ଭାରି ଚିଡ଼୍ ଚିଡ଼୍ ଲାଗୁଛି । ମାଆ ସକାଳେ ଆନ୍ତେକ୍ ବିଷୟରେ ତାକୁ ଯାହାସବୁ କହିଲା, ସେହି କଥାଗୁଡ଼ାକ ବାରବାର ତା'ର ମନ ଭିତରଟାକୁ କୋରିଦେଇ ଯାଉଛି । କ'ଣ ହେଲା ? ଆନ୍ତେକ୍ ତାକୁ ଗାଳି ଦେଉଥିଲା, ତା' ନାମରେ ଅକଥା କହୁଥିଲା ? ସେ କଦାପି ଏ କଥାରେ ବିଶ୍ୱାସ କରିବ ନାହିଁ । ସେକଥା ମନେପଡ଼ିଗଲା ବେଳକୁ ଯେପରି ଆଖି ଭିତରେ ଲୁହଧାର ସମ୍ଭାଳି ହୋଇ ରହିପାରୁନାହିଁ । କିନ୍ତୁ ତଥାପି,— କିଏ କହିପାରିବ, ସେ କଥା ସତ ବି ହୋଇପାରେ । ···କାଲି ଲୁଗା କାଚୁଥିବା ସମୟରେ ସେ ଯେଉଁବାଟେ ଗଲା, କିନ୍ତୁ ମୁହଁ ବୁଲାଇ ଥରେହେଲେ ତା'ଆଡ଼କୁ ଅନାଇଲା ନାହିଁ । ସକାଳେ ବୋଉନା ସାଙ୍ଗରେ ସେ ଗୀର୍ଜାକୁ ଯାଉଥିଲ । ଆନ୍ତେକ୍ ସେମାନଙ୍କ ଆଡ଼କୁ ଆସୁଥିଲା, ସେମାନଙ୍କୁ ଦେଖି ହଠାତ୍ କୁଳପଡ଼ି ପଳାଇଲ ;— ପାଗଳା କୁକୁର ଦେଖିଲେ ଯେମିତି

ଲୋକେ ପଳାଇ ଯାଆନ୍ତି, ଠିକ୍ ସେହିପରି । ହଉ,— ତାହାର ଯଦି ଛୁଗୁଲେଇବାକୁ ମନହେଉଚି, ତେବେ ସେ ଛୁଗୁଲେଇଥାଉ !

ଆପଣାର ଭିତରଟା ହଠାତ୍ ଆନ୍ଟେକ୍ ବିରୁଦ୍ଧରେ ବିଦ୍ରୋହ କରି ଉଠିଲା । କିନ୍ତୁ ସ୍ମୃତିର ଗୋଟାଏ ଝଲକରେ ସେହି ସନ୍ଧ୍ୟାରେ ସବୁ ଘଟଣା ଆସି ତାର ସମ୍ମୁଖରେ ଭାସିବାକୁ ଲାଗିଲା । ବୋଉନାର କୋବି କିଆରିରେ କାମ କରି ବୁଢ଼େ ଏକାଠି ଘରକୁ ଫେରୁଥାନ୍ତି । ସବୁ କଥା ମନେ ପଡ଼ିଲା ବେଳକୁ ତା'ର ସମସ୍ତ ଶରୀରରେ ଯେପରି ହୁରୁହୁରୁ ହୋଇ ନିଆଁ ଜଳିବାକୁ ଲାଗିଲା । ସୁରୁନା ସେହି ହୁତାଶନର ଜ୍ୱାଳାକୁ ଆଉ ସହି ପାରିଲା ନାହିଁ । ତା'ପରେ ଆପଣା ପାଖରୁ ପଳାଇବାକୁ ଚେଷ୍ଟା କରି ସେ ମାଆକୁ ଡାକି କହିଲା :

"ତୋତେ ମୁଁ ଆଗରୁ କହିଦେଉଚି ! ବାହାଘର ପରେ ମୁଁ କଦାପି ମୋ'ର ବାଳ କାଟିବାକୁ ଦେବନାହିଁ !"

"ସିଏ ପୁଣି କୋଉ ଋଇଜର କଥା ମ ? ବାହାଘର ପରେ କୋଉ ଝିଅର ବାଳ କଟା କେବେ ବନ୍ଦ ହେଲାଣି ନା ଆଜି ହେବ ?"

"କାହିଁକି, ସହରରେ ତ ଏପରି ହୁଏନାହିଁ !"

"ହଁ, ସହରରେ ସେମାନେ ଲୋକମାନଙ୍କୁ ଭଣ୍ଡାଇବାକୁ ଏପରି କରନ୍ତି । ସହରରେ ଝିଅମାନେ ଯଦି ଖାଲୁକୁଣୀ ହୋଇ ରହିବାକୁ ଚାହୁଁଚନ୍ତି ତେବେ ରହିଥାନ୍ତୁ । କିନ୍ତୁ ତୁ କ'ଣ ସହରର ଅଳିଆଗଦାରେ ଜନ୍ମ ହୋଇଚୁ କି, ତୁ ମଧ୍ୟ ସେହିପରି କରିବୁ ? ତୋ'ର ବାପଅଜା ଚଉଦପୁରୁଷ ଗାଆଁରେ ରହିଚନ୍ତି, ଗାଆଁରେ ଘର କରିଚନ୍ତି । ଗୃହିଣୀକୁଳରେ ଯାହା ହେବାର ବିଧି ଅଛି, ତୋ, ବେଳକୁ ଠିକ୍ ତାହାହିଁ ହେବ !"

ତଥାପି ସୁରୁନାର ଏକା ଜିଦ୍ ଯେ ସେ ବାଳ କାଟିବନାହିଁ । ସୁରୁନା ମଧ୍ୟ କେତେ କଥା କହି ତାକୁ କେତେ ପ୍ରବୋଧିବାକୁ ଚେଷ୍ଟା କଲା, ସୁଷୁସ୍ତିଙ୍କ ମଧ୍ୟ କେତେ ଫାଷ୍ଟିଫଟି ଗଲା, କେତେ ଟାପରା କରି କହିଲା । ଶେଷରେ ନିରସ୍ତ ହୋଇ କହିବାକୁ ଲାଗିଲା :

"ତୋ'ର ଯେତେ ମନ ହେଉଚ, ତେବେ ବାଲ ରଖ । ବୋଉନା ମାତ୍ର ମାଉଲବେଳେ ତା'ର କାମରେ ଆସିବ ! ତୋ'ର ଲମ୍ବା ଲମ୍ବା ବାଳକୁ ହାତରେ ଧରି ସେ ପିଠିରେ ପାହାର ବସାଇବାକୁ ଅଧିକ କାଇଦା ପାଇବ । ସେତେବେଳେ ତୁ ବଳେ ବଳେ ଆସି ବାଳ କାଟି ପକାଇବାକୁ କହିବୁ ।" ହଠାତ୍ ତା'ର କଥା ଅଧରୁ ବନ୍ଦ ହୋଇଗଲା । ଭିତେକ୍ ତାକୁ ଡାକିବାକୁ ଆସିଚ । ଆନ୍ଭେକ୍ସର ପରିବାର ବିଦାହୋଇ ଗଲାଦିନଠାରୁ ସେ ଆଜିକାଲି ବୋଉନା ଘରେ ଯାଇ ରହୁଚ । ମୁଁ ଜକା କାଲିକାର ପିଲାଟା, ସେ କୁଆଡ଼ ଏତେବଡ଼ ଘରର ହାନଲାଭ ସମ୍ଭାଳି ପାରିବ ? ତେଣୁ ଇଏକୁ ଏଠି ରକ୍ଷାବଢ଼ାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ମଧ୍ୟ ମଝିରେ ମଝିରେ ଦଉଡ଼ି ଯାଇ ସେ ବୋଉନା ଘରେ ଏଇଟା ବା ସେଇଟା ବୁଝି ଦେଇ ଆସୁଚ । ବୁଢ଼ାର ମୁଣ୍ଡ ଆଜି ଠିକ୍ ନାହିଁ । ସକାଳୁ ଯାଇ ମୁଜକା କମାରପୁଅ ଘରେ ସଜବାଜ ହେବାରେ ଲାଗିଚ । କୁବାର ଦେହ ଏପର୍ଯ୍ୟନ୍ତ ଭଲ ହୋଇନାହିଁ ।

ଭିତେକ୍ ଦଉଡ଼ିଆସି କହିଲା ! "କୁବା କାହିଁକି ତୁମକୁ ଖୋଜୁଚ, ଟିକିଏ ଧଅସି ଆଓ !"

"ଆଚ୍ଛା ଚାଲ । ଆଲେ, ମୁଁ ଯାଉଚ, ଅଇଚ୍ଛା ଦଉଡ଼ିଯାଇ ପୁଣି ଅଇଚ୍ଛା ଦଉଡ଼ି ଆସିବ !"

"ତୁ କିନ୍ତୁ ଝଅଟ ଆସିବୁ,—ଆଲେ ସୁଗ୍ନା, ତୁ ଶୀଘ୍ର ତଆର ହୋଇଯାଆ । ଆଉ ଟିକିଏ ଗଲେ ପରୀ ଝ ଅମାନେ ଆସି ପହଞ୍ଚିବେ !" ଡୋମିନିକକୁ ଚେତାଇ ଦେଇ କହିଲା ।

କିନ୍ତୁ ସୁଗ୍ନା ତରତର ହେବାର କୌଣସି ଲକ୍ଷଣ ପ୍ରକାଶ କଲାନାହିଁ । ସତେଯେମିତି ତାକୁ କୋଉଯୁଗର କେଉଁ ନିଦ ଘାରିକାଉ ରହିଚ । ତା'ର ହାତରୁ ଏଇଟା ସେଇଟା ବାରବାର ପଡ଼ିବାରେ ଲାଗିଥାଏ, ପୁଣି କେତେବେଳେ ସେ ଝରକା ପାଖରେ ଠିଆହୋଇ ବକାଙ୍କ ପରି ଘଡ଼ିଏକାଳ ବାହାରକୁ ଅନାଇ ରହୁଥାଏ । ସତେ ଯେପରି ଗ୍ଲାଡ ଭିତରେ ତା'ର କଲିଜାଟା ଏକାବେଳକେ ପାଣି ଫାଟିଗଲାଣି, ସେହି ପାଣି ଏଣେତେଣେ

ବୋହୁସିବାରେ ଲାଗିଛ ଓ ବଡ଼ ବଡ଼ ତରଙ୍ଗ ହୋଇ ଆସି ସମୁଦ୍ରର ପଥର ଉପରେ ଲହଡ଼ା ଭାଙ୍ଗି ଚାଲିଯାଉଛ ।

ଘର ଭିତରେ ଯିବାଆସିବା ଲୋକଙ୍କର ମେଳ ଲାଗିଛ । ଗାଆଁର କେତେକେତେ ସ୍ତ୍ରୀଲୋକ ଆସି ପହଞ୍ଚିଗଲେଣି ! ପୁରୁଣା ପରମ୍ପରା ଅନୁସାରେ କିଏ ଡୋମିନିକଭାଇକୁ ଦେବପାଇଁ କୁକୁଡ଼ା ଗୋଟାଏ ସାଙ୍ଗରେ ଧରି ଆସିଛ । କିଏ ଗହମର ପାଉଁରୁଟି କରି ଆଣିଛ ! ଆଉ କିଏ ଲୁଣ, ଅଣ୍ଡା, ପିଠାପଣା ବା ମାଉଁସ ନେଇ ଆସିଛ, କିଏ କାଗଜ ଭିତରେ ଗୁଡ଼ାଇ ନଗଦ ଟଙ୍କା ଦେଖାର ଆଣିଛ । ସମସ୍ତେ ବାହାଘରର ନିମନ୍ତ୍ରଣ ଲାଗି କୃତଜ୍ଞତା ଜଣାଇବାକୁ କିଛିନା କିଛି ଦେଖାର ନେଇ ଆସିଚନ୍ତି । ଗୋଟାଏ ବାହାଘରର ଯେତେ ଖରଚ, ବନ୍ଧୁବାନ୍ଧବ ଓ ସାଇପଡ଼ିଶାର ଏହି ସାହାଯ୍ୟ ଫଳରେ ସେହି ବୋଝ ଅନେକ ପରିମାଣରେ ହାଲୁକା ହୋଇଯାଉଛ ।

ବନ୍ଧୁବାନ୍ଧବମାନେ ଆସି ପହଞ୍ଚୁଥାନ୍ତି, ମିଠା ପଡ଼ିଥିବା ଉଡ଼୍‌କାରୁ ମଦାଏ ପିଇ କିଛିସମୟ ପର୍ଯ୍ୟନ୍ତ ବୃଦ୍ଧୀ ସହିତ କଥାବାର୍ତ୍ତା ହେଉଥାଆନ୍ତି । ସବୁ ସାଜସରଞ୍ଜାମର ପ୍ରଶଂସା କରୁଥାନ୍ତି ଓ ତା'ପରେ ବିଦାୟ ନେଇ ଚାଲିଯାଉଥାନ୍ତି ।

ଡୋମିନିକଭାଇ ନିଜେ ଯାଇ ବୋହୂଙ୍କ ଖିଆଇବାପର କାମ ତଦାରଖ କରି ଆସୁଥାଏ । ସବୁକଥା ଠିକଣାଭାବରେ ବନ୍ଦୋବସ୍ତ କରିବାରେ ଭାରି ବ୍ୟସ୍ତ ଥାଏ । ତା'ଭିତରେ ସମୟପାଇ ସେ ପୁଅବୋହୂଙ୍କୁ ଯେମାନଙ୍କର ଅଳସୁଆମି ପକାଶେ ବହେ ଗାଳି ଶୁଣାଇ ଦେଉଥାଏ । ପୁଅବୋହୂଏ ମଧ୍ୟ କିଛି କମ୍ ନୁହନ୍ତି । ଟିକିଏ ଓର ପାଇଲେ ସେମାନେ ସଂଧ୍ୟା ପଧାନଘରକୁ ଖସି ଯାଉଥାନ୍ତି । ସେଠାରେ ଗାଆଣବଜାଣ ବନ୍ଦ ଓ କୁଣିଆମଇଁଜ ଜମାହେବାରେ ଲାଗିଥାନ୍ତି ।

ଆଜି ରବିବାର ପ୍ରାର୍ଥନାରେ ବେଶୀଲୋକ ଯୋଗ ଦେବାକୁ ଯାଇନଥିଲେ, ଭାରି ଗୋଟାଏ ବିବାହର କାମରେ ଭୋଳ ହୋଇ ଲୋକଗୁଡ଼ାକ ଭଗବାନଙ୍କର ଉପାସନା ଭୁଲିଗଲେ ବୋଲି ପାଦ୍ରୀ ଆଜି ମନେମନେ ଭାରି ବିରକ୍ତ ହୋଇଚନ୍ତି । ପାଦ୍ରୀଙ୍କର ଏପରି ଧାରଣା କରିବାରେ

ଆଦୌ ଠିକ ଏହେଲେ ଗଲତ ନାହିଁ । କିନ୍ତୁ ସବୁ ରବିବାରଦିନ କ'ଣ ଏମିତ ଗୋଟାଏ ବାହାଘର ଦେଖିବାର ସୁଯୋଗ ମିଳିବ ?—ଲୋକମାନେ ଏହିପରି ଭାବି ଗୀର୍ଜାକୁ ଯାଉଥିଲେ ।

ଖରାବେଳ ଢିଆପିଆ ସରିବା ମାତ୍ରକେ ଆଖପାଖ ଗାଆଁରୁ ମଧ୍ୟ ଲୋକମାନେ ଗାଡ଼ୀରେ ବସି ଆସି ପହଞ୍ଚିଗଲେ ।

ସୂର୍ଯ୍ୟଦେବ ପଶ୍ଚିମକୁ ଢଳିବାକୁ ଆରମ୍ଭ କଲେଣି । ତାଙ୍କର କିରଣରେ ଝଲମଲ ହେଉଥିବା ଶରତକାଳର ଖେତଗୁଡ଼ିକ ଆଡ଼କୁ ଅନାଇଲେ ଆଖି ଝଲସି ଯାଉଚି । ପୋଖରୀର ପାଣି ଉପରେ ଖରା ପଡ଼ି ଝମି ଝମି ଉଠୁଚି । ଶେଷ ଶରତର ଆରାମଦାୟକ ଉଷ୍ମତା ଓ କ୍ଷୀଣହୋଇ ଆସୁଥିବା ସୂର୍ଯ୍ୟାଲୋକରେ ପ୍ରକୃତିର ପୃଷ୍ଠ ରଞ୍ଜିତ ହୋଇ ରହିଚି ।

ସଢେଅବା କୌଣସି ମହମବତୀ ଜଳିଜଳି ସରି ଆସୁଥିଲା ପରି ଦିନଟି ମଧ୍ୟ କ୍ରମଶଃ ନିର୍ବାପିତ ହୋଇ ଆସୁଚି ।

କିନ୍ତୁ ଲପ୍‌କା ଗାଆଁ ଆଜି ଉତ୍ସବର ପ୍ରେରଣାରେ ପ୍ରେରଣାମୟ ହୋଇ ଉଠିଚି, ସତେଅବା ଗାଆଁରେ ଆଜି ମେଳା ବସିଚି !

ଗୀର୍ଜାର ଘଣ୍ଟା ବାଜିବା ସଙ୍ଗେସଙ୍ଗେ ପଧାନଙ୍କ ଘରେ ଅପେକ୍ଷା କରିଥିବା ବାଜାଦାରମାନେ ଶୋଭାଯାତ୍ରାରେ ରାସ୍ତାଉପରକୁ ବାହାରିଲେ ।

ଆଗ ବାଜାଦାରମାନଙ୍କର ଦଳ, ତା'ପଛକୁ ଆଉ ଆଠଜଣ ଲୋକ ! ବିବାହର ପ୍ରସ୍ତାବ ନେଇ ଯାଇଥିବା ଦୁଇଜଣଯାକ ଭଲଲୋକ ଓ ଆଉ ଛଅଜଣ କୁଣିଆ । କୁଣିଆ ଛଅଜଣ ସମସ୍ତେ ଟୋକା ବୟସର, ଦେଖିବାକୁ ଭାରି ସୁନ୍ଦର, ଭଲ କୃଷୀ ପରିବାରର ଲୋକ ।

ସମସ୍ତେ ଏକାଠି ହୋଇ ଦାଣ୍ଡମଝିରେ ଯାଉଥାନ୍ତି, ସେମାନଙ୍କର ବୁଟ୍‌ଜୋତାର ଶବ୍ଦ ବାଜି ଦାଣ୍ଡଟାଯାକ ଧ୍ୱନିତ ହୋଇ ଉଠୁଥାଏ । ସେମାନଙ୍କ ଭିତରୁ କିଏ ଆନନ୍ଦଚିତ୍କାର କରୁଥାଏ, କିଏ ମନଖୁସିରେ ଗୀତ ଗୁଡ଼ାଏ ଦେଇଥାଏ । ବାଜାଦାରମାନେ ଦୁଆରଦୁଆର ହୋଇ ବାଜା ବଜାଉଥାଆନ୍ତି ଓ ବିବାହଲାଗି ଆମନ୍ତ୍ରିତ ହୋଇଥିବା ବ୍ୟକ୍ତିମାନଙ୍କୁ ଆହ୍ୱାନ କରି ଆଣୁଥାନ୍ତି । କୋଉଠି କେଉଁ ଘରୁ ସେମାନଙ୍କୁ ଭଡ୍‌କା ପିଇବାକୁ ମିଳୁଥାଏ, କୋଉଠି

ସେମାନଙ୍କର ବାଦ୍ୟର ତାଳ ଅନୁସାରେ ଗୀତବୋଲିବା ଆରମ୍ଭ ହୋଇ ଯାଉଥାଏ ; ଏବଂ ଚତୁର୍ଦ୍ଦିଗରୁ ଲୋକମାନେ ନାନାଭଳି ପୋଷାକ ପିନ୍ଧି ଶୋଭାଯାତ୍ରା ସହିତ ସମ୍ମିଳିତ ହେଉଥାଆନ୍ତି । ଘରମାନଙ୍କର ଝରକାଭିତରୁ ଝିଅମାନେ ସମବେତ କଣ୍ଠରେ ବାହାଘର ଗୀତମାନ ଗାଉଥାନ୍ତି ।

ଏହି ଶୋଭାଯାତ୍ରାର ଉଲ୍ଲସିତ ଚିତ୍କାରରେ ଗାଆଁଟାଯାକ କମ୍ପି ଉଠିଲା ପରି ମନେହେଉଥାଏ । ଦୂର ଗହ୍ୱରବିଲ ଓ ଜଙ୍ଗଲପଟୁ ଏହି ଶବ୍ଦର ପ୍ରତିଧ୍ୱନି ଆସି ଅଜାଡ଼ି ହୋଇ ପଡ଼ୁଥାଏ ।

ଦେଖଣାହାରି ଲୋକମାନେ ଘରଭିତରୁ ବାହାରି ଦୋଟା ଭିତରେ ଆସି ରୁଣ୍ଡ ହୋଇଗଲେଣି । ଯେଉଁମାନେ ନିମନ୍ତ୍ରଣ ପାଇନାହାନ୍ତି, ସେମାନେ ମଧ୍ୟ କେବଳ ଦେଖିବାକୁ ଓ ଶୁଣିବାକୁ ଆସି ଏହି ଭିଡ଼ରେ ଯୋଗ ଦେଉଚନ୍ତି । ଶୋଭାଯାତ୍ରା ଆସି ଠିକଣା ଜାଗାରେ ପହଞ୍ଚିବା ପୂର୍ବରୁ ଗାଆଁଟାଯାକର ପ୍ରାୟ ସବୁଲୋକ ଆସି ବାହାରେ ଜମାହୋଇ ଯାଇଥିଲେ । ଭିଡ଼ଭିତରେ ସମସ୍ତେ ଠେଲାପେଲି ଆଗକୁ ଗୋଡ଼ ପକାଉଥାନ୍ତି, ସାନ ପିଲାମାନେ ଆଗେଆଗେ ଚାଲିଥାନ୍ତି ।

କୁଣିଆମାନଙ୍କୁ କନ୍ୟାପକ୍ଷ ଘରେ ଛାଡ଼ିଦେଇ ବାଜାଦାରମାନେ ପୁଣି ବରକୁ ଆଣିବାଲାଗି ଚାଲିଗଲେ । ଭିତେକ୍ ଏତେବେଳଯାଏ କୁଣିଆମାନଙ୍କ ସହିତ ଥରଥର ପାଦ ପକାଇ ଆସୁଥିଲା । ବର୍ତ୍ତମାନ ଦ୍ରୁତପଦରେ ସେ ଆଗେଆଗେ ଦଉଡ଼ିବାକୁ ଲାଗିଲା ।

"ସାଆନ୍ତେ !" — ଝରକାବାଟେ ଚିତ୍କାର କରି ସେ ବୋଉନାକୁ ଡାକି କହିଲା, — "ସେମାନେ ଏଠାକୁ ଆସୁଚନ୍ତି !" — କହିଦେଇ ସେ ସିଧା କୁବା ପାଖକୁ ଚାଲିଗଲା ।

ଦୁଆରେ ପହଞ୍ଚି ବାଜାଦାରମାନେ ଆଗ କିଛିସମୟ ପର୍ଯ୍ୟନ୍ତ ବାଜା ବଜାଇଲେ । ବୋଉନା ଘରୁ ବାହାରିଆସି ଦାଣ୍ଡଦୁଆରଟା ମେଲା କରିଦେଲା ଏବଂ ସମସ୍ତଙ୍କୁ ଘର ଭିତରକୁ ଆସିବାକୁ ନିମନ୍ତ୍ରଣ କଲା । କିନ୍ତୁ ପଧାନେ ଆଉ ମୋହରିର ତା'ର ଦୁଇ ବାହାକୁ ଧରି ସିଧା ଟାଣିନେଇ ତାକୁ

ସୁଗ୍‌ନା ପାଖକୁ ନେଇଗଲେ । କାରଣ ଗିର୍ଜାକୁ ଯିବାର ବେଳ ପରା ତେଣେ ଉଛୁର ହୋଇଯାଉଚି !

ବୋଣନାର ଗୃଲ ଠିକ୍ ବରଗୃଲ ପରି ମନେହେଉଥାଏ । ତାକୁ ଅନାଇଦେଲ ବେଳକୁ ହଠାତ୍ ଭାରି ଅଲବୟସର ବୋଲି ମନେହେଉ-ଥାଏ । ବାଲ କାଟିଚି, ମୁହଁକୁ ଚିକଣ କରି ଖିଅର ହୋଇଚି, ବରପୋଷାକରେ ସେ ପ୍ରକୃତରେ ଭାରି ସୁନ୍ଦର ଦିଶୁଚି । ତା'ର ଓସାରିଆ କାନ୍ଧ ଓ ବଳିଷ୍ଠ ବପୁଟାକୁ ଦୂରରୁ ଦେଖିଲେ ମଧ୍ୟ ଅତି ସୁଷ୍ଟଭାବରେ ବାରି ହୋଇପଡ଼ୁଚି । ସାଙ୍ଗରେ ଯାଉଥିବା ଟୋକାମାନଙ୍କ ସହିତ ହସି ହସି ସେ କେତେ ଖୁସିଗପ କରୁଚି । କମାରପୁଅ ମଧ୍ୟ ତା'ର ସଙ୍ଗେ ସଙ୍ଗେ ଗୃଲଚି । ବୁଢା ତାହାର ସହିତ ସବୁଠାରୁ ବେଶୀ ରହସ୍ୟ କରିବାରେ ଲଗିଚି ।

ବର ଆସି ଡୋମିନିକଭାର ଘରେ ପହଞ୍ଚିଲା ; ଭିଡ଼କରି ଜମା ହୋଇଥିବା ଲୋକେ ବର ଯିବାପାଇଁ ବାଟ ଛାଡ଼ିଦେଲେ । ସେ ଘର ଭିତରେ ପ୍ରବେଶ କଲବେଳକୁ ନାନାବିଧ ଗୀତ ଓ ବାଦ୍ୟରେ ଗଗନ ଉଚ୍ଛୁଳିଉଠିଲା ।

ଗାଆଁ ର ସ୍ତ୍ରୀଲୋକମାନେ ସୁଗ୍‌ନାକୁ ଘେରିକରି ଘରଭିତରେ ରହିଚନ୍ତି କାହାରୁ କାହାରି ଭିତରକୁ ଆସିବାକୁ ଛାଡ଼ୁନାହାନ୍ତି । ସାନସାନ ଝିଅମାନେ ସେପାଖରୁ କେତେ କବାଟ ଧଡ଼ଧଡ଼ କରୁଚନ୍ତି, ଜଳାବାଟରେ ଭିତରକୁ ଅନାଇ ଦେଖିବାକୁ କେତେ ଚେଷ୍ଟା କରୁଚନ୍ତି ଏବଂ ଝିଅମାନଙ୍କ ସହିତ କେତେ ଅଛାତାମସା କରିବାରେ ଲଗିଚନ୍ତି । ସେମାନଙ୍କର କଥା ଶୁଣି ଝିଅମାନେ କରକରି ହୋଇ ହସି ଉଠୁଚନ୍ତି, ବୟସ୍କା ସ୍ତ୍ରୀଲୋକମାନେ ଗାଳି ବର୍ଷଣ ନକରି ଛାଡୁନାହାନ୍ତି ।

ଡୋମିନିକଭା ଦୁଇପୁଅଙ୍କୁ ସାଙ୍ଗରେ ନେଇ ଅତିଥିମାନଙ୍କୁ ବରଣ କରି ଆଣିଲା, ସେମାନଙ୍କୁ ଭଡ୍‌କା ପିଇବାକୁ ଯାଚିଲା ଓ ବଡ଼ବଡ଼ମାନଙ୍କୁ ନେଇ ନିର୍ଦ୍ଦିଷ୍ଟ ଆସନମାନଙ୍କରେ ବସାଇଦେଲା ।

କୁଣିଆମାନଙ୍କ ଭିତରେ ବାଜେଲୋକ ଜଣେହେଲେ କେହି ନାହାନ୍ତି । କେବଳ ଥିଲବାଲ ଘରମାନଙ୍କରୁ କୁଣିଆ ନିମନ୍ତ୍ରିତହୋଇ ଆସିଚନ୍ତି ।

କେବଳ ଖାନ୍‌ଦାନ୍ ପରିବାରର ଲୋକମାନଙ୍କୁ ଡକାଯାଇଛି । ସମସ୍ତେ ବର ବା କନ୍ୟାପକ୍ଷର ଆତ୍ମୀୟ ଓ ବନ୍ଧୁ ବାନ୍ଧବ — ପାଖ ଓ ଦୂରଗାଆଁର ଚିହ୍ନାପରିଚିତ ଲୋକମାନଙ୍କ ବ୍ୟତୀତ ଆଉ କେହି ଆସିନାହାନ୍ତି । ଯାହାର ମାଣେ ଧୂଳିମାଟିରେ ଅଧିକ ଜମି ନାହିଁ, ଯେଉଁ ଦରିଦ୍ରମାନେ ପରର ଜମିରେ ମଜୁରି ଲାଗି ପେଟ ପୋଷନ୍ତି, ସେମାନଙ୍କୁ ଆଜି ଏଠାରେ କଦାପି ଦେଖିବାକୁ ମିଳୁନାହିଁ ।

ଏତେବେଳେକେ ଯାଇ ଦରଜା ଖୋଲିଲା ଓ ଦୁଇଜଣ ସ୍ତ୍ରୀଲୋକ ଯୁଗ୍‌ନାକୁ ନେଇ ବଡ଼ ଘରଟିକୁ ଆସିଲେ । ଗାଆଁର ଝିଅମାନେ ଯୁଗ୍‌ନାକୁ ବେଢ଼ିକରି ରହିଥାଆନ୍ତି । ସେମାନଙ୍କର ପୋଷାକପତ୍ର ଭିତରେ ସେମାନେ ଏପରି ଚହଟସୁନ୍ଦର ଦେଖାଯାଉଥାନ୍ତି ଯେ ଅନାଇ ଦେଲାବେଳକୁ ସେମାନେ ସମସ୍ତେ ମିଶି ମଣିଫୁଲରେ ଗୁନ୍ଥା ହୋଇଥିବା ଗୋଟିଏ ହାରପରି ମନେହେଉଥାନ୍ତି । ଆଉ ସେହି ହାରଟିର ମଝିରେ ସଜେଇଥିବା ଗୋଟିଏ ଗୋଲାପଫୁଲ ପରି ଯୁଗ୍‌ନା ଠିଆ ହୋଇଥାଏ । ବସନ ଓ ଭୂଷଣଦ୍ୱାରା ବିଭୂଷିତ ହୋଇ ସେ ଆଜି ସଜେଇଥିବା ଗୀର୍ଜାର ଶୋଭାଯାତ୍ରାରେ ବାହାରୁଥିବା ଗୋଟିଏ ବିଜୟପ୍ରତିମା ପରି ଦିଶୁଥାଏ ।

ତା'ପରେ କୁଣିଆମାନେ ଆପଣାର ଯାଗରା କଣ୍ଠରେ ଗୀତ ଗାଇବାକୁ ଆରମ୍ଭ କଲେ ।

ବୋରନା ଆଗକୁ ଆସି ଯୁଗ୍‌ନାର ହାତ ଧରିଲା । ଦୁହେଁ ଘରର କୋଠା ଉପରେ ଆଣ୍ଠୁ ମାଡ଼ି ବସିଲେ, ସେମାନଙ୍କ ଉପରେ ଗୋଟିଏ ଦେବତା ମୂର୍ତ୍ତି ଧରି ଡୋମିନିକଭା କ୍ରସ ଚିହ୍ନ ଅଙ୍କିତ କରିଦେଲା ଏବଂ ତା'ପରେ ସେମାନଙ୍କ ଉପରେ ମଙ୍ଗୁଳା ହୋଇ ରଖା ହୋଇଥିବା ପାଣି ନେଇ ଛିଞ୍ଚି ଦେଲା । ଅଶ୍ରୁ ଛଳଛଳ ହୋଇ ଯୁଗ୍‌ନା ମାଆର ଗୋଡ଼ତଳେ ଲୋଟିପଡ଼ିଲା । ମାଆକୁ ଓ ଉପସ୍ଥିତ ଅନ୍ୟାନ୍ୟ ସ୍ତ୍ରୀଲୋକମାନଙ୍କୁ ବିହ୍ୱଳ-ଭାବରେ କୁଣ୍ଢାଇ ଧରି ସେ ସମସ୍ତଙ୍କଠାରୁ କ୍ଷମା ମାଗିଆସିଲା ଓ ବିଦାୟ-ନେଲା । ସମସ୍ତେ ଖାଲି କରିକରି ହୋଇ କାନ୍ଦିବାରେ ଲାଗିଥାନ୍ତି ।

ସୁଜ୍‌କାର କାନ୍ଦ ସମସ୍ତଙ୍କର କାନ୍ଦଠାରୁ ବଳିପଡ଼ୁଥାଏ, ମୃତା ମା'ଆର କଥା ଆଜି ତା'ର ଖୁବ ମନେ ପଡ଼ୁଥାଏ ।

ସମସ୍ତେ ଘର ବାହାରକୁ ଯାଇ ଚାଲିବାକୁ ଆରମ୍ଭକଲେ । ଗୀର୍ଜାଘର ତ ମୋଟେ ଖୋଜେ ବୋଲି ବାଟ, ତେଣୁ ଚାଲିକରି ଗଲେ ଆଦୌ ସମୟ ଲାଗିବ ନାହିଁ ।

ତା'ପରେ ବରଘର କୁଣିଆମାନେ ସ୍ୱଗ୍‌ନାକୁ ସାଙ୍ଗରେ ଧରି ଗଲେ ସ୍ୱଗ୍‌ନାର ମନରେ ଆଜି ଖୁବ ଆନନ୍ଦ, ତା'ର ଲୁହ ଛଳଛଳ ମୁହଁଉପରେ ସ୍ମିତହାସ୍ୟର ରେଖାମାନ ଉକୁଟି ଉଠୁଥାଏ । ତାକୁ ଦେଖି ସତେଅବା ବସନ୍ତ ସମୟରେ ସଦ୍ୟ କଅଁଳ ଉଠିଥିବା ଗୋଟିଏ ବୁଦାପରି ମନେହେଉଥାଏ । ସମସ୍ତଙ୍କର ଆଖି ଆଜି କେବଳ ତାହାରି ଉପରେ । ମୁଣ୍ଡର ବାଳ ବେଣୀ ବନ୍ଧାହୋଇ ସୁନାଫୁଲରେ ଝଟକି ଉଠୁଛି । ମୁଣ୍ଡ ଉପରୁ ନାନାରଙ୍ଗର ଝଲମଲ ଫିତାମାନ କାନ୍ଧକୁ ଲମ୍ବି ରହିଛି । ପରିହିତ ଶୁଭ୍ରବସନଟି ନାନଠାଣିରେ ଆସି ଅଣ୍ଟା ଉପରେ ଖୋସା ହୋଇଛି । ତା'ର ବେକରେ କେତେ ପୋହଳା ଆଉ କଣ୍ଠିର ମାଳ ଲମ୍ବି ରହିଛି ଓ ସ୍କର୍ଟର ଅଧଯାଏ ଘୋଡ଼ାଇକରି ରଖିଛି ।

ଝିଅମାନେ ମାଥିଆସ୍‌କୁ ସାଙ୍ଗରେ ଧରି ଯାଉଥାନ୍ତି ।

ଜଙ୍ଗଲ ଭିତରେ ସୁନ୍ଦର ପାଇନ୍ ଗଛଟି ପାଖରେ ଝଙ୍ଗା ହୋଇ ବଢ଼ିଥିବା ଓକ୍‌ଗଛ ଯେପରି ଦେଖାଯାଏ, ଆଜି ସ୍ୱଗ୍‌ନା ପାଖରେ ବୋରିନାକୁ ଠିକ୍ ସେମିତ ଦେଖାଯାଉଛି । ଚାଲିଗଲାବେଳକୁ ବୋରିନାର ଶରୀର ଦୋହଲି ଯାଉଥିବା ପରି ମନେହେଉଛି ଓ ସେ ରାସ୍ତାର ଏପାଖ ସେପାଖକୁ ଅନାଇଅନାଇ ଯାଉଛି । ଏହି ମଣିଷଭିଡ଼ ଭିତରେ କୋଉଠି ଆନ୍ତେକ୍‌କୁ ଦେଖିଲା ପରି ତା'ର ମନେହେଉଥାଏ ।

ତା'ପଛକୁ ଡୋମିନିକକୁ, ତା'ପଛକୁ ମଧ୍ୟସ୍ଥମାନେ, ତା'ପରେ କମାରପୁଅ ଓ ତା'ର ପରିବାର, ସେଇଠୁ ୟୁଜ୍‌କା ଏବଂ ତା'ପରେ ଆମନ୍ତ୍ରିତ ଅନ୍ୟ ନ୍ୟ ପରିବାରର କୁଣିଆମାନେ ।

ଏବଂ ସେମାନଙ୍କ ପଛରେ ଗାଁଆଁ ଯାକର ଆଉ ସମସ୍ତେ ।

ସେତେବେଳକୁ ସୂର୍ଯ୍ୟ ଜଙ୍ଗଲ ଉପରକୁ ଚାଲି ପଡ଼ିଲାଣି, ରାସ୍ତାଘାଟ, ପୋଖରୀ ଓ ଗାଆଁର ବାସଘରମାନ ରକ୍ତବର୍ଣ୍ଣ କିରଣରେ ସ୍ନାନ କରୁଥିଲା ପରି ମନେହେଉଚି ।

ଏହି ରକ୍ତବର୍ଣ୍ଣର ରଞ୍ଜନ ମଧ୍ୟରେ ଶୋଭାଯାତ୍ରାଟି ଆଗକୁ ଆଗକୁ ଚାଲିଆସେ । ସେମାନଙ୍କର ଦେହର ରଙ୍ଗବେରଙ୍ଗ ପରିଧାନ ଓ ଅଳଙ୍କାରମାନ ଏହି କିରଣରେ ଚକ୍‌ଚକ୍ ହେବାରେ ଲାଗିଥାଏ, ଅନାଇ ଦେଲା ବେଳକୁ ଆଖି ଝଲସି ହୋଇଯାଉଥାଏ । ମନେହେଉଥାଏ ଏକାବେଳେକେ ସବୁ ଫୁଲ ଫୁଟିଉଠିଥିବା ଗୋଟାଏ ଫୁଲକିଆରୀ ଯେପରି ଆଜି ହଠାତ୍ ଧୀର ପାଦ ପକାଇ ପବନରେ ଦୋହଲି ଦୋହଲି ଆଗକୁ ଯିବାରେ ଲାଗିଚି ।

ଝିଅମାନେ ଅବିରାମ ଭାବରେ ଗୀତ ଗାଇବାରେ ଲାଗିଚନ୍ତି ।

ବାଟଯାକ ଡୋମିନିକର ଖାଲି ବାରବାର ଝିଅକୁ ଅନାଇବାରେ ଲାଗିଚି । ତା'ର ମୁହଁ ଉପରେ ଧାରଧାରହୋଇ ଲୁହ ବହିଯାଉଚି ।

ସେମାନେ ଯାଇ ପହଞ୍ଚିବା ପୂର୍ବରୁ ଆମ୍ବ୍ରୋଜ୍ ଗୀର୍ଜାର ପ୍ରଦୀପମାନ ଲଗାଇଦେଇ ସାରିଥିଲା ।

ସେମାନେ ଦୁଇଦୁଇ ଜଣ ହୋଇ ଉପାସନାବେଦୀ ଆଡ଼କୁ ଯିବାକୁ ଲାଗିଲେ । ପାଦ୍ରୀ ମଧ୍ୟ ଠିକ୍ ସେତିକିବେଳକୁ ଧର୍ମମଣ୍ଡପ ପଛରୁ ଆଗକୁ ବାହାରିଆସିଲେ ।

ବାହାଘର ସରିବାକୁ ଆଦୌ ବେଶୀ ବେଳ ଲାଗିଲାନାହିଁ । କାରଣ ପାଦ୍ରୀଙ୍କର ଜଣେ ରୋଗୀ ଦେଖିଯିବାକୁ ଥିଲା ଏବଂ ସେଥିପାଇଁ ସେ ଖୁବ ତରତର ହେଉଥିଲେ । ଗୀର୍ଜାରୁ ଫେରିବାବେଳକୁ କୁଣିଆ ଓ ଝିଅମାନେ ଗୀତ ଗାଇଗାଇ ଆସିଲେ ।

ଡୋମିନିକର ଆଗରେ ଦଉଡ଼ିଆସି ଘରେ ପହଞ୍ଚିଲା ଓ ଅନ୍ୟସମସ୍ତେ ଆସି ପହଞ୍ଚିଲାବେଳକୁ ସେ ଦୁଆରବନ୍ଧରେ ନବବିବାହିତ ଦମ୍ପତିଙ୍କୁ ସ୍ୱାଗତ କରିବାଲାଗି ଠିଆ ହୋଇଥିଲା । ଆଗ ସେମାନଙ୍କୁ ରୁଟି ଓ ଲୁଣ ଦେଇସାରିବା ପରେ ସେ ପୁଣିଥରେ ଅନ୍ୟମାନଙ୍କୁ ସ୍ୱାଗତ କଲା ଓ ଘର ଭିତରକୁ ଡାକିଆଣିଲା ।

ବାଜା ଓ ଗୀତ ଆରମ୍ଭ ହୋଇଗଲାଣି । ଦୁଆରବନ୍ଧରେ ଆସିଲାବେଳେ ଯିଏ ଯେଉଁ ସ୍ତ୍ରୀଲୋକକୁ ଆଗ ହାତକୁ ପାଇଲା, ତାକୁ ଧରି ନାଚବାଲାଗି ଆଗଭର ହୋଇ ଆସିଲା । କିଛିକ୍ଷଣ ପରେ ସମସ୍ତେ ଯାଉଁଳ ଯାଉଁଳ ହୋଇ ନାନାରଙ୍ଗର ଗୋଟିଏ ସର୍ପାକୃତିରେ ଘରଭିତରେ ନାଚିବାକୁ ଲାଗିଲେ । କିଏ କେତେପ୍ରକାର ଠାଣିରେ ବୁଲିଯାଉଥାନ୍ତି, ମୋଡ଼ ଭାଙ୍ଗି ଯାଉଥାନ୍ତି ଓ କଡମ୍ବଗୁଡ଼ିକୁ ଦୋହଲାଇ ଦେଉଥାଆନ୍ତି । ସେମାନଙ୍କର ନୃତ୍ୟରତ ପଦର ପତନଶବ୍ଦରେ ଘରଟାଯାକ ଦୁଲ୍ ଦୁଲ୍ କମ୍ପିବାକୁ ଲାଗିଲା । ସବାଆଗରେ ବୋଉନା ଆଉ ସୁଗ୍ନା ଓ ସେମାନଙ୍କ ପଛରେ ଧାଡ଼ି ବାନ୍ଧି ଆଉ ସମସ୍ତେ !

ଘର ଭିତରେ ଆଲୁଅ ଜଳି ଝଲମଲ ଦେଖାଯାଉଥାଏ, ଏହି ଆନନ୍ଦମତ୍ତ ନୃତ୍ୟର ଘୂରୁପ୍ରଭାବରେ ସତେଅବା ଗୃହପାର୍ଶ୍ୱରେ କାନ୍ଥଗୁଡ଼ାକ ଭୁଷୁଡ଼ି ଭାଙ୍ଗି ପଡ଼ିବ ବୋଲି ମନେ ହେଉଥାଏ ।

ଏହା ଅସଲ ନୃତ୍ୟର କେବଳ ଉପକ୍ରମମାତ୍ର । ତା'ପରେ କେତେ ମିନିଟ୍ ପରେ ପୁରୁଣା ରୀତି ଅନୁସାରେ କନ୍ୟାର ସମ୍ମାନରେ ପ୍ରଥମ ନୃତ୍ୟଟି ଆରମ୍ଭ ହେଲା । ଉପସ୍ଥିତ ସମସ୍ତେ କାନ୍ଥକୁ ଲାଗି ଠିଆ ହୋଇଗଲେ, ମଝିରେ ପୁଅମାନେ ଗୋଲକରି ଠିଆହେଲେ ଓ ତାହାରି ମଝିରେ ସୁଗ୍ନା ନାଚିବାକୁ ଆରମ୍ଭକଲା । ନାଚବାଲାଗି ପାଦ ପକାଇଲା ମାତ୍ରକେ ତା'ର ଧମନିର ରକ୍ତ ସ୍ପନ୍ଦିତହୋଇ ଉଠିଲା । ତାହାର ଘନନୀଳ ଆଖିଦୁଇଟି ଚକଚକ ଚମକିବାକୁ ଲାଗିଲା, — ତାହାର ସମସ୍ତ ମୁଖମଣ୍ଡଳ ଉଦ୍ଭାସିତ ହୋଇ ଉଠିଲା । ସୁଗ୍ନାକୁ ଅନେକ ସମୟ ପର୍ଯ୍ୟନ୍ତ ନାଚିବାକୁ ହେଲା । ପ୍ରତ୍ୟେକ ଯୁବକ ସହିତ ଘରର ଗୃହପାର୍ଶ୍ୱରେ ତାକୁ ଅନ୍ତତଃ ଗୋଟାଏ ଘେର ବୁଲି ଆସିବାକୁ ପଡ଼ିଲା ।

ବାଜା ବଜାଉଥିବା ଲୋକମାନେ ଥକିଗଲେ, କିନ୍ତୁ ସୁଗ୍ନା ଥକିବାକୁ ନାହିଁ । ତା'ର ବିହ୍ୱଳତା ଯେପରି କ୍ରମେ ଅଧିକରୁ ବଢ଼ିବାରେ ଲାଗିଛି । ଟୋକାମାନେ ଆନନ୍ଦରେ ମତ୍ତ ହୋଇପରି ଟେବୁଲ୍ ବାଡ଼େଇ ତାଳଦେବାରେ ଲାଗିଛନ୍ତି ।

ସମସ୍ତଙ୍କ ସହିତ ନାଚସାରିବା ପରେ ସବାଶେଷରେ ସେ ବର ସହିତ ନାଚିବାକୁ ଗଲା । ବୋଉନା ଏତେବେଳଯାଏ ଅପେକ୍ଷା କରି ରହିଥିଲା, ବର୍ତ୍ତମାନ ଫାଙ୍କକରି ଆଗକୁ ଡେଇଁପଡ଼ି ବାହାରିଆସିଲା । ସତେଅବା ଗୋଟାଏ ବାଘପରି ଆସି ସେ ଯୁବତୀକୁ ମାଡ଼ିବସିଲା, ତାକୁ ଅଣ୍ଟାପାଖରୁ ଧରିନେଇ ଝଡ଼ବେଗରେ ନାଚିବାକୁ ଲାଗିଲା, ଓ ବାଜାବଜାଳୀମାନଙ୍କୁ ନିର୍ଦ୍ଦେଶ ଦେଲା !

"ବଜାଅ ପିଲାଏ, ଭଲକରି ବଜାଅ, ଆହୁରି ଜୋରକରି ବଜାଅ !"

ସବୁ ବାଦ୍ୟଯନ୍ତ୍ର ଏକାବେଳେକେ ନିନାଦିତ ହୋଇ ଉଠିଲେ । ସମସ୍ତ ଘରଟି ଆକୁଳ ଉତ୍ତେଜନାରେ ଥରଥର କମ୍ପିବାକୁ ଲାଗିଲା ।

ଘରଯାକର ମଣିଷ ବିସ୍ମିତ ଓ ଅପଲକ ନୟନରେ ଏହି ନୃତ୍ୟୋଲ୍ଲାସକୁ ଦେଖିବାରେ ଲାଗିଥାଆନ୍ତି । ବୋଉନାର ଚିତ୍ତ ଆଜି କୌଣସି କ୍ଳାନ୍ତି ମାନିବାକୁ ପ୍ରସ୍ତୁତ ନୁହେଁ । ଏହି ଯୁଗଳନୃତ୍ୟର ପ୍ରୋତ୍ସାହନ ପାଇ ଆହୁରି କେତେଜଣ ମଧ୍ୟ ଭଲମନ୍ଦ ଭୁଲି ପାଖରେ ଠିଆହୋଇଥିବା ଗୋଟିଏ ଗୋଟିଏ ଝିଅଙ୍କୁ ଧରି ନାଚରି ଭଉଁରି ବୁଲିବାକୁ ଆରମ୍ଭ କରିଦେଲେ ।

ଶେଷକୁ ଯୁବତୀ ହାଲିଆ ହୋଇ ପଡ଼ିଲା । ତାହାର ବାହୁଦୁଇଟା ଅବଶ ହୋଇ ଆସିଲା । ତହୁଁ ବୋଉନା ନାଚିବା ବନ୍ଦକରି ତାକୁ ଆଉ ଘର ଭିତରକୁ ନେଇଗଲା ।

"ତୋର ସତେ କେଡ଼େ ଉତ୍ସାହ, କେଡ଼େ ସରାଗ ! କୋଉ ଟୋକା ଭଲ ତୋ'ର ସରିହେବ କହିଲୁ ?"—ପେଷଣିଆ ଘରର ଗୃହସ୍ଥ ବୋଉନାକୁ ବାହାବାହା ଦେଇ କହିଲା "ଆଜିଠାରୁ ତୁ ମୋର ଧରମଭାଇ ହେଲୁ । ତୋ'ର ପହିଲି ପିଲାକୁ ତୁ ମୋ'ନାଆଁରେ ଦାଆଁ ଲାଗି କରାଇବୁ, ତୋ'ପାଖରେ ମୋ'ର ଏହି ମାଗୁଣି ରହିଲା ।"—କହି ସେ ବୋଉନାର ବେକରେ ଆପଣାର ହାତଟାକୁ ନେଇ ଲମ୍ବାଇଦେଲା । ସେତେବେଳକୁ ବାଜା ବନ୍ଦହୋଇ ଗଲାଣି ଓ ମିଠାଇ ବଣ୍ଟା ଆରମ୍ଭ ହେଲାଣି ।

ଜୋମିନିକର୍ଣ୍ଣ ଆଉ ତା'ର ଦୁଇ ପୁଅ କମାରପୁଅ ଆଉ ସ୍ପଗ୍ସ୍ଙ୍କ ସହିତ ମିଶି ଏପାଖସେପାଖ ଦଉଡ଼ାଧାପଡ଼ା କରି ଖାଇବା ପରଶିବାରେ ଲଗିଚନ୍ତି । କିଏ ମଦ ବୋତଲ ଓ ପୁଣି ଏ ଗିଲାସ ନେଇ ଦଉଡ଼ିଛି ; ସ୍ପୁକ୍ନା ଓ ଅନ୍ୟ ସ୍ତ୍ରୀଲୋକମାନେ କୁଲାରେ ପାଉଁରୁଟି ଓ ଅନ୍ୟ ପିଠାପଣା ଧରି ଅତିଥିମାନଙ୍କ ପାଖକୁ ଦଉଡ଼ିଚନ୍ତି ।

ସାଢକୁ ପୁଣି ରାତିଭୋଜନ ପରିବେଷଣ କରାଗଲା । ବରକନ୍ୟା ଆଗ ଯାଇ ବସିଲେ, ତା'ପରେ ଅନ୍ୟମାନେ ଯାଇ ବସିପଡ଼ିଲେ । ଗାଆଁରେ ଯେଉଁମାନଙ୍କର ଖାତିର ବେଶୀ, ବୟସ ବେଶୀ, ବା ସମ୍ପତ୍ତି ବେଶୀ, ସେମାନଙ୍କଲାଗି ବିଶେଷ ଭାବରେ ସ୍ଥାନ କରାଯାଇଥିଲା । ପ୍ରଥମେ ସମସ୍ତେ ଚୁପ୍‌ଚାପ୍ ହୋଇଗଲେ ଓ ପ୍ରାର୍ଥନାମନ୍ତ୍ର ପଢ଼ାଗଲା । ତା'ପରେ ବରବଧୂଙ୍କର ଦୀର୍ଘ ଜୀବନ ଓ ସୁଖ କାମନା କରି ଗୋଟିଏ ଗିଲାସ ଚାରିପାଖରେ ବୁଲିଗଲା । ତା'ପରେ ଗୀତ ଗାଇଗାଇ ରାନ୍ଧୁଣୀମାନେ ଗୋଟିଏ ବଡ଼ ପାତ୍ରରେ ବାମ୍ଫ ବାହାରୁଥିବା ଖାଦ୍ୟସାମଗ୍ରୀ ନେଇ ଘରଭିତରକୁ ଆସିଲେ । ବାଜାଦାରମାନେ ଧୀରତାନରେ ସଙ୍ଗୀତ ପରିବେଷଣ କରିବାରେ ଲଗିଥାନ୍ତି ଓ ଭୋଜନର ଆମୋଦ ବୃଦ୍ଧି କରୁଥାନ୍ତି ।

ତା'ପରେ ସମସ୍ତ ସନ୍ତର୍ପଣରେ ହାତ ଚଳାଇଲେ । ସମସ୍ତେ ଚୁପ୍‌ଚାପ, କେହି ଆଉ କାହାରି ସହିତ କଥାବାର୍ତ୍ତା କରୁନାହାନ୍ତି । କେବଳ ହାପୁଡ଼ିବା ଶବ୍ଦ ଓ ଚାମଚର ଝଣଝଣ ବ୍ୟତୀତ ଆଉ କିଛି ଶୁଣାଯାଉନଥାଏ । ଖାଇବାଟା କିଛିଦୂର ଆଗେଇଗଲା ପରେ କମାରପୁଅ ଆଉଗୋଟିଏ ବୋତଲ ନେଇ ଚାରିପାଖରେ ବୁଲାଇଆଣିଲା ଏବଂ ଏତେବେଳେଯାଇ ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ଆରମ୍ଭ କଲେ ।

ସ୍ପଙ୍କନାର ଆଜି ଖାଇବାକୁ କୌଣସି ରୁଚି ନାହିଁ । ବୋଧହୁଏ ତାକୁ କେତେପ୍ରକାରେ ବାଧ କରୁଛି, କେତେପ୍ରକାରେ ପ୍ରବର୍ତ୍ତାଉଛି, ଠିକ୍ କୌଣସି ପିଲାକୁ ଖାଇବାଲାଗି ଫୁସୁଲାଇବା ପରି ସେ ତାକୁ ଫୁସୁଲାଇବାରେ ଲଗିଛି । କିନ୍ତୁ ଯେଁ ଆଗରେ ବଢାହୋଇ ଥୁଆହୋଇଥିବା

ମାଉଁସରୁ ମଧ୍ଯ ଝଣ୍ଟେହେଲେ ଖାଇବାକୁ ରାଜି ନୁହେଁ ! ତାକୁ ଭାରି ଗରମ ଲାଗୁଚ, ଭାରି ଥକାଥକା ଲାଗୁଚ ।

''ସ୍ବଗ୍‌ନା, ସତରେ ତୋ'ର ପେଟ ପୂରିଲା ନା ମିଛରେ କହୁଚୁ ? ସ୍ବଗ୍‌ନା!, ମୋ'ରାଣୀ, ତୋ'ର ବୋଉପାଖରେ ତୁ ଯେମିତ ଥିଲୁ, ମୋ'ଘରେ ଯାଇ ମଧ୍ଯ ଠିକ୍ ସେହି ସୁଖରେ ରହିବୁ । ସାଆନ୍ତାଣୀ ହୋଇ ରହିବୁ । ମୁଁ ଆଉଗୋଟାଏ ଗୁକରାଣୀ ରଖିବ, ଯେପରି ତତେ ଗୁଣ୍ଡାଏ କାମ କରିବାକୁ ନପଡ଼େ !''—ସେ ଗଲା ଚପିଚପି କହୁଥାଏ ଏବଂ ଦେଖୁଥିବା ଲୋକମାନେ କ'ଣ କହିବେ ବା ନକହିବେ, ସେଥିପ୍ରତି କୌଣସି ଭ୍ରୂକ୍ଷେପ ନକରି ଅଶେଷ ସବାଗରେ ସ୍ବଗ୍‌ନାର ଆଖିଆଡ଼କୁ ଅନାଇ ରହୁଥାଏ । ଲୋକମାନେ ଅଖର ଖୋଲାଖୋଲି ତାମସା କରିବାକୁ ଆରମ୍ଭ କରିଦେଲେ ।

''ବିଲେଇ ମାଉଁସକୁ ଛିଙ୍କରହୁଥିଲା ପରି ସେ ଆଖି କାଢି ଅନାଇ ରହିଚ !''

''ବୁଢ଼ା କେମିତ ଦେଖାଇ ହେଉଚ ଦେଖ ! ତା'ଆଗରେ ଗଞ୍ଜା କୁକୁଡ଼ା ମଧ୍ଯ ହାର ମାନିଯିବ !''

ଆରେ, ଅଜା ବୋରି ନା ଆଖି ସୁଖ କରୁଚ !''

ସମସ୍ତେ ଠୋ' ଠୋ' ହୋଇ ହସିଉଠିଲେ । ରାନ୍ଧୁଣୀମାନେ ଖାଦ୍ୟସାମଗ୍ରୀ ନେଇ ପୁଣି ପହଞ୍ଚିଲେ ।

''ସ୍ବଗ୍‌ନା, ଇଆଡ଼େ ଅନାଇଲୁ, ମୁଁ ଗୋଟାଏ କଥା କହିବ, ଶୁଣ !'' – ପଧାନେ କହିଲେ । ''ମୁଁ ତୋ'ର ପହିଲି ପିଲାର ଧରମବାପା ହେବ ।''—ସ୍ବଗ୍‌ନାର ଆଖି ଉପରେ ଲୋଭାସକ୍ତ ଦୃଷ୍ଟି ନିକ୍ଷେପ କରୁକରୁ ସେ କହିବାକୁ ଲାଗିଲେ ।

ଏକଥା ଶୁଣି ସ୍ବଗ୍‌ନା ସରମରେ ଗୋଟାସୁଦ୍ଧା ରଙ୍ଗା ପଡ଼ିଗଲା । ସେଠାରେ ଥିବା ସ୍ତ୍ରୀଲୋକମାନେ ଏହା ଲକ୍ଷ୍ୟ କରିପାରି ଅଧିକ ଜୋରରେ ହସିଉଠିଲେ ଓ ଆହୁରି ଅଧିକ ଉତ୍ସାହରେ ତାକୁ ଥଟ୍ଟା କରିବାକୁ ଲାଗିଲେ । ଗେରସ୍ତ ସହିତ ତା'ର କିପରି ବ୍ୟବହାର କରିବା ଉଚିତ

ବା ଅନୁଚିତ, କେହିକେହି ଏ ବିଷୟରେ ମଧ୍ୟ ତାକୁ ପରାମର୍ଶ ଦେବାକୁ ଆରମ୍ଭ କଲେ ।

"ସବୁଦିନେ ତୁ ନିଆଁ ପାଖରେ ତା'ପାଇଁ ଚଢେଇପରିର ବିଛଣା ପାରିଦେବୁ ଲୋ, ନହେଲେ ବୁଢ଼ାକୁ ଭାରି ଥଣ୍ଡା ଲାଗିବ ।"

"ହଁ, ବୁଢ଼ାକୁ ଭାରି ଚର୍ବି ଖାଇବାକୁ ଦେବୁ : ତା'ହେଲେ ତା'ର ବଳ ଖସି ପଡ଼ିବନାହିଁ ।"

"ତା' ବେକ ଗୁରିପାଖରେ ତୋ' ବାହାକୁ ଲମ୍ବାଇଦେଇ ତାକୁ ଆଦର କରିବୁ, ବୁଝିଲୁ ?"

"ତାକୁ ତୁ ଜଅଁଳ ହାତରେ ଚଳାଇବୁ, ଯେପରି ତାକୁ ପରିଶ୍ରମ ଲାଗିବନାହିଁ !"

ଅଶ୍ଳୀଳତାମସା ଏହିପରି ଭାବରେ ବଢିଚାଲିଥାଏ । ସ୍ତ୍ରୀଲୋକମାନେ ବେଶୀ ମଦ ପିଇଲେ ସବୁଦିନେ ସେମାନଙ୍କର ଜିଭ ଉପରେ ଆଉ ସେମାନଙ୍କର କୌଣସି ଅକ୍ତିଆର ରହେନାହିଁ ।

ରାନ୍ଧୁଣୀମାନେ ପୁଣି ଗୀତ ଗାଇଗାଇ ପ୍ରବେଶ କଲେ । ସମସ୍ତେ ତାରିଫ କରି କହିଲେ : "ସେମାନେ ସବୁ ସାମଗ୍ରୀ ଭାରି ବଢିଆ କରି ତିଆରି କରିଚନ୍ତି !"

"ସତ ଏକା । ଏହି ଭୋଜିରେ ମନକଲେ ହଜାରଟଙ୍କା ଖରଚ ହୋଇଥିବ !"

"ଆଲୋ, ତା'ର କୋଉ ଅଭାବ ଅଛି କହିଲୁ ? ଛଅମାଣ ଜମି ପାଉଚି, କ'ଣ ମାହାଲିଆ ?"

"କନ୍ଧୁ ସ୍ତ୍ରୀନାକୁ ଅନେଇଲୁ, ସେ କାହିଁକି ମନଟାକୁ ମାରିଦେଇ ବସିଚି !"

"ସମତା ରଖିବାକୁ । ଦେଖୁନୁ, ବୁଢ଼ା ବୋଉନା କେମିତି କଟାସଙ୍କ ପରି ତା'ଆଡ଼କୁ ଅନାଇଚି ?"

"କଟାସ ନୁହେଁ, ଠିକ୍ ଜଳନ୍ତା ଅଙ୍ଗାର !"

"କିନ୍ତୁ ବୁଢ଼ା ବଞ୍ଚେ ନା ବଞ୍ଚେ ଏହି ବନଟା ଘଟାଇବ ଭାରି କାନ୍ଦବ ।"

"ନାଇଁମ, କାନ୍ଦବ କାହିଁକି ? ସେ କ'ଣ କାନ୍ଦବା ଲୋକ ?"

"ବାହାଘରର ପ୍ରସ୍ତାବ ଯୋଉଦିନ ହେଲା ପଧାନଭାଇଙ୍କୁ ମୁଁ ସେଦିନ ଠିକ୍ ଏହିକଥା କହିଥିଲି !"

"କିନ୍ତୁ ଆଜି ତା'ର କାହିଁକି ଏଠାରେ ଦେଖାନାହିଁ କହିଲୁ ?"

"ତା'ର ପରା ଆସି ମାସ ହୋଇଗଲାଣି । ଆସିବ କେମିତି ?"

"କିନ୍ତୁ ମୁଁ ବାଜି ପକାଇ କହୁଚି, ଖରାଦିନ ପରବ ଆରମ୍ଭ ହେବା ପୂର୍ବରୁ ସ୍ତ୍ରୀନା ପୁଣି ଗାଆଁ ଟୋକାଙ୍କ ପଛରେ ଦଉଡ଼ିବାରେ ଲାଗିଯିବ ।"

"ମାଥିଉ ତ ସେଥିପାଇଁ ଖାଲି ଟାକି କରି ବସିଚି !"

"ମୁଁ ଜାଣିଚି, ସେ କୁଆଡ଼େ ମଦଦୋକାନରେ ଠିକ୍ ଏଇକଥା କହୁଥିଲା ।"

"ବାହାଘରକୁ ତାକୁ ଡକା ହେଲାନାହିଁ ବୋଲି ତା'ର ଭାରି ରାଗ ।"

"ବୁଢ଼ା ଡାକିବାଲାଗି କହୁଥିଲା, କିନ୍ତୁ ଡୋମିନିକଭାଇ ଆପତ୍ତି କଲା । ଗାଆଁ ସାରାକରେ ତାଙ୍କ କଥା କିଏ ନଜାଣିଚି କହିଲୁ ?"

"ସମସ୍ତେ ସିନା କହୁଚନ୍ତି, କିନ୍ତୁ କେହି ଭଲ କିଛି ଦେଖିଚି ?"

"ହଁ, ଆରବର୍ଷ ଫଗୁଣମାସରେ କୁଆଡ଼େ ସେମାନଙ୍କୁ ଜଙ୍ଗଲରେ ବୁଲୁଥିବାର କେତେଲୋକ ଦେଖିଚନ୍ତି ।"

"ଯିଏ ଦେଖିଚି ବୋଲି କହୁଚି, ସେ ନପଟ ମିଛୁଆ, ନପଟ ଚୋର ! ଡୋମିନିକଭାଇ ସହିତ କ'ଣପାଇଁ କଜିଆ ଲାଗିଥିବ, ସେଥିପାଇଁ ହୁଏତ ସେ ତା' ଝିଅନାଆଁରେ ଲଗାଇ କହୁଥିବ !"

"କିନ୍ତୁ ଆଉ ଲୋକମାନେ ତ ପୁଣି ଦେଖିଚନ୍ତି ?"

"ସେସବୁ ଖାଲି ଉଡ଼ାକଥା । ସେଥିରେ ମୋ'ର କ'ଣ ଅଛି ଗୋ'? କିନ୍ତୁ ମୁଁ ଭାବୁଚି ଆନ୍ତୋନ୍ ଆଉ ତା'ର ପରିବାର ପ୍ରତି ବୁଢ଼ା ଭାରି ଅନ୍ୟାୟ ବିଚାର କଲା !"

"ଏହି ଆନ୍ତୋନ୍ ବିଷୟରେ ମଧ୍ୟ କେତେଲୋକ କେତେ କ'ଣ

କହୁଚନ୍ତି ! କହୁଚନ୍ତି, ସେ ବୁଢ଼ୀ କୁଆଡ଼େ କେତେଥର ଏକାଠି ହୋଇ ଏଠିସେଠି ବୁଲୁଥିଲେ ।”— ଏମିତ କଥାବାର୍ତ୍ତା ଚାଲିଲା । ଗାଆଁର କୌଣସି ପରିବାରର ସମ୍ମାନକୁ ଆଉ ସେମାନେ ବାକୀ ରଖିଲେ ନାହିଁ । ଶେଷକୁ ସେମାନଙ୍କର ପାହାର ଆସି ଡୋମିନିକଭ୍ ଉପରେ ପଡ଼ିଲା । ତା'ର ଦୁଇ ପୁଅଙ୍କପ୍ରତି ସହାନୁଭୂତି ପ୍ରକାଶ କରି ସେମାନେ କେତେ କଥା ପକାଇବାକୁ ଲଗିଲେ ।

“ଏଇଟା କ'ଣ ପାପ ହେଉନାହିଁ ? ସିମନ୍‌ର ଦାଢ଼ି ହେଲଣି, ତିରିଶି ବରଷର ମରଦ ହେବାକୁ ବସିଲାଣି, କିନ୍ତୁ ବୁଢ଼ୀ ତାକୁ ବାହା-କରେଇ ଦେଉନାହିଁ । ତାକୁ ଘରଖୁଡ଼ି ଆଉ କୋଉଠିକି ଯିବାକୁ ମଧ୍ୟ ଦେଉନାହିଁ । ଆଉ ଟିକିଏ କ'ଣ ଗଲତି ଦେଖିଲେ ଧୁମାଳି ଉଡ଼ାଇବା ଆରମ୍ଭ କରିଦେଉଚି !”

“ସତରେ ଭାରି ଲାଜକଥା ! ଏଡ଼େ ବଡ଼ ବଡ଼ ଭେଣ୍ଡିଆମାନ, ଘରଟା ଭିତରେ ପଶିରହି ତଳି ଲୋକମାନଙ୍କର ଯାବତ କାମ କରିବାରେ ଲଗିଚନ୍ତି ।”

“ଆଉ ସ୍ୱଗ୍‌ନାର ହାତ କୋଉକାମରେ କୁଆଡ଼େ ବାଜିବ ନାହିଁ ! ତା'ର ସୁନ୍ଦର ହାତ ଅସନା ହୋଇଯିବ ପରା !”

“ପୁଅମାନଙ୍କ ନାଆଁରେ ଜଣପିଛା ପାଞ୍ଚପାଞ୍ଚ ମାଣ ଜମି ଲେଖା-ହୋଇ ରହିଚି । ସେମାନେ ଖୁସିରେ ବାହାହୋଇ ଘର କରିପାରନ୍ତି !”

“ଆଉ ଗାଆଁରେ ଏତେ ବାଡ଼ୁଅ ଝିଅ ଅଛନ୍ତି, କ'ଣ କନିଆଁ ଅପରାପତ ହୁଅନ୍ତେ ?”

“ଆଲୋ ମୋର ମନେଅଛି ପରା, ଏ ବୁଢ଼ୀଟା ମଧ୍ୟ ତା'ର ଝିଅଦିନେ ସ୍ୱଗ୍‌ନାଠାରୁ କୌଣସି ଗୁଣରେ ଊଣା ନଥିଲା ।”

“ଆଲୋ କଥାରେ କହିଚି ପରା, ମୂଳ ଯେମିତି ଡାଳ ସେମିତି, ମାଆ ଯେମିତି ଝିଅ ମଧ୍ୟ ସେମିତି !”

ରାତିଭୋଜନ ସରିବା ସଙ୍ଗେସଙ୍ଗେ ଗୀତବାଦ୍ୟ ମଧ୍ୟ ବନ୍ଦ ହୋଇ-ଗଲା । ବାଜାଦାରମାନେ ଜଳଯୋଗ କରିବାଲଗି ରୋଷେଇଘର ଆଡ଼କୁ ଗଲେ । ତଥାପି ଲୋକମାନଙ୍କର ଆହ୍ଲାଦକୋଳାହଳ ଆଦୌ ବନ୍ଦ

ହୋଇନଥାଏ, ଘରଭିତରେ ସମସ୍ତେ ସମସ୍ତଙ୍କ ସହିତ କଥା କହିବାରେ ଲଗିଥାନ୍ତି, କିଏ କ'ଣ କହୁଚି, ସେକଥା ବୁଝିବା ସମ୍ଭବ ହେଉନଥାଏ ।

ଭୋଜନ ସରିବାପରେ ବିଶେଷ ଅତିଥିମାନଙ୍କୁ ଶର୍ବତ ପରିବେଶଣ କରାଗଲା, ଏବଂ ଅନ୍ୟମାନଙ୍କୁ କଡ଼ା ବିଅର୍ ଓ ଭଡ୍‌କା ମନମୁତାବକ ପିଇବାକୁ ଦିଆଗଲା । ସେତେବେଳକୁ ପ୍ରାୟ ସମସ୍ତଙ୍କୁ ନିଶା ଲାଗି ଆସିଲାଣି, ମୁଣ୍ଡଭିତରଟା ଖାଲି ଉଣ୍ଣାସ ଲାଗୁଚି,— କେତେବେଳେ କ'ଣ ପିଆଯାଉଚି, ଆଉ ସେ ବିଷୟରେ କାହାରି କୌଣସି ଖିଆଲ ନାହିଁ । ଆଉଟିକିଏ ଶୀତଳ ହେବାକୁ ସେମାନେ ଆପଣାଆପଣା କୁରୁତାରୁ ବୋତାମ ଫିଟାଇଦେଲେ, ଟେବୁଲ ଉପରେ ହାତ କଚାଡ଼ି କଥାବାର୍ତ୍ତା ହେଲେ, କେତେବେଳେ ବେକ ଚାରିପାଖରେ ହାତ ବେଢ଼ାଇଦେଇ ପରସ୍ପରକୁ ଆଲିଙ୍ଗନ କରିବାକୁ ଲାଗିଲେ, ସତେଯେପରି ଅତ୍ୟନ୍ତ ଏକାତ୍ମା ଓ ଅନ୍ତରଙ୍ଗ ଭାବରେ ହୃଦୟ ଖୋଲିଦେଇ ସେମାନେ ପରସ୍ପର ଆଗରେ ଦୁଃଖସୁଖର ପେଡ଼ି ମେଲାଇ-ଦେଲେ !

"ସଂସାରରେ ବଞ୍ଚିବା ଅର୍ଥ ଖାଲି ଯାତନା ସହିବା । ମଣିଷଜୀବନର ଗାଡ଼ୀରୁ ଚକା ହୁଗୁଳା ହୋଇ ଗଲାଣି, ତେଣୁ ଆମର କେବଳ ଦୁଃଖ ଭୋଗିବା ହିଁ ସାର ହେଉଚି !"

"ଆଉ ମଣିଷଗୁଡ଼ାକ ବି କୁକୁରଠାରୁ ଆସି ବଳିଲେଣି । ଖଣ୍ଡେ ହାଡ଼ର ଚାରିପାଖରେ ଯେତେ ଧରାପରା ହେଉଚନ୍ତି ।"

"ଏମିତି ପଡ଼ୋଶୀ ପଡ଼ୋଶୀ ଭିତରେ ଏକାଠି ବସି ମଦ ପିଉ-ଥିଲାବେଳେ ପରସ୍ପରର ଦୁଃଖ ପରସ୍ପରକୁ କହିବା ଓ ପରସ୍ପରଠାରୁ ପରାମର୍ଶ ନେବା ବ୍ୟତୀତ, ଆପେ କରିଥିବା ବା ଭୋଗିଥିବା ଭୁଲପାଇଁ କ୍ଷମା ମାଗି-ନେବା ବା କ୍ଷମା ଦେବା ବ୍ୟତୀତ ଏ ଜୀବନରେ ଆଉ କି ସାନ୍ତ୍ୱନା ଅଛି କହିଲ ?"

"ଆଜି ଦିନଟା ଠିକ୍ ସେହିପରି ଆନନ୍ଦରେ କଟିଗଲା । କିନ୍ତୁ ଇଏତ କେବଳ ଗୋଟାଏ ଦିନ !"

"ଆରେ ଆମ ଇଚ୍ଛା କରିବାରେ ବା ନକରିବାରେ କ'ଣ ଅଛି, ଆଜି ଗଲେ ତ କାଲି ଅବଶ୍ୟ ଆସିବ ! କାଲିର ଜୁଆଳି ଅବଶ୍ୟ ଆସି କାନ୍ଧରେ ପଡ଼ିବ, ଦାରିଦ୍ର୍ୟର ପାଞ୍ଚଣ ଧରି ସେ ଅବଶ୍ୟ ତୁମକୁ ପାହାର ପାହାର କରି ପିଟିବ । ଆଉ ନିହୁନିହାଣ ହେଲାପର୍ଯ୍ୟନ୍ତ ସେଇ ଜୁଆଳିକୁ ଟାଣିବା ବ୍ୟତୀତ ମଣିଷର ଆଉ କି ଗତିଅଛି କହିଲ ?"

"କ'ଣ ପାଇଁ ଆମେ ଏତେ ଦୁଃଖ ଭୋଗ କରୁଚୁ, କ'ଣପାଇଁ ଜଣେ ମଣିଷ ଆଉଜଣକ ବିରୁଦ୍ଧରେ ଲଢ଼ିବାକୁ ବାହାରିପଡ଼ୁଚି, ମାଉଁସ ନଥିବା ହାଡ଼ଖଣ୍ଡିକ ପାଇଁ କୁକୁର ମେଳହୋଇ କଜିଆ କରୁଥିବାପରି ମଣିଷ କ'ଣପାଇଁ କଜିଆ କରୁଚି ?"

"ଖାଲି ଦାରିଦ୍ର୍ୟପାଇଁ କ'ଣ ଏସବୁ ହେଉଚି ? ନାଇଁ - ଆମର ଗ୍ରହ ଖରାପ । ଏହି ଦୁଷ୍ଟ ଗ୍ରହ ଆମକୁ ଭୂତପରି ମାଡ଼ିବସି ଆମକୁ ଅନ୍ଧ କରିଦେଉଚି । ଆମର ଆଉ ଭଲ ମନ୍ଦ ବାରିବାକୁ କଳ ପାଉନାହିଁ !'

"ହଁ, ସତକଥା ଏକା । ଦରପୋଡ଼ା ନିଆଁକୁ ଫୁଙ୍କିକରି ଜଳାଇବାପରି ସେ ଆମର ଆତ୍ମାକୁ ଜଳାଇବାରେ ଲାଗିଚି । ସେଇ କୁଟକରି ଆମଭିତରୁ ଲୋଭ, ହିଂସା ଆଉ ଖଳପ୍ରବୃତ୍ତି ଉପୁଜାଇବାରେ ଲାଗିଚି । ସେଇ କୁଟ କରି ଆମ ଭିତରୁ ଲୋଭ, ହିଂସା ଆଉ ଖଳପ୍ରବୃତ୍ତି ଉପୁଜାଇବାରେ ଲାଗିଚି ।"

"ଭଗବାନଙ୍କର ଆଜ୍ଞା ଶୁଣିବାକୁ ଯାହାର କାନ ବଧିର ହୋଇଯାଇଚି, ନରକର ଗୀତବାଇଦ ଶୁଣିବାଲାଗି ତା'ର କାନ ଆଗ ଠିଆହୋଇ ରହୁଚି !"

"ଆଗେ କାଳଟା ଏତେ ଖରାପ ନଥିଲା । ସେତେବେଳେ ସବୁକଥାକୁ ଭାରି ମାନୁଥା ଥିଲା । ସମସ୍ତେ ବଡ଼ମାନଙ୍କୁ ଉଚିତ ସମ୍ମାନ କରୁଥିଲେ, ପରସ୍ପର ସହିତ ମିଳିମିଶି ରହୁଥିଲେ !"

"ପୁଣି ସବୁରି ପାଖରେ ଜମି ଥିଲା, ଆପଣା ଚଷିବାମାନଆଁ ଯଥେଷ୍ଟ ଜମି ଥିଲା, ଗୋଚରଭୂଇଁ ମଧ୍ୟ ଥିଲା, ପଡ଼ିଆ ଥିଲା, ଜଙ୍ଗଲ ମଧ୍ୟ ଥିଲା ।"

"ସେତେବେଳେ ଏଇ ଖଜଣା ଦେବା କଥା କୋଉଠି ଶୁଣାଥିଲ କହିଲ ?"

"ସେତେବେଳେ ପଇସାଦେଇ କେହି ଜଙ୍ଗଲକୁ କାଠ କିଣି ଯାଉଥିଲା ? ଆରେ ବାବୁ, କାଠ ଦରକାର ତ ଗାଡ଼ୀନେଇ ଜଙ୍ଗଲକୁ ଯାଅ, ଆଉ ମନଇଚ୍ଛା କାଠ କାଟି ନେଇଆସ । ବଡ଼ିଆରୁ ବଳି ବଡ଼ିଆ କାଠ କାଟି ଆଣିଲେ ମଧ୍ୟ କେହି କହିବାକୁ ନାହିଁ । ସେତେବେଳେ ଜମିଦାରର ସମ୍ପତ୍ତି ଗୃହୀର ମଧ୍ୟ ସମ୍ପତ୍ତି ହୋଇ ରହିଥିଲା ।"

"ଆଉ ବର୍ତ୍ତମାନ ସେହି ସମ୍ପତ୍ତି କାହାର ନୁହେଁ,— କେବଳ ଇହୁଦୀ-ମାନଙ୍କର, ବା ତା'ଠାରୁ ଆହୁରି ଅଧିକ କାଙ୍ଗାଲମାନଙ୍କର ।"

"ଝାମ୍ପମାରି ନେଉଥିବା ଛଞ୍ଚାଣମାନଙ୍କର ! ...... ପିଅ, ଆଉ ଟିକିଏ ପିଅ ! ଭଡ୍‌କା ପିଇବା କ'ଣ ପାପ ନା କ'ଣ ? ଉଚିତ ପରିମାଣରେ ପିଇଲେ ଓ ଆପଣାର ସାଙ୍ଗସାଥିମାନଙ୍କ ସହିତ ଏକାଠି ବସି ପିଇଲେ ଏଥିରେ ଖରାପ କ'ଣ ଅଛି ? ଭଡ୍‌କା ଖୁବ ଭଲ ଜିନିଷ, ଦେହକୁ ଖୁବ ଉପକାର କରେ, ରକ୍ତ ପରିଷ୍କାର କରିଦିଏ, ମିଜାଜକୁ ମଧ୍ୟ ଥଣ୍ଡାକରେ !"

ଏମିତି ଗପ ଚାଲିଥାଏ, ମଦପିଆ ମଧ୍ୟ ହେଉଥାଏ । ଯାହାର ହୃଦୟରେ ଯେତେକଥା ଲୁଚିକରି ଥିଲା, ସେ କୌଣସି କୃପଣତା ନ କରି ସେସବୁତାକୁ ଏକାବେଳେକେ ଉଦ୍‌ଗାରି ଦେଉଥାଏ । ଅମ୍ବ୍ରୋଜ ସମସ୍ତଙ୍କଠାରୁ ଅଧିକ ବକବକ୍ ହେଉଥାଏ, ସମସ୍ତଙ୍କଠାରୁ ବଡ଼ ପାଟିରେ କଥା କହୁଥାଏ ।

ସବାଶେଷରେ ଇଭା ଓ ଯୁଗୁଷ୍ଟିଙ୍କା ଗୋଟିଏ ପାତ୍ର ହାତରେ ଧରି ଆସି ପହଞ୍ଚିଲେ । ସାଙ୍ଗରେ ଜଣେ ବାଜାଦାର ବୀଣା ବଜାଇ ଚାଲିଥାଏ ଓ ସେମାନେ ଗୀତ ଗାଇ ମାଗୁଣି କରୁଥାନ୍ତି ।

ଭୋଜିସଭାରେ ସମସ୍ତଙ୍କ ପେଟ ପୂରିଥାଏ, ସମସ୍ତେ ଦୁଇପେଟ କରି ମଦ ପିଇଥାନ୍ତି, ସମସ୍ତଙ୍କର ହୃଦୟ ଉଲ୍ଲାସରେ ମତ୍ତ ହୋଇ ରହିଥାଏ । ତେଣୁ ସମସ୍ତେ ଉଦାରହସ୍ତ ହୋଇ ମାଗୁଣି ଥଳିରେ ପଇସା ପକାଇବାକୁ ଆରମ୍ଭ କଲେ, କେହି କେହି ରୌପ୍ୟମୁଦ୍ରା ମଧ୍ୟ ପକାଇଲେ ।

ତା'ପରେ ସମସ୍ତେ ଧୀରେ ଧୀରେ ଟେବୁଲରୁ ଉଠି ବାହାରକୁ ଗଲେ । କେହି ଟିକିଏ ଖୋଲାପବନ ପାଇବ ବୋଲି ଗଲି, କେହି ଆପଣାର ଗପସପ ଚାଲୁ ରଖିବା ଲାଗି ପିଣ୍ଡାକୁ ବା ପାଖରେ ଥିବା ବଡ଼ ଘରଟିକୁ ଗଲି । ଆଉ କେହିକେହି ମଦନଶାରେ ଟଳଟଳ ହୋଇ କାନ୍ଥ ଉପରେ ବା ପରସ୍ପରର ଦେହରେ ଆସି ବାଡ଼େଇ ହୋଇଯିବାକୁ ଲାଗିଲେ, ଠିକ୍ ମେଣ୍ଢାମୁଣ୍ଡ ଯେମିତ ପରସ୍ପର ସହିତ ବାଡ଼େଇ ହୋଇଯାଏ, ସେମିତ ।

କେବଳ ପଧାନେ ଓ ପେଷ୍ଟର୍ଡିଆ ଘରର ଗୃହସ୍ଥ ଏ ପର୍ଯ୍ୟନ୍ତ ଟେବୁଲ ପାଖରେ ବସିରହିଥାନ୍ତି ଏବଂ କ୍ରୋଧୋନ୍ମତ୍ତ ଭାବରେ କଳିଆ କରିବାରେ ଲାଗିଥାନ୍ତି । ଶେଷରେ ଦୁଇଆଡ଼ୁ ଦୁଇଟି ଚଲି ଆସି ପରସ୍ପର ଉପରେ ପଡ଼ିବା ପରି ସେମାନେ ପରସ୍ପରକୁ ଆକ୍ରମଣ କରିବାକୁ ଯାଉଚନ୍ତି, ଠିକ୍ ଏହି ସମୟରେ ଆମ୍ବ୍ରୋଜ ଆସି ସେମାନଙ୍କ ମଧ୍ୟରେ ମିଳାମିଶା କରାଇ ଦେବାକୁ ଚେଷ୍ଟା କଲି ଓ ସେମାନଙ୍କୁ ପୁଣି ଭଡ୍‌କା ପିଇବାକୁ ଯାଚଲି ।

ବାହାରେ ନୀରବ ପ୍ରଶାନ୍ତ ରାତି ବିରାଜମାନ କରୁଚି । ଆକାଶର ସ୍ୱଚ୍ଛ ଚିକଣ ଚନ୍ଦ୍ରକିରଣ ପୋଖରୀ ଉପରେ ଉଜ୍ଜଳ ହୋଇ ପଡ଼ିଚି, ଜଳର ସମତଳଟି କୋଉଠି କ'ଣ ବାଜି ଟିକିଏ ଚହଲିଗଲେ ତାହା ସ୍ପଷ୍ଟ ଦୃଷ୍ଟି-ଗୋଚର ହେଉଚି । ଭାରି ଜୋରରେ ହିମ ପଡ଼ିବାକୁ ଆରମ୍ଭ କଲାଣି, ରାସ୍ତା ଉପରେ ଚାଲିଗଲି ବେଳକୁ ହିମହୋଇ ବସିଯାଇଥିବା ପାଣି କାଚ ଭାଙ୍ଗିଗଲି ପରି ଚୂନା ହୋଇ ଯାଉଚି ଓ ରଜରଜ ଶୁଣାଯାଉଚି । ଝଡ଼୍ ସମ୍ଭବ ପାହାନ୍ତା ହେବାକୁ ଆଉ ବେଶୀ ଡେରିନାହିଁ, କାରଣ ଏଠୁସେଠୁ ଗୋଟାଏ ଦୁଇଟା ଗଞ୍ଜାକୁକୁଡ଼ା ମଧ୍ୟ ଡାକିବାକୁ ଆରମ୍ଭ କରିଦେଲେଣି ।

ପୁଣି ନାଚ ହେବ ବୋଲି ସେମାନେ ବଡ଼ ଘରଟିକୁ ସଜାଇବାରେ ଲାଗିଥାନ୍ତି ।

ବାଜାଦାରମାନେ ମଧ୍ୟ ବିଶ୍ରାମ ନେଇ ସାରିଲେଣି ଓ ଖାଇ ସାରିଲେଣି । ବର୍ତ୍ତମାନ କ୍ଷୀଣ କୋମଳ ମଧୁର ସଙ୍ଗୀତର ପରିବେଷଣ କରି ସେମାନେ ଅତିଥିମାନଙ୍କୁ ଆମନ୍ତ୍ରଣ ଜଣାଉଥାନ୍ତି । ତା'ପରେ ଗୋଟିଏ ପରେ ଗୋଟାଏ କରି ଅବିରାମ ନାଚ ଚାଲିଲା । ଏହି ନୃତ୍ୟୋତ୍ସବର ଆନନ୍ଦକୁ

ବର୍ଣ୍ଣନାକର କହିବା ଆଦୌ ସମ୍ଭବ ନୁହେଁ । କୃଷକକୁଳର ଜୀବନରେ ବିନୋଦ ଭର ଦେବାକୁ ତ ଏହି ନୃତ୍ୟ ଓ ଉତ୍ସବର ପରମ୍ପରା ରହିଆସିଚି !

ଏହିପରି ଭାବରେ ବୋରନା ଆଉ ସ୍ୱର୍ନାର ବିବାହ-ଉପଲକ୍ଷରେ ସେମାନେ ସମସ୍ତେ ନୃତ୍ୟ-ବିନୋଦନର ଏକ ପ୍ରଶସ୍ତ ଅବକାଶ ପାଇଥିଲେ ।

ଏହି ଆନନ୍ଦ-କୋଳାହଳ ବେଳୁଁ ବେଳ ଅଧିକ ମୁଖର ଓ ଉତ୍ତେଜନାମୟ ହେବାରେ ଲାଗିଥାଏ । ପୂର୍ବଦିଗରେ ତେଣେ ପ୍ରତ୍ୟୁଷର ପୂର୍ବସୂଚନା ଦେଖାଗଲଣି, କିନ୍ତୁ ସେ ଦିଗକୁ କାହାରିହେଲେ ଦୃଷ୍ଟି ନାହିଁ । ରାତିର କୃଷ୍ଣ ଅନ୍ଧକାରର ଗାତ୍ର ଭେଦକରି ନୂତନ ଉଷାର ଦ୍ୟୁତିଆଭା ଉଦ୍ଧରି ଆସୁଚି । ଆକାଶରେ ତାରାଗୁଡ଼ିକ ମ୍ଳାନ ହୋଇ ଆସିଲେଣି, ଜହ୍ନ ବୁଡ଼ିଆସୁଚି । ଅରଣ୍ୟର ସୀମାରୁ ହଠାତ୍ ଝଲକାଏ ପବନ ଆସି ଗାତ୍ର ସ୍ପର୍ଶ କରିଦେଇ ପୁଣି କୁଆଡ଼େ ଅନ୍ତର୍ହିତ ହୋଇଗଲା, କ୍ରମେ କ୍ଷୀଣତର ହୋଇ ଆସୁଥିବା ଅନ୍ଧାର ପଛରେ ଗୋଡ଼ାଉ ଗୋଡ଼ାଉ କୁଆଡ଼େ ଅଦୃଶ୍ୟ ହୋଇଗଲା । ବାହାରେ ଝରକା ପାଖରେ, ହିମଭରା ବୃକ୍ଷରାଜିର କାଦୁଆ ଶାଖାଗୁଡ଼ିକ ଝୁଲିକରି ରହିଥାନ୍ତି, ସେମାନେ ସତେଅବା ଘରଭିତରକୁ ଉଙ୍କିମାରି ଚାହିଁବାକୁ ଚେଷ୍ଟା କରୁଥାନ୍ତି । କିନ୍ତୁ ଘରଭିତରେ ଥିବା ଆନନ୍ଦମତ୍ତ ଜନସମୂହ ନୃତ୍ୟ ଓ ଗୀତର ଉଲ୍ଲାସରେ ଆତ୍ମ ବିସ୍ମୃତ ପ୍ରାୟ ହୋଇ ରହିଥାଏ ।

× × × ×

ଘରଭିତରେ ଜଳୁଥିବା ମହମବତୀଗୁଡ଼ିକର ଆଲୋକ କ୍ରମେ ନିଷ୍ପ୍ରଭ ଦେଖାଯାଉଚି, ସକାଳ ହେବାକୁ ଆଉ ବେଶୀ ଡେରି ନାହିଁ । ଘରଭିତରେ ମଧ୍ୟ ସକାଳର ମାଇଆଲୁଅ ବାରିହୋଇ ପଡ଼ିଲଣି । କିନ୍ତୁ ତଥାପି ସେମାନଙ୍କର ନାଚିବାର ନିଶା କମିବାକୁ ନାହିଁ । ଦୋକାନରୁ ବୋତଲକୁ ବୋତଲ ମଦ ମଗାହୋଇ ଆସୁଚି ଓ ମନଇଚ୍ଛା ପିଆହେଉଚି ।

କେତେକ ନାଚନାଚ ଶେଷକୁ ନିରସ୍ତ ହୋଇ ଚାଲିଗଲେଣି । ଆଉକେତେଜଣ କ୍ଳାନ୍ତହୋଇ ଘଡ଼ିକପାଇଁ ହାଲିଆ ମାରୁଚନ୍ତି । ଆଉକେହି ମଦନିଶାରେ ଟୁଳୁଟୁଳୁ ହୋଇ ପିଣ୍ଡାରେ ବା କବାଟ ପାଖରେ ଗଡ଼ଗଡ଼ଉ-

ଚନ୍ତି । ଅଧିକ ନିଶା ଘାରିଥିବା ଅନ୍ୟମାନେ ଯାଇ ବାଡ଼ତଳେ ଚିତ୍‌ହୋଇ ପଡ଼ିରହିଚନ୍ତି । ଅନ୍ୟମାନେ ଅବିଶ୍ରାନ୍ତ ଭାବରେ ନାଚିବାରେ ଲାଗିଚନ୍ତି ।

# ଷୋଳ

ସେ ସେତେବେଳକୁ ଧୂସର ସକାଳସମୟ ହୋଇଗଲାଣି । ଏଇ ମଦଖିଆ ଓ ନାଚଗୀତର ସୁଆଙ୍ଗ ଭିତରେ ଭିତେକ୍ ଭାରି କ୍ଳାନ୍ତ ଅନୁଭବ କରୁଥାଏ । ହଠାତ୍ ସ୍ତ୍ରବୁର୍ଷ୍ଟିଙ୍କର ନିର୍ଦ୍ଦେଶ ପାଇ ସେ ବୋଉନାର ଘରକୁ ଦଉଡ଼ିଗଲା ।

ସେଠାରେ ଠିକ୍ ଗୋଟିଏ ଜୁଳୁଜୁଳିଆ ପୋକପରି ବତୀଟିଏ ମିଞ୍ଜିମିଞ୍ଜି ହୋଇ ଜଳୁଚି । ଝରକାବାଟ ଦେଇ ଭିତେକ୍ ଖଞ୍ଜାଭିତରକୁ ଅନାଇଲା । ଦେଖିଲା ବୁଢ଼ା ଫକୀର ରେକ୍ ଟେବୁଲ୍ ପାଖରେ ବସି ଭଜନମାନ ବୋଲିବାରେ ଲାଗିଚି ।

ଭିତେକ୍ ସିଧା ଗୁହାଳଆଡ଼େ ବାହାରିଗଲା । ଦୁଆରବନ୍ଧ ପାରି ହେବାକୁ ବସିଚି, ଏହି ସମୟରେ ସେ ହଠାତ୍ ଆଶ୍ଚର୍ଯ୍ୟହୋଇ ଚିତ୍କାର କରିଉଠିଲା ଓ ତା'ର ପାଦ ପଛକୁ ହଟିଆସିଲା । କୁଆଡ଼ୁ ଗୋଟାଏ କୁକୁର ବିକଳ ଶବ୍ଦକରି ତା' ଉପରକୁ ଡେଇଁପଡ଼ିଲା ।

"ଆରେ ଲପା ନା ? ତୁ କେତେବେଳେ ପୁଣି ଏଠିକି ଲେଉଟି ଆସିଲୁଣି ! ବିଚରା କୁକୁର !"— ଭାରି ଖୁସିହୋଇ ସେ ସେହି ଦୁଆରବନ୍ଧ ଉପରେ ବସିପଡ଼ିଲା । "ଭାରି ଭୋକ କରୁଚି, ପେଟରେ ଦାନା ପଡ଼ିନାହିଁ, ନୁହଁରେ ?"

ଭୋଜିଭିତରୁ ସହିକରି ସେ ଆପଣା କୁରୁତାଭିତରେ ଖଣ୍ଡେ ମାଉଁସ ଲୁଚାଇକରି ରଖିଥିଲା, ବର୍ତ୍ତମାନ ସେଇଆକୁ କାଢ଼ି କୁକୁରଟିକୁ ଖାଇବାକୁ ଦେଲା । କିନ୍ତୁ ସେତେବେଳେ କୁକୁରଟାର ଖାଇବାଲାଗି ମୋଟେ ମନ

ନ ଥାଏ । ସେ ଭୁକଭୁକ ଆପଣାର ମୁହଁଟାକୁ ନେଇ ଭିଟେକ୍‌ର ଗୁଡ଼ଭିତରେ ଗୁଞ୍ଜିଦେଉଥାଏ ଏବଂ ଖୁବ ଉଲ୍ଲାସରେ କୁଉଁକୁଉଁ ହେବାରେ ଲଗିଥାଏ ।

"ସେମାନେ ତୋତେ କିଛିହେଲେ ଖାଇବାକୁ ଦେଇନାହାନ୍ତି, ନୁହ ରେ ? ସେମାନେ ତୋତେ ତଡ଼ି ବାହାର କରିଦେଇଚନ୍ତି, ନାଇଁ ? — ସେ କୁକୁରର କାନପାଖରେ ଆଦର କରି କହିଲା ଓ ତା'ପରେ ଗୁହାଳ-କବାଟଟାକୁ ମେଲି କରିଦେଇ ଭିତରେ ଯାଇ ଆପଣାର କୁଡ଼୍ୟାର ବିଛଣା-ଉପରେ ଗଡ଼ିପଡ଼ିଲା । "କିନ୍ତୁ ବର୍ତ୍ତମାନ ମୁଁ ତୋର ସବୁ ଖବର ବୁଝିବି, ସବୁ ହେପାଜତ କରିବି, — ତୁ କିଛି ଚିନ୍ତା କରନା !" ସେ ଆପଣାର ଶରୀରଟାକୁ କୁଡ଼ାଉପରେ ଲମ୍ବାଇଦେଲା । କୁକୁରଟି ମଧ୍ୟ ତା'ପାଖରେ ବସି ତା'ର ମୁହଁକୁ ଶୁଙ୍ଘିବାକୁ ଲଗିଲା ।

ଆଖି ପିଛୁଳାକ ଭିତରେ ଦୁହେଁ ନଘୋଡ଼ ନିଦରେ ଶୋଇପଡ଼ିଲେ ।

ଆରପାଖ ଗୁହାଳରୁ ପୀଡ଼ାଜନିତ କ୍ଷୀଣ କଣ୍ଠରେ କୁବା ଡାକୁ ଡାକୁଥାଏ । ଅନେକ ସମୟ ଧରି ଡାକିବାପରେ ମଧ୍ୟ ଭିଟେକ୍‌ର ନିଦ ଭାଙ୍ଗିଲନାହିଁ । ସେ କୁମ୍ଭକର୍ଣ୍ଣ ପରି ଶୋଇ ଘଙ୍ଘୁଡ଼ି ମାରୁଥାଏ ।

ଅବଶ୍ୟ କିଛିକ୍ଷଣ ପରେ ଲପା ତା'ର ତୁଣ୍ଡ ବାରିପାରି ଭୋ' ଭୋ' ହୋଇ ଖୁବ ଜୋରରେ ଭୁକିବାକୁ ଆରମ୍ଭ କଲା ଓ ଭିଟେକ୍‌ର କୁରୁତାକୁ ଦାନ୍ତରେ କାମୁଡ଼ି ଟାଣିବାକୁ ଲଗିଲା ।

"କ'ଣ ହେଲା ?"— ଭିଟେକ ସେଇ ନିଦ ବାଉଳାରେ ପଚାରିଲା ।

"ମତେ ଟୋପାଏ ପାଣି ପିଇବାକୁ ଦେଇଯା' ! ଜରରେ ମୋର ତଣ୍ଟି ଶୁଖିଯାଉଚି, ମୋର ପ୍ରାଣ ଗୁଡ଼ିଯାଉଚି । ଟୋପାଏ ପାଣି !"

ସେହିପରି ନିଦ ଢଳାଢ଼ଳ ଅବସ୍ଥାରେ ଭିଟେକ୍ ଚାହିଁଆଏ ପାଣି ନେଇ ଆସି ତା'ର ମୁହଁପାଖରେ ଆଣି ଧରିଲା ।

"ମୋର ନିଃଶ୍ୱାସ ବନ୍ଦ ହୋଇଗଲା ପରି ଲାଗୁଚି । ଦେହଟା ଖୁବ ଖରାପ ଲାଗୁଚି ! ସେଠି କିଏ କୁଉଁ କୁଉଁ ହେଉଚି ?"

"ଲପା ।"

"ଲପା ?"— କୁକୁରର ମୁଣ୍ଡଟିକୁ ହାତରେ ଧରିବାଲାଗି କୁବା ଅନ୍ଧାର ଭିତରକୁ ହାତ ବଢ଼ାଇଲା । ଲପା ଗୋଡ଼ଗୁଡ଼ାକୁ ଗୁଟିପିଟି ତା'ର ବିଛଣା ଉପରକୁ ଆସିବାଲାଗି ଛନଛନ ହେଉଥାଏ ।

"ଭିଡେକ୍, ଘୋଡ଼ାଙ୍କ ଆଗରେ ଘାସ ପକାଇଦେ' ! ସେଗୁଡ଼ାକ କୋହକାଲରୁ ଖାଲି କୁଣ୍ଡରେ ମୁହଁ ମାରି ପାଟି ଘୁଙ୍କୁଘୁଙ୍କୁ କରିବାରେ ଲଗିଚନ୍ତି । ମୋର ତ ଉଠିବାକୁ ବଳପାଉନାହିଁ...... ତେଣେ କ'ଣ ସେମାନଙ୍କର ନାଚ ଏତେବେଳଯାଏ ଚାଲିଚି ?"— କ୍ଷଣେ ଚୁପ୍ ରହି କୁବା ତା'ପରେ ପଚାରିଲା । ଭିଡେକ୍ ଉଠିଯାଇ ଘୋଡ଼ାମାନଙ୍କ ଆଗରେ କୁଟା ପକାଇ ଦେଉଥାଏ ।

"ସେମାନଙ୍କର ନାଚ ଖରାବେଳ ସରିକି ମଧ୍ୟ ଶେଷ ହେବବୋଲି ମନେହେଉନାହିଁ । ଅନେକେ ପୁଣି ମଦ ପିଇ ଏପରି ଟେର୍ ହୋଇଚନ୍ତି ଯେ ଯାଇ ରାସ୍ତାକଡ଼ରେ ଲମ୍ବିଲମ୍ବି ହୋଇ ପଡ଼ିଚନ୍ତି !"

"ଆରେ ସେମାନେ ଟିକିଏ ସୁଖ କରିନେଉଚନ୍ତି । ଯାଆନ୍ତମାନେ ଟିକିଏ ଆନନ୍ଦ କରୁଚନ୍ତି !"— ଏକ ଗମ୍ଭୀର ଦୀର୍ଘଶ୍ୱାସ ପକାଇ କୁବା କହିଲା ।

"ପେଷଣିଆ ଘରର ଯାଆନ୍ତ ଆସିଥିଲେ ?"

"ହଁ ଆସିଥିଲେ, କିନ୍ତୁ ସହଲ ସହଲ ଚାଲିଗଲେ ।"

"ଅନେକ ମଣିଷ ଆସିଥିଲେ ?"

"ହଁ, ଏକାବେଳେକେ ଅସୁମାରି । ଘରଟାଯାକ ଖାଲି ମଣିଷରେ ପୂରି ରହିଥିଲା !"

"ସମସ୍ତଙ୍କ ଲାଗି ସବୁକଥା ଯଥେଷ୍ଟ ହେଲା ତ ?"

"ଯାହାକୁ ଯେତେ ଇଚ୍ଛା ! ଏତେ ବଡ଼ବଡ଼ ଥାଳୀରେ ମାଉଁସ ପରଶାହେଲା । ଭଡ଼୍କା ଆଉ ମଦରେ ନଈବହି ମାଡ଼ିଗଲା !"

"କନିଆ କେତେବେଳକୁ ଆସିବ !"

"ଉପରଓଳକୁ ।"

"ସେମାନେ ଏତେବେଳଯାଏ ଭୋଜିମଜାରେ ମାତିଚନ୍ତି ! ହେ

ଭଗବାନ ! ମୋ'ପାଟିରେ ଖଣ୍ଡେ ମାଉଁସ ଆଣି ମାରିବ ବୋଲି ମୁଁ କେତେ ଆଶା କରିଥିଲି । ଜୀବନରେ ଅନ୍ତତଃ ଥରେହେଲେ ପିଠା କଟକରି ଖାଇବି ବୋଲି ମୋର କେତେ ଆଶା ଥିଲା !......କିନ୍ତୁ ମୋର ଭାଗ୍ୟକୁ କହିବ— ତେଣେ ଅନ୍ୟମାନେ ଖାଇପାଇ ହେଣ୍ଡିମାରି ହୋ' ହୋ' ହେଉଚନ୍ତି, ଆଉ ମୁଁ ଏଠି ପଡ଼ିପଡ଼ି ଉହୁ ଆହା ହେବାରେ ଲଗିଚ !"

ଭଟେକ୍ ପୁଣି ଆପଣାର ଶୋଇବା ଥାନକୁ ଫେରିଆସିଲା ।

"ଏତେଏତେ କଥା ହେଲା, କିନ୍ତୁ ମୋ 'ର ଏ ଆଖି ଟିକିଏ ହେଲେ ଦେଖିଲାନାହିଁ !"

କୁବା ଚୁପ୍ ହୋଇ ପଡିରହିଥାଏ । ତା'ର ଭିତରଟା ଭାରି ଥକା ଲାଗୁଥାଏ, ମନଟା ଭାରି ମରିଯାଇଥିଲା ପରି ବୋଧ ହେଉଥାଏ । ସେ କେତେ କ'ଣ କହିବବୋଲି ଆକୁଳ ହୋଇ ଉଠୁଥାଏ, କିନ୍ତୁ କିଛି କହିବାଲାଗି ତା'ର ବଳ ପାଉନଥାଏ । ତା'ର ହୃଦୟ ଭିତରଟା କେଉଁ ବେଦନାରେ ଖାଲି କାତରହୋଇ ଯାଉଥାଏ । ଶେଷରେ ଆପଣା ହାତରେ କୁକୁରର ମୁଣ୍ଡଟିକୁ ଆପଡ଼େଇ ଦେଉଦେଉ ସେ କହିଲା :

"ହଉ ହେଲା ! ଭଗବାନ ସେମାନଙ୍କର ମଙ୍ଗଳ କରନ୍ତୁ ! ସେମାନଙ୍କର ଅଧିକରୁ ଅଧିକ ହେଉ । ମୋର କିଛି ନହେଲା ନାହିଁ ପଛକେ, ଅନ୍ତତଃ ସେମାନେ ଏ ଜୀବନରେ ଟିକିଏ ଖୁସୀ କରିନିଅନ୍ତୁ !"

ଏଣେ ତା'ର ଦେହରେ ତାତ ବଢିବାରେ ଲାଗିଥାଏ ଏବଂ ତା'ର ମୁଣ୍ଡଭିତରେ ସବୁ ବାଉଳାବାଉଳା ହୋଇଗଲା ପରି ମନେହେଉଥାଏ । ମୁଣ୍ଡଟାକୁ ଆସ୍ତେଉକୁ ଆଡିବାଲାଗି ସେ ମନେମନେ ପ୍ରାର୍ଥନା କରିବାକୁ ଆରମ୍ଭକଲା ଏବଂ ଆପଣାକୁ ପ୍ରଭୁ ଯୀଶୁଙ୍କର କରୁଣାମୟ ଇଚ୍ଛାର ଅଧୀନରେ ସମର୍ପଣ କରିଦେଲା । କିନ୍ତୁ ଆପଣାର କହୁଥିବା କଥାଗୁଡ଼ାକ ମଧ୍ୟ ସତେଯେମିତି ସେ ମନେରଖି ପାରୁନଥାଏ । ହଠାତ୍ ତା'ର ଆଖିଦୁଇଟା ଉପରକୁ ନିଦ ଘୋଟିଆସିଲା ଏବଂ ତା'ର ଚେତନାର ଉପରୁ କେବଳ ଅଶ୍ରୁମିଶ୍ରିତ ପ୍ରାର୍ଥନାବାକ୍ୟମାନ ଉଚ୍ଚାରିତ ହେବାକୁ ଲଗିଲା । ହାତରେ ମାଳାଟିକୁ ଧରି ସେ ମାଳା ଜପିବାକୁ ଆରମ୍ଭ କଲା ।

ମଝିରେ ମଝିରେ ସେ ଉଠିବସୁଥାଏ, ଶୂନ୍ୟଦୃଷ୍ଟିରେ ଚତୁର୍ଦ୍ଦିଗକୁ ଅନାଉଥାଏ, କିନ୍ତୁ ସତେଯେପରି କିଛିହେଲେ ଠଉରାଇ ପାରୁନଥାଏ ଏବଂ ପୁଣି ମୃତ୍ୟୁସମ ଚେତନାହୀନତା ଭିତରେ ନିମଜ୍ଜିତ ହୋଇ ଯାଉଥାଏ ।

ହଠାତ୍ ତା'ର ନିଦ ଭାଙ୍ଗିଗଲା ଓ ସେ ଭାରି ବଡ଼ପାଟିରେ ଗଅଁ ଗଅଁ ଶବ୍ଦ କରିବାକୁ ଲାଗିଲା । ତେଣେ ଘୋଡ଼ାଗୁଡ଼ାକ ସେହି ଶବ୍ଦଶୁଣି ଘାସ ଛଡ଼ାଇବାକୁ ହେଲେ ଏବଂ କାନ ଠିଆକରି ରହିଲେ ।

"ହେ ଭଗବାନ୍, ସକାଳ ହେବାପର୍ଯ୍ୟନ୍ତ ମୋର ଏହି ପ୍ରାଣଟା ରହିବ କି ନାହିଁ କେଜାଣି ?" — ସେ ବଡ଼ ଆଶଙ୍କିତ ଓ ସନ୍ତ୍ରସ୍ତଭାବରେ ବିଳାପ କରିବାକୁ ଲାଗିଲା । ଆଖିର ଡୋଳାଦୁଇଟା ବୁଲାଇଦେଇ ସେ ଝରକାଆଡ଼କୁ ଚାହିଁବାକୁ ଚେଷ୍ଟା କଲା. ଆସନ୍ନ ପ୍ରଭାତ ଓ ପ୍ରଶାନ୍ତ ହୋଇ ରହିଥିବା ପୃଥିବୀ ଆଡ଼କୁ ଅନାଇ ଦେଖିବାକୁ ଚେଷ୍ଟା କଲା । ଆକାଶ କ୍ରମେ ଧୂସର ହୋଇ ଆସିଲାଣି, ତାରାଗୁଡ଼ିକ ଭାରି ମଉଳିନ ପଡ଼ି ଆସିଲେଣି । ତାହାରି ଭିତରେ ସେ ସୂର୍ଯ୍ୟର ସନ୍ଧାନ କରିବାକୁ ଚେଷ୍ଟାକଲା ।

କିନ୍ତୁ ଦିନ ହେବାକୁ ତଥାପି ଅନେକ ସମୟ ବାକି ଥାଏ ।

ଗୁହାଳ ଭିତରଟା କୁହୁଡ଼ି କରିଥିଲା ପରି ଏପର୍ଯ୍ୟନ୍ତ ଅନ୍ଧାର ହୋଇ ରହିଛି । ଘୋଡ଼ାମାନଙ୍କର ଦେହ-ରେଖାଗୁଡ଼ିକ କ୍ରମେ ଅସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହୋଇଆସୁଛି । ଝରକା ତଳକୁ ଥିବା କାଠର ଥାକଗୁଡ଼ାକ ସେହି ଅସ୍ପଷ୍ଟ ଉଷାଲୋକରେ ପଞ୍ଜରାହାଡ଼ ପରି ଦିଶିଦିଶି ଯାଉଛି ।

ଆଉ ତାକୁ ନିଦ ହେଲାନାହିଁ । ଦେହର ଯନ୍ତ୍ରଣା ତାକୁ ପୁଣି କଷ୍ଟ ଦେବାକୁ ଆରମ୍ଭ କଲାଣି । ତା'ର ଗୋଡ଼ଭିତରେ ସତେଯେପରି କିଏ ଏକାବେଳେକେ କେତେକେତେ ଛୁଞ୍ଚି ମାରିଦେଇ ଯାଉଛି, ଏକାବେଳେକେ କେତେକେତେ ଛୁଞ୍ଚି ଭୁସିଦେଇ ଯାଉଛି । ଭିତରଟାଯାକ କିଏ ଯେପରି ଗୋଟାଏ କୋରଣା ଧରି କୋରି ପକାଉଛି । ଶେଷକୁ ଏହି ପ୍ରବଳ ଯନ୍ତ୍ରଣାକୁ ଆଉ ସହିନପାରି ସେ ପ୍ରାଣପଣେ ଡକାପାରିବାକୁ ଲାଗିଲା । ସେହି ଚିତ୍କାର ଶୁଣି ଭିଟେକ୍ ର ନିଦ ଭାଙ୍ଗିଗଲା ଓ ସେ ପୁଣି ଏଘରକୁ ଆସିଲା ।

"ମରଗଲ ଲୋ ! ଇଲୋ ମୋ' ପ୍ରାଣ ଗ୍ଭଲ୍ଗଲାଉଚ ଲୋ ! ଇଲୋ ମୋତେ'ମାଶପକାଇଲା ଲୋ ! ଭଡେକ୍, ତୁ ଦଉଡ଼ଗଲୁ ଟିକଏ ଆମ୍ବ୍ରୋଜ୍‌କୁ ଡାକଆଣିବୁ ! ହେ ଭଗବାନ୍, ହେ ଠାକୁରେ ! ନହେଲେ ଯାଆ ସ୍ୱଗ୍ଭୁଷ୍ଟିଙ୍କାକୁ ଟିକଏ ଡାକଆଣିବୁ । ହୁଏତ ସିଏ ଆସିଲେ କଛୁ ସାହାଯ୍ୟ କରପାରବ ! ··· ମୁଁ ଆଉ ସହପାରୁନାହିଁ, — ଏଥର ମୋର ପ୍ରାଣ ବାହାରଯିବ !" — ସେ ଖୁବ କରୁଣ ଭାବରେ କାନ୍ଦିବାରେ ଲଗିଥାଏ ।

ସେହପର ନିଦ୍ରାଳସ ଭାବରେ ଭଡେକ୍ ପୁଣି ବାହାଘର ଖୋଳାପାଖକୁ ଦଉଡ଼ଗଲ ।

ସେତେବେଳକୁ ଖୁବ ଜୋରସୋରରେ ନାଚ ଗ୍ଭଲଥାଏ । କନ୍ତୁ ଆମ୍ବ୍ରୋଜ୍ ମଦନଶାରେ ସମ୍ପୂର୍ଣ୍ଣ ଅକର୍ତ୍ତବ୍ୟ ହୋଇ ଘର ସାମନାରେ ଥିବା ରାସ୍ତାଉପରେ ଯାଇ ପଡ଼ଥାଏ । ସେଇଠାରେ ଗଡ଼ୁରୁଣ୍ଡି ଗଡ଼ୁରୁଣ୍ଡି ହୋଇ ଓ ଗୁଣୁଗୁଣୁ ଗୀତଗାଇ ସେ ରାସ୍ତା ଓ ପୋଖରୀ ଦାଢ଼ର ମଝିରେ ଏପାଖ ସେପାଖ ହେଉଥାଏ ।

ଭଡେକ୍ ତାକୁ ଆସିବାଲାଗି କେତେ ନେହୁରା ହୋଇ କହିଲା, ତା'ର କୁରୁତା ଧର କେତେ ଟାଣିଲା, କନ୍ତୁ ସେଥିରେ କଛୁ ଫଳ ହେଲନାହିଁ । ବୁଢ଼ା ସେତେବେଳକୁ ଆଉ କଛୁ ଶୁଣିବା ଅବସ୍ଥାରେ ନଥାଏ, କଛୁ ବୁଝିପାରୁନଥାଏ । ସେଇ ଗୋଟାଏ ଗୀତକୁ ଘୋରଡଆ ଭାବରେ ଗୁଣୁଗୁଣୁ କର ଗାଇ ସେ ସେମିତ ମାଦଳଙ୍କ ପର ପଡ଼ଥାଏ ।

ନରାଶ ହୋଇ ଭଡେକ୍ ସ୍ୱଗ୍ଭୁଷ୍ଟିଙ୍କା ପାଖକୁ ଦଉଡ଼ଲା । ସ୍ୱଗ୍ଭୁଷ୍ଟିଙ୍କାକୁ ମଧ୍ୟ କଛୁକଛୁ ଓଷଧପତ୍ରଷଧିର କଥା ମାଲୁମ ଥିଲା । କନ୍ତୁ ସେତେବେଳେ ସେ ଭିତରଘରେ ଗରମ ପାଣି, ମଦ୍ଯ ଓ ମସଲା ଦେଇ ଭଡ଼କା ରାନ୍ଧିବାରେ ବ୍ୟସ୍ତ ଥାଏ, ଆପଣାର ସାଙ୍ଗସାଥିମାନଙ୍କ ସହତ କଥା ଗପିବାରେ ବ୍ୟସ୍ତ ଥାଏ, ଏଆଡ଼େ କାନ ଦେବାକୁ ତା'ର ଆଉ ବେଳ କାହିଁ ? ଭଡେକ ମଧ୍ୟ ପଛଲେ ପଛଲେ ତା'ର ମନାକୁ ନମାନ ଜିଦ୍ କରବାରେ ଲାଗିଲା, କାନ୍ଦକାନ୍ଦ ହୋଇ କେତେ ଅଳି କର କହିଲା, — ଶେଷକୁ ସ୍ୱଗ୍ଭୁଷ୍ଟିଙ୍କା ଖୁବ ବରକ୍ତ ହୋଇ ତାକୁ ଜବରଦସ୍ତି ଘରଭିତରୁ ପଦାକୁ ବାହାର କରଦେଲା । ତେଣୁ ସେ ବଡ଼ ନରାଶ ହୋଇ ଗୁହାଳକୁ ଫେରଆସିଲା ।

ଫେରିଆସି ଦେଖିଲା, କୁବାକୁ ପୁଣି ନିଦ ହୋଇ ଯାଇଚି । ତେଣୁ ସେ ମଧ୍ଯ ପାଳଢ଼ିପରକୁ ଯାଇ ଛଣକେ ମଧ୍ଯରେ ନିଘୋଡ଼ ନିଦରେ ଶୋଇପଡ଼ିଲା ।

ସବୁଦିନେ ସାଧାରଣତଃ ଯେଉଁ ସମୟରେ ସକାଳର ଖାଇବା ଖିଆଯାଏ, ତା'ର ଅନେକ ସମୟପରେ ଗୋରୁଙ୍କର ଚିତ୍କାରଶବ୍ଦ ଶୁଣି ତା'ର ନିଦ ଭାଙ୍ଗିଗଲା । ଗୋରୁଗୁଡ଼ାକ ଏତେବେଳଯାଏ ଦୁହାଁ ହୋଇନାହାନ୍ତି, ଭୋକରେ ରଡ଼ି କରିବାରେ ଲାଗିଚନ୍ତି । ସେଥିପାଇଁ ସ୍ବର୍ଗୁଷ୍ଟିଙ୍କା ଆସି ଚଣ୍ଡୀମୂର୍ତ୍ତି ଧରି ତାକୁ ଗାଳିଦେବାରେ ଲାଗିଚି । ନିଜେ ମଧ୍ଯ ଅନେକ ବେଳଯାଏ ଶୋଇ ପଡ଼ିଥିବାରୁ ଆପଣା ଭୁଲଗୁଡ଼ାକ ଲାଗି ସେ ଅନ୍ୟମାନଙ୍କ ଉପରେ ଗାଳି ବରଷିବାକୁ ଆସିଚି !

ଘରର ସବୁ କାମ ଟିକିଏ ବାଗକୁ ଆସିବାପରେ ସେ କୁବାକୁ ଦେଖିବାକୁ ଗଲା ।

କୁବା କୁନ୍ଥକୁନ୍ଥ ହୋଇ କହିଲା ! "ତୋ' ଗୋଡ଼ତଳେ ପଡ଼ୁଚି, ମୋତେ ଟିକିଏ ଦେଖ୍ ଭଲ !"

"କ'ଣ ଆଉ ଦେଖିବ ? ଗୋଟାଏ ଟୁକେଲ୍ ଦେଖି ବାହାହୋଇ ପଡ଼ିଲେ ତୋ'ର ଦେହ ଛଣକଭିତରେ ଭଲ ହୋଇ ଯାଆନ୍ତା !" — ସ୍ବର୍ଗୁଷ୍ଟିଙ୍କା ରହସ୍ୟ କରି କଥା ଆରମ୍ଭ କଲା । କିନ୍ତୁ ତା'ର ଫୁଲିଯାଇଥିବା ଫଣଫଣ ମୁହଁଟାକୁ ଦେଖି ସେ ତତ୍‌କ୍ଷଣାତ୍ ଗମ୍ଭୀର ହୋଇ-ଗଲା ଓ କହିଲା : "ତୁ ବଇଦ ଖୋଜୁଚୁ କ'ଣ ? ଇଏତ କ'ଣ ପାଦ୍ରୀଙ୍କୁ ଡାକିବା ଦରକାର ହେଲାଣି ବୋଲି ମୋର ମନେହେଉଚି ! ବର୍ତ୍ତମାନ ମୁଁ ଆଉ କ'ଣ କରିପାରିବି ? ମୋ'ର ତ ମନେହେଉଚି, ତୋ'ର ଶେଷ ଅବସ୍ଥା ଆସି ପହଞ୍ଚିଲାଣି । ଏ ରୋଗ ଆଉ ଭଲହେବାର ନୁହେଁ !"

"ତୁ ସତ କହୁଚୁ ?"

"ସବୁ ଠାକୁରଙ୍କ ହାତରେ ! କିନ୍ତୁ ଅବସ୍ଥା ଭାରି ଅଠାଠିକ ହୋଇଗଲାଣି !"

"ତା'ହେଲେ କ'ଣ ମୁଁ ମରିଯିବି ?"

"ତୁ ଯଦି କହୁଛୁ, ତେବେ ମୁଁ ପାଦ୍ରୀଙ୍କ ପାଖକୁ ଖବର ପଠାଇବ ।" .

"ପାଦ୍ରୀଙ୍କ ପାଖକୁ ?"—, କୁବା ବିସ୍ମିତ ହୋଇ ପଚାରିଲା । "ପାଦ୍ରୀ ସତେ ଏଠାକୁ ଆସିବେ, ଏଇ ଗୁହାଳ ଘରକୁ ଆସିବେ ?"

"ସେଥିରେ କ'ଣ ଅଛି ? ସେ କ'ଣ ଚନ୍ଦନରେ ତିଆରି ହୋଇଚନ୍ତି ଯେ ଏଠିକି ଆସିଲେ ଘୋଡ଼ାଗୋବରର ଉତ୍ତାପ ବଳି ତରଳିଯିବେ ? ରୋଗୀପାଖକୁ ଯିବାଲାଗି ଯିଏ ଯୋଉଠୁ ଆସି ଡାକିନେବ, ସେଠିକି ଯିବା ତ ପାଦ୍ରୀଙ୍କର କାମ !"

"ହେ ଠାକୁରେ ! ଏତେବଡ଼ ସାହସ ମୁଁ କିପରି କରିବ କହିଲୁ !"

"ତୁ ଗୋଟାଏ ନିବୁଦ୍ଧିଆ ମେଣ୍ଢା !" — ଗାଲକୁଞ୍ଚନ କରି ସ୍ମୁଗୁଷ୍ଟିଙ୍କା ବାହାରକୁ ବାହାରିଗଲା ।

"ସେ ମାଇପିଲେକ, ସେ ଯାହା କହୁଚି, ତାହାର ଅର୍ଥ ସେ କାହୁଁ ବୁଝିବ ?" — ବଡ଼ କ୍ଷୁବ୍ଧ ଓ ପରିତ୍ୟକ୍ତ ଭାବରେ କୁବା ମନେମନେ କହିବାକୁ ଲାଗିଲା ।

ବର୍ତ୍ତମାନ ସେ ସେଇଠି ଏକୁଟିଆ ହୋଇ ପଡ଼ିରହିଲା । ସତେଯେପରି ଅନ୍ୟମାନେ ତା'କଥା ଏକାବେଳେକେ ପାଶୋରି ପକାଇଲେ !

ମଝିରେ ମଝିରେ ଭିଟେକ୍ ଗୁହାଳ ଭିତରକୁ ଆସୁଥାଏ ଓ ଘୋଡ଼ାଙ୍କୁ ଦାନା ଆଉ ପାଣି ମୋହିଁଦେଇ ଚାଲିଯାଉଥାଏ । କୁବାକୁ ମଧ୍ୟ ପାଣି ପିଇବାକୁ ଦେଉଥାଏ । କିନ୍ତୁ ତାକୁ ତରତର ହୋଇ ପୁଣି ବାହାଘରଥାନକୁ ଚାଲିଯିବାକୁ ପଡ଼ିଲା । ସେତେବେଳକୁ ଡୋମିନିକଙ୍କ ଘରେ ସେମାନେ କିନିଆଁ ବିଦା ପାଇଁ ପ୍ରସ୍ତୁତ ହେଉଥାନ୍ତି ।

କୁବା ସେହିପରି ନିଶ୍ଚଳ ହୋଇ ପଡ଼ିରହିଥାଏ । ତା'ର ମନେହେଉଥାଏ, ଯେପରି ସମସ୍ତେ ତାକୁ ଏଠାରେ ଏକୁଟିଆ ପକାଇଦେଇ କଏ କୁଆଡ଼େ ଚାଲିଗଲେଣି ! ସେ କାନ ଡେରି କେବଳ ଶୁଣିବାରେ ଲାଗିଥାଏ.— ସେପାଖରେ ସେମାନେ ଆନନ୍ଦ-ଉତ୍ସବରେ ମତ୍ତ ଥାନ୍ତି । କୁବା ତା'ର ସକାଳ ମୁହୂର୍ତ୍ତର ସଙ୍ଗୀ ଲିପାସହିତ କଥାବାର୍ତ୍ତା ହେଉଥାଏ । ଯୁବକ୍ତା

ଦେଇଯାଇଥିବା ପିଠାକୁ ଦୁହେଁ ଖାଇବାରେ ଲଗିଆନ୍ତି । ତା'ପରେ ମଲୁ ମଣିଷଟି ଘୋଡ଼ାମାନଙ୍କୁ ମଧ୍ୟ ଡାକିଲ ଓ ସେମାନଙ୍କ ସହିତ ବହେ କଥାବାର୍ତ୍ତା ହେଲ । ଘୋଡ଼ାମାନେ ମନ ଆହ୍ଲାଦରେ ହେ୍‌ଷାରବ କରିବାରେ ଲଗିଆନ୍ତି, କୁଣ୍ଡଭିତରୁ ମୁଣ୍ଡ ବାହାର କରି ଏଣେଆଡ଼େ ଅନାଇ ରହୁଥାନ୍ତି । ଘୋଡ଼ୀଟା ମଧ୍ୟ ଅଡ଼ା ଡେଇଁ ବାହାରକୁ ଆସିଲ ଓ ତା'ର ଖଟିଆପାଖରେ ଆସି ଠିଆହେଲା, କୁବାର ମହଁରେ ଆପଣାର ଉଷୁମ ଓ ଓଦାଳିଆ ନାକଟାକୁ ଲଗାଇଦେଇ ତାକୁ ଆଦର ଦେଖାଇବାକୁ ଲାଗିଲ ।

ତା'ପରେ କୁବା ପୁଣି ନୀରବ ହୋଇ- ପଡ଼ିରହିଲ ଓ ଘୁହାଳ ଘରର କାଠକାନ୍ଥ ଉପରେ ଥିବା କଳାକଳା ଗଣ୍ଠି ଆଡ଼କୁ ବକବକ କରି ଅନାଇଲ । କାଠରୁ ଏଠିସେଠି ବିନ୍ଦୁ ବିନ୍ଦୁ ଅଠା ବାହାରି ତଳକୁ ବୋହିଆସିଚ ; —ସତେଯେପରି ଦେହର ରକ୍ତ ସଠା ହୋଇ କାହାର ଆଖିରୁ ଲୁହହୋଇ ତଳକୁ ବୋହିଆସିଚ !

ମଝିନେ କ୍ଷୀଣ କିରଣରେଖାର ପଥଦେଇ ନବୋଦିତ ଦିନଟି କାନ୍ଥର ଫାଙ୍କଗୁଡ଼ିକ ବାଟେ ଘୁହାଳଘର ଭିତରକୁ ଉଙ୍କିମାରିବାକୁ ଲାଗିଲ, ମେଲି-ହୋଇ ରହିଥିବା କବାଟ ବାଟଦେଇ ଉଦ୍‌ଭାସିତ ଧୂଳିକଣାର ବନ୍ୟା ଘର ଭିତରକୁ ମାଡ଼ିଆସିନ୍ତି ।

ଦେଖନ୍ତା ଚାଲିଗଲ୍ ପରି ଘଣ୍ଟାପରେ ଘଣ୍ଟା ଅତିବାହିତ ହୋଇ ଯାଉ-ଥାଏ — ଘଡ଼ଘଡ଼ି ଘଡ଼ଘଡ଼ି ଶବ୍ଦରେ ବାଟର ଦୁର୍ଗମ ପଥଗଣ୍ଡା ପାର ହୋଇ ଯାଉଥିବା, ଟ୍ରେଟା, ଅଣ୍ଡ ଆଉ ଘୁଙ୍ଗା ଭିକାରୀମାନଙ୍କର ପଲ୍‌ପରି ଆଗକୁ ଚାଲିବାରେ ଲଗିଥାଏ ।

ଥାଇଥାଇ କେତେଟା ଘରଚଟିଆ ଚଢ଼େଇ, କେଁ କଟର କରି ଉଡୁଥାଆନ୍ତି, ପଲ ହୋଇ ହଠାତ୍ ଘୁହାଳ ଭିତରକୁ ମାଡ଼ି ଆସୁଥାନ୍ତି ଓ ନିର୍ଭୟରେ ଘୋଡ଼ା କୁଣ୍ଡଗୁଡ଼ିକ ଉପରେ ଯାଇ ବସିପଡୁଥାନ୍ତି ।

"ଆହା, ଏତେ ସାନସାନ ଜୀବ ହେଲେ ମଧ୍ୟ ସେମାନଙ୍କର ବୁଦ୍ଧି କେତେ ?"— କୁବା କହୁଥାଏ । "ଠାକୁରେ ଏମାନଙ୍କୁ ମଧ୍ୟ କେତେ ବୁଦ୍ଧିବାଣ୍ଟି ନଦେଇଚନ୍ତି ! କୋଉଠିକି ଗଲେ ଖାଇବା ପଦାର୍ଥ ମିଳିବ,

ଯେକଥା ବୁଝିପାରି ସେମାନେ ଠିକ୍ ସେଇଠାକୁ ଉଡ଼ି ଆସୁଚନ୍ତି ! ରୁ ରୁକ ହ’ ଲପା ! ଚଢ଼େଇଗୁଡ଼ାକୁ ଖାଇବାକୁ ଦେ’ ! ନଖାଇଲେ ସେମାନଙ୍କର ଦେହରେ ବଳ ହେବ କପରି ? ଶୀତଦିନ ପରା ମାଡ଼ି ଆସୁଚି !”

ଠିକ୍ ଏହିସମୟରେ ଘୁଷୁରିଗୁଡ଼ାକ ବାହାରୁଆସି ଦୁଆରବନ୍ଧ ଯେପାଖରେ ଠିଆହେଲେ ଓ କାଦୁଅସଡ଼ସଡ଼ ଆପଣାର ଯୋଡ଼ି ଗୋଡ଼ାକୁ ଆଣି କବାଟଉପରେ ମାଡ଼ିଦେବାକୁ ଲଗିଲେ ।

“ଲପା, ଯା’ ସେଗୁଡ଼ାକୁ ତଡ଼ିଦେଇ ଯା ! କାଙ୍ଗାଳ ଗୁଡ଼ାକ ଯେତେ ଗିଳଲେ ମଧ୍ୟ ସେମାନଙ୍କର ପେଟ ତଥାପି ପୂରୁନାହିଁ !”

ତା’ପଚରେ ପଲେ କୁକୁଡ଼ା ମଧ୍ୟ କଳକାଳିଆ ହୋଇ ଦୁଆରବନ୍ଧ ଆଡ଼କୁ ଉଡ଼ି ଆସିଲେ । ଗୋଟାଏ ନାଲିଆ ଗଞ୍ଜା ଖୁବ ସାହସରେ ଯୋଡ଼ାଙ୍କର ଦାନା ରଖାଯାଇଥିବା ବେଡ଼ାପାଖରେ ଆସି ପହଞ୍ଚିଗଲା । ଅନ୍ୟମାନେ ମଧ୍ୟ ତା’ ପଛେପଛେ ଆସିଲେ । କିନ୍ତୁ ପେଟ ପୂରିକରି ଖାଇବାକୁ ସେମାନଙ୍କୁ ତର କୋଉଠି ଅଛି ? କାରଣ ତାଙ୍କ ପଛେପଛେ ପଲେ ହଂସ ମଧ୍ୟ ଆସି ପହଞ୍ଚିଗଲେ, ଲମ୍ବାଲମ୍ବା ବେକଗୁଡ଼ାକୁ ଲହଲହ କରି ଓ ନାଲିଆ ନାଲିଆ ଥଣ୍ଟ ବାହାର କରି ଫଁ ଫଁ ହୋଇ କଡ଼କୁ କଡ଼କୁ ମାଡ଼ି ଆସିଲେ ।

“ଏଗୁଡ଼ାକୁ ତଡ଼ି ଦେ, ଲାପା, ଏଗୁଡ଼ାକୁ ତଡ଼ି ଦେ’ ! ଏଇ କୁକୁଡ଼ା ଗୁଡ଼ାକ ବଡ଼ ଢକ୍‌ଦାର କଲେ, ଠିକ୍ ପଲେ କଳଗୁରି ମାଇକନିଆଙ୍କ ପରି !”

ହଠାତ୍ ଚଢ଼େଇଗୁଡ଼ାକ ଚିତ୍କାର କରି ଉଠିଲେ, ସେମାନଙ୍କର ଫଡ଼ଫଡ଼ ହେଉଥିବା ଡେଣାରୁ ଝୁଲା ପରଗୁଡ଼ାକ ବାହାରିଯାଇ ଉଡ଼ିବାକୁ ଲାଗିଲା । ଲପା ସେମାନଙ୍କୁ ତଡ଼ିନେଇ ବାହାରେ ଯାଇ ଛାଡ଼ିଦେଇ ଆସିଲା । ଲେଉଟି ଆସିଲା ବେଳକୁ ତା’ର ଜିଭଟା ବାହାରକୁ ବାହାରିପଡ଼ି ଲହ ଲହ ହେଉଥାଏ, ଆପଣାର ଆନନ୍ଦ ପ୍ରକାଶ କରି ସେ ଚିତ୍କାର କରିବାରେ ଲଗିଥାଏ ।

“ଏଥର ଚୁପ ହୋଇଯା ! ଯଥେଷ୍ଟ ହେଲା ।”

ସେପାଖ ଖଞ୍ଜାରୁ ବ୍ୟେଷବ୍ୟଞ୍ଜିତ ଶବ୍ଦର ସୁଅ ଭାସିଆସୁଚି । ଲୋକ-ମାନେ ଦଉଡ଼ଧାପଡ଼ କରୁଚନ୍ତି, ଗୋଟାଏ ଘରୁ ଆଉଗୋଟାଏ ଘରକୁ ଆସବାବପତ୍ର ଟାଣିକରି ନେବାର ଶବ୍ଦ ଶୁଣାଯାଉଚି ।—

"ବୋହୂ ଆସି ପହଞ୍ଚିବ ବୋଲି ସେମାନେ ସବୁ ସଜ କରି ରଖୁଚନ୍ତି ।"

ରାସ୍ତାଉପରୁ ଲୋକମାନଙ୍କର ଯାଆଆସ ଓ ଗୁଣ୍ଡଶବ୍ଦ ଶୁଣାଯାଉଚି । କେତେବେଳେ କିଏ କଥା କହୁଚି, ସେ କଥା ବାରିକରି କହିବାର ଜୁ' ନାହିଁ । କୁବା କାନରେ ଆସି ସବୁ ଶବ୍ଦ ବେଶ୍ ବାଜିବାରେ ଲଗିଚି, ସେ ସେସବୁଡ଼ିକୁ ଠଉରାଇ ପାରିବାକୁ ଚେଷ୍ଟା କରୁଚି ।

କିଛିଣାରେ ପରି ଏମିତି ଗାଆଁଗୋଟାକର ସବୁ କଥା ଘାରୁଘାରୁ କ୍ରମେ ହିନ ଗଡ଼ି ଆସିବାକୁ ବସିଲା, କାନ୍ଥର ରଙ୍ଗ କ୍ରମେ କଳା ହୋଇ ଆସିଲା, କବାଟପାଖ ଅସ୍ପଷ୍ଟ ଦେଖାଗଲା ଓ ଘୁଆଳଭିତରଟା ସତେଅବା ଏକ ଅଦୃଶ୍ୟତା ଭିତରେ ନିମଗ୍ନ ହୋଇ ରହିଲା ।

ମୁହଁସଞ୍ଜ ବେଳକୁ ଆମ୍ବ୍ରୋଜ ଆସି ପହଞ୍ଚିଲା । ଏତେବେଳଯାଏ ମଧ୍ୟ ତା'ର ଅଧେ ନିଶା ଛାଡ଼ିନଥାଏ । ତା'ର ଗୋଡ଼ଦୁଇଟା ତା'ର ପୂର୍ବ ଅଭ୍ୟାସକୁ ଆସିନଥାଏ । ସେ ଏପରି ତଗଡ଼ଗ ହୋଇ କଥା କହୁଥାଏ ଯେ, ସେ କ'ଣ କହୁଚି ତାହା ସହଜରେ ବୁଝିହେଉ ନଥାଏ ।

"ଗୋଡ଼ଟାକୁ କେଉଠି ଜଖମ କରି ପକାଇଲୁ କି ?"

"କ'ଣ ହୋଇଚି, ଆଗ ନିଜେ ଆସି ଦେଖ !"

ଆମ୍ବ୍ରୋଜ୍ ଧୀରେଧୀରେ ବନ୍ଧାହୋଇଥିବା ରକ୍ତକନା ଖୋଲିବାକୁ ଲଗିଲା । ରକ୍ତ ଶୁଖି କନାଟା ଗୋଡ଼ ଉପରେ ଏପରି ଟାଣ ହୋଇ ଲଗି ଯାଇଥିଲା ଯେ ବର୍ତ୍ତମାନ ଖୋଲିବା ବେଳକୁ କୁବା ସହିନପାରି ବିକଳ ଭାବରେ ଚିତ୍କାର କରିବାକୁ ଆରମ୍ଭ କଲା ।

"ତୁ ଯେମିତି ପାଟି କରୁଚୁ, କୋଉ ପୋଖତ ମାଇପ ମଧ୍ୟ ସେପରି ପାଟି କରିବନାହିଁ !"— ଟିକିଏ ବିରକ୍ତ ହୋଇ ଆମ୍ବ୍ରୋଜ୍ କହିଲା ।

"କିନ୍ତୁ ମୋର ପରି ଏଣେ ପ୍ରାଣ ଗ୍ରଡ଼ିଯାଉଚ ! ତୁ ଟିକିଏ ରହିସହି ଖୋଲିଲେ ସ ନା ହୁଅନ୍ତା ! ହେ ଭଗବାନ !"

କୁବା ବକଳ ହୋଇ ଚତ୍କାର କରିବାକୁ ଲଗିଲ ।

"ଓହୋ, କୋଉଠୁ ତୁ ଏତେଯର ହୋଇ ଆସିଛୁରେ ? କୋଉଠି କେବେ କୁକୁର କାମୁଡ଼ି ଦେଇଥିଲା ନା କ'ଣ ?" — ଆଶ୍ଚର୍ଯ୍ୟ ହୋଇ ଆମ୍ବ୍ରୋଜ୍ ପଗ୍ଚରିଲ । ଗୋଡ଼ଟା ଠିକ୍ ଗୋଟାଏ ପାଣିମାଠିଆ ପରି ଫୁଲିକରି ରହିଥିଲ ।

"ଜଙ୍ଗଲ ଜଗୁଆଳୀ ଗୁଳି ମାରି ମୋତେ ଏତେହଣ କରିଚ । ତୋ' ଗୋଡ଼ତଳେ ପଡ଼ି କହୁଚ, ତୁ ଏକଥା ଆଉ କାହାରିଆଗରେ କହିବୁନାହିଁ ।"

"ଖୁବ ଦୂରରୁ ଗୁଳି ମାରିଚ, ନା ? ଏଥର ବୁଝିଲି । ତୋ'ର ଗୋଡ଼ ଆଉ ଭଲ ହେବନାହିଁ, ଏକା'ବେଳେକେ ଅକାମୀ ହୋଇଯିବ । ଭିତରେ ହାଡ଼ର ଅଂଶମାନ ରହିଯାଇଛି । ଉପରେ ହାତ ମାରିବା ମାତ୍ରକେ ମାଲୁମ ହୋଇଯାଉଚ । ତୁ ମୋତେ ଆଗରୁ ଡକାଇ ପଠାଇଲୁନାହିଁ କାହିଁକି ?"

"ପହିଲେ ପହିଲେ ମୁଁ ଖୁବ ଡରିଗଲି । ଜଙ୍ଗଲକୁ ଯାଇ ମୁଁ ଠେକୁଆ ଶିକାର କରିବାକୁ ବସିଥିଲି ବୋଲି କାଲେ ସେମାନେ ଜାଣିବାକୁ ପାଇବେ, ସେଇ ଭୟରେ ! — କିନ୍ତୁ ଜଗୁଆଳୀ ଗୁଳି ମାରିବା ବେଳକୁ ମୁଁ ଜଙ୍ଗଲର ସୀମା ପାରହୋଇ ଆସିଥିଲି ।"

"ହଁ, ଦିନେ ଖଟିଘରେ ସେ ସେଇକଥା କହୁଥିଲା । କିଏ ଯାଇ ଜଙ୍ଗଲରେ ବଦମାସି କରୁଚ ବୋଲି ଅଭିଯୋଗ କରୁଥିଲା ।"

"ଶଳା ଗ୍ଚୋର ! ଠେକୁଆଟା କ'ଣ କାହାର ଘରର ସମ୍ପତ୍ତି ହେଇଚ ? ମୁଁ ଜଙ୍ଗଲ ପାରହୋଇ ଆସିଥିଲି, ଶଳା ଗୋଟାଏ ଦୁଇନଳିଆ ବନ୍ଧୁକ ଧରି ମୋତେ ଗୁଳି ମାରିଲ । କିନ୍ତୁ ତୁ କାହାରି ଆଗରେ କହିବୁ ନାହିଁ ଟି ! ନହେଲେ ସେମାନେ ମୋତେ କଚେରୀକୁ ଟାଣିବାକୁ ଆସିବେ । ମୁଁ ଭାବିଥିଲି, ଘାଆଟା ଆପଣାଛୁଏଁ ଭଲ ହୋଇଯିବ । କିନ୍ତୁ ବର୍ତ୍ତମାନ ବଡ଼ ଅସହ୍ୟ ହୋଇ ପଡ଼ିଲଣି । ତୁ ଟିକିଏ ଦେଖିକରି କ'ଣ ଗୋଟାଏ ବ୍ୟବସ୍ଥା କର ।"

ଚତ୍କାର କରି ସେ ବଡ଼ ସହାୟଶୂନ୍ୟ ଭାବରେ ଅନାଇ ରହିଲା ।

"ଭାରି ଡେରି ହୋଇଗଲା,— ଭାରି ଡେରି ହୋଇଗଲା !"

କବା ବଡ଼ ସଂତ୍ରସ୍ତ ହୋଇପଡ଼ିଲା । କହିଲା, "ତୁ ଗୋଟାଏ କିଛି ବ୍ୟବସ୍ଥା କର !"

କୁରୁଡାର ହାତକୁଇଟାକୁ ଉପରକୁ ଟେକ ଆମ୍ରୋଜ ଗୋଟାଏ ଛୁରି ବାହାର୍‌କଲା, ତା'ପରେ ଗୋଡ଼ଟାକୁ ଜବରକରି ଧରି ଘାଆଟାକୁ କାଟିଲା ଓ ଭୁଲବାହାର କରିବାକୁ ଚେଷ୍ଟା କଲା ।

କଂସେଇଖାନାରେ କଟାହେଲାବେଳେ ପଶୁମାନେ ଯେପରି ଚତ୍କାର କରନ୍ତି, କୁବା ଠିକ୍ ସେହିପରି ଚତ୍କାର ଓ ଗର୍ଜନ କରିବାକୁ ଲାଗିଲା । ଶେଷକୁ ଆମ୍ରୋଜ୍ ଆପଣାର ଚମଡ଼ାକୋଟ୍‌ଟାକୁ ନେଇ ତା'ର ମୁହଁରେ ମାଡ଼ିଦେଇ ତା'ର ଚତ୍କାର ବନ୍ଦକରି ରଖିଲା । ଯନ୍ତ୍ରଣାରେ କୁବା ମୂର୍ଚ୍ଛିତ ପରି ପଡ଼ିରହିଲା । ଘାଆରେ ପଟିବାନ୍ଧି ଦେଇ ଓ କିଛି ମଲମ ଲଗାଇଦେଇ ଆମ୍ରୋଜ୍ କହିଲା :

"ତୋତେ ଡାକ୍ତରଖାନା ଯିବାକୁ ପଡ଼ିବ ।"

କୁବା କିଛି ବୁଝି ନପାରୁଥିଲା ପରି ପଡ଼ିରହିଥାଏ । ପଚାରିଲା, "ଡାକ୍ତରଖାନା ?"

"ସେମାନେ ତୋ'ର ଗୋଡ଼ଟାକୁ କାଟିଦେଲେ ତୁ ଭଲ ହୋଇଯିବୁ ।"

"ମୋ' ଗୋଡ଼କୁ ?"

"ହଁ । ତୋ'ର ଏଇ ଗୋଡ଼ଟା ଆଉ କିଛି କାମ ଦେବନାହିଁ । ଭିତରେ ବିଲକୁଲ ପଚିଗଲାଣି ।"

"ଏକାବେଳେକେ କାଟିଦେବେ ?"—ତଥାପି କିଛି ବୁଝି ନପାରୁଥିଲା ପରି କୁବା ପଚାରିଲା ।

"ହଁ, ଆଣ୍ଠୁ ପାଖରୁ କାଟିଦେବେ । କିନ୍ତୁ ସେଥିପାଇଁ କିଛି ଭୟକରିବା ଦରକାର ନାହିଁ । ମୋ' ଗୋଡ଼ଟାକୁ ତ ସେମାନେ ଏକାବେଳେକେ ଜଙ୍ଘପାଖରୁ କାଟିଦେଇଥିଲେ । ତଥାପି ତ ମୁଁ ବଞ୍ଚିଛି !"

"ଗୋଡ଼ଟାକୁ କାଟିଦେଲେ କ'ଣ ମୁଁ ସତରେ ଭଲ ହୋଇଯିବ ?"

"ନିଶ୍ଚୟ । କିନ୍ତୁ ସେଥିପାଇଁ ତୋତେ ଡାକ୍ତରଖାନା ଯିବାକୁ ହେବ ।"

"ସେଠି ସେମାନେ ପଇବା କାଟିଲ ପରି କାଅନ୍ତା ମଣିଷଙ୍କର ଦେହକୁ କାଟି ଟୁକୁରା ଟୁକୁରା କରିପକାନ୍ତି । ନାଇଁ ଲୋ ମାଆ, ମୁଁ ସେଠିକି ଯିବ ନାହିଁ । ତୁଳ ଯାହା କରୁଚୁ କର । ତୁ ଯେତେ ମାଗିବୁ, ମୁଁ ପଛେ ତୋତେ ସେତେ ପଇସା ଦେବି । କିନ୍ତୁ ଏଇଠି ପଡ଼ି ମରିବି ପଛକେ, ମୁଁ ସେ ଡାକ୍ତରଖାନାକୁ କେବେହେଲେ ଯିବିନାହିଁ !"

"ତେବେ ଏଠାରେ ପଡ଼ି ମରିବା ହିଁ ସାର ହେବ ! ଡାକ୍ତର ନହେଲେ ତୋର ଏଇ ଗୋଡ଼କୁ କିଏ କାଟିପାରିବ କହିଲୁ ? ମୁଁ ଏଇନେ ପଧାନ ଘରକୁ ଯାଉଚି, ସେ କାଲି ଗାଡ଼ୀ ସକାଳ କରି ତୋତେ ସହରକୁ ପଠାଇଦେବ ।"

"ଆଉ, ମୁଁ ସେଠିକି କେବେହେଲେ ଯିବିନାହିଁ !" — ବୁଢା ଏକୀ କିଦ୍ ଧରିବସିଲା ।

"ତୁ କ'ଣ ବୋକା ହେଲୁ ନା କଅଣ ? ଏଥିରେ ପୁଣି ଡରିବାର କ'ଣ ଅଛି ?"

ଆମ୍ବ୍ରୋଜ୍ ଚାଲିଗଲା ପରେ ବୁଢୀ ମନେମନେ କହିବାକୁ ଲାଗିଲା : "ଏଇ ଗୋଡ଼ଟାକୁ କାଟିନେଲେ ମୁଁ ପୁଣି ଭଲ ହୋଇଯିବି !"

ପଟି ବନ୍ଧାହେବା ପରେ ଗୋଡ଼ର ବିନ୍ଧା ବନ୍ଦ ହୋଇ ଯାଇଥିଲା । ତଥାପି ସେଇ ଗୋଡ଼ଟାରେ ଯେପରି ଆଉ ଜୀବନ ନଥିବା ପରି ମନେହେଉଥାଏ । ବୁଢା ଚିନ୍ତା କରୁଥାଏ :

"ହଁ, ମୁଁ ନିଶ୍ଚୟ ଭଲ ହୋଇଯିବି । ଆମ୍ବ୍ରୋଜ୍ ତ ପୁଣି କାଠ-ଗୋଡ଼ରେ ଯିବାଆସିବା କରୁଚି ନା ନାହିଁ ?! କିନ୍ତୁ ଗୋଡ଼ଟା ଗଲେ ବୋଉନା ଆଉ କାହିଁକି ମୋତେ ତା'ଘରେ ରଖିବ ? ଏକଗୋଡ଼ିଆ କୋଠିଆ କୋଉ କାମକୁ ଯୋଗ୍ୟ ହେବ ଭଲା କହିଲ ? ଜମି ଚଷିପାରିବ ନା ଆଉକିଛି କରିପାରିବ ? ତେବେ ମୋର ଦଶା ପୁଣି କ'ଣ ହେବ ? ହୁଏତ ମୋତେ କୋଉଠି ଯାଇ ଗାଈ ଜଗିବାକୁ ପଡ଼ିବ, ବା ଭିକମାଗି ପେଟ ପୋଷିବାକୁ

ପଡ଼ିବ ! ଗୀର୍ଜାଦୁଆରେ ବସି ଯିବାଆସିବା ଲୋକଙ୍କୁ ହାତ ପତାଇବାକୁ ପଡ଼ିବ ! ହେ ଭଗବାନ୍, ମୋତେ ଏପରି ଦଣ୍ଡ କାହିଁକି ଦେଲ ଭଗବାନ ?"
— ଏହି ସଂଶୟ ଉତ୍ତେଜନାରେ ସେ ହଠାତ୍ ଉଠିକରି ବସିପଡ଼ିଲା । ଏବଂ ତା'ପରେ ସେ ଅତିଶୟ ମର୍ମନ୍ତୁଦ ଯନ୍ତ୍ରଣାରେ ଚିତ୍କାର କରିବାକୁ ଆରମ୍ଭକଲା, ମନେମନେ ସେ ଯେପରି କେଉଁ ଖ୍ରୀମଗର୍ତ୍ତ ଭିତରେ ଯାଇ ପଡ଼ିଯାଇଥିଲା ପରି ଅନୁଭବ କରିବାକୁ ଲାଗିଲା, ଏହି ଗର୍ତ୍ତରୁ ଉପରକୁ ଉଠିଆସିବାକୁ ଯେପରି ଆଉ କୌଣସି ଉପାୟ ମଧ୍ୟ ନାହିଁ ! ତା'ର ଦେହଟା ଗୋଟାସୁଦ୍ଧା ଖାଲି ଥରିବାରେ ଲାଗିଆଏ । ଉତ୍ତେଜିତ ଓ ଜରାକ୍ରାନ୍ତ ଭାବରେ ସେ ଖାଲି "ହେ ଯୀଶୁ, ହେ ଯୀଶୁ" ବୋଲି ପୁନରାବୃତ୍ତି କରିବାକୁ ଲାଗିଲା ।

ସେ ଅନେକ ସମୟ ଧରି ଏହିପରି ବିବଶଭାବରେ ଚିତ୍କାର କରିବାରେ ଲାଗିଥାଏ । କିନ୍ତୁ ଏହି ଅଶ୍ରୁବିଳାପ ଓ ବିକଳ ହତାଶା ମଧ୍ୟରେ ଯେପରି ତା'ର ଅନ୍ତରଭିତରେ ଅତି ଧୀରଭାବରେ ଏକ ନିର୍ଦ୍ଦିଷ୍ଟ ସଂକଳ୍ପ କ୍ରମେ ସମ୍ପୂର୍ତ୍ତି ହୋଇ ଆସୁଥିଲା ଓ ସେ ଅଧିକ ଗଭୀର ଭାବରେ ଚିନ୍ତାମଗ୍ନ ହେବାରେ ଲାଗିଥିଲା । ଧୀରେ ଧୀରେ ସେ ଅଧିକ ସ୍ଥିର ହୋଇଆସିଲା । ତା'ର ଚତୁର୍ଦ୍ଦିଗରେ ବାଦ୍ୟ ଓ ସଂଗୀତର ଏତେ କୋଳାହଳ ଲାଗି ରହିଥିଲେ ମଧ୍ୟ ତଥାପି ତାକୁ ଯେପରି କ୍ରମେ ସବୁ ଭାରି ଶାନ୍ତ ବୋଧ ହେବାକୁ ଲାଗିଲା,
— ମନେହେଲା, ସତେଯେପରି ସେ କପୋତ କିଦରେ ଶୋଇଛି !

ଠିକ୍ ସେତିକବେଳେ ବୋହୂ ଓ ବାହାଘର କୁଣିଆମାନେ ଆସି ବୋରନାର ଘରେ ପହଞ୍ଚିଲେ ।

ବୋହୂ ଆସି ପହଞ୍ଚିବା ପୂର୍ବରୁ ଗୋଟିଏ ଗାଡ଼ୀରେ ବୋଝାଇକରି ସେମାନେ ସ୍ତ୍ରଗନାର ବାକସ, ବିଛଣାପତ୍ର ଓ ବାହାଘରରେ ତାକୁ ମିଳିଥିବା ନାନା ଉପହାରଦ୍ରବ୍ୟକୁ ପଠାଇ ଦେଇଥିଲେ । ତା'ସହିତ ଗୋଟିଏ ଭଲ ଗାଈ ମଧ୍ୟ ପଠାଇ ଦେଇଥିଲେ ।

ଏବଂ ସୂର୍ଯ୍ୟାସ୍ତ ହୋଇଯିବାର ଅଳ୍ପସମୟ ପରେ ଡୋମିନିକଙ୍କର ଘରପାଖରୁ ଶୋଭାଯାତ୍ରା ବାହାରିଲା । ଏଣେ ଅନ୍ଧାର ହୋଇ ଆସୁଥାଏ, କୁହୁଡ଼ି ମାଡ଼ିଆସୁଥାଏ ।

ଆଗରେ ବାଜାଦାରମାନଙ୍କର ବାଜାମାନ ହୁରୁହୁରୁ ହୋଇବାଜୁଚ । ଆପଣାର ମାଆ ଓ ସାଙ୍ଗସରିସାଙ୍କ ଗହଣରେ ଯୁଗ୍‌ନା ବାହାଘର ପୋଷାକ୍ ପିନ୍ଧି ଚାଲିଚ । ତା'ପରେ କୁଣିଆମାନେ ଦଳବାନ୍ଧି ଯାଉଚନ୍ତି । ଶୋଭାଯାତ୍ରାଟି ଆସି ବୋରିନାର ଦୁଆର ସରିକି ହେଲାବେଳକୁ କନ୍ୟାପକ୍ଷର ସ୍ତ୍ରୀଲୋକ-ମାନେ ବଦାୟ-ସଙ୍ଗୀତ ଗାଇବା ଆରମ୍ଭକଲେ । ବୋରିନା ଆପଣା ଘରର କବାଟ ପାଖରେ ସୁଜ୍‌କା ଓ ଗାଆଁର ଟୋକାମାନଙ୍କ ସହିତ ସେମାନଙ୍କ ଲଗି ପ୍ରତୀକ୍ଷା କରୁଥିଲା ।

ଆଗ ଡୋମିନିକଟି ଘରଭିତରେ ପ୍ରବେଶ କଲା । ତା' ହାତରେ ଗୋଟିଏ ବୁଜୁଲାରେ ଖଣ୍ଡେ ପାଉଁରୁଟି, ଚିମୁଟାଏ ଲୁଣ, ଖଣ୍ଡେ କାଠ-କୋଇଲା, ଗୀର୍ଜାଘର ମହମବତୀରୁ ଟିକିଏ ମହମ, ମଙ୍ଗୁଳା ହୋଇଥିବା ପୋଷେ ଗହମ ଶିଶା । ଯୁଗ୍‌ନା ଦୁଆରବନ୍ଧ ଡେଇଁ ଗଲାବେଳକୁ ସ୍ତ୍ରୀଲୋକ-ମାନେ ତା' ପଛେପଛେ ନୂଆଳୁଗାର ସୂତାମାନ ପକାଇଦେବାକୁ ଲାଗିଲେ, ଯେପରିକି ତା'ସହିତ କୌଣସି ଭୂତପ୍ରେତ ଘରେ ପଶି ପାରିବେ ନାହିଁ, ଓ ତା'ର ସଂସାରରେ ସବୁ ବଢ଼ନ୍ତ ହେବ ।

ଘର ଭିତରଯାକ ମଣିଷ ଭର୍ତ୍ତିହୋଇ ରହିଥାନ୍ତି । ବାଜାଦାରମାନେ ଧୀରସ୍ୱରରେ ବାଜା ବଜାଉଥାନ୍ତି । ବୋରିନା ହାତରେ ବୋତଲେ ମଦ ଧରି ଜଣଜଣକରି ପ୍ରତ୍ୟେକ ସ୍ତ୍ରୀଲୋକମାନଙ୍କ ପାଖକୁ ଯାଉଥାଏ ଏବଂ ସେମାନଙ୍କୁ ପିଇବାଲାଗି ଅନୁନୟକରି କହୁଥାଏ । ସେମାନଙ୍କର ଶୁଭ ମନାସି ସେ ନିଜେ ମଧ ପିଇବାରେ ଲାଗିଥାଏ । କମାରପୁଅ ଅନ୍ୟମାନଙ୍କ ସହିତ ଆସନ ଗ୍ରହଣ କରି ବସିଥାଏ ।

ଦହି ଆଉ ମହୁ ପକ୍କା ତିଆରି ହୋଇଥିବା ପିଠାର ଥାଳୀ ଧରି ସୁଜ୍‌କା ବାପ ପଛେପଛେ ଯାଉଥାଏ । ତଥାପି ବର୍ତ୍ତମାନ ଏହି ଭୋଜିସଭା ଆଦୌ ଜମିଲନାହିଁ । ଅନୁରୋଧ ଏଡ଼ିନପାରି ଓ କର୍ତ୍ତବ୍ୟ ରକ୍ଷାକରି ଅବଶ୍ୟ ସମସ୍ତେ ଗିଲସ ପୂରିକରି ମଦ ପିଇଲେ । ଖାଇବା ଜିନଷକୁ ମଧ କେହି ମନା କଲେ-ନାହିଁ । କିନ୍ତୁ ତଥାପି ସେମାନଙ୍କର ମନର ଉଲ୍ଲାସ ଫିକାପଡ଼ି ଯାଇଥିଲପରି ମନେହେଉଥାଏ ।

ଘର ଭିତରକୁ ଯାଇ ସ୍ୱଗନା ଲୁଗା ପାଲଟିଲ । ସାଧାରଣ ପିନ୍ଧିବା ପିନ୍ଧି ସେ ଫେରିଆସି ଘରର ଘରଣୀ ହିସାବରେ ଅତିଥିମାନଙ୍କୁ ଆପ୍ୟାୟିତ କରୁଥାଆନ୍ତା, କିନ୍ତୁ ତା'ର ମାଆ ତାକୁ କଚ୍ଚୁହେଲେ ଛୁଆଁଇ ଦେଲନାହିଁ ।

"ଝୁଅ, ଆକୁ ଆଉ । ଆଜି ପରା ତୋ'ର ବାହାଘରଟା ! ତୋ'ର କାମଧନ୍ଦା କରିବାର ଦିନ କ'ଣ ଗୁଲିଯାଉଚି ?"— କହି ସେ ବାରବାର ସଙ୍କେତ ପକାଉଥାଏ ଓ ଝିଅକୁ ଘରଭିତରକୁ ଢ଼ିଙ୍ଗନେଉଥାଏ ।

ତା'ପରେ ପୁଣି ନାଚ ଆରମ୍ଭ ହେଲା ଓ ପୁଣି ମଦପିଆ ଗୁଲିଲା । କେତେବେଳେକେ ଆମ୍ବ୍ରୋଜ ମଧ୍ୟ ଆସି ସେଠାରେ ପହଞ୍ଚିଗଲା ଓ ଖାଇ ଲୋଭ ଜୁଳୁ ଜୁଳୁ ଆଖିରେ ମଦବୋତଲ ଆଡ଼କୁ ଅନାଇରହିଲା ।

ପଧାନେ ତାକୁ ଅଟ୍ଟାକରି କହିଲେ, "ମଦବୋତଲ ଆଉ ଗିଲାସର ଶବ୍ଦ ଯେଉଁଠି ଶୁଣାଯିବ, ତୁ ଗନ୍ଧ ପାଇଲାପରି ଯାଇ ସେଠାରେ ହାଜର ହୋଇଯିବୁ !"

"ଯିଏ ଗୁଣୀ ଲୋକ, ସିଏ ସିନା ଜାଣେ, ତୁମେ କାହୁଁ ଜାଣିବ ? ଶୋଷିଲା କଣ୍ଠର ଶୋଷକୁ ଯିଏ ନିବାରଣ କରିପାରେ, ସେଇ ହେଉଚି ଗୁଣୀ ଲୋକ !"

"ତୁ ତ ମଣିଷ ନୋହୁ, ତୁ ଗୋଟାଏ ମଦପିମ୍ପା । ନେ, ତୋ'ଲାଗି ପାଣି ଥୁଆ ହୋଇଚି, ନେ !"

"କଥାରେ ପରା କହୁଚି,ଗୋରୁଙ୍କୁ ଯାହା ଭଲ, ମଣିଷଙ୍କୁ ମଧ୍ୟ ତାହା ହାନିକାରକ ହୋଇପାରେ । ପାଣି ପିଇଲେ କେତେବେଳେ ଭଲ ହୁଏ, କେତେବେଳେ ହାନି ମଧ୍ୟ କରେ । କିନ୍ତୁ ଭଡ଼୍‌କା ପିଇ କସ୍ମିନ୍‌କାଳେ କାହାର କୌଣସି ଖରାପ ହୋଇନାହିଁ ।"

"ଆଚ୍ଛା । ତୋର ବକ୍ତୃତାର ମଜୁରି ତୋତେ ମିଳିବ । ନେ, ଭଡ଼୍‌କା ନେ :"

"ପଧାନେ, ଆଗ ସିନା ତୁମେ, ତା'ପରେ ମୁଁ ! କଥାରେ ପରା କହୁଚି : ପିଲାକୁ ଦାଅଁ ଲଗି କଲାବେଳେ ପାଣି ଦରକାର, ବାହାଘର-ବେଳେ ଭଡ଼୍‌କା ଦରକାର, ପୁଣି ମଲାବେଳକୁ ଲୁହ ଦରକାର !"

"ବାଃ — ଚମତ୍କାର କଥା ! ନେ, ଆଉ ମୁନ୍ଦାଏ ପିଇଦେ' !"

ଦୁଇ ଗିଲାସ ସର୍ବ ଡବଲଗିଲାସ ହେଲେ ମଧ୍ୟ ମୋର କୌଣସି ଆପତ୍ତି ନାହିଁ । ମୋ'ର ପହିଲ ଭାର୍ଯ୍ୟା ପାଇଁ ମୁଁ ଗିଲାସେ ପିଏ, କିନ୍ତୁ ଦ୍ୱିତୀୟ ଭାର୍ଯ୍ୟାପାଇଁ ଦୁଇଗିଲାସ !"

"କାହିଁକି ମ ?"

"କାରଣ ମୋର ଠିକ୍ ଯେତେବେଳେ ଗୋଟାଏ ତୃତୀୟ ଭାର୍ଯ୍ୟା ଦରକାର ହେଉଥିଲା, ସେ ସେତିକିବେଳେ ମଲା ।"

"ଏଣେ ଆସି ଅନ୍ଧାରକଣା ହେଲଣି, ରାତି ହେଲେ ବାଟ ଦିଶୁନାହିଁ । ତେବେସୁଦ୍ଧା ସ୍ତ୍ରୀସୁଖର ଲାଳସା ଗୁଡ଼ୁନାହିଁ ?"

"ଆଖିକୁ ଦିଶିବା ସହିତ ସୁଖ କରିବାର କ'ଣ ସମ୍ବନ୍ଧ ଅଛି ?"

ଏକଥା ଶୁଣି ସମସ୍ତେ ଦୋ' ଦୋ' ହୋଇ ହସିଉଠିଲେ ।

କିଛି ସମୟ ପରେ ବୋଇନା ସମସ୍ତଙ୍କୁ ଦା'ପିଡ଼ା ଲଗି ଡାକିବାକୁ ଆସିଲା । କିନ୍ତୁ କେହି ଶୁଣିଲେ ନାହିଁ । କିଏ ନାଚିବାରେ ମସ୍ତ ହୋଇ ରହିଥାଏ, ପୁଣି ଅନ୍ୟମାନେ କଥାବାର୍ତ୍ତା ଓ ଥଟ୍ଟାତାମସାରେ ମସ୍ତ ଥାଆନ୍ତି । ଯୁଗ୍ନା ଆସି ପୁଣି ଡାକିଲା । କିନ୍ତୁ ପଧାନେ ତାହାର ଦୁଇହାତ ଧରି ତାକୁ ନେଇ ଆପଣା ପାଖରେ ବସାଇଦେଲେ । ପୁଣି ଡାକ ଆସିଲା,— "ଆସ ସମସ୍ତେ, ଦା'ପିଡ଼ା କରିବଆସ ! ଖାଇବାସାମଗ୍ରୀ ସବୁ ତେଣେ କାକର ହୋଇ ଯାଉଛି ।"

"ତୋ' ଜିଭ ନଡ଼ନଡ଼ି ବନ୍ଦ କର୍, ନହେଲେ ସେଇ ଜିଭରେ ଖାଇବାଥାଳୀ ଭୁଡ଼ାକୁ ଗୃହିରୁ ଯା' ।"

ଏଥର ସମସ୍ତେ ଖାଇବାକୁ ଗଲେ । ସମସ୍ତେ ଯେଝା ଯେଝାରେ ଆସନ ମାଡ଼ି ଯାଇ ବସିଗଲେ । ଏଣେ ରାନ୍ଧୁଣୀମାନେ ଖାଇବା ସରଞ୍ଜାମ-ମାନ ନେଇ ପହଞ୍ଚିଗଲେଣି । ସଦ୍ୟ ରନ୍ଧାହୋଇଥିବା ଖାଦ୍ୟଦ୍ରବ୍ୟରୁ ବାମ୍ପ ବାହାରୁଛି ଓ ମହକରେ ଘରଗୋଟାକୁ ପୂର୍ଣ୍ଣ କରିଦେଉଛି ।

ତା'ପରେ ସମସ୍ତେ ଆପଣାଆପଣାର ଉଚିତ ଆସନ ଗ୍ରହଣ କରି ଖାଇବସିଲେ । ଡୋମିନିକଭା ଓ ତା'ର ଦୁଇ ପୁଅ ମଝିରେ ବସିଲେ,

ଉଭୟପକ୍ଷରେ କୁଣିଆମାନେ ଏକାଠି ଆସନ ଗ୍ରହଣ କଲେ ଓ ଅତିଥିମାନଙ୍କୁ ପରିବେଷଣ କରିବା ଉଦ୍ଦେଶ୍ୟରେ ବୋରିନା ଓ ସ୍ୱଗ୍‌ନା ଠିଆହୋଇ ରହିଲେ ।

ମଝିରେ କେତେମୁହୂର୍ତ୍ତ ସବୁ ଥିର ହୋଇ ରହିଥିବାପରି ମନେହେଲା । କେବଳ ବାହାରେ ସାନପିଲାମାନେ ପାଟିତୁଣ୍ଡ କରିବାରେ ଲାଗିଥାନ୍ତି ଓ ଲାପା ଭୋ' ଭୋ' ହୋଇ ଭୁକିବାରେ ଲାଗିଥାଏ । ଅତିଥିମାନଙ୍କର ଚାମଚଗୁଡ଼ିକ ଖାଇବାଥାଳୀର ଫାନ୍ଦରେ ବାଜି ଝଣଝଣ ଶବ୍ଦ ଶୁଭୁଥାଏ ।

ସ୍ୱଗ୍‌ନା ଏପାଖ ସେପାଖ ଦଉଡ଼ି ଅତିଥିମାନଙ୍କର ଥାଳୀରେ ଏଇଟା-ସେଇଟା ପରଶି ଦେଉଥାଏ । ଅତି ମଧୁର ଭାବରେ ସେ ସେମାନଙ୍କୁ କୌଣସି ସଙ୍କୋଚ ନକରି ଭୋଜନ କରିବାକୁ ଅନୁରୋଧ କରୁଥାଏ । ଅତିଥି-ମାନେ ତା'ର ବ୍ୟବହାରରେ ମୁଗ୍‌ଧ ହୋଇ ପ୍ରଶଂସାପୂର୍ଣ୍ଣ ଦୃଷ୍ଟିରେ ତା'ଆଡ଼କୁ ଅନାଇ ରହିଥାନ୍ତି । ଆପଣା ଝିଅକୁ ଦେଖି ଡୋମିନିକଙ୍କର ମନ ଭାରି ହୃଷ୍ଟ ହୋଇ ଉଠୁଥାଏ, ସେ ହାତର ଚାମଚକୁ ଥାଳୀଉପରେ ରଖିଦେଇ ତାହାଆଡ଼କୁ ବାରବାର ଅନାଇ ରହୁଥାଏ ।

ବୋରିନା ମଧ୍ୟ ଏହି କଥାକୁ ବେଶ୍‌ ଲକ୍ଷ୍ୟ କରି ପାରୁଥାଏ । ସ୍ୱଗ୍‌ନା ରୋଷେଇଘର ଆଡ଼କୁ ଯାଉଥିବାବେଳେ ସେ ତା'ର ପଛେପଛେ ଯାଇ ବାଟରେ ତାକୁ ହାବୁଡ଼ ଯାଉଥାଏ ଓ ଆଦରରେ କୁଣ୍ଢାଇ ପକାଇ ତାକୁ ଚୁମ୍ବନ ଦେବାରେ ଲାଗିଥାଏ ।

"ସ୍ୱଗ୍‌ନା, ତୁ ସତେ ମୋର ଘରକୁ କେତେ ସଜେଇ ଦେଖା ନଯାଉଛୁ ! ଠିକ୍‌ ଗୋଟାଏ ଜମିଦାର ଘରର ଘରଣୀପରି ତୁ ସମସ୍ତଙ୍କର ମନକୁ ହରଣ କରିନେଉଛୁ !"

ଭିତେକ୍‌ ବାଡ଼ିଟାଏ ନେଇ ବାହାରେ ଭୁକୁଥିବା କୁକୁରଟାକୁ ବାଡ଼େଇ ଦେବାକୁ ଗଲା । କୁକୁରର ଭୁକିବା ବନ୍ଦ ହୋଇଗଲା । ଦୁଆର ସେପାଖରୁ ରୋକ୍‌ ତାକୁ ଡାକିକରି କହିଲା, "ଭିତେକ୍‌, ଶୁଣି ଗଲୁ ! ତୁ ଟିକିଏ ଚଞ୍ଚଳ ଯାଆ ଆମ୍ବ୍ରୋଜକୁ ଡାକିଦେବୁ । କହିବୁ ସେ ଝଅଟ ଆସିବ, ମୁଁ ଏଇଠି ତାକୁ ଅପେକ୍ଷା କରି ରହିଛି ।"

କିଛିସମୟ ପରେ ଆମ୍ବ୍ରୋଜ୍ ଆସି ପହଞ୍ଚିଲା । ଖାଇବା ଥାଳୀରୁ ତାକୁ ଉଠିଆସିବାକୁ ପଡ଼ିଥିବାରୁ ତା’ର ମିଜାଜଟା ଭାରି ଖଟା ହୋଇଯାଇଥାଏ । ଏମିତିଆ ଖାଇବା ଛାଡ଼ିକରି ଆସିବାକୁ କାହାର ମନହୁଏ କହିଲ ? ସେ କହିଲା :

“କ’ଣ ହେଲା ? ବର୍ତ୍ତମାନ କାହିଁକି ଡାକ ପଡ଼ିଲା ? କ’ଣ ଗୀର୍ଜା-ଘରେ ନିଆଁ ଲଗିଛି କି ?”

“ଏତେବଡ଼ ତୋଡ଼ ବାହାର କର ନା । ଟିକିଏ କୁବାକୁ ଦେଖି-ଆସିବୁ ଚାଲ । ମୋର ଭାରି ଭୟ ହେଉଛି ଯେ ସେ ଆଉ ଠାକବନାହିଁ ।”

“ଆରେ ସେ ମରିଗଲେ ଏବେ ମୋର କ’ଣ ହୋଇଯାଉଛି ? ମଣିଷକୁ ଟିକିଏ ଥିରହୋଇ ବସି ଖାଇବାକୁ ମଧ୍ୟ ଦେବେନାହିଁ ? — ମୁଁ ତ ଆଜି ସଞ୍ଜବେଳେ ଯାଇ ତାକୁ ଦେଖିଆସିଛି, କହିଆସିଛି ଯେ ଡାକ୍ତର-ଖାନାକୁ ଯାଇ ତାକୁ ତା’ର ଗୋଡ଼ଟା କଟାଇ ଆସିବାକୁ ପଡ଼ିବ । ତା’-ହେଲେ ସେ ତତ୍‌କ୍ଷଣାତ୍ ଭଲ ହୋଇଯିବ ।”

“ତୁଇ ତା’କୁ ଏପରି କହିଚୁ ? ତେବେ ମୁଁ ବୁଝିଲି । ମୋର ମନେ-ହେଉଛି ସେ ଆପଣାହାତରେ ଗୋଡ଼ଟାକୁ କାଟି ପକାଇଛି !”

“ହେ ମାଆ ଠାକୁରାଣୀ, ଆପଣା ହାତରେ କାଟି ପକାଇଛି ?”

“ତୁ ଝଅଟ ଚାଲ, ଦେଖିବୁ ! ମୁଁ ଟିକିଏ ଶୋଇବି ବୋଲି ଗୁହାଳ-ଘରକୁ ଯାଉଥିଲି । ଦୁଆର ଭିତରେ ନ ପହଞ୍ଚୁଣୁ ଲପା ଭୁକିଭୁକି ମୋ’-ଆଡ଼କୁ ଦଉଡ଼ି ଆସିଲା, ମୋ’ଉପରକୁ ଡେଇଁ ମୋର କୁରୁଟାକୁ ଟାଣିବାକୁ ଲାଗିଲା । ମୁଁ ତା’ର ମତଲବଟା ଜମାରୁ ବୁଝି ପାରୁନଥାଏ । କିନ୍ତୁ ସେ ପୁଣି ଆଗେଆଗେ ଦଉଡ଼ିଯାଇ ଦୁଆରବନ୍ଧ ଉପରେ ବସିପଡ଼ିଲା ଓ ଭେ’ ଭେ’ ହୋଇ ଭୁକିବାକୁ ଲାଗିଲା । ବାରବାର ଗୁହାଳ ଭିତରକୁ ଦଉଡ଼ି ଯାଉ ଥାଏ, ପୁଣି ବାହାରକୁ ଆସି ଭୁକୁଥାଏ । ସେଇଠୁ ମୁଁ ଗୁହାଳଭିତରକୁ ଯାଇ ଦେଖିଲି କୁବା କବାଟ ପାଖରେ ପଡ଼ିଛି । ପ୍ରଥମେ ଭାବିଲି, ବୋଧହୁଏ ଟିକିଏ ଖୋଲା ପବନ ପାଇବବୋଲି ସେ ବାହାରକୁ ଯାଇଥିଲା, ହଠାତ୍ ବଳ ନପାଇବାରୁ ଏଇଠି ବାଟରେ ମୂର୍ଚ୍ଛା ହୋଇ ପଡ଼ିଛି । ଏହିପରି

ଖବ ମୁଁ ତାକୁ ତା'ର ଖଟିଆ ଉପରକୁ ଉଠାଇ ଅଣିଲ । ତାକୁ ମୁନ୍ଦାଏ ପାଣି ଦେବବୋଲି ବତୀ ଲଗାଇବାକୁ ଗଲି । ବତୀ ଲଗାଇ ଦେଖିଲି ଯେ ସେ ଗୋଟାସୁଦ୍ଧା ରକ୍ତରେ ବୁଡ଼ିଛ । ତା'ର ଗୋଡ଼ରୁ ଝରଝର ହୋଇ ରକ୍ତ ବୋହିବାରେ ଲଗିଚ ଓ ତା'ର ମୁହଁଟା ଏକାବେଳେକେ ଶେତା ପଡ଼ିଗଲଣି ।"

ଦୁହେଁ ଯାକ ଘୁଆଳ ଭିତରକୁ ଗଲେ । ଆମ୍ବ୍ରୋଜ୍ ତା'ର ପାରୁ-ପର୍ଯ୍ୟନ୍ତ ଚେଷ୍ଟା କଲା, କିନ୍ତୁ ତଥାପି କିଛି ଫଳ ହେଲନାହିଁ । ବିଚରା କୁବାର ଦେହରେ ଆଉ ଟିକିଏ ହେଲେ ତାକତ ନଥାଏ । ତା'ର ନିଶ୍ୱାସ ପ୍ରାୟ ବନ୍ଦହୋଇ ଆସିଲଣି । ଭିତରୁ ଘଡ଼ଘଡ଼ ଶବ୍ଦ ଶୁଣାଯାଉଛ । ଦାନ୍ତଗୁଡ଼ାକ ଏପରି ଭାବରେ ଯାବ ପଡ଼ିଯାଇଚ ଯେ ତା' ମୁହଁ ଫିଟାଇ ଟୋପାଏ ପାଣି ଦେବାକୁ ମଧ୍ୟ ସେମାନଙ୍କୁ ଗୋଟାଏ ଛୁରୀର ସାହାଯ୍ୟ ନେବାକୁ ପଡ଼ିଲ ।

ଆଣୁ ପାଖରେ ଗୋଡ଼ଟା କଟା ହୋଇଚ, କେବଳ ଚମଡ଼ାଟା ଲଗିରହି ଥିବାରୁ ଗୋଡ଼ଟା ଦେହସହିତ ଲଟକିକରି ରହିଚ । ଯେଥିରୁ ରକ୍ତସୁଅ ଛୁଟିବାରେ ଲଗିଚ ।

କୁଆରମୁହଁଯାକ ଗୁଣ୍ଡଆଡ଼େ ରକ୍ତ । ପାଖରେ ରକ୍ତ ଲଗିଥିବା ଗୋଟାଏ କୁରାଢି ପଡ଼ି ରହିଚ । ଚକଟା ସବୁଦିନେ ଓଳତଳେ ଥାଏ, ଆଜି ଆସି କବାଟପାଖରେ ପଡ଼ିଚ !

"ଡାକ୍ତରଖାନାକୁ ଭୟ କରି ସେ ଆପଣା ହାତରେ ଆପଣାର ଗୋଡ଼କୁ କାଟିପକାଇଚ । ଏତିକି ବୋକା, ଭାବଲା ଏମିତି କରିଦେଲେ ତା'ର ଦେହ ଭଲ ହୋଇଯିବ ! ତଥାପି ତା'ର ସାହସ ଦେଖ ! ହେ ଭଗବାନ ! ଆପଣାର ଗୋଡ଼ଟାକୁ ......ଏଥିରେ ଭଲ କିଏ ବିଶ୍ୱାସ କରିବ କହିଲ ! ଦେହରୁ କେତେ ଗଦା ରକ୍ତ ଗଲଣି କେଜାଣି ?"

ଏତେବେଳେ ଯାଇ କୁବା ଆଖି ଫିଟାଇଲା । ତା'ର ଚେତା ଫେରି ଆସିଲରୁ ସେ ଗୁଣ୍ଡପାଖକୁ ଅନାଇବାକୁ ଲଗିଲ ।

"ଗୋଡ଼ଟା କଟିଲା ନା ନାହିଁ ? ମୁଁ ମୋଟେ ଦୁଇଗୋଟ ପକାଇଚ । ତା'ପରେ ମୋର ଚେତା ବୁଡ଼ିଗଲ ।"—ସେ କ୍ଷୀଣସ୍ୱରରେ କହିଲା ।

"କିଛୁ କଷ୍ଟ ହେଉଚି ?"

"ନା,—ଆଉ ମୋତେ କଷ୍ଟ ହେଉନାହିଁ …… କେବଳ ଦେହରେ ଆଉ ବଳ ନାହିଁ ।"

ଆମ୍ବ୍ରୋଜ୍ କଣ୍ଟା ଜୀଗାଟାକୁ ପୋଛିପାଛି ପରିଷ୍କାର କରିଦେଲା ଓ ଦୋକାନରେ ପଟି ବାନ୍ଧି ଦେଲା । କୁବା କେବଳ ଥିର ହୋଇ ପଡ଼ିରହିଥାଏ, କିଛିହେଲେ ଶବ୍ଦ କରୁନଥାଏ ।

ରୋକ୍ ଆଣ୍ଠୁମାଡ଼ି ବସି ବସି ଦେଖାଉଥାଏ ଓ ମନେମନେ ଖୁବ କାତର ହୋଇ ପ୍ରାର୍ଥନା କରିବାରେ ଲାଗିଥାଏ । ରୋଗୀ ଅଧର କୁଞ୍ଚିତ କରି କ୍ଷୀଣଭାବରେ ହସିବାକୁ ଲାଗିଲା । ଏଣେ ଆଖିରୁ ଲୁହ ଛଳଛଳ ହୋଇ ଆସୁଥାଏ । ଯେତେ ଯେପରି ବାପମାଆ ଛାଡ଼ିଦେଇଥିବା କୌଣସି ଶିଶୁ ଗହୀର ବଳ ମଝିରେ ଏକାକୀ ପଡ଼ିରହିଚି, ଅନୁଭବ କରୁଚି ଯେ ତା'ର ମାଆ ଏଇନାଗେ କୁଆଡ଼େ ଯାଇଚି, କିନ୍ତୁ ତାଙ୍କୁ ଏକାବେଳେକେ ଛାଡ଼ି ଚାଲି-ଯାଇନାହିଁ । ତା'ର ଦେହଉପରେ ଦୋହଲୁଥିବା ଘାସପତ୍ରର ସ୍ପର୍ଶ ପାଇ ସେ ଉଲ୍ଲସିତ ହୋଇ ଉଠୁଚି, ସୂର୍ଯ୍ୟକିରଣକୁ ଉପଭୋଗ କରୁଚି, ଉଡ଼ି ଚାଲିଯାଉଥିବା ଚଢ଼େଇମାନଙ୍କ ଆଡ଼କୁ ହାତ ବଢ଼ାଉଚି, ଆପଣା ଭାଷାରେ ଚାରିପାଖର ପୃଥିବୀସହିତ କଥାବାର୍ତ୍ତା ହେବାରେ ଭୋଳ ହୋଇ ରହିଚି । ବର୍ତ୍ତମାନ କୁବା ଠିକ୍ ସେହି ଶିଶୁଟି ପରି ଅନୁଭବ କରୁଥାଏ । ବର୍ତ୍ତମାନ ତା'ଦେହରେ କୌଣସି ଯନ୍ତ୍ରଣା ନାହିଁ, ଖାଲି ଆରାମ ଓ ଉଲ୍ଲାସ ଲାଗୁଚି । ତା'ର ଦେହରେ କେଉଁଠି କ'ଣ ରୋଗ ହୋଇଚି ବୋଲି ସେ ଆଦୌ ଅନୁଭବ କରି ପାରୁନାହିଁ, ବରଂ ମନେମନେ ପ୍ରଚ୍ଛନ୍ନ ଭାବରେ ବେଶ ଗୌରବ ଅନୁଭବ କରୁଚି । କୁରାଢ଼ିଟାକୁ ସେ କେଡ଼େ ବଢ଼ିଆକରି ପକାଇ ଆଣିଥିଲା । କେମିତି ଗୋଡ଼କୁନେଇ ଦୁଆରବନ୍ଧ ଉପରେ ରଖିଲା, ଗୋଟାଏ ଗ୍ରେଟ ଯଥେଷ୍ଟ ନହେବାରୁ ସଙ୍ଗେସଙ୍ଗେ ଆଉଗୋଟାଏ ଗ୍ରେଟ ବସାଇଦେଲା । ଏବଂ ବର୍ତ୍ତମାନ ସବୁ ଯନ୍ତ୍ରଣା ଯେତେଯେପରି କୁଆଡ଼େ ଉଡ଼ି ଚାଲିଗଲା ପରି ଲାଗୁଚି ! ସେ ଠିକ୍ ଯାହା ଚାହୁଁଥିଲା, ତାହାହିଁ ଫଳ ଫଳିଲା । ଦେହଟାରେ ଖାଲି ଆଉ ଟିକିଏ ତାକତ ଥିଲେ ସେ କଦାପି ବର୍ତ୍ତମାନ ଏଇ ଖଟିଆଟା ଉପରେ ପଡ଼ି ରହି ନଥାନ୍ତା, ଉଠିକରି ବାହାଘର ଭୋଜି ଦେଖି-

ବାକୁ ଚାଲିଯାଆନ୍ତା··· ସମସ୍ତଙ୍କ ସାଙ୍ଗରେ ମିଶି ନାଚନ୍ତା । ମନମଉଜରେ ଭୋଜି ଖାଆନ୍ତା !

"ଥିର ହୋଇ ପଡ଼ିରହ, ହଲଚଲ ହୁଅ ନାହିଁ ! ମୁଁ ଯାଉଚି ଯୁଜକାକୁ କହିବି. ସେ ତୋତେ କ'ଣ ଗଣ୍ଡାଏ ଖାଇବାକୁ ଦେଇଯିବ ।"—ତା'ର ଗାଲଉପରେ ଥାପଡ଼େଇ ଦେଉଦେଉ ବୋକ୍ କହିଲା ଏବଂ ଆମ୍ବ୍ରୋଜ ସହିତ ବାହାରକୁ ଚାଲିଗଲା ।

"ସେ ସକାଳଯାଏ ବି ଠାକୁ ଯାଇବା ମୁସ୍କିଲ । ତା'ର ଦେହରେ ଆଉ ଟୋପାଏ ସୁଦ୍ଧା ରକ୍ତ ନାହିଁ ।"

"ତା'ହେଲେ ଚେଷ୍ଟା ଆଉଥାଉ ପାଦ୍ରୀଙ୍କୁ ଯାଇ ଡାକିଆଣିବା ଭଲ ।"

"ପାଦ୍ରୀ ଏଠି ନାହାନ୍ତି, ଆଜି ରାତିକପାଇଁ ସେ ଜମିଦାରଙ୍କ ଘରକୁ ଯାଇଚନ୍ତି ।"

"ମୁଁ ତାଙ୍କୁ ଖବର ଦେବାକୁ ଯାଉଚି । ଆଉ ବିଳମ୍ବ କରିବା ଉଚିତ ନୁହେଁ ।"

"ଜଙ୍ଗଲ ଭିତରେ ଏଇ ରାତିଟାରେ ତୁ ପାଞ୍ଚମାଇଲ ବାଟ ଚାଲିକରି ଯିବୁ ? ତେବେ ତୁ କଦାପି ସମୟ ଥାଉଁ ପହଞ୍ଚି ପାରିବୁ ନାହିଁ । ରାତିଖାଇବା ସରିଗଲେ କୁଣିଆ ମାନେ ଗାଡ଼ୀରେ ବସି ଯିବାକୁ ପ୍ରସ୍ତୁତ ହୋଇଯିବେ । ତୁ ସେଇଥିରୁ କୌଣସି ଗାଡ଼ୀରେ ବସି ଚାଲିଗଲେ ହେବ ।"

ସେମାନେ ଗୋଟିଏ ଗାଡ଼ୀ ସଜ କଲେ, ବୋକ୍ ଯାଇ ଗାଡ଼ୀରେ ବସିଲା ।

"କୁବାର ତତ୍ତ୍ୱ ନେଉଥିବୁ, କଦାପି ଭୁଲିବୁନାହିଁ ଗାଡ଼ୀ ଚାଲିଲା ବେଳକୁ ସେ କହିଲା ।

"ହଁ, ମୁଁ ସମସ୍ତ ତତ୍ତ୍ୱ ନେବି । ତୁ ଚିନ୍ତା କରନା ।"

କିନ୍ତୁ ଏକଥା ଭୁଲିଯିବାକୁ ତା'ର ଆଦୌ ଡେରି ହେଲନାହିଁ । କୁବାଲାଗି କିଛି ଖାଇବା ଦେଇଯିବାକୁ ଯୁଜ୍‌କାକୁ କହିଦେଇ ସେ ପୁଣି ଭୋଜିସଭାକୁ ଗଲା ଏବଂ ମଦବୋତଲର ସେବା କରୁକରୁ କୁବାର ସେବା କରିବାକୁ ତା'ର ଆଦୌ ମନେ ରହିଲନାହିଁ ।

ସୁଜ୍‌କାର ହୃଦୟରେ ସବୁବେଳେ ଖୁବ ଦୟା । ସେ ଯାହା ପାଇଲା, ଗୋଟିଏ ଥାଳୀରେ ଧରି ସଙ୍ଗେସଙ୍ଗେ କୁବା ପାଖକୁ ନେଇଆସିଲା । ଗିଲସେ ଭଡ୍‌କା ମଧ୍ୟ ସାଙ୍ଗରେ ଆଣିଥିଲା ।

"ନେ କୁବା । ତୋ'ପାଇଁ ଖାଇବାକୁ ଆଣିଛି । ଭୋକରେ ଖାଇବା :"

"ଭଗବାନ ତୋ'ର କଲ୍ୟାଣ କରନ୍ତୁ । ଆଃ—ମହକରେ ମନ ଖୁସୀ ହୋଇଯାଉଛି :"

"ମୁଁ ପରା ଜାଣେ ତୋପାଇଁ ବାଛିକରି ଆଣିଛି !"— ଥାଳୀଟିକୁ ନେଇ ସେ କୁବାହାତରେ ଧରାଇଦେଲା । କାରଣ ଗୁହାଳ ଭିତରଟା ଅନ୍ଧାର ହୋଇ ରହୁଥାଏ । "କିନ୍ତୁ ଆଗ ଭଡ୍‌କାତକ ପିଇଦେ !"

କୁବା ଗିଲସଟିର ଶେଷ ବୁନ୍ଦା ଟିକୁ ମଧ୍ୟ ଶେଷ କରି ପିଇଦେଲା ।

"ତୁ ଏଠି ମୋ'ପାଖରେ ଟିକିଏ ବସନ୍ତୁନାହିଁ ? ମୋତେ ଖୁବ ଏକୁଟିଆ ଲାଗୁଛି !"

ଖାଇବାରୁ ଟିକିଏ ନେଇ ସେ ତୁଣ୍ଡରେ ମାରିଲା । କିନ୍ତୁ କିଛି ଗିଳିବାଇ ପାରିଲାନାହିଁ ।

"ସେଠାରେ ସମସ୍ତେ ଖୁବ ମଉଜ କରୁଛନ୍ତି, ନାଇଁ ?"

"ହଁ, ଏତେ ମଣିଷ ଆସିଛନ୍ତି ଯେ କୁହାନଯାଏ । ମୁଁ ମୋ' ଜୀବନରେ କେବେହେଲେ ଏତେ ମଣିଷ ଦେଖି ନଥିଲି !"

"ନଷ୍ଟସ୍ୟ, ନଷ୍ଟସ୍ୟ !— ସେ ଗର୍ବ ଅନୁଭବ କଲାପରି କହିଲା ।" ଇଏ ପରା ବୋରନାର ବାହାଘର, କ'ଣ ଆଉ କାହାର ହୋଇଛି ?"

"ହଁ, ବାପା ଆଜି ଖୁବ ଖୁସୀ ଅଛନ୍ତି । ... ଆଉ ସବୁବେଳେ ସ୍ୱଗ୍‌ନା ପଛରେ ଗୋଡ଼ାଇଚନ୍ତି !"

"ହଁ, ହଁ, ଗୋଡାଇବେ ନାହିଁ ? ସ୍ୱଗ୍‌ନା ପ୍ରକୃତରେ କେଡ଼େ ସୁନ୍ଦର, ଠିକ୍ କୌଣସି ଜମିଦାର ଘରର ଘରଣୀ ପରି ! ପଧନେ ଆସିଚନ୍ତି ?"

"ହଁ, ଖାଲି ଚବରଚବର ହେଉଚନ୍ତି । ଆନ୍ତ୍ରୋକ୍ ସହିତ ଏପରି ଥଟ୍ଟାତାମସା କରୁଚନ୍ତି ଯେ ସମସ୍ତେ ହସିହସି ଗଡ଼ଯାଉଚନ୍ତି ।"

"ଆଲେକ୍‌ର ଖବର କିଛୁ ଜାଣିଚୁ ?"

"ହଁ — ସଞ୍ଜବେଳେ ପିଲାଙ୍କପାଇଁ କିଛୁ ପିଠା ଓ ମାଉଁସ ଧରି ମୁଁ ତା' ଘରକୁ ଯାଇଥିଲି । କିନ୍ତୁ ସେ ମୋତେ ଘରୁ ବାହାର କରିଦେଲା, ଆଉ ମୋ'ର ସାମନାରେ ଖାଇବା ଜିନଷଗୁଡ଼ାକୁ ଫୋପାଡ଼ିଦେଲା । ସେ ଭାରି ଏକଜିଦ୍, ଭାରି ଅବାଗିଆ ! ସେଠି ତ ସବୁବେଳେ ଗାଳି ଗୁଲ୍ଜ୍ଜା ଲାଗିଚି । ହାଙ୍କା ତ ରାତ୍ରଦିନ ତା'ର ଭଉଣୀ ସହିତ କଜିଆ ଲଗାଉଚି, ମାଡ଼ ମରାମରି ହେବାକୁ ଆଉ ବେଶୀ ବେଳ ଲାଗିବନାହିଁ ।"

କୁବା କିଛି ଉତ୍ତର ଦେଲାନାହିଁ । ତା'ର ନିଃଶ୍ୱାସ କେବଳ ଖରତର ହୋଇଆସିଲା ।

କିଛି ସମୟପରେ ସେ କହିଲା —"ମୁକ୍‌ଲା, ଗଲୁ ଦେଖିବୁ ଘୋଡ଼ୀଟା କାହିଁକି ଯେପରି ଗଅଁଗଅଁ ହେଲାପରି ଶୁଭୁଚି ! ସଞ୍ଜପହରୁ ସେ ଗୋଟିଏ ଜାଗାରେ ପଡ଼ିରହିଚି । ତା'ର ମଧ ଛୁଆ ଜନମ କରିବାର ସମୟ ହୋଇଯାଇ ଆସିଲାଣି, ଏଣିକି ତା'ଉପରେ ଭଲକରି ନଜର ରଖିବାକୁ ହେବ । ଶୁଣିଲୁ, ସେ କେମିତି ବିକଳ ହୋଇ ବୋବାଉଚି ! ମୁଁ ତ ଉଠିପାରୁ ନାହିଁ, ଅକର୍ମିକ ହୋଇ ଏଠି ପଡ଼ିଚି !"

ଧଇଁସଇଁ ହୋଇ ପଡ଼ିବାରୁ ସେ କିଛିସମୟ ପର୍ଯ୍ୟନ୍ତ ଆଉ କୌଣସି କଥା କହି ପାରିଲାନାହିଁ, ବୋଧହୁଏ ତାକୁ ନିଦଲାଗି ଆସୁଥାଏ ।

ମୁକ୍‌ଲା ଉଠିପଡ଼ି ତରତର ହୋଇ ଚାଲିଗଲା ।

ନିଦ ଭାଙ୍ଗିଯିବାରୁ କୁବା ପୁଣି ଘୋଡ଼ୀକୁ ନାଆଁ ଧରି ଡାକିଲା ।

ଅନ୍ଧାର ଭିତରୁ ଘୋଡ଼ୀ କ୍ଷୀଣସ୍ୱରରେ ବୋବାଇ ଜବାବ ଦେଲା ।

"ତା'ହେଲେ ମୋର ଜୀବନରେ ଏଇ ହେଉଚି ଶେଷଥର ଖାଇବା ! ଲିପା, ତୁ ଅପେକ୍ଷା କର, ତୁ ମଧ ତୋ'ର ଭାଗ ଅବଶ୍ୟ ପାଇବୁ । ସେମିତି କୁଉଁକୁଉଁ ହେଉଚୁ କାହିଁକି ?"

ସେ ପୁଣି ଖଣ୍ଡେ ମାଉଁସ ଖାଇବାକୁ ଚେଷ୍ଟାକଲା, କିନ୍ତୁ ଏଥର ମଧ ତାହା ତଣ୍ଟିରେ ଗଲାନାହିଁ । ଅଧବାଟ ଯାଇ ଲାଖିଗଲା ।

"ହେ ଭଗବାନ୍ ! ଏତେ ଖାଇବାପିଇବା ହେଲା, ତଥାପି ମୁଁ ଗୋଟାଏ ପାଟି ମଧ୍ୟ ଖାଇ ପାରିଲିନାହିଁ !"

ହଁ, ଅଧିକ ଚେଷ୍ଟାକରିବା ବୃଥା । ସେ ଆଉ ପାରିଲାନାହିଁ । ତା'ର ହାତରୁ ମଧ୍ୟ ସବୁ ବଳ କୁଆଡ଼େ ଚାଲିଗଲା ପରି ମନେହେଲା । ତଥାପି ମାଉଁସଖଣ୍ଡକୁ ହାତରେ ଧରି ସେ ଆପଣା ପାରିଶୁଆର ତଳେ ଥିବା କୁଟା-ଭିତରେ ଗୁଞ୍ଜିଦେବାକୁ ଚେଷ୍ଟାକଲା ।

"ଏତେ ଖାଇବା ମୁଁ କେବେହେଲେ ପାଇନଥିଲି । କିନ୍ତୁ ସବୁ ଖାଲି ବୃଥା ହୋଇଗଲା !"— ସେ ବଡ଼ କ୍ଷୁନ୍ନ ଓ ଆହତପ୍ରାୟ ଅନୁଭବ କରିବାକୁ ଲାଗିଲା ।

"କିନ୍ତୁ ବର୍ତ୍ତମାନ ଟିକିଏ ଶୋଇପଡ଼ିବା ଭଲ । ପଛକୁ ପୁଣି ଉଠିଲେ ଯେତେବେଳେ ବଳ ପାଇବି, ସେତେବେଳେ ଆଚ୍ଛା କରି ଖାଇବି !"

କିନ୍ତୁ ଆଉ ସେକଥା ସମ୍ଭବ ହେଲାନାହିଁ । ହଠାତ୍ ସେ କିଛିସମୟ ପାଇଁ ଅଚେତା ହୋଇ ଢାଳେଇ ପଡ଼ିଲା । ମାଉଁସଖଣ୍ଡଟା ସେହିପରି ତା'ର ହାତମୁଠା ଭିତରେ ରହିଥାଏ ଓ ତା'ର ଅଜାଣତରେ ଲୁଖା କୁକୁର ଆସି ତାକୁ ଚାଟିବାଇବାରେ ଲାଗିଥାଏ ।

ହଠାତ୍ ପୁଣି ତା'ର ଚେତା ଫେରିଆସିଲା । ସେପାଖରେ ଭୋଜି ସରିଲାଣି । ଗୀତବାଦ୍ୟର ଶବ୍ଦରେ କାନ ଫାଟିଯାଉଚି, ସ୍ୱାଲଘରର କାନ୍ଥ ଦୁଲୁକି ଉଠୁଚି, ଘଡ଼ୀଭିତରୁ କୁକୁଡ଼ାଗୁଡ଼ାକ କିଲିକାଲିଆ ହୋଇ ଉଠୁଚନ୍ତି ।

ନାଚ ଜୋରସୋରରେ ଚାଲିଚି । ଲୋକମାନଙ୍କର ହାସ୍ୟକୋଲାହଳ ଓ କ୍ରୀଡ଼ାକୌତୁକରେ ଖଣ୍ଡା ଫାଟିଯାଉଚି । ଗୋଡ଼ ପଡ଼ିବାର ଦୁଲୁଦୁଲୁ ଶବ୍ଦ ଶୁଭୁଚି, ଟ୍ରକେଲ୍‌ମାନଙ୍କର ଚେଁ ଚେଁ ପାଟି ଗ୍ରଡର ହୃଦୟକୁ କମ୍ପାଇ ଦେଉଚି ।

କୁବା ପ୍ରଥମେ କାନଡେରି ଶୁଣିବାକୁ ଲାଗିଲା । କିନ୍ତୁ କ୍ଷଣକପରେ ତାକୁ ଆଉ କିଛି ମାଲୁମ ହେଲାନାହିଁ । ତା'ର ସମସ୍ତ ଶରୀରକୁ ଗ୍ରାସ କରି ଗୋଟାଏ ନିଦ୍ରାଳସତା ଘୋଟିଆସିଲା ଓ ତାକୁ ସତେଯେପରି ଝନନ୍ତ୍କାର-

ମୃତ୍ୟୁର କେଉଁ ଅନ୍ଧକାରର ଗର୍ଭକୁ ବହନ କରି ନେଇଗଲା । ସତେଯେପରି ଝରଗଡରେ କଳକଳ ଶବ୍ଦ କରି ବହିଯାଉଥିବା କେଉଁ ଜଳରାଶିର ଅତଳ ତଳକୁ ନେଇ ଚାଲିଗଲା । କିନ୍ତୁ ସେପାଖରେ ନିତ୍ୟର କୋଳାହଳ ଅଧିକ ତୀବ୍ର ହେବା ସଙ୍ଗେସଙ୍ଗେ ପୁଣି ତା'ର ଅଧାନିଦ ଭାଙ୍ଗିଗଲା । ତା'ର ଶରୀରରେ ପୁଣି ଶିହରଣ ଦେଖାଗଲା, ତାହାର ଆତ୍ମା ସତେଅବା କେଉଁ ଗଭୀର ଗର୍ତ୍ତଭିତରୁ ଉପରକୁ ଉର୍ଦ୍ଧ୍ୱମାର ଆଣିବାକୁ ଚେଷ୍ଟା କରିବାକୁ ଲାଗିଲା । ତା'ର ତନ୍ଦ୍ରା ଭାଙ୍ଗିଗଲା ! କେଉଁ ଅସୀମ ସୁଦୂରଭିତରୁ ପୁଣି ଲେଉଟିଆସି ସେ ଶୁଣିବାକୁ ଚେଷ୍ଟାକଲା ।

ଠିକ୍ ଏହି ଅବସରରେ ସେ ବାରବାର ମାଉଁସଖଣ୍ଡିଟିକୁ 'ଖାଇବାକୁ ଚେଷ୍ଟା କରୁଥାଏ ଓ ସତେଅବା ହୃଦୟ ଭିତରୁ ଘୋଡ଼ୀଟିର ନାଆଁ ଧରି ଫୁସ୍‌ଫୁସ୍ କରି ଡାକିବାରେ ଲାଗିଥାଏ ।

କିନ୍ତୁ ବର୍ତ୍ତମାନ ପରିଶେଷରେ ତା'ର ଆତ୍ମା କ୍ରମଶଃ ଅପସରି ଯାଉଥାଏ, ଏହି ଭୌତିକଜଗତର ବିଶ୍ୱଶରୀର ଭିତରେ ବାଟକାଟି ଉଡ଼ିଉଡ଼ି ଚାଲିଯାଉଥାଏ । ନୂତନ ହୋଇ ଉଡିପାରୁଥିବା କେଉଁ ଦିବ୍ୟଲୋକର ପକ୍ଷୀଟି ପରି ପ୍ରଥମେ ସେ ଟିକିଏ ଅନିଶ୍ଚିତ ଭାବରେ ଆପଣାର ଡେଣା ଫଡ଼ଫଡ଼ କରୁଥାଏ, ଉପରକୁ ଉଠି ପାରୁନଥାଏ, ପୁଣି ବେଳେବେଳେ ସେହି ପବିତ୍ର ମୃଣ୍ମୟ ଶରୀରର ମାୟାଦ୍ୱାରା ଆକର୍ଷିତ ହୋଇ ସେ ତାହାର ଭିତରେ ବିଶ୍ରାମ ନେଇ ଉଡ଼ିବାର ଏହି ବିଭ୍ରାନ୍ତିରୁ ଉଦ୍ଧାର ପାଇବାକୁ ଆଗ୍ରହୀ ହୋଇ ଉଠୁଥାଏ, ପୁଣି ମନୁଷ୍ୟବସତି ଭିତରକୁ ଫେରିଆସି ବିଚ୍ଛେଦ ଦୁଃଖର ନିରାକରଣ କରିବାକୁ ଇଚ୍ଛା କରୁଥାଏ । ତାହା ପୁଣି ଆପଣାର ସଂସାର ଭିତରକୁ ଫେରିଆସିଲା, ଆପଣାର ପ୍ରିୟଜନମାନଙ୍କ ଭିତରକୁ ଫେରିଆସିଲା, ଦୁଃଖପୂର୍ଣ୍ଣ ଚିତ୍ତରେ ଆପଣାର ସାଥୀମାନଙ୍କୁ ଡାକିବାକୁ ଲାଗିଲା, ସେମାନଙ୍କର ସହାୟତା ପ୍ରାର୍ଥନା କରିବସିଲା । କିନ୍ତୁ ପୁଣି ପର ମୁହୂର୍ତ୍ତରେ ଭଗବତ୍-ଶକ୍ତି ଓ କରୁଣାରୁ ବଳ ପାଇ ତାହା ପୁଣି ଉର୍ଦ୍ଧ୍ୱକୁ ଉଠିବାକୁ ଆରମ୍ଭ କଲା, ଅଶେଷ ବସନ୍ତମୟ ସେହି ସୌନ୍ଦର୍ଯ୍ୟସମାବୃତ ରାଜ୍ୟ-

ଭିତରକୁ ଉଡ଼ିଯିବାକୁ ଲାଗିଲା; ଯେଉଁ ଅସୀମ କ୍ଷେତ୍ରକୁ ଭଗବାନ ଶାଶ୍ୱତ ସୂର୍ଯ୍ୟାଲୋକ ଏବଂ ଶାଶ୍ୱତ ଆନନ୍ଦରେ ଚିରସୁନ୍ଦର କରିରଖିଛନ୍ତି, ସେହି କ୍ଷେତ୍ରର ଉଦ୍ଦେଶ୍ୟରେ ଧାଇଁବାକୁ ଲାଗିଲା ।

ସେ ଉଚ୍ଚକୁ ଉଠିବାକୁ ଲାଗିଲା, — ଆହୁରି ଉଚ୍ଚକୁ — ଆହୁରି — ଆହୁରି — ଆହୁରି ଉଚ୍ଚକୁ ଉଡ଼ି – ଚାଲିଲା, — ହଁ, ପରିଶେଷରେ ତା'ର ପାଦ ଯାଇ ସେହି ଅନନ୍ତ ରାଜ୍ୟକୁ ସ୍ପର୍ଶ କଲା —

ଯେଉଁଠି କୌଣସି ଦୁଃଖ ବା କୌଣସି ଯନ୍ତ୍ରଣାର ବିକ୍ଷେପ ନାହିଁ, କୌଣସି ଛନ୍ଦଭଙ୍ଗ ନାହିଁ, କୌଣସି ବିଭ୍ରାନ୍ତି ନାହିଁ ! —

ଯେଉଁଠି ଗନ୍ଧଗର୍ଭ କୁମୁଦପୁଷ୍ପରୁ ସୌରଭ ଉଚ୍ଛ୍ୱସିତ ହୋଇ ପଡ଼ୁଛି, ଯେଉଁଠି ଯୋଜନଯୋଜନ ଧରି ପ୍ରସ୍ଫୁଟିତ ଫୁଲର କିଆରୀମାନ ପବନଭିତରେ ମଧୁବର୍ଷଣ କରିବାରେ ଲାଗିଛନ୍ତି, ଯେଉଁଠି ବିଚିତ୍ରବର୍ଣ୍ଣସମୃଦ୍ଧ ଶଯ୍ୟାଉପରେ ନକ୍ଷତ୍ରଖଚିତ ନଦୀମାନ ବହିଯିବାରେ ଲାଗିଛନ୍ତି; ଯେଉଁଠି କେବେହେଲେ ଦିନ ଯାଇ ରାତି ଆସେନାହିଁ,—

ଯେଉଁଠି ନୀରବ ପ୍ରାର୍ଥନାମନ୍ତ୍ରମାନ ସତତ ଉଚ୍ଚାରିତ ହେବାରେ ଲାଗିଛି, ଧୂପର ଧୂଆଁ ପରି ସୁଗନ୍ଧ ମେଘର ଆକୃତି ଧାରଣକରି ଉପରକୁ ଉଠିବାରେ ଲାଗିଛି, ଯେଉଁଠି ଘଣ୍ଟାମାନ ବାଜିଉଠୁଛି, ମଧୁର ମୃଦୁବେଗରେ ବାଦ୍ୟସଙ୍ଗୀତର ଲହରୀ ବ୍ୟାପ୍ତ ହୋଇଯାଉଛି; ଯେଉଁଠି ଦେବଦୂତ ଓ ପୁଣ୍ୟାତ୍ମାମାନେ ପବିତ୍ର ମନ୍ଦିରଭିତରେ ପରମେଶ୍ୱରଙ୍କର ସ୍ତୁତିଗାନ କରିବାରେ ଲାଗିଛନ୍ତି, ସେହି ସନାତନ ଦିବ୍ୟ ନଗରରେ ଆନନ୍ଦଧ୍ୱନି କରିବାରେ ଲାଗିଛନ୍ତି ।

ହଁ,— ଜୀବନର ଯାତନାରେ କ୍ଳାନ୍ତଶ୍ରାନ୍ତ ହୋଇ ବିଶ୍ରାମଲାଗି ଉନ୍ମୁଖ ହୋଇ ରହିଥିବା କୁବାର ଆତ୍ମା ସେହି ଅମୃତରାଜ୍ୟକୁ ଉଡ଼ି ଚାଲିଗଲା !

× × × ×

କିନ୍ତୁ ଏଣେ ଖଞ୍ଜାଭିତରେ ନୃତ୍ୟ ଓ ବିନୋଦନ ପୂର୍ଣ୍ଣଗତିରେ ଚାଲିଥାଏ । ନାଚବାଲେଙ୍କର ସଂଗ ଟିକିଏ ଊଣା ହୋଇ ଆସିବାମାତ୍ରକେ ବାଦ୍ୟକାରମାନେ ନୂତନ ଉତ୍ସାହରେ ବାଦ୍ୟ ବଜାଇବାକୁ ଆରମ୍ଭ କରି

ଦେଉଥାନ୍ତି । ପବନର ଆଘାତରେ ଚହଲି ଉଠିବା ଶିଳପ୍ରାନ୍ତର ପରି ଅତିଥିମାନେ ପୁଣି ଚଞ୍ଚଳ ହୋଇ ଉଠୁଥାନ୍ତି ଏବଂ ନୂତନ ଉତ୍ତେଜନାରେ ନାଚିବାକୁ ଆରମ୍ଭକରି ଦେଉଥାନ୍ତି । ପୂର୍ବର ବିନୋଦନ ଓ କୋଳାହଳ ଦ୍ୱିଗୁଣିତ ହୋଇ ଉଠୁଥାଏ ।

ଅତିଥିମାନଙ୍କର ଆତ୍ମା ନିମନ୍ତ୍ରିତଗ୍ରାହୀମାନଙ୍କର ଉତ୍ସାହପ୍ରଦାନରେ ପଡ଼ିଥିବା ବିଗଳିତ ହୋଇ ପଡ଼ିଥିଲାପରି ବୋଧ ହେଉଥାଏ, ସେମାନଙ୍କର ଧମନୀଭିତରର ରକ୍ତ ଟକଟକ ହୋଇ ଫୁଟିବାରେ ଲାଗିଥାଏ, ଆଉକିଛି ବିଚାର କରିବାକୁ କାହାରି କୌଣସି ବେଳ ନଥାଏ । ସେମାନଙ୍କର ହୃଦୟ ଏକ ବନ୍ଧନହୀନ ମଉଜାରେ ଦ୍ରୁତସ୍ପନ୍ଦିତ ହେବାରେ ଲାଗିଥାଏ । ବର୍ତ୍ତମାନ ସେମାନଙ୍କର ପ୍ରତ୍ୟେକ ପଦକ୍ଷେପ ନୃତ୍ୟ ବୋଲି ମନେହେଉଥାଏ, ପ୍ରତ୍ୟେକ ଝଙ୍କାର ସଙ୍ଗୀତ ବୋଲି ମନେହେଉଥାଏ, ଏବଂ ପ୍ରତ୍ୟେକ ଗୁଁହାଣୀ ଏକ ସ୍ୱର୍ଗୀୟ ଅଭିଭୂତ ସଞ୍ଚାର କରୁଥିବା ଗୁଁହାଣୀପରି ମନେହେଉଥାଏ ।

ଏହିପରି ନାଚନାଚି ରାତି ପାହିଗଲା, ସକାଳ ହେଲା । ବଡ଼ ଥିର ଓ ବୈଚିତ୍ର୍ୟହୀନ ଭାବରେ ଦିନଟି ଉଦୟ ହୋଇ ଆସିଲା । ସକାଳର କିରଣରେଖା ପଡ଼ିଲାବେଳକୁ ଆକାଶର ବକ୍ଷଉପରେ ସ୍ତୂପୀକୃତ ମେଘମାନ ଦୃଷ୍ଟିଗୋଚର ହେଉଥିଲା । ସୂର୍ଯ୍ୟୋଦୟ ବେଳକୁ ଭାରି ଅନ୍ଧାରୁଆ ଲାଗୁଥାଏ । ତା'ପରେ ବରଫ ବରଷିବା ଆରମ୍ଭ ହେଲା । ପହିଲେ କୁଣ୍ଡା ଝାଡ଼ିଲା, ପବନ ବାଜି ପାଇନ୍‌ଗଛରୁ ଛୁଞ୍ଚିମାନ ଝରିପଡ଼ିଲା ପରି ମନେହେଉଥିଲା, କିନ୍ତୁ ତା'ପରେ ଅଜାଡ଼ିହୋଇ ପଡ଼ିବାକୁ ଆରମ୍ଭକଲା ।

ତା'ପରେ ସତେଅବା କୌଣସି ଗୁଳୁଣୀଭିତରୁ ଖସିପଡ଼ିବା ପରି ବରଫଖଣ୍ଡମାନ ସିଧା ବରଷିବାକୁ ଲାଗିଲା । ଏହି ବର୍ଷିବାରେ କୌଣସି ବିରାମ ନାହିଁ, କୌଣସି ପରିବର୍ତ୍ତନ ନାହିଁ ବା କୌଣସି ଶବ୍ଦ ମଧ୍ୟ ନାହିଁ । ଗୁହୁ ଗୁହୁ ଏହି ବରଫରେ ଘରଗୁଡ଼ିକ, ଗଛଡାଳ ଓ ବାଡ଼ମାନ ଆବୃତ ହୋଇ ପଡ଼ିଲା;— ଟିଙ୍କଦଗର ସମସ୍ତ ସ୍ଥଳଭାଗ ଚଢ଼େଇପରର ଗୋଟିଏ ବିରାଟ ଶୁଭ୍ର ତଳିତଭିତରେ ଆଚ୍ଛାଦିତ ହୋଇ ରହିଲା ।

ଏତେବେଳେକେ ବିବାହ-ଉତ୍ସବ ସମ୍ପନ୍ନ ହେଲା । ଉତ୍ସବଟିରେ ସବାଶେଷ ଗାର ମାରିଦେବା ପାଇଁ ପୁଣି ସନ୍ଧ୍ୟାବେଳକୁ ସମସ୍ତେ ଯାଇ ଖଟିଘରେ ଏକଜୁଟ

ହେବେବୋଲି କଥା ରହିଲା । କିନ୍ତୁ ବର୍ତ୍ତମାନ ପାଇଁ ସମସ୍ତେ ଘରକୁ ଫିବାକୁ ବାହାରିଲେ ।

ତା'ପରେ କୁଣିଆମାନେ ଦୁଆରବନ୍ଧ ଉପରେ ଠିଆହୋଇ ଏକାଠି ମିଶି ଗୋଟିଏ ଗ୍ରେଟିଆ ଗୀତ ଗାଇଲେ ଏବଂ ତା'ପରେ ପରସ୍ପରକୁ (ସେହି ସକାଳ ସମୟଟାରେ) ଶୁଭରାତ୍ରି ମନାସି ବିଦା ହୋଇଗଲେ ।

ଠିକ୍ ସେତକବେଳେ କୁବା ଆପଣାର ଅମ୍ମାକୁ ପ୍ରଭୁ ଯୀଶୁଙ୍କର ପବିତ୍ର ଚରଣପ୍ରାନ୍ତରେ ନେଇ ଥାପନା କରି ରଖୁଥାଏ ।

ଏହାପରେ ପଢ଼ନ୍ତୁ...

## ଦ୍ୱିତୀୟ ଖଣ୍ଡ
## **ଶୀତକାଳ**

## ତୃତୀୟ ଖଣ୍ଡ
## **ବସନ୍ତକାଳ**

## ଚତୁର୍ଥ ଖଣ୍ଡ
## **ଗ୍ରୀଷ୍ମକାଳ**

# ଅନ୍ତ କଥନ

ଗତ ୧୯୫୮ ମସିହା ଅକ୍‌ଟୋବର ମାସରେ ଓଡ଼ିଶାର କଟକଠାରୁ ମୁଁ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସଙ୍କର ଖଣ୍ଡିଏ ଚିଠି ପାଇଥିଲି । ସେହି ଚିଠିରେ ସେ ଲଡସଲସ୍ ରେମେଣ୍ଟଙ୍କର The Peasants ଉପନ୍ୟାସଟିର ଓଡ଼ିଆ ଅନୁବାଦ ପ୍ରକାଶ କରିବାକୁ ଯାଉଥିବାର ଇଚ୍ଛା ପ୍ରକାଶ କରିଥିଲେ ଓ ଏହି ଗ୍ରନ୍ଥରୁ ଖଣ୍ଡେ ତାଙ୍କୁ ଯୋଗାଇ ଦେବା ସକାଶେ ମୋତେ ଅନୁରୋଧ କରି-ଥିଲେ । ଅନୁବାଦଟି ସମ୍ପର୍କରେ କାହାଠାରୁ କିପରି ଅନୁମତି ନେବାକୁ ହେବ, ସେ କଥା ମଧ୍ୟ ସେ ମୋତେ ପଚାରିଥିଲେ । ସେଦିନ ତାଙ୍କ ଚିଠିଟି ପାଇଲାବେଳେ ଭାରତୀୟ ପି. ଇ. ଏନ୍ ଗୋଷ୍ଠୀର ମୋର ଏହି ସହକର୍ମୀ-ଙ୍କର ଉଚ୍ଚାଭିଳାଷୀ ଉଦ୍ଦେଶ୍ୟ ମୋତେ ପ୍ରକୃତରେ ଭାରି ପ୍ରଭାବିତ କରି ଦେଇଥିଲା ।

ରେମଣ୍ଟଙ୍କର ବିରାଟ ଉପନ୍ୟାସ-ଗ୍ରନ୍ଥଟିର ଅନୁବାଦ ଭଳି ଏକ ଅତିବ କଠିନ କାର୍ଯ୍ୟକୁ ହାତକୁ ନେବାପାଇଁ କୌଣସି ଅନୁବାଦକ ଯେ ମନ ବଳାଇଚନ୍ତି, — ଏହାହିଁ ସେହି ଅନୁବାଦକଙ୍କ ପ୍ରତି ଶ୍ଳାଘା ଓ ସମ୍ମାନ ଜାଗ୍ରତ କରିବାଲାଗି ଯଥେଷ୍ଟ ହେବ । ନୋବେଲ୍ ପୁରସ୍କାର ଦ୍ୱାରା ସମ୍ମାନିତ ଆମ ଦେଶର ଉପନ୍ୟାସିକାରଙ୍କର ବିରାଟ ଏହି ଉପନ୍ୟାସଟି ଆମ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ରହିଚି । କୃଷୀକୁଳର ନିତ୍ୟବ୍ୟବହୃତ କଥିତ ଭାଷାର ମୌଳିକ ସୌନ୍ଦର୍ଯ୍ୟ ଓ ପ୍ରକାଶ ସ୍ୱଚ୍ଛନ୍ଦତାଦ୍ୱାରା ତାହା ଅତି ଗମ୍ଭୀର ଭାବରେ ଅନୁମ୍ରିକ୍ତ ହୋଇ ରହିଚି, ନାନାପ୍ରକାର ସମୁଜ୍ଜଳ ଅଥଚ ଅପୂର୍ତ୍ତିତା ମୁକ୍ତ ରଙ୍ଗରେ ରଞ୍ଜାଇ ଜୀବନର ଛବିଗୁଡ଼ିକୁ ଉପସ୍ଥାପିତ କରି-ବାରେ ଏହି ଉପନ୍ୟାସର ଏକ ଅତି ସ୍ୱକୀୟ ଶୈଳୀ ମଧ୍ୟ ରହିଚି, ଏବଂ ସର୍ବୋପରି ଆପଣାର ମନୋବୈଜ୍ଞାନିକ ଗଠଣ ଓ କଥାବସ୍ତୁ ମଧ୍ୟ ଦେଇ ତାହା ଗ୍ରାମ୍ୟଜୀବନକୁ ପରିବାହିତ କରୁଥିବା ଅନ୍ତଃସୂତ୍ରଗୁଡ଼ିକର କ୍ରିୟା-ପ୍ରତିକ୍ରିୟାକୁ ଅତି ଚମତ୍କାର ଭାବରେ ପରିସ୍ଫୁଟ କରିଦେଇଚି । ପ୍ରାଚୀନ ଭାରତୀୟ ସଂସ୍କୃତିର ଦାୟାଦମାନଙ୍କୁ ନିଷ୍ଟୟ କେତେକ ପରିମାଣରେ ଅଦ୍ଭୁତ

ଓ ବହିର୍ଗତ ବୋଲି ବୋଧ ହେଉଥିବା ଏହି ଅସାଧାରଣ ପୁସ୍ତକଟିକୁ ଓଡ଼ିଆ ଭାଷାର ଭୂଷା ପିନ୍ଧାଇବାରେ ଯେ ଅନୁବାଦକ ଚିତ୍ତରଞ୍ଜନ ଦାସଙ୍କୁ ପୁସ୍ତକଟିର ବିଶଦ ଅଧ୍ୟୟନ, କଠିନ ପରିଶ୍ରମ ଓ ଅନୁସନ୍ଧାନ କରିବାକୁ ପଡ଼ିଥିବ, ଏହି କାର୍ଯ୍ୟଟି ଯେ ଲେଖକ ହିସାବରେ ରହିଥିବା ତାଙ୍କ ସାମର୍ଥ୍ୟର ଏକ ଅତ୍ୟଧିକ ଅଂଶ ଦାବୀ କରି ବସିଥିବ, ଏହି କଥାକୁ ମୁଁ ଆଦୌ ବିଚିତ୍ର ବୋଲି ବିଚାର କରୁନାହିଁ ।

ଆଜି ଯେତେବେଳେ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ତାଙ୍କ ଉଦ୍ୟମର ଫଳ ସ୍ୱରୂପ ପୋଲାଣ୍ଡ୍ ଉପନ୍ୟାସକାରଙ୍କର ନାମସହିତ ସଂଯୁକ୍ତ ଏହି ଉପନ୍ୟାସଟିକୁ ଭାରତୀୟ ପାଠକମାନଙ୍କ ଲାଗି ବାଢ଼ି ଦେବାକୁ ଯାଉଛନ୍ତି, ସେତେବେଳେ ରେମଣ୍ଟଙ୍କର ସାହିତ୍ୟ-ଭୂମିଗତ ଦାୟାଦରୂପେ ଆଧୁନିକ ପୋଲାଣ୍ଡ୍‌ର ଲେଖକମାନେ ଭାରତରେ ଥିବା ସେମାନଙ୍କର ଜଣେ ସହକର୍ମୀ ଏହି ଅନୁବାଦଟି ପ୍ରସ୍ତୁତ କରିବାଦ୍ୱାରା ପୋଲାଣ୍ଡ୍ ସାହିତ୍ୟଲାଗି ଏକ ବିଶିଷ୍ଟ ସେବା କରିଛନ୍ତି ବୋଲି ଅନୁଭବ କରୁଛନ୍ତି । ଭାରତବର୍ଷରେ ଏବେ ପୋଲାଣ୍ଡ୍ ସାହିତ୍ୟର ଅଳ୍ପ କେତୋଟି ମାତ୍ର ସଂକଳନ ପ୍ରକାଶିତ ହୋଇଛି । ଗତ ଯୁଦ୍ଧପରେ ବିଭିନ୍ନ ଭାରତୀୟ ଭାଷାରେ ପୋଲାଣ୍ଡ୍ ସାହିତ୍ୟର ମାତ୍ର କେତୋଟି ପୁସ୍ତକର ଅନୁବାଦ କରାଯାଇଛି । ସିଏନ୍‌କିଭିଚ୍‌ଜ୍‌ଙ୍କର ଏକ ନୂତନ ସଂସ୍କରଣ ବାହାରିଛି, ଆଡାମ୍ ଫ୍ ରୁଡ୍‌ନିକି, ଓ୍ୱାଣ୍ଡା ଭାସିଲେଭ୍‌ସ୍କା, ହେଲେନା ବୋବିନ୍‌ସ୍କା ଓ ଆଉ କେତେଜଣଙ୍କର ପୁସ୍ତକମାନ ଭାରତୀୟ ଭାଷାକୁ ଅନୁଦିତ ହୋଇଛି । ଏହିଗୁଡ଼ିକର ମଣ୍ଡଳୀ ଭିତରେ ରେମଣ୍ଟଙ୍କର The Peasantsର ଅନୁବାଦ ନିଶ୍ଚୟ ଏକ ପ୍ରମୁଖ ସ୍ଥାନ ଅଧିକାର କରି ରହିବ । ଭାରତର ଜନଗଣଙ୍କୁ ଆମ ସାହିତ୍ୟ ବିଷୟରେ ଅଧିକ ପରିଚିତ କରାଇବାରେ ଏବଂ ଆମ ଦୁଇଦେଶ ମଧ୍ୟରେ ରହିଥିବା ସୌହାର୍ଦ୍ଦ୍ୟସମ୍ପନ୍ନ ସାଂସ୍କୃତିକ ସମ୍ପର୍କଗୁଡ଼ିକୁ ଅଧିକ ଶକ୍ତିଶାଳୀ କରିବାରେ ଏହି ଅନୁବାଦଟିର ଏକ ମହତ୍ତ୍ୱପୂର୍ଣ୍ଣ ଅବଦାନ ଅବଶ୍ୟ ରହିବ ।

**ମିଖାଏଲ୍ ରୁଷିନେକ୍**

ପୋଲାଣ୍ଡ୍ ପି. ଇ. ଏନ୍. ଶାଖାର ମୁଖ୍ୟ ସମ୍ପାଦକ

## EPILOGUE

IT was in October 1958 that I received a letter from Cuttack in Orissa from Mr Prafulla Chandra Das who requested me to supply him a copy of THE PEASANTS by Wladyslaw Reymont as he wished to publish the book into Oriya, and asked for details about the copyright connected with the translation. When I received this letter, I was at once most impressed with the ambitious aim of my colleague from the Indian PEN-Club.

Indeed, the very intention to tackle such an immensely difficult work as the translation of Reymont's great epic was bound to evoke admiration and respect for the translator. This magnificent work of our Nobel Prize winner occupies so distinct a place in our literature, is so strongly imbued with the original beauty and expressiveness of the peasant language, has its own style of presenting pictures painted in vivid flawless colours, and, above all, renders in its psychological form and in the story the play of elementary forces in village life in such a way that it required thorough studies, hard work, research and most of all Prof. Dr. Chitta Ranjan Das's personal gift to write, to assimilate into Oriya this uncommon work which to a certain degree must seem exotic to heirs of the ancient Indian culture.

Today, when Prof. Dr. Chitta Ranjan Das offers the fruits of his endeavour, bound up with the name of

the Polish author, to his Indian readers, the Polish writers, Reymont's spiritual heirs, cannot but express their conviction that their Indian colleague has rendered a distinguished service to Polish literature. Among the few Polish anthologies published lately in India, and the Polish books translated after the war into various Indian languages—such as a new edition of Sienkiewicz, translations of books by Adolf Rudnicki, Wanda Wasilewska, Helena Bobinska and others,—Reymont's THE PEASANTS will certainly occupy a leading position and thus contribute both to a better knowledge of our literature among the Indian people and to a further strengthening of our friendly cultural contacts.

Michal Rusinek
*Secy. General of Polish PEN.*

ଶ୍ରଦ୍ଧେୟ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ,

ଲାଡସ୍ଲାସ୍ ରେମଣ୍ଟଙ୍କର The Peasants ଉପନ୍ୟାସଟିକୁ ଆପଣ ଓଡ଼ିଆ ଭାଷାରେ ଅନୁବାଦ କରାଇ ପ୍ରକାଶିତ କରିବାକୁ ଯାଉଛନ୍ତି, ଏକଥା ଜାଣି ମୁଁ ଅତୀବ ଆନନ୍ଦ ଅନୁଭବ କରୁଛି । ଆନ୍ତର୍ଜାତିକ ପାଠକ-କ୍ଷେତ୍ରରେ ସୁପରିଚିତ ଏହି ଗ୍ରନ୍ଥଟିକୁ ଏକ ଭାରତୀୟ ଭାଷାରେ ପ୍ରକାଶ କରିବା ଦ୍ୱାରା ଭାରତ ଓ ପୋଲଣ୍ଡ ଭିତରେ ରହିଥିବା ସାଂସ୍କୃତିକ ସମ୍ପର୍କକୁ ଦୃଢ଼ତର କରିବାଦିଗରେ ଆପଣ ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରି ପାରିଛନ୍ତି ।

ଆପଣଙ୍କର ଏହି ଅନୁବାଦଟି ଲାଗି ମୁଁ ସକଳପ୍ରକାର ସଫଳତା କାମନା କରୁଛି ।

**ଡକ୍ଟର ଅସ୍କାର ଲଙ୍ଗ**

ଚେୟାରମ୍ୟାନ୍,

ପୋଲିଶ୍-ଭାରତୀୟ ସୌହାର୍ଦ୍ଦ୍ୟ ସମିତି

ମୁଁ ଓଡ଼ିଶା ଯାଇନାହିଁ, କିନ୍ତୁ ପୁସ୍ତକରୁ ଓଡ଼ିଶା ବିଷୟରେ ପଢ଼ିଚି ଏବଂ ମୋର ମନୋଯାନରେ ସେହି ଦେଶରେ ଭ୍ରମଣ କରି ଆସିଚି । ଏହି ମୁଖବନ୍ଧଟି ଲେଖିଲା ବେଳେ ମଧ୍ୟ ମୁଁ ସୁନ୍ଦର କଳାସମ୍ପଦଶାଳୀ ମନ୍ଦିରକୁ ମୋର ଆଖି ଆଗରେ ଦେଖିପାରୁଚି । ହୁଏତ ସେହି ମନ୍ଦିରର ଛାଇରେ ବସି ଜଣେ ଓଡ଼ିଶାର କେଉଁ ପାଠକ ପୋଲାଣ୍ଡ୍‌ର ଏହି ଉପନ୍ୟାସଟିକୁ ନେଇ ପଢ଼ିବସିବ, ତାହା ଚିନ୍ତା କଲାବେଳକୁ ମୋର ପ୍ରାଣ ପୁଲକିତ ହୋଇ ଉଠୁଚି । ଆପଣାର ଭାଗ୍ୟ ଓ ଆପଣାର ଆତ୍ମାକୁ ନେଇ ମଣିଷ ଏହି ଦେଶର ମାଟି ଉପରେ ଯେଉଁ ସଂସାର ବସାଇଚି, ସେହି ସଂସାରର ସକଳ ବୃତ୍ତି ଓ ବାସନାକୁ ଏହି ଗ୍ରନ୍ଥରେ ଅପୂର୍ବ ଭାବରେ ଫୁଟାଇ ଦିଆ ଯାଇଚି । ଭାରତର ଆକାଶ ଏ ଦେଶର ଆକାଶଠୁଁ ଅନେକ ଭିନ୍ନ । କିନ୍ତୁ ଭାରତର ଧାନ କିଆରୀରେ ବା ପୋଲାଣ୍ଡ୍‌ର ମାଣ୍ଡିଆ କିଆରୀରେ ଯେଉଁ କୃଷୀକୁଳ କାମ କରନ୍ତି ସେମାନଙ୍କର ହୃଦୟ ଏକ ।

— ବିଶ୍ୱ ଲେଖକ ସଂଘ

ବୃଗରତ୍ତ-ସନ୍ନିବିଷ୍ଟ ଏକ ଚକ୍ରର ମାଧ୍ୟମରେ ଜୀବନ ଚକ୍ରକୁ ଏକ ସାହିତ୍ୟ ରୂପ ଦେବାର ଲେଖକ ଯେଉଁ ପ୍ରତିଭାସମ୍ପନ୍ନତା ଦେଖାଇଚନ୍ତି, ତାହା ମଧ୍ୟ ଉପନ୍ୟାସଟିକୁ ଏକ ମହାକାବ୍ୟିକ ଉପାଦାନରେ ମଣ୍ଡାଇ ରଖିଚି । ଜୀବନର ଏକ ସମଗ୍ର ସ୍ରୋତରେ ଲେଖକ ଅତି ନିପୁଣ ଭାବରେ ବୃଗରତ୍ତୁର ବୈଷମ୍ୟ ଓ ଐକ୍ୟଗୁଡ଼ିକୁ ଏକତ୍ର ଆଣି ଗୁନ୍ଥି ଦେଇଚନ୍ତି ।

ଉପସଂହାରରେ ମୁଁ ଉପନ୍ୟାସଟିକୁ ହୃଦୟୋଦ୍ଭାସକ ଓ ଶକ୍ତିଶାଳୀ କଳାର ଏକ ନିଦର୍ଶନ ବୋଲି କହିବି । ଏହି ଗ୍ରନ୍ଥର ମୂଲ୍ୟ ଓ ସମ୍ମାନ ଅବଶ୍ୟ ଚିରନ୍ତନ ସ୍ଥାୟୀ ହୋଇ ରହିବ । କେବଳ ପୋଲାଣ୍ଡ୍ ଦେଶର ସାହିତ୍ୟରେ ନୁହେଁ, ଯେଉଁ ଉପନ୍ୟାସ-ଶୈଳୀର ମାଧ୍ୟମରେ ଏହି ଗ୍ରନ୍ଥଟିକୁ ଏକ ବିଶିଷ୍ଟ ଓ ପ୍ରକାଶିତ ଆକାର ଦେବା ସମ୍ଭବ ହୋଇଚି, ସେହି ଉପନ୍ୟାସ-ଜଗତରେ ମଧ୍ୟ ଏହି ଗ୍ରନ୍ଥ ଏ ସ୍ଥାୟୀ ଆସନ ଅଧିକାର କରି ରହିବ ।

— ନୋବେଲ ପୁରସ୍କାର କମିଟି